# ଶିକ୍ଷାରେ କ୍ରାନ୍ତିକାରୀ
# କ୍ରିଷ୍ଟେନ୍ କଲ୍‌ଡ୍
# Christen Kold

ଚିତ୍ତରଞ୍ଜନ ଦାସ




ଶିକ୍ଷାସନ୍ଧାନ
ଭୁବନେଶ୍ୱର

ଶିକ୍ଷାରେ କ୍ରାନ୍ତିକାରୀ
କ୍ରିଷ୍ଟେନ୍ କଲ୍‌ଡ୍

ଲେଖକ: ଚିତ୍ତରଞ୍ଜନ ଦାସ
ପ୍ରକାଶକ:
ଶିକ୍ଷାସନ୍ଧାନ
ଏ-୧୨,ହାଉସିଂ ବୋର୍ଡ କଲୋନୀ
ବରମୁଣ୍ଡା,ଭୁବନେଶ୍ୱର-୩
ଫୋନ୍-୫୫୬ ୧୦୯, ଫାକ୍ସ: ୫୫୦ ୬୫୬

ପ୍ରଚ୍ଛଦ: ରମେଶ ଗୁମାନସିଂହ
ଅକ୍ଷର ସଜ୍ଜା: ଲୋକନାଥ ପଣ୍ଡା

ମୁଦ୍ରଣ: ଶିକ୍ଷାପ୍ରକାଶନୀ, ବରମୁଣ୍ଡା, ଭୁବନେଶ୍ୱର
ପ୍ରଥମ ପ୍ରକାଶ: ବିଜୟା ଦଶମୀ-୨୦୦୦
ଦ୍ୱିତୀୟ ପ୍ରକାଶ:-୨୦୦୮
ମୂଲ୍ୟ: ଟ.୧୦୦/-ମାତ୍ର

**Christen Kold**
Author: Chittaranjan Das

Publisher:
**Sikshasandhan**
A-12,Housing Board Colony,Baramunda,Bhubaneswar-3
Phone-556 109, Fax: 550 656
E mail: siksha@cal2.vsnl.net.in

Cover Design by: Ramesh Gumansingh
D.T.P.: Lokanath Panda

Printer : Siksha Prakashani
Barmunda, Bhubaneswar
First Edition : Bijaya Dashami-2000

.... ଶିକ୍ଷାର ପ୍ରୟୋଗକ୍ଷେତ୍ରରେ ଜଣେ କ୍ରାନ୍ତିକାରୀ ବୀର ହେଉଛନ୍ତି କ୍ରିଷ୍ଟେନ୍ କଲ୍‌ଲ୍,- ଶିକ୍ଷକମାତ୍ରେ ସମସ୍ତଙ୍କର ନିତ୍ୟସ୍ମରଣୀୟ । ସମଧର୍ମୀମାନଙ୍କର ପ୍ରୟୋଗ ନିରନ୍ତର ଚାଲି ଆସିଛି, ଚାଲିଥିବ । ଆଗରେ ପର୍ବତସମାନ ପ୍ରତିବନ୍ଧକମାନେ ଆସି ଛିଡ଼ା ହେଉଥିବେ ଏବଂ ହଟି ଯାଉଥିବେ, ଟଳି ଯାଉଥିବେ ।

ଓଡ଼ିଶାରେ ବି ଥରେ ଚାରିଆଡ଼େ ବୁଲିଆସ, ସେହି ପ୍ରୟୋଗକାରୀମାନଙ୍କୁ ନିଶ୍ଚୟ ଭେଟିବ । ଗୁଳା ଭିତରେ ଥାଇ ଗୁଳା ଭାଙ୍ଗିବାପାଇଁ ପ୍ରୟୋଗ; ପୁଣି ଗୁଳା ବାହାରେ ନୂଆ ବାଟଟିଏ ସମ୍ଭବ କରି ଆଣିବାପାଇଁ ପ୍ରୟୋଗ । ଶ୍ରୀ ଅରବିନ୍ଦଙ୍କର ଭାଷାରେ ଏକ loving struggleରେ ସେମାନେ ନିତ୍ୟ ରତ ହୋଇ ରହିଛନ୍ତି ।

ସେମାନଙ୍କ ଲାଗି ଏକ ବିନୀତ ପ୍ରଣାମ ସହିତ ପ୍ରସ୍ତୁତ ଜୀବନୀଟିକୁ ମୁଁ ସେହି ସଂଗ୍ରାମୀ ଶିକ୍ଷାସନ୍ଧାନୀମାନଙ୍କ ହାତରେ ଅର୍ପଣ କରୁଛି ।

ଚିତ୍ତରଞ୍ଜନ ଦାସ



ପତ୍ନୀ ଓ ଦୁଇ କନ୍ୟା



ମାରୀ କଲ୍‌ଲ୍ ଲେବେକ୍



ରୁଇସ୍‌ଲିଙ୍ଗ୍ ଲୋକ-ବିଦ୍ୟାଳୟ

- ୧ -

ଇଉରୋପର ଉତ୍ତର ଅଂଶ ଆଡ଼କୁ ସାନ ଦେଶଟିଏ ହେଉଛି ଡେନ୍‌ମାର୍କ୍ । ଆଟ୍‌ଲାଣ୍ଟିକ୍ ମହାସାଗର ଯେଉଁଠାରେ ଗୋଟିଏ ଗେଞ୍ଜ ପରି ହୋଇ ବଲ୍‌ଟିକ୍ ସାଗର ବୋଲି ଏକ ସ୍ଥାନୀୟ ନାଆଁରେ ଭିତରକୁ ପଶିଯାଇଛି, ତାହାରି ଚଉହଦୀରୂପେ ଚାରୋଟି ଦେଶ, ନର୍‌ୱେ, ସୁଇଡ଼େନ୍, ଡେନ୍‌ମାର୍କ ଓ ଫିନ୍‌ଲାଣ୍ଡ । ଚାରୋଟିଯାକ ଭୂମିକୁ ମିଶାଇ ଏହି ଅଞ୍ଚଳଟିକୁ କୋଉ କାଳରୁ ସ୍କାଣ୍ଡିନେଭିଆ ବୋଲି କୁହାଯାଇ ଆସିଛି । ଡେନ୍‌ମାର୍କ୍ ହେଉଛି ମୁଖ୍ୟତଃ ବହୁସଂଖ୍ୟକ ଦ୍ୱୀପର ଗୋଟିଏ ସମଷ୍ଟି । କେବଳ Jylland ବା ଉଇଲାଣ୍ଡ୍ ( ଇଂରାଜୀ ଭାଷାରେ Jutland) ଇଉରୋପ ମହାଦେଶର ସ୍ଥଳଭାଗକୁ ଲାଗିଛି ଓ ସତେଅବା କୌଣସି କଙ୍କଡ଼ାର ସାନ ଗୋଡ଼ଟିଏ ପରି ଉତ୍ତର ଦିଗକୁ ବାହାରି ଯାଇଛି । ମଝିରେ ଓ ପୂର୍ବଦିଗରେ ଦୁଇଟି ବଡ଼ ଆକାରର ଦ୍ୱୀପ,- ଯଥାକ୍ରମେ ଫୁଇନ୍ (Fyn) ଏବଂ ସ୍ୟେଲାଣ୍ଡ୍ (Sjaelland) । ବାକୀ ଦ୍ୱୀପଗୁଡ଼ିକୁ ଏକାଠି ସୁମାରି କରି ଚାରିଶହର ପାଖାପାଖି ବୋଲି ଅନୁମାନ କରାଯାଇଛି । ଗୋଟିଏ ଗୋଟିଏ ଦ୍ୱୀପରେ ଏଯାଏ କୌଣସି ଜନବସତି ଯାଇ ପହଞ୍ଚି ପାରିନାହିଁ । ଡେନ୍‌ମାର୍କ୍ ଝଡ଼ପବନର ଦେଶ, ପ୍ରବଳ ଝଡ଼ ଓ ତୁଷାରପାତର ଦେଶ । ଦେଶର ମୋଟ ଲୋକସଂଖ୍ୟା ଚାଳିଶିରୁ ପଚାଶ ଲକ୍ଷ ।

ଦେଶଟାଯାକ ଗୋଟାସୁଦ୍ଧା ଚେପ୍‌ଟା ଓ ସମତଳ । ପାହାଡ଼ ବୋଲି କିଛି ନାହିଁ । ଯେଉଁ ଉଚ୍ଚତମ ଢିପଟିକୁ ପାହାଡ଼ ବୋଲି କୁହାଯାଏ, ତାହାକୁ ରସିକତା କରି ହିମେଲ୍‌ବେଆର୍ଗ୍ (Himmelbjerg) ଅର୍ଥାତ୍ ସ୍ୱର୍ଗଯାଏ ଲାଗିଥିବା ପର୍ବତ ବୋଲି କୁହାଯାଇ ଆସିଛି । ମାଟିତଳେ ଖଣିଜପଦାର୍ଥ ବୋଲି କିଛିନାହିଁ । ସର୍ବପ୍ରଧାନ ସମ୍ପଦ ହେଉଛି କୃଷି, ଗୋପାଳନ ଏବଂ କୁକୁଡ଼ାଚାଷ । ଡେନ୍‌ମାର୍କ୍‌କୁ ପ୍ରାୟ ପାରମ୍ପରିକ ଭାବରେ କ୍ଷୀର ଓ ଲହୁଣୀର ଦେଶ ବୋଲି କୁହାଯାଇ ଆସିଛି । ଏହି ଯାବତୀୟ ବ୍ୟାପାର ସମବାୟ ଛାଞ୍ଚରେ ଚାଲେ । ଶାସନର ଛାଞ୍ଚ ଗଣତନ୍ତ୍ର । କିନ୍ତୁ ରଜା ମଧ୍ୟ ଅଛନ୍ତି । ଇଂଲଣ୍ଡର ରାଣୀଙ୍କୁ ହୁଏତ କିଛି କିଛି ନ୍ୟାୟରେ ତଥାପି ରାଣୀ ବୋଲି କୁହାଯାଇ ପାରିବ । ମାତ୍ର ଡେନ୍‌ର୍ମାକ୍‌ର ରାଣୀ ବା ରାଜାଙ୍କୁ ଅଧିକ ଯୁକ୍ତିର ସହିତ ଦେଶର ପ୍ରଥମତମ ନାଗରିକ ବୋଲି କହିଲେ ସମ୍ଭବତଃ ମୋଟେ ମିଛ କୁହା ହେବନାହିଁ । ସେହି ଦେଶର ଏକ ଲମ୍ବା ଇତିହାସ ରହିଛି । ଇଉରୋପୀୟ ଜୀବନକାହାଣୀର ପ୍ରାୟ ପ୍ରାକ୍‌କାଳରେ ଡେନ୍‌ମାର୍କ୍‌ର ଭାଇକିଙ୍ଗମାନେ ନାବ ଚଳାଇ ଆମେରିକାର ପୂର୍ବ ଉପକୂଳ

ପର୍ଯ୍ୟନ୍ତ ଖେଟି ଯାଇପାରେ । ବେଶ୍ କିଛି ସମୟ ସେମାନେ ଇଂଲଣ୍ଡରେ ରାଜା ମଧ୍ୟ ହୋଇଥିଲେ । ଉତ୍ତର ଆମେରିକାର ଉତ୍ତର ପଟେ ଅବସ୍ଥିତ ବୃହତ୍ ଗ୍ରୀନ୍ଲାଣ୍ଡ୍ ଦ୍ୱୀପଟି ଡେନ୍ମାର୍କର ଏକ ଉପନିବେଶ ହୋଇ ରହିଥିଲା । ଏବେ, ଏସ୍କିମୋମାନେ ବାସ କରୁଥିବା ସେହି ଭୂଖଣ୍ଡଟି ଡେନ୍ମାର୍କର ଗୋଟିଏ ପ୍ରଦେଶ ହୋଇ ରହିଛି । ସେଠାରୁ ଜଣେ ପ୍ରତିନିଧି ନିର୍ବାଚିତ ହୋଇ ଦେଶର ପାର୍ଲିଆମେଣ୍ଟରେ ଆସି ବସୁଛନ୍ତି ।

ଆଟ୍ଲାଣ୍ଟିକ୍ ଦରିଆର ପ୍ରାୟ ମଧ୍ୟଭାଗରେ ଅବସ୍ଥିତ ଆଇସ୍ଲାଣ୍ଡ୍ ଦ୍ୱୀପ ବା ଦେଶଟି ମଧ୍ୟ ସାମୂହିକ ନିୟତିନିର୍ଦ୍ଧାରଣର ସକଳ କ୍ଷେତ୍ରରେ ଡେନ୍ମାର୍କ୍ ସହିତ ଯୋଡ଼ି ହୋଇ ରହିଥିଲା । ଏବେ ମଧ୍ୟ ଦୁଇ ଦେଶର ଭାଷାରେ ବହୁ ସାମଞ୍ଜସ୍ୟ ତଥା ସଂଲଗ୍ନତାମାନ ରହିଛି । ଡେନ୍ମାର୍କ୍‌ରେ ଡେନିଶ୍, ସୁଇଡ଼େନ୍ ଦେଶରେ ସୁଇଡ଼ିଶ୍ ଓ ନର୍ୱେର ନର୍ଉଇଜିଆନ୍, - ଏଗୁଡ଼ିକୁ ଆମ ଏଠାକାର ଓଡ଼ିଆ, ବଙ୍ଗଳା ଏବଂ ଆସାମୀ ଭିତରେ ରହିଥିବା ବିରାଦରୀ ସହିତ ତୁଳନା କରାଯାଇ ପାରିବ । କିଏ କାହାର ବଡ଼ ଅଥବା ସାନ ଭଉଣୀ ବୋଲି ଉଲୁଗୁଣା ଦେଇ ବାନ୍ଦର ଲଗାଇବାକୁ ଆଦୌ ମନ ହେବନାହିଁ । ଏହି ତିନୋଟିଯାକର ମୂଳ ବା ମଞ୍ଜ ଭାଷା ହେଉଛି ନର୍ଡ଼ିକ୍ । ଜର୍ମାନ୍ ଭାଷାର ବହୁ ଶବ୍ଦ ଏବଂ ଶବ୍ଦପ୍ରୟୋଗ କିପରି ଯେ ଏକାଧିକ ଶତାବ୍ଦୀରୁ ସ୍ଥଳଭାଗ ଦେଇ ଡେନିଶ୍ ଭାଷାକୁ ସଂକ୍ରାମିତ ହୋଇ ଆସିଛି, ସେହି ଦେଶରେ ବର୍ଷେ ଛଅମାସ ରହିବାପରେ ସେହି କଥାଟି ଅବଶ୍ୟ କ୍ରମସ୍ୱଷ୍ଟ ହୋଇ ଆସିବ । ସୁଇଡ଼େନ୍, ନର୍ୱେ ଓ ଫିନ୍ଲାଣ୍ଡ୍ -ଏହି ତିନୋଟି ଦେଶ ସ୍ଥଳଭାଗ ଦ୍ୱାରା ପରସ୍ପରକୁ ଲାଗି କରି ରହିଛି । ଡେନ୍ମାର୍କ୍ ସମୁଦ୍ର ଦ୍ୱାରା ଏଗୁଡ଼ିକ ଠାରୁ ଅଲଗା ଅଛି । ବରଂ, ଏହାର ସବୁଠାରୁ ବଡ଼ ଚେନାଟା ଜର୍ମାନୀର ଭୂଭାଗ ସହିତ ସଂଯୁକ୍ତ ହୋଇ ରହିଛି । ମାତ୍ର ସାମୂହିକ ସଂଲଗ୍ନତାର ଯାବତୀୟ ଦୃଷ୍ଟିରୁ ଡେନ୍ମାର୍କ୍ ଦେଶ ଜର୍ମାନୀ ସହିତ ନୁହେଁ, ଉକ୍ତ ତିନୋଟି ଦେଶ ସହିତ କିପରି ଏତେ ନିବିଡ଼ ଭାବରେ ଯୋଡ଼ାହୋଇ ରହିଆସିଛି, ବେଳେବେଳେ ସେହି କଥାଟି ବେଶ୍ ରହସ୍ୟାବୃତ ପରି ବୋଧ ବି ହୋଇଥାଏ ।

ଡେନ୍ମାର୍କ୍‌ରେ ମଧ୍ୟଯୁଗୀୟ କୃଷିସଂସାରର ଇତିହାସ ପ୍ରାୟ ନିୟମତଃ ଆଦିମ ବହୁବିଧ ଶୋଷଣର ଇତିହାସ । ସେତେବେଳେ କୃଷିଟା ହିଁ ସମାଜରେ ସମସ୍ତଙ୍କର ପ୍ରାୟ ଏକମାତ୍ର ଅବଲମ୍ବନ ହୋଇ ରହିଥିଲା । ବୃହତ୍ ଭୂମ୍ୟଧିକାରୀ ରହିଥିଲେ, ତା'ପଛକୁ ଏପରି କୃଷକମାନେ ରହିଥିଲେ ଯେଉଁମାନେ ଅପେକ୍ଷାକୃତ ସାନ ସାନ ଭୂମିପରିମାଣର ମାଲିକ ଥିଲେ । ଏବଂ, ସବାତଳକୁ ଦରିଦ୍ରତମମାନେ ରହିଥିଲେ ଯେଉଁମାନଙ୍କର ନିଜର ବୋଲି କହିବାକୁ କୌଣସି ଜମି ନଥିଲା । ସେମାନେ ବଡ଼ ଜମିମାଲିକମାନଙ୍କର କ୍ଷେତରେ ମୂଲ ଖଟି ଜୀବନର ଭରଣା କରୁଥିଲେ । ଅନେକ କ୍ଷେତ୍ରରେ ପୂରା ପରିବାରମାନେ ମାଲିକ ସାମନ୍ତମାନଙ୍କ ସହିତ ପୁରୁଷ ପୁରୁଷ ଧରି ବନ୍ଧା ହୋଇ ରହିଥିଲେ । ଉପର ତଳ ଉଭୟେ ହିଁ

ତାହାକୁ ହିଁ ସମ୍ଭାବ୍ୟ ଏକମାତ୍ର ବ୍ୟବସ୍ଥା ବୋଲି ମାନି ନେଇଥିଲେ । ସମଗ୍ର ଇଉରୋପରେ ରାଜନୀତିକ ତଥା ସାମାଜିକ ନୂତନ ଉଦ୍‌ବେଳନମାନ ଆରମ୍ଭ ହେବା ଫଳରେ ଡେନ୍‌ମାର୍କ୍‌ରେ ମଧ୍ୟ ତାହାର ଅନୁତରଙ୍ଗମାନ ସୃଷ୍ଟି ହୋଇଥିଲା । ବଞ୍ଚିତମାନେ କ୍ରମେ ଅନ୍ୟପ୍ରକାରେ ଭାବିବାକୁ ଆରମ୍ଭ କଲେ ଏବଂ ନିଜର ଭବିଷ୍ୟ ବିଷୟରେ ଅନ୍ୟ ଅଧିକ ମନୁଷ୍ୟୋଚିତ ଚିତ୍ରମାନ ମଧ୍ୟ ଦେଖିବାକୁ ଆରମ୍ଭ କଲେ । ୧୭୮୮ ମସିହା ପାଖାପାଖି ସବାତଳ କୃଷକମାନଙ୍କ ପାଇଁ ମୁକ୍ତିର ପ୍ରଥମ ସ୍ୱାଦ ସମ୍ଭବ ହୋଇ ପାରିଥିଲା । ଅଧିକ ଜମି ଆବାଦଯୋଗ୍ୟ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ମଧ୍ୟ ନିଜର ବୋଲି କହିବାକୁ ଏବଂ ସେହି ଜମିରେ ଚାଷ କରିବାକୁ ଟୁକୁଡ଼ାଏ ଟୁକୁଡ଼ାଏ ଉପଲବ୍ଧ ହୋଇ ପାରିଥିଲା । ଗୋଡ଼ ଦମ୍ଭ କରି ଛିଡ଼ା ହୋଇ ପାରିବା ସକାଶେ ଅରାଏ ଭୂମି ମିଳିଗଲା । ଆଗରୁ ରହି ଆସିଥିବା ସ୍ଥାନୀୟ ସମିତିମାନଙ୍କରେ ବଡ଼ କ୍ଷେତମାଲିକମାନେ ହିଁ ସର୍ବଶକ୍ତିଶାଳୀ ହୋଇ ରହିଥିଲେ । ଅସଲ କୃଷିକାରୀମାନଙ୍କର ସେଗୁଡ଼ିକରେ କୌଣସି ସ୍ଥାନ ନଥିଲା । ଏଣିକି ସେମାନଙ୍କର ପ୍ରତିନିଧି ମଧ୍ୟ ସେହିସବୁ ସମିତିରେ ବସିବାକୁ ଓ ଆପଣାର କଥା କହିବାକୁ ସ୍ଥାନ ପାଇଲେ । ଭାରି ସହଜରେ ବୁଝି ହୋଇଯିବ ଯେ, ବଡ଼ ଭୂମିମାଲିକମାନେ ନୂଆହୋଇ ମାଲିକଙ୍କର ଭୂମି ସହିତ ବନ୍ଧା ହୋଇ ରହିବାର ଦଶାରୁ ମୁକ୍ତିଲାଭ କରିଥିବା କୃଷିକାରୀମାନଙ୍କୁ ଆଦୌ ସମ୍ମାନର ଚକ୍ଷୁରେ ଦେଖୁନଥିଲେ । ପୁନଶ୍ଚ, ସଂପୃକ୍ତ ସଭାମାନଙ୍କରେ ମଧ୍ୟ ସେମାନଙ୍କୁ ନିଜର ସମକକ୍ଷ ବୋଲି ବିଚାର କରୁନଥିଲେ ।

ସେକାଳେ ଅଧିକାଂଶ କୃଷକଙ୍କର ବାସଗୃହଗୁଡ଼ିକ ମଧ୍ୟ ସେହି ପୁରୁଣାକାଳର ହିଁ ଥିଲା । କାନ୍ଥଗୁଡ଼ିକ ବଡ଼ ଅଗଭୀର ମୂଳଦୁଆ ଉପରେ ତିଆରି ହୋଇଥିବାରୁ ଝଡ଼ବାତ୍ୟାରେ ବାରବାର ଭୁଷୁଡ଼ି ପଡୁଥିଲେ । ମାଟିରେ ତିଆର ହୋଇଥିବା କାନ୍ଥମାନେ ଆଉ କେତେ ସହି ପାରନ୍ତେ ? ଛପରଗୁଡ଼ାକ କୁଟାରେ, - ଘରର ଚଟାଣ ମଧ୍ୟ ମାଟି-ଚଟାଣ । ଗୁହାଳ ଭିତରେ ଗୋରୁମାନେ ମଧ୍ୟ ସେହି ମାଟି ଉପରେ ବନ୍ଧା ହେଉଥିଲେ । ଗୁହାଳ ଘରେ ଝରକା ବୋଲି କିଛି ନଥିଲା । ଶୀତଦିନେ ବାହାରେ ତୁଷାରପାତ ହେଉଥିବା ସମୟରେ ସେମାନେ ନିବୁଜ ଗୁହାଳ ଭିତରେ ପୂରା ଅନ୍ଧାରରେ କାଳ କାଟୁଥିଲେ । କୃଷକର ଘର ବୋଲି ଗୋଟିଏ ବଡ଼ ବଖରା, - ସେଇ ବସିବା ଘର, ଖାଇବା ଘର, ରାତିରେ ଶୋଇବା ଜାଗା ମଧ୍ୟ ସେଇ । କେହି ବେମାର ପଡ଼ିଲେ ତାହାରି ଭିତରେ କୌଣସି କୋଣଜାଗା ଦେଖି ଥାନ କରିଦେବାକୁ ପଡୁଥିଲା । ବସିବା ସକାଶେ ଘର ଭିତରେ ଲମ୍ବା ଲମ୍ବା କାଠତିଆରି ବେଞ୍ଚ ପଡ଼ିଥିଲା । ଖାଇବା ସମୟରେ ଭୋଜନସାମଗ୍ରୀ କାଠଟେବୁଲ ଉପରେ ବାଢ଼ି ଦିଆଯିବା ପରେ ପ୍ରଥମେ ଘରର ପୁରୁଷମାନେ ବେଞ୍ଚଗୁଡ଼ିକ ଉପରେ ବସି ଭୋଜନକାର୍ଯ୍ୟ ସମାପନ କରୁଥିଲେ ଏବଂ ସେହି ଟେବୁଲ୍‌ର ଆଉଗୋଟାଏ କଡ଼କୁ ଝିଅମାନଙ୍କୁ ଠିଆ ଠିଆ

ହିଁ ଖାଇବାକୁ ହେଉଥିଲା । ଛୁରୀ ବା କଣ୍ଟାର ବ୍ୟବହାର ନଥିଲା, ସମସ୍ତେ ହାତଆଙ୍ଗୁଠିକୁ କାମରେ ଲଗାଉଥିଲେ ଏବଂ ଖାଇବା ଅନ୍ତେ ଟଉଲିଆରେ ହାତ ପୋଛି ଦେଉଥିଲେ । ଫୁରସତ ସମୟରେ ସେଇ ମାଟିଚଟାଣ ଉପରେ ବସି ଝିଅ, ବୋହୂ ବା ମାଆମାନେ ସୂତା କାଟୁଥିଲେ ବା ଆଉକିଛି କାମ କରୁଥିଲେ । ପୁରୁଷ ବଡ଼ମାନେ କାଠତିଆରି ଢୋତା ପିନ୍ଧି ମାଟିଚଟାଣ ଉପରେ ଯାତାୟତ କରୁଥିଲେ । ସେକାଳର ସେହି ଜୀବନକୁ ଝୁରି ଓ ମନେ ପକାଇ କବିମାନେ କେତେ କେତେ ଗୀତ ଓ କବିତା ଲେଖିଯାଇଛନ୍ତି, ଯାହା ଏକାଳକୁ ମଧ୍ୟ ସାଇତା ହୋଇରହିଛି ।

ସ୍ୱଚ୍ଛ ପରିସରର ସେହି ସହଜ ଏବଂ ସରଳ କାଳଟିରେ ଗ୍ରାମ୍ୟ ଜୀବନର ସଂସାରଟିକୁ ହିଁ ସେମାନେ ସମଗ୍ର ପୃଥିବୀ ବୋଲି ସ୍ୱୀକାର କରି ନେଉଥିଲେ । ସହଜ ଏଇଥିପାଇଁ ଯେ ସେତେବେଳେ ଜୀବନକୁ ଆବୋରି ରହିଥିବା ସବୁକିଛିକୁ ହିଁ ସତେଅବା ଈଶ୍ୱରନିର୍ଦ୍ଧାରିତ ବୋଲି ମାନି ନିଆ ଯାଉଥିଲା । କୃଷକର ଗୃହ ପ୍ରାୟ ସମ୍ପୂର୍ଣ୍ଣରୂପେ ସ୍ୱନିର୍ଭର ହୋଇ ରହିଥିଲା । ଭୋଜନରେ ସ୍ୱନିର୍ଭର ଏବଂ ବସ୍ତ୍ରରେ ମଧ୍ୟ ସ୍ୱନିର୍ଭର । ଅତ୍ୟନ୍ତ ଆବଶ୍ୟକତାର ସେହି ଜୀବନକୁ ଯଥାସମ୍ଭବ ପୂର୍ଣ୍ଣସମ୍ପନ୍ନ କରି ରଖିବା ନିମନ୍ତେ ମନୁଷ୍ୟମାନଙ୍କୁ ଅତ୍ୟଧିକ ମିହନ୍ତ କରିବାକୁ ପଡୁଥିଲା । ବିଶେଷ କରି ମାଆମାନଙ୍କର ଓ କନ୍ୟାମାନଙ୍କର ଖଟଣିର କୌଣସି ସୀମା ନଥିଲା । ସେମାନେ ରାନ୍ଧୁଥିଲେ, ବରଷଯାକ ପାଇଁ ରୁଟି ତିଆରି କରି ରଖୁଥିଲେ, କାଟୁଥିଲେ, ବୁଣୁଥିଲେ, ମୋଜା ତିଆରି କରୁଥିଲେ, ଇତ୍ୟାଦି, ଇତ୍ୟାଦି । ସଂସାରଟା ଭାରି ଅପରିଷ୍କୃତ ହୋଇ ରହିବାକୁ ବାଧ୍ୟ ହେଉଥିଲା । ଘର ଭିତରକୁ ଆଲୋକ ଓ ପବନ ମୁକ୍ତ ଭାବରେ ଆସି ପାରୁନଥିଲା । ପିଲାମାନେ ସର୍ବଦା ବେମାର ପଡୁଥିଲେ, ବଡ଼ମାନେ ମଧ୍ୟ ଆଦୌ ରୋଗମୁକ୍ତ ନଥିଲେ । ସେମାନଙ୍କୁ ଥଣ୍ଡାଜ୍ୱର, ଟାଇଫଏଡ଼୍ ଓ ଫୁସ୍‌ଫୁସ୍‌ର ନାନା ଅସୁସ୍ଥତା ଭୋଗ କରିବାକୁ ପଡୁଥିଲା । ଡାକ୍ତର ବା ଔଷଧଦୋକାନ ଯାଏ ଯିବାକୁ ସେତେ ବେଶୀ ଅଭ୍ୟାସ ବି ନଥିଲା । ହାଟବଜାର ମଧ୍ୟ ପାଖରେ ନଥିଲା । ତେଣୁ ପାଖରେ ମିଳୁଥିବା ବଇଦପରାମର୍ଶରେ କାର୍ଯ୍ୟସିଦ୍ଧି ହୋଇ ଯାଉଥିଲା । ପିଲାମାନଙ୍କର ଶିକ୍ଷାବ୍ୟବସ୍ଥା ମଧ୍ୟ ସେତେବେଳେ କ'ଣ ଥିଲା ? ସବୁ ପିଲା, ଗାଆଁ ଓ ସହରର ସବୁ ପିଲା ପାଠ ପଢ଼ିବେ ବୋଲି ଅବଶ୍ୟ ୧୮୧୪ ମସିହାରୁ ଆଇନ୍ ପାସ୍ ହୋଇ ଯାଇଥିଲା । ମାତ୍ର ଜଣେ ଗାଆଁପାଠଶାଳାର ଶିକ୍ଷକର ପାରିଶ୍ରମିକ ଜଣେ ଦିନମଜୁରିଆର ରୋଜଗାରଠାରୁ ଖୁବ୍ ବେଶୀ ଉନ୍ନତ ପରିମାଣର ନଥିଲା । ଅବଶ୍ୟ ପାଠଶାଳା ସହିତ କିଛି ଜମି ରହିଥିଲା । ପାଠଶାଳାର ପରିବେଶ ଆଦୌ ଉତ୍ସାହଜନକ ନଥିଲା । ଶ୍ରେଣୀଗୃହର ଚଟାଣ ଟାଇଲ୍ ଦେଇ ତିଆରି ହୋଇଥିଲା ଏବଂ ପିଲାମାନେ କାଠତିଆରି ଢୋତା ପିନ୍ଧି ଶ୍ରେଣୀରେ ବସୁଥିଲେ । ଶିକ୍ଷାଦାନର ଉପକରଣ ନିତାନ୍ତ ସ୍ୱଳ୍ପ ଥିଲା ଏବଂ ବିଦ୍ୟାର୍ଜନ କହିଲେ

କେବଳ ପାଠ ମୁଖସ୍ଥ କରିବାକୁ ବୁଝାଉଥିଲା । ପାଠ ବୋଲି ଯେତିକି ପଢ଼ା ଯାଉଥିଲା, ସେତିକି ମଧ୍ୟ ସବୁ ପିଲାଙ୍କର ଭାଗ୍ୟରେ ଉପଲବ୍ଧ ହେଉନଥିଲା । ବହୁତ ପିଲା ନିୟମିତ ଭାବରେ ଇସ୍କୁଲକୁ ଆସୁନଥିଲେ । ଆଠ ବରଷରୁ ଅଧିକ ବୟସର ପିଲାମାନେ ଘରର ଚାଷଆଦି କାର୍ଯ୍ୟରେ ସାହାଯ୍ୟ କରୁଥିଲେ । କେତେ ପିଲା, ପୁଅ ଓ ଝିଅ ଉଭୟେ, ଆଉ କାହାର ବା କେଉଁମାନଙ୍କର ଗାଈମେଣ୍ଢା ଜଗି ଯାଉଥିଲେ ଏବଂ ତେଣୁ ଚାଟଶାଳୀରୁ ଅନୁପସ୍ଥିତ ରହୁଥିଲେ । ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ସାଧାରଣତଃ ସେହି ବ୍ୟବସ୍ଥାଟି ଚାଲୁ ରହିଥିଲା ।

୧୮୬୮ ମସିହାରୁ ମିଳୁଥିବା ଗୋଟିଏ ତଥ୍ୟରୁ ଜାଣିବାକୁ ମିଳୁଛି ଯେ, କୌଣସି ଏକ ଅଞ୍ଚଳରୁ ଦେଶର ଶିକ୍ଷାହାଲ ବୁଝୁଥିବା ସରକାରୀ ବିଭାଗର କର୍ତ୍ତାଙ୍କ ପାଖକୁ ସାଧାରଣଙ୍କ ତରଫରୁ ଏପରି ଗୋଟିଏ ଦରଖାସ୍ତ ଯାଇଥିଲା, ଯେଉଁଥିରେ ଉପରର ଦୃଷ୍ଟି ଆକର୍ଷଣ କରା ଯାଇଥିଲା ଯେ, ଗରିବ ଘରର ପିଲାମାନଙ୍କର ପାଠ ପଢ଼ିବା ଦ୍ୱାରା ପ୍ରକୃତରେ ଆଦୌ କୌଣସି ଲାଭ ହୁଏନାହିଁ । ପିଲାମାନେ ଇସ୍କୁଲକୁ ନଯାଉଥିବା ହେତୁ ଜୋରିମାନା ଦିଅନ୍ତି; ଏବଂ ଜୋରିମାନା ସିନା ଆଦାୟ ହୁଏ ମାତ୍ର ତଥାପି ସେମାନେ ସ୍କୁଲରୁ ଅନୁପସ୍ଥିତ ରହିବାକୁ ବାଧ୍ୟ ହେଉଥାନ୍ତି । ୧୮୪୮ ମସିହା ପର୍ଯ୍ୟନ୍ତ ଅବସ୍ଥା ପ୍ରାୟ ଏହିଭଳି ହୋଇ ରହିଥିଲା । କିଛି କିଛି ବଦଳୁଥିଲା ଓ ତଥାପି ପୁରାତନଗୁଡ଼ାକ ମାଡ଼ି ବସିଥିବା ପରି ବୋଧ ହେଉଥିଲା । ୧୮୪୮ ମସିହାଟି ଇଉରୋପର ଲୋକଇତିହାସରେ ଏକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ମସିହା । ସବାଆଗ ମନେ ପଡ଼ିଯାଏ ଯେ କାର୍ଲ୍ ମାର୍କ୍ସ୍ ଏବଂ ଫ୍ରେଡ଼େରିକ୍ ଏଙ୍ଗେଲ୍‌ସ୍‌ଙ୍କର ସୁବିଖ୍ୟାତ The Communist Manifesto ଏହି ମସିହାରେ ହିଁ କାଳର ଦରବାରରେ ଏକ ନୂତନ ଉଦ୍‌ଘୋଷଣାର ଆହ୍ୱାନ ସହିତ ନିଜକୁ ପେଶ୍ କରିଥିଲା । ପ୍ରାଚୀନ ସାମାଜିକ ବହୁ ବଦ୍ଧଧାରଣା ଏବଂ ଜଡ଼ତା ଉପରେ ତାହା ଅତ୍ୟନ୍ତ କଠୋର ଭାବରେ ଆଘାତ କରିଥିଲା । ପୃଥିବୀଯାକର ମନୁଷ୍ୟଭାଗ୍ୟ ବିଷୟରେ ଏକ ଅଭୂତପୂର୍ବ ପ୍ରତିଶ୍ରୁତି ବହନ କରି ଆବିର୍ଭୂତ ହୋଇଥିବା ସେହି ଘୋଷଣାପତ୍ର ଏବେ ମଧ୍ୟ ବଞ୍ଚିତ ମନୁଷ୍ୟମାନଙ୍କ ଲାଗି ଉଦ୍‌ପ୍ରେରକ ରୂପେ ତଥାପି କାର୍ଯ୍ୟ କରୁଛି । ଫରାସୀ ବିପ୍ଳବଠାରୁ ହିଁ ଏହି ନୂତନ ଗତିସ୍ରୋତଟି ଆପଣାକୁ କ୍ରମପ୍ରକାଶିତ କରି ଆଣୁଥିଲା । ଇଂଲଣ୍ଡ ସମେତ ଇଉରୋପୀୟ ପଶ୍ଚିମ ଦେଶମାନଙ୍କରେ ତାହା ବହୁ ନବଉନ୍ମେଷର କାରଣରୂପେ କାର୍ଯ୍ୟ କରିଥିଲା । ଏକାବେଳେକେ ତଳେ ରହି ଆସିଥିବା ମନୁଷ୍ୟମାନଙ୍କର ନିଦ ଭଙ୍ଗାଇ ଦେଇଥିଲା ।

ଡେନ୍‌ମାର୍କ୍ ନାମକ ସାନ ଭୂମିଟିକୁ ମଧ୍ୟ ତାହା ଏକାଧିକ ପ୍ରକାରେ ଚହଲାଇ ଦେଲା । ଡେନ୍‌ମାର୍କ୍‌କୁ ଛପାଖାନା ଆସିଲା, ସମ୍ବାଦପତ୍ର ବାହାରିଲା । ନୂଆ କରି ରେଲ୍‌ଲାଇନ୍ ବସା ହୋଇ ଦେଶର ଏପାଖ ଓ ସେପାଖକୁ ନିକଟ କରି ଯୋଡ଼ି ଆଣିଲା । ସ୍ଥାନୀୟ ଜାଗରଣ

ଗୁଡ଼ିକର ତାତ୍ପର୍ଯ୍ୟ ତେଣିକି ସମଗ୍ର ଦେଶର ବୃହତ୍ତର ପରିପ୍ରେକ୍ଷୀରେ ଅଧିକ ସ୍ପଷ୍ଟ ଭାବରେ ଅନୁଭୂତ ହୋଇଥିଲା । ସେହି ଅନୁସାରେ ସାହିତ୍ୟରେ ମଧ୍ୟ ଏକ ନୂତନ ସଚେତନତାର ଯୁଗ ସତେଅବା ଏକାବେଳେକେ ଦୁଆରେ ଆସି ପହଞ୍ଚି ଯାଉଥିଲା ପରି ମନେ ହୋଇଥିଲା । କୃଷକମାନଙ୍କର ଘରେ ମଧ୍ୟ ନୂଆ ବହିଗୁଡ଼ିକର ମାଧ୍ୟମରେ ନୂଆ ବାର୍ତ୍ତାମାନେ କ୍ରମେ ସଞ୍ଚାରିତ ହୋଇ ଆସୁଥିଲେ । ଲାଗୁଥିଲା, ସତେଯେପରି ଗୋଟିଏ ନୂଆ ସମୟ ଆସୁଛି ଏବଂ ବିଶେଷଭାବେ ତାହାରି ସୂଚନା ଦେଇ ଏକ ନୂଆ ହାଓ୍ୱା ବୋହିବାକୁ ଆରମ୍ଭ କଲାଣି । ବାହାରର ବାସ୍ତବ ସ୍ଥିତି ସହିତ ସେହି ହାଓ୍ୱାଟାର ସେପରି ମନ ବୁଝିଲା ଭଳି ମେଳ ନାହିଁ ସିନା, ମାତ୍ର ତାହା ହୃଦୟକୁ ଭାରି ଭଲ ଲାଗୁଛି । ସମ୍ଭବତଃ ଏହି ହୃଦୟର ବୁଝିବା ହେଉଛି ଅସଲ ବୁଝିବା । ହୃଦୟ ବୁଝିଲେ ମନକୁ ବୁଝାଇଦେବାକୁ ଆଦୌ ବେଶୀ ଡ଼େରି ମୋଟେ ଲାଗେନାହିଁ । ଗଭୀର ହୃଦୟତଳଟା ବୁଝିଗଲେ ଚେତନାର ଦାଣ୍ଡିଟାରେ ଏପରି ନାନା ନୂଆ ଉଦ୍‌ବେଳନର ସୃଷ୍ଟି ହୋଇଆସେ, ଯାହାକି ନୂତନ ସାହସ ଯୋଗାଏ, ନୂଆ ଆଖି ଅଲଗା ପ୍ରକାରେ ଦେଖେ ଏବଂ ବାହାରଟା ବଦଳିବାକୁ ଆରମ୍ଭ କରେ । ବ୍ୟକ୍ତିର ଜୀବନରେ ଯାହା ହୁଏ, ସାମୂହିକ ଜୀବନରେ ହୁଏତ ସଚରାଚର ତାହାହିଁ ହୁଏ ।

ପରିବର୍ତ୍ତନ ଆସୁଥିଲା, ସାନ ଚାଷୀ ଓ କୃଷିମୂଲିଆ ପାଇଁ ମଧ୍ୟ କ୍ରମେ କିଛି ଅଧିକାର ମିଳୁଥିଲା, ତଥାପି ପୁରାତନ ଭାଡ଼ିଟା ଫଳପ୍ରଦ ଭାବରେ ଆଦୌ ଭାଙ୍ଗୁନଥିଲା । ସେହି ଭାଡ଼ି ଉପରେ ବଡ଼ ଜମିମାଲିକମାନେ ସବା ଉପରେ ଆସୀନ ରହିଥିଲେ, ନିଜକୁ ସେହି ସାମ୍ରାଜ୍ୟଟାରେ ଜଣେ ଜଣେ ସମ୍ରାଟ ପରି ଭାବୁଥିଲେ । ଜ୍ଞାନ ଓ ବିଜ୍ଞାନର ଯାବତୀୟ ନୂଆ କୌଶଳ, ନୂତନ ପ୍ରଣାଳୀ,-ନୂଆ କୃଷିଯନ୍ତ୍ର, ଭଲ ବିହନ, ଉନ୍ନତ ଜାତିର ଗୋଧନ ସମ୍ଭବ କରି ଅଧିକ ଦୁଗ୍ଧ ଉତ୍ପାଦନ, - ଏହି ସବୁକିଛି କ୍ଷେତ୍ରରେ ଜମିମାଲିକମାନେ ହିଁ ସର୍ବାଧିକ ପରିମାଣରେ ଉପକୃତ ହେଉଥିଲେ । ହିସାବ କହୁଛି, ଉନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏହି ମାଲିକମାନଙ୍କର ସଂଖ୍ୟା ହିଁ ବୃଦ୍ଧି ପାଇବାରେ ଲାଗିଥିଲା, ଭଲ ଉର୍ବର ଜମିଗୁଡ଼ିକ ମଧ୍ୟ ସେହିମାନଙ୍କ ହାତରେ ଥିଲା । ବୈଜ୍ଞାନିକ ପଦ୍ଧତିଗୁଡ଼ିକର ନୂଆ ପ୍ରଯୁକ୍ତି ହେତୁ ଅଳପ ଜମି ଥିବା ଚାଷୀମାନେ ମଧ୍ୟ ଆଉ ଜମିକୁ ଆଦରି ରହି ପାରିଲେ ନାହିଁ ଓ ଜମି ବିକି ଦେଇ ବୃହତ୍ ଚାଷୀ ଓ ଜମିମାଲିକ ମାନଙ୍କର କ୍ଷେତରେ ମୂଲିଆ ହେଲେ । ଫଳରେ ମୂଲିଆ ମଧ୍ୟ ଶସ୍ତା ହୋଇଗଲେ । ୧୮୭୦ ବେଳକୁ ଜଣେ ମୂଲିଆ ଦିନକୁ ମଜୁରି ହିସାବରେ ଯାହା ପାଉଥିଲା, ତାହା ତା'ର ଓ ତା' ପରିବାରର ପେଟ ଭରିବା ଏବଂ ଦେହ ଲୁଚିବା ପାଇଁ ଆଦୌ ଯଥେଷ୍ଟ ହେଉନଥିଲା । ତାହା ବ୍ୟତୀତ ଗୋଟିଏ ସଂସାରର ନାନା ଅନ୍ୟାନ୍ୟ ଖର୍ଚ୍ଚ ମଧ୍ୟ ତ ରହିଥିଲା । ୧୮୭୨ ମସିହାରେ ଗ୍ରାମାଞ୍ଚଳର ମୋଟ ଲୋକସଂଖ୍ୟାର ଏକଚତୁର୍ଥାଂଶ ଏହିପରି କ୍ଷେତରେ ମୂଲିଆ ଭାବରେ ଘୋର ଦାରିଦ୍ର୍ୟର ଜୀବନ ଯାପନ

କରୁଥିଲେ । ଖୋଦ୍ ମୂଳିଆ ହୁଏତ ମାଲିକପଟୁ କାମଚ୍ଛାଗାରେ ଖାଉଥିଲା ବୋଲି ଭଲ ଖାଇବାକୁ ପାଉଥିଲା, ମାତ୍ର ତା'ର ସ୍ତ୍ରୀ ଓ ପିଲାମାନେ ଅଧିକାଂଶତଃ ଦରପେଟ ହୋଇ ରହିବାକୁ ବାଧ୍ୟ ହେଉଥିଲେ । ଏହି ସ୍ତରଭେଦ ଅର୍ଥାତ୍ ଭାଗ୍ୟବେଦର ପୁରୁଣା ଅପ୍ରଥାଟା ଅତିଶୀଘ୍ର ଯାଉ ବୋଲି ଅବଶ୍ୟ କ୍ରମେ ସାମୂହିକ ଚେତନାରେ ଏକ ଅନ୍ୟ ଦ୍ୟୋତନା ଜନ୍ମଲାଭ କଲା । ତଳେ ରହିଥିବା ମଣିଷ ଭିତରୁ ବଳ ପାଇ ସତକୁ ସତ ଉପରିସ୍ଥ ଅନ୍ୟମାନଙ୍କର ସମକକ୍ଷ ହେବାଲାଗି ସ୍ୱପ୍ନ ଦେଖିଲା, ଉପରମାନେ ମଧ୍ୟ ସତେଅବା ଯୁଗଗତ ଆହ୍ୱାନଟାର ଅଙ୍କୁଶମାଡ଼ ଖାଇ ପୁରୁଣା ବେଳଟା ଶେଷ ହୋଇ ଆସିଲା ବୋଲି ନିଜକୁ ସେହି ଅନୁସାରେ ବୁଝାଇ ଦେବାକୁ ବି ମନ କଲେ । ସେତିକିବେଳେ ପଦେ କବିତାରେ ଜଣେ କବି ଲେଖିଥିଲେ, ଏଥର ଭଣ୍ଡାରଟା ଡେନ୍‌ମାର୍କର ସମୁଦାୟ ସମସ୍ତଙ୍କ ନିମନ୍ତେ ଖୋଲିଦେବାକୁ ହେବ; - ହଁ, ସାନ ଓ ବଡ଼ ଉଭୟଙ୍କ ଲାଗି ତାହା ଖୋଲିଯିବ । ଦିନେ ଯେତେବେଳେ ଏହି ଉଭୟ ପଟ ପରସ୍ପରକୁ ଆଁସି ଭେଟିବେ ଓ ସିଧା ପରସ୍ପର ସହିତ ସାମିଲ୍ ହୋଇ ପାରିବେ, ସେତେବେଳେ ଡ଼େନ୍‌ମାର୍କ୍ ଦେଶରେ ପ୍ରକୃତରେ ଏକ ବୃହତ୍ ଯୁଗପର୍ବର ଆଗମନ ଘଟିବ ।

ଏବଂ, ପରିବର୍ତ୍ତନ ସତକୁ ସତ ଆସିଲା । ସମୀକ୍ଷକମାନେ କହୁଛନ୍ତି, ଶିକ୍ଷା ହିଁ ସେହି ପରିବର୍ତ୍ତନରେ ସର୍ବପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ସମ୍ଭବତଃ ସେହି କାରଣରୁ ପରିବର୍ତ୍ତନଟି ଅଧିକ ସୁସ୍ଥ ଭାବରେ ହୋଇ ପାରିଥିଲା ଏବଂ ଲୋକଜୀବନର ଅଧିକ ଗଭୀରକୁ ଭେଦି ପାରିଥିଲା । ବୃହତ୍ତର ଇଉରୋପରେ ରାଜନୀତିକ ଉଦ୍‌ବେଳନକୁ ହିଁ ମୁଖ୍ୟ ମାଧ୍ୟମ କରି ପରିବର୍ତ୍ତନ ହେଲା, - ବହୁ ବିଦ୍ରୋହ, ଦ୍ୱେଷ, କ୍ରୋଧ ଏବଂ ବିଘଟନକୁ ସତେଅବା ଅତ୍ୟାବଶ୍ୟକ ରୂପେ ଗ୍ରହଣ କରିନେବାକୁ ପଡ଼ିଥିଲା । ରକ୍ତପାତ ମଧ୍ୟ ଆଦୌ କମ୍ ହୋଇନଥିଲା । ମୂଲ୍ୟବୋଧର ଭୂମିଗୁଡ଼ାକ ଅନେକ ସମୟରେ ଅତ୍ୟନ୍ତ ପ୍ରବଳ ଭାବରେ ଦୋହଲି ଯାଇଥିଲା । ମାତ୍ର ଡେନ୍‌ମାର୍କ୍ ଏବଂ ଏକ ସମଗ୍ରତର ପରିପ୍ରେକ୍ଷୀରେ ପୂରା ସ୍କାଣ୍ଡିନେଭିଆରେ ସେହି ପ୍ରକ୍ରିୟାଟି ଏକାଧିକ ଅର୍ଥରେ ଭିନ୍ନ ଭାବରେ ହୋଇଥିଲା । ଲୋକଜୀବନକୁ ତାହା ହୁଏତ କିଞ୍ଚିତ୍ ଅନ୍ୟ ଭାବରେ ଗଢ଼ିହୋଇ ଆସିବାରେ ସହାୟତା ମଧ୍ୟ କରିଥିଲା । ଏବେ ମଧ୍ୟ ପ୍ରାୟ ଏକ ସାଧାରଣ ବାଡ଼ି ପକାଇ କହିଦେଇ ହେବ ଯେ, ଜର୍ମାନୀ, ଫ୍ରାନ୍‌ସ୍, ଇଟାଲି, ରୁଷିଆ ପ୍ରଭୃତି ଦେଶରେ ରାଜନୀତି ହିଁ ସବାଆଗରେ ସର୍ବପ୍ରଧାନ ନିର୍ଣ୍ଣାୟକ ହୋଇ କାର୍ଯ୍ୟ କରୁଛି, - ଏବେ ମଧ୍ୟ ସେହିସବୁ ଦେଶରେ ବହୁ ଅସ୍ଥିରତା ସାମୂହିକ ବିବେକଗୁଡ଼ିକୁ ଅନେକ ସମୟରେ ପ୍ରାୟ ଅଣଆୟତ୍ତ ଭାବରେ ନଚାଇ ପକାଉଛି; ଡେନ୍‌ମାର୍କ୍, ନର୍‌ୱେ ଓ ସୁଇଡ଼େନ୍‌ରେ ରାଜନୀତି ଅଲବତ ରହିଛି, ମାତ୍ର ପଶ୍ଚାଦ୍‌ଭାଗରେ ରହିଛି । ଅଦୌ ଗୌଣ ବା ନିନ୍ଦିତ ହୋଇ ରହିନାହିଁ ସତ, ମାତ୍ର ତାହା ଏକ ସାମୁଦାୟିକ ସୁସ୍ଥ ସକାରାତ୍ମକତା ଦ୍ୱାରା ହିଁ ପରିଚାଳିତ ହେଉଛି । ପୃଥିବୀଯାକ

ଜାତୀୟତାବାଦ ଅର୍ଥରେ ଆମେ ଯାହାକୁ Nationalism ବୋଲି କହିଆସୁଛୁ, ଡେନିଶ୍ ତଥା ଅନ୍ୟ ଦୁଇଟି ଭାଷାରେ ତାହାକୁ ଗତ ଶତାବ୍ଦୀଟି ଠାରୁ ପ୍ରାୟ ସର୍ବସମ୍ମତ ଭାବରେ Folkelighed ବୋଲି କୁହାଯାଇ ଆସିଛି, ଏବଂ ସ୍କାଣ୍ଡିନେଭିଆର ଚତୁର୍ଥ ଦେଶ ଫିନ୍‌ଲାଣ୍ଡର ଭାଷାରେ ତାହାକୁ Kansalisuus ବୋଲି କୁହାଯାଇଛି । ଏଥିରେ ଜାତିପ୍ରୀତି ଓ ଭୂମିପ୍ରୀତି ଅବଶ୍ୟ ରହିଛି, ମାତ୍ର ସେହି ପ୍ରୀତିକୁ ନିଠ କରି ଏକ ବାଦରେ ମୋଟେ ପରିଣତ କରା ଯାଇନାହିଁ । ଜାତୀୟତାବାଦ ନାମକ ପ୍ରାୟ ପୃଥିବୀଯାକ ଚଳି ଆସିଥିବା ମୁଦ୍ରାଟିର ଗୋଟିଏ ପାଖରେ ଜାତିପ୍ରୀତି ରହିଛି ଓ ଅନ୍ୟପାଖରେ ଅନ୍ୟଜାତିଦ୍ୱେଷ ମଧ୍ୟ ରହିଛି, - ଏହି ଦ୍ୱିତୀୟଟା ଅଗ୍ରାଧିକାର ନପାଇଲେ ପ୍ରଥମଟି ପ୍ରକୃତରେ ରହିଛି ବୋଲି ନିଜ ପାଖରେ ନିର୍ଭରଯୋଗ୍ୟ ଭାବରେ ହୁଏତ ମୋଟେ କହି ହେଉନାହିଁ । ଇଉରୋପର ସେହି ଉତ୍ତର କୋଣଟିରେ ଯାଇ ପହଞ୍ଚିଲେ ସେଠାରେ ସେଭଳି କୌଣସି ଗନ୍ଧ ରହିଥିବାର ଆଦୌ ଅନୁଭବ ହୁଏନାହିଁ । ଗତ ଶହେ ବର୍ଷର ଯାବତୀୟ ପରିବର୍ତ୍ତନ ପଛରେ ସର୍ବପ୍ରଧାନ ଉଦ୍‌ବୋଧନ ରୂପେ ଶିକ୍ଷା ହିଁ ସେଠି ପ୍ରଭାବ ପକାଇ ପାରିଛି ବୋଲି କ'ଣ ଏଭଳି ହୋଇଛି କି ?

ବିଦ୍ୟାଳୟ-ଶିକ୍ଷାର ଇତିହାସ ଆଲୋଚନା କଲାବେଳେ ଇଉରୋପରେ ସମ୍ବନ୍ଧଟିଏ ଲଗାଇ ବିଦ୍ୟାଳୟକୁ ଗୀର୍ଜାର ଦୁହିତା ବା କନ୍ୟା ବୋଲି କୁହାଯାଇଥାଏ । ଆଉ କେହି କେହି ତାହାକୁ ବେଳେ ବେଳେ ଗୀର୍ଜାର ପରିଚାରିକା ବୋଲି ମଧ୍ୟ କହିଛନ୍ତି । କଥିତ ଅଛି ଯେ, ଯେଉଁ ଧର୍ମପ୍ରଚାରକ ଯତି ସର୍ବପ୍ରଥମେ ଖ୍ରୀଷ୍ଟିଆନ୍ ଧର୍ମର ସନ୍ଦେଶକୁ ଡେନ୍‌ମାର୍କ୍ ଯାଏ ବହନ କରି ଆଣିଥିଲେ, ସିଏ ଗୋତି ଖଟୁଥିବା ଦଶଜଣ ବାଳକଙ୍କୁ ସେମାନଙ୍କର ମାଲିକମାନଙ୍କ ଠାରୁ କ୍ରୟ କରିନେଇ ସେମାନଙ୍କୁ ନିଜେ କିଛି ପାଠ ପଢ଼ାଇବାର ପ୍ରୟାସ କରିଥିଲେ । ଏକ ଦୃଷ୍ଟାନ୍ତ ସ୍ୱରୂପ ଆମେ ହୁଏତ ତାହାକୁ ହିଁ ଡେନ୍‌ମାର୍କ୍‌ର ପ୍ରଥମ ବିଦ୍ୟାଳୟ ବୋଲି କହିପାରିବା । ପରବର୍ତ୍ତୀ କାଳରେ ଦେଶର ପିଲାଙ୍କୁ କିଛି ଆବଶ୍ୟକ ଶିକ୍ଷା ଦେବା ମୁଖ୍ୟତଃ ମଠ ବା ଯତିଗୃହ ଗୁଡ଼ିକର କାର୍ଯ୍ୟ ହୋଇ ରହିଥିଲା । ରବିବାରର ଧର୍ମୋପାସନା ସମୟରେ ବ୍ୟବହୃତ ଲାଟିନ୍ ବାକ୍ୟ ଓ ସୂତ୍ରଗୁଡ଼ିକୁ ଉଚ୍ଚାରଣ କରିବାରେ ସେହି ବାଳକମାନେ ଲୋଡ଼ା ହେଉଥିଲେ । କହିବା ବାହୁଲ୍ୟ, ଏହି ତଥାକଥିତ ବିଦ୍ୟାଳୟମାନଙ୍କରେ ସ୍ୱୟଂ ପାଦ୍ରୀମାନେ ହିଁ ଶିକ୍ଷକର ଭୂମିକା ଗ୍ରହଣ କରୁଥିଲେ । ମଧ୍ୟଯୁଗ ଆଡ଼କୁ ଆଉ ଏକ ନମୁନାର ପାଠଶାଳା କ୍ରମବିବର୍ତ୍ତିତ ହୋଇ ଆସିଥିଲା, ଯାହାକୁ କି ଦୋକାନୀ ଓ କାରିଗରମାନେ ପ୍ରତିଷ୍ଠା କରିଥିଲେ । ସେଠାରେ ହିସାବ କରିବା ଏବଂ ଲେଖିବା ହିଁ ମୁଖ୍ୟ ପାଠ୍ୟବସ୍ତୁ ରୂପେ ଗ୍ରହଣ କରାଗଲା । ଅବଶ୍ୟ ଗୀର୍ଜାର କର୍ତ୍ତାମାନେ ଏହିସବୁ ବିଦ୍ୟାଳୟକୁ ନିମ୍ନ ନଜରରେ ଦେଖୁଥିଲେ । ପ୍ରୋଟେଷ୍ଟାଣ୍ଟ ଧର୍ମଶାଖାଟି ଡେନମାର୍କ୍‌ରେ ଆସି ପହଞ୍ଚିବା ପରେ କିଞ୍ଚିତ୍ ନୂଆ ଛାଞ୍ଚରେ ଆଉକିଛି ପାଠଶାଳା ଗଢ଼ି ଉଠିଥିଲା; ମାତ୍ର ଏହି ଧର୍ମଶାଖାର

ପ୍ରବର୍ତ୍ତକ ନିଜେ ବାଇବେଲ୍‌କୁ ଲୋକମାନଙ୍କର ଭାଷାକୁ ଅନୁବାଦ କରିଥିଲେ ମଧ୍ୟ ଏହିସବୁ ଶିକ୍ଷାଳୟରେ ଲାଟିନ୍ ହିଁ ମୁଖ୍ୟ ଭାଷା ହୋଇ ରହିଥିଲା । ୧୭୦୦ ଖ୍ରୀଷ୍ଟାବ୍ଦ ଆଡ଼କୁ ରାଜଧାନୀ କୋପେନ୍‌ହେଗେନ୍‌ର ଜଣେ ଉପର ପାହିଆର ପ୍ରଶାସକ ଅତ୍ୟନ୍ତ ଚିନ୍ତା ପ୍ରକଟ କରି ଏକ ମନ୍ତବ୍ୟ ଦେଇଛନ୍ତି ଯେ, ସାରା ସହରଟାରେ ଦରିଦ୍ର ପିଲାମାନେ ପଲ ପଲ ହୋଇ ବୁଲୁଛନ୍ତି, ସେମାନଙ୍କର ଆଦୌ କୌଣସି ଶିକ୍ଷାଦୀକ୍ଷା ନାହିଁ ଏବଂ ସେମାନେ ଯାବତୀୟ ଅସଂସ୍କୃତି ଭିତରେ ହିଁ ବଢ଼ିବାକୁ ବାଧ୍ୟ ହେଉଛନ୍ତି । ଗ୍ରାମାଞ୍ଚଳରେ ମଧ୍ୟ ଅବସ୍ଥା ପ୍ରାୟ ସେହିଭଳି ଦୁର୍ଗତିପୂର୍ଣ୍ଣ ହୋଇ ରହିଥିଲା । ପ୍ରଧାନତଃ ମାନବିକତା ଦ୍ୱାରା ଆକର୍ଷିତ ହୋଇ ତା'ପରେ ଯେଉଁ ପାଠଶାଳାମାନ ପ୍ରତିଷ୍ଠା କରାଗଲା, ସେଥିରେ ଧର୍ମଶିକ୍ଷା ବାଧ୍ୟତାମୂଳକ ଥିଲା ଏବଂ ଗଣିତ ଓ ଲିଖନ ଇଚ୍ଛାଧୀନ ବିଷୟ ହୋଇ ରହିଥିଲା । ଆହୁରି ଅଧିକ ଏକ କୌତୁହଳପୂର୍ଣ୍ଣ କଥା ହେଉଛି, ଯେଉଁ ପିଲାମାନେ ଏହି ଐଚ୍ଛିକ ବିଷୟଗୁଡ଼ିକୁ ଅଧ୍ୟୟନ କରୁଥିଲେ, ସେମାନଙ୍କର ପିତାମାତାଙ୍କୁ ହିଁ ତାହାର ଖର୍ଚ୍ଚ ବହନ କରିବାକୁ ପଡୁଥିଲା । ଶିକ୍ଷକମାନେ ଅତ୍ୟନ୍ତ ଅଳ୍ପ ବେତନ ପାଉଥିଲେ । ୧୭୩୯ ଖ୍ରୀଷ୍ଟାବ୍ଦରେ ଏକ ରାଜାଦେଶ ଦ୍ୱାରା ସବୁ ପିଲାଙ୍କ ନିମନ୍ତେ ବିଦ୍ୟାଳୟକୁ ପଢ଼ି ଆସିବା ବାଧ୍ୟତାମୂଳକ କରାଯାଇଥିଲା । ପିଲାମାନେ ଅନୁପସ୍ଥିତ ରହିଲେ ପିତାମାତାଙ୍କୁ ଜୋରିମାନା ଦେବାକୁ ପଡ଼ିବାର ମଧ୍ୟ ବ୍ୟବସ୍ଥା ରହିଲା । ୧୭୩୬ ମସିହାରେ ସବୁ ପିଲାଙ୍କ ଲାଗି Confirmation ବା ଧର୍ମୋପନୟନ ବାଧ୍ୟତାମୂଳକ କରାଯାଇଥିଲା ଏବଂ ନିୟମ ହୋଇଗଲା ଯେ ବିଦ୍ୟାଳୟକୁ ଯାଇନଥିବା କୌଣସି ପିଲାକୁ ଧର୍ମୋପନୟନ ନିମନ୍ତେ ମଧ୍ୟ ଅନୁମତି ଦିଆଯିବନାହିଁ । ତା' ସହିତ, ଏହି ଉପନୟନ ବ୍ୟତୀତ କେହି ଗୀର୍ଜାର ଉପାସନାରେ ସମ୍ମିଳିତ ହୋଇ ପାରିବନାହିଁ । ସେନାବାହିନୀରେ ଯୋଗ ଦେଇ ପାରିବନାହିଁ ଏବଂ ବିବାହ ବି କରି ପାରିବନାହିଁ ବୋଲି ଏକ କଠୋର ନିମୟ ରଖା ଯାଇଥିଲା । ଅଧିକାଂଶ ଲୋକ ଅତିଦରିଦ୍ର ଜୀବନ ଯାପନ କରୁଥିଲେ । ତେଣୁ ଏତେ ଆଇନ୍ ସତ୍ତ୍ୱେ ତଥାପି ଶିକ୍ଷାର କ୍ଷେତ୍ରରେ ଆଶାନ୍ୱିତ ଅଗ୍ରଗତି ହୋଇ ପାରିନଥିଲା । ସାଧାରଣ ମଣିଷମାନଙ୍କର ଜୀବନମାନକୁ ଏକ ସର୍ବନିମ୍ନ ସ୍ତରକୁ ଉନ୍ନୀତ କରି ନନେବା ପର୍ଯ୍ୟନ୍ତ ସେମାନଙ୍କ ଭିତରେ ଯେ ଶିକ୍ଷା ଲାଗି ଆବଶ୍ୟକ କୌଣସି ଆଗ୍ରହ ସୃଷ୍ଟି କରାଯାଇ ପାରିବନାହିଁ, ତାହାରି ଏକ ପ୍ରମାଣ ହିଁ ମିଳିଗଲା ।

୧୮ଶ ଶତାବ୍ଦୀର ଶେଷ ଆଡ଼କୁ ଡେନ୍‌ମାର୍କ୍ ଦେଶରେ ଭୂମିସଂସ୍କାରର କ୍ଷେତ୍ରରେ ବୃହତ୍ ପରିବର୍ତ୍ତନମାନ ଘଟିଲା ଏବଂ ତାହାରି ଫଳରେ ହିଁ ୧୮୧୪ ଖ୍ରୀଷ୍ଟାବ୍ଦରେ ଲାଗୁ କରା ଯାଇଥିବା ଶିକ୍ଷାସମ୍ବନ୍ଧୀ ଅଧିନିୟମଟି ଅଧିକ ଫଳପ୍ରସୂ ହୋଇପାରିଥିଲା । ୧୭୮୮ ମସିହାରେ ଗୋତିମାନେ ମୁକ୍ତିଲାଭ କଲେ । କୃଷିଜୀବନର ଅସଲ ପ୍ରତିନିଧିମାନେ ଏକ ନୂତନ ମୁକ୍ତିର ସ୍ୱାଦ ଲାଭ କରିଥିଲେ ଏବଂ ଏକ ନୂତନ ଆଶା ସହିତ ଆଗକୁ ଆଗକୁ ଅନାଇ ପାରିବାକୁ ସାହସ କଲେ । ଜନହିତୈଷୀ ପ୍ରମୁଖ ବ୍ୟକ୍ତିମାନେ ପ୍ରାଥମିକ ଶିକ୍ଷାରେ

କିଛି ପରିବର୍ତ୍ତନ ଅବଶ୍ୟ ହେଉ ବୋଲି ସ୍ୱରଉତ୍ତୋଳନ ମଧ୍ୟ କରିଥିଲେ । ସେମାନଙ୍କ ତରଫରୁ ଏହି ଦିଗରେ କିଛି ପ୍ରୟାସ ଓ ଅଗ୍ରଗାମୀ ପ୍ରୟୋଗ ମଧ୍ୟ ଆରମ୍ଭ ହୋଇଥିଲା । ସେମାନେ ଫରାସୀ ସମାଜଦାର୍ଶନିକ ରୁସୋଙ୍କର ବିଚାରଧାରା ଦ୍ୱାରା ଅତ୍ୟନ୍ତ ପ୍ରଭାବିତ ହୋଇ ପ୍ରତ୍ୟେକ ଶିଶୁର ଜଣେ ଶିଶୁହୋଇ ଜୀବନକୁ ବଞ୍ଚିବାର ପୂର୍ଣ୍ଣ ଅଧିକାର ରହିଛି ବୋଲି ବିଶ୍ୱାସ କରୁଥିଲେ । ଶିଶୁର ମଧ୍ୟ ଏକ ବ୍ୟକ୍ତିତ୍ୱ ରହିଛି ଏବଂ ସେହି ବ୍ୟକ୍ତିତ୍ୱର ସମୁଚିତ ବିକାଶ ହିଁ ପ୍ରାଥମିକ ଶିକ୍ଷାର ସବାମୂଳ ଲକ୍ଷ୍ୟ ହୋଇ ରହିବା ଉଚିତ ବୋଲି ଘୋଷଣା କରିଥିଲେ । ୧୭୮୯ରେ ବିଦ୍ୟାଳୟ ଶିକ୍ଷାର ବିଚାର ନିମନ୍ତେ ଏକ ବୃହତ୍ କମିଶନ୍ ମଧ୍ୟ ବସିଲା । ୧୭୯୧ରେ ପ୍ରାୟ ପ୍ରଥମଥର ପାଇଁ ଶିକ୍ଷକମାନଙ୍କର ପ୍ରଶିକ୍ଷଣ ବିଷୟରେ ମଧ୍ୟ ଚିନ୍ତା କରାଗଲା । ଗ୍ରାମ ପାଠଶାଳାର ଜଣେ ଶିକ୍ଷକ ଗ୍ରାମରେ ବାସ କରୁଥିବା କୃଷକମାନଙ୍କ ଭିତରେ ଜଣେ ବୁଦ୍ଧିସମ୍ପନ୍ନ କୃଷକରୂପେ ହିଁ ନିଜକୁ ତିଆରି କରିଆଣି ପାରିବା ଉଚିତ ବୋଲି ଏକ ମତ ମଧ୍ୟ ପ୍ରକାଶ ପାଇଥିଲା । ୧୮୧୪ ମସିହାର ବିଦ୍ୟାଳୟସମ୍ବନ୍ଧୀ ବିଧେୟକ ଘୋଷଣା କରିଥିଲା ଯେ, ପିଲାମାନଙ୍କର ଶିକ୍ଷା ସେମାନଙ୍କୁ ସମଗ୍ରତଃ ଜଣେ ଜଣେ ଉତ୍ତମ ତଥା ନ୍ୟାୟସଚେତନ ମନୁଷ୍ୟ ହୋଇ ତିଆରି ହେବାରେ ସାହାଯ୍ୟ କରିବ, ସେମାନଙ୍କୁ ଧର୍ମବିଶ୍ୱାସୀ ମଧ୍ୟ କରାଇବ ଓ ରାଷ୍ଟ୍ରର ଜଣେ ନାଗରିକ ହୋଇ ରହିବା ନିମନ୍ତେ ସେମାନଙ୍କୁ ଆବଶ୍ୟକ ଜ୍ଞାନ ତଥା ସାମର୍ଥ୍ୟଗୁଡ଼ିକୁ ବି ପ୍ରଦାନ କରି ପାରୁଥିବ । ପିଲାମାନେ ଦିନେ ଛଡ଼ା ଦିନେ ସ୍କୁଲକୁ ଆସିବେ । ଶିକ୍ଷକ ପିଲାମାନଙ୍କ ପ୍ରତି କୋମଳ ଏବଂ ସ୍ନେହଶୀଳ ହେବ, ସେମାନଙ୍କର ବିଶ୍ୱାସଭାଜନ ହୋଇ ପାରୁଥିବ ଏବଂ, ସେମାନଙ୍କ ପାଇଁ ଶିକ୍ଷାଦାନକୁ ଯଥାସମ୍ଭବ ଅଧିକ ଆନନ୍ଦଦାୟକ କରି ପାରୁଥିବ । ହଁ, ଏକଥା ମଧ୍ୟ ପ୍ରତ୍ୟାଶା କରା ଯାଇଥିଲା ଯେ, ପିଲାମାନେ ଯାହାକିଛି ପଢୁଥିବେ, ତାହାର ଅର୍ଥକୁ ନିଜେ ବୁଝି ବି ପାରୁଥିବେ ।

ପିଲାମାନଙ୍କର ପାଠପଢ଼ାର ଗୁଳାଟି ଏହିପରି ଭାବରେ ମୋଟାମୋଟି ବହୁତଙ୍କର ମନ ବୁଝିବାଭଳି ସାକାରତାଟିଏ ଲାଭ କରିବାପରେ ଆମେ ଡେନ୍‌ମାର୍କରେ ଊନବିଂଶ ଶତାବ୍ଦୀରେ ଆସି ପହଞ୍ଚିବା । ଏବଂ, ଏହି ଊନବିଂଶ ଶତାବ୍ଦୀ ହେଉଛି ସେହି ଦେଶରେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର ଶତାବ୍ଦୀ । ତାଙ୍କର ପୂରା ନାମ ହେଉଛି ନିକୋଲାଇ ଫ୍ରେଡ଼େରିକ୍ ସେଭେରିନ୍ ଗ୍ରୁଣ୍ଡ୍‌ଭିଗ୍, ତାଙ୍କ ଭାଷାର ବନାନ୍ ଅନୁସାରେ Nikolai Frederik Severin Grundtvig,- ଜନ୍ମ ୧୭୮୯ ମସିହାରେ, ଦେହାନ୍ତ ୧୮୭୨ ମସିହାରେ । କୋପେନ୍‌ହେଗେନ୍‌ର ଏକ ମୁଖ୍ୟ ଗୀର୍ଜାରେ ବିଶପ୍‌ର ପଦବୀରେ ଅଧିଷ୍ଠିତ ହୋଇ ରହିଥିବା ଶ୍ରୀ ଗ୍ରୁଣ୍ଡ୍‌ଭିଗ୍ ଡେନ୍‌ମାର୍କର ସାହିତ୍ୟରେ ସେହି ଜାତୀୟ ଜାଗରଣଯୁଗର ଜଣେ ସୁପ୍ରଖ୍ୟାତ କବି, ଚକ୍ଷୁଷ୍ମାନ୍ ଚିନ୍ତାନାୟକ । ତତ୍କାଳୀନ ସାମାଜିକ ଉଦ୍‌ବେଳନର ଦୃଶ୍ୟପଟରେ ଜଣେ

ଅତ୍ୟନ୍ତ ପ୍ରଭାବଶାଳୀ ଦିଗ-ନିର୍ଦ୍ଦେଶକ । ତାଙ୍କର ଗୋଟିଏ କବିତାର କିଞ୍ଚିତ୍ ଆଲୋଚନା କରି ଆମେ ତାଙ୍କ ଭିତରେ ଅତ୍ୟନ୍ତ କୃତସଂକଳ୍ପ ହୋଇ ରହିଥିବା ଜଣେ ଯୁଗଦ୍ରଷ୍ଟା ତଥା ଯୁଗସଚେତକଙ୍କୁ ସମ୍ମୁଖରେ ଦେଖୁଥିବା ପରି ଅନୁଭବ କରିବା । ଗଭୀର ଈଶ୍ୱରାନୁରାଗ, ସାମୂହିକ ଲୋକଭୂମିଟି ବିଷୟରେ ପ୍ରାୟ ପୂର୍ଣ୍ଣ ପ୍ରତିଶ୍ରୁତିମୟ ଏକ ଅନମନୀୟ ସଚେତନତା, ଯାବତୀୟ ପୁରୋଗମନର ପ୍ରସ୍ତୁତିଚିତ୍ରଟିରେ ସମୁଚିତ ଏକ ଶିକ୍ଷାଯୋଜନାର ଉଲ୍ଲେଖନୀୟ ଭୂମିକାକୁ ଗୁରୁତ୍ୱ ପ୍ରଦାନ, ଏବଂ, ସର୍ବୋପରି ଡେନ୍‌ମାର୍କ୍‌କୁ ମଝିରେ ନିଜର ପ୍ରାୟ ସମୁଦାୟ କର୍ମଭୂମି ରୂପେ ଥାପି ସେହିଠାରୁ ହିଁ ଏକ ଉଜ୍ଜ୍ୱଳ ବିଶ୍ୱବ୍ୟବସ୍ଥାର ସ୍ୱପ୍ନ ଦେଖିବା, - ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର ସାହିତ୍ୟ ଏବଂ ସବୁକିଛି କର୍ମଚାରଣା ଆମକୁ ପ୍ରାୟ ଅନବଚ୍ଛିନ୍ନ ଭାବରେ ସେହି କଥାଗୁଡ଼ିକୁ ସ୍ମରଣ କରାଇ ଦେଇଥାଏ । ସବୁ ଯୁଗରେ ଓ ସବୁ ଦେଶରେ ସମଗ୍ରଦୃଷ୍ଟିସମ୍ପନ୍ନ ବ୍ୟକ୍ତିମାନେ ସେହିଭଳି ହିଁ ହୋଇଥାଆନ୍ତି ।

ଉକ୍ତ କବିତାଟିରେ ନିକୋଲାଇ ଗ୍ରୁଣ୍ଡ୍‌ଭିଗ୍ ଲେଖିଛନ୍ତି: '' ପୃଥିବୀର କେତେ କେତେ ଦେଶରେ ଓ ମହାଦେଶରେ ଉଚ୍ଚ ଉଚ୍ଚ ପାହାଡ଼ କେତେ କେତେ ଦୂରକୁ ପ୍ରସାରିତ ହୋଇ ରହିଛି । ଆମ ଦେଶରେ ସେହି ପାହାଡ଼ରୁ ଗୋଟିଏ ବୋଲି ନାହିଁ । ତଥାପି ପ୍ରାୟ ଡିହଉଚ୍ଚର ମୁଣ୍ଡିଆଟିଏ ରହିଛି, ଏବଂ ସେତିକିଟିଏ ଦେଇଛନ୍ତି ବୋଲି ଆମେ ଈଶ୍ୱରଙ୍କ ଠାରେ କୃତଜ୍ଞ ହୋଇ ରହି ଆସିଛୁ । ଆମର ଏହି ଦେଶରେ ଏତେ ନା ଏତେ ବଡ଼ ବୋଲି ଦେଖାଇ ପାରିବାକୁ ଆମ ଘରେ ପ୍ରକୃତରେ କିଛି ନାହିଁ । ମାତ୍ର ଏହି ଦେଶର ମାଟି ଆମ ଆଗରେ ସୁବିସ୍ତୀର୍ଣ୍ଣ ହୋଇ ପଡ଼ିଛି, ଆମର ଜୀବନକୁ ନାନା ଭାବରେ ସମୃଦ୍ଧ ଏବଂ ସମ୍ପନ୍ନ କରି ରଖିଛି ।'' ଏହିପରି ଭାବରେ, ସବାଶେଷ ପଦରେ ଲେଖା ଅଛି: ''ଏହି ଦେଶରେ ଆମେ ଯେତେ ମଣିଷ ରହିଛୁ, ସେଇମାନେ ହେଉଛୁ ଏହି ଦେଶର ସବୁଠାରୁ ଅଧିକ ମୂଲ୍ୟବାନ୍ ସମ୍ପଦ । ଆମେ ସମସ୍ତେ ଏକାଠି ହୋଇ ଆମର ଏହି ଭୂମିଟିକୁ ଏପରି ଭାବରେ ଗଢ଼ିଆଣିବା, ଯେପରିକି ଏଠି କାହାରି ପାଖରେ ଅତ୍ୟଧିକ ସମ୍ପତ୍ତି ଆଦୌ ଠୁଳ ହୋଇ ରହିନଥିବ ଏବଂ ଅତ୍ୟଳ୍ପ ସମ୍ଭାବନା ମଧ୍ୟରେ ବଞ୍ଚିତ ଓ ଦରିଦ୍ର ହୋଇ ରହିଥିବା ମଣିଷମାନେ ମଧ୍ୟ ଆଦୌ କେହି ନଥିବେ ।'' ସାହିତ୍ୟ ଭିତରେ ସମାଜର ଏବଂ ସାମାଜିକ ଜୀବନର ଏକ ଉଜ୍ଜ୍ୱଳ ଭବିଷ୍ୟଚିତ୍ର, ଏବଂ ସେହି ଚିତ୍ରକୁ ବାସ୍ତବ ସାମୂହିକ ଜୀବନ ତଥା ସମ୍ବନ୍ଧରେ ସାକାର କରି ଆଣିବାର ଏକ ଛଳନାହୀନ ଅଙ୍ଗୀକାରବଦ୍ଧତା, - ଗ୍ରୁଣ୍ଡ୍‌ଭିଗ୍‌ଙ୍କର ସାହିତ୍ୟରେ ତାହା ହିଁ ସର୍ବଦା ସ୍ପଷ୍ଟତମ ଆବେଦନ ହୋଇ ରହିଥିଲା । ସଂପୃକ୍ତ ମନୁଷ୍ୟମାନଙ୍କ ଭିତରେ ଏକ ନୂତନ ଜାଗୃତି ଆଣିଦେବା ଏବଂ ଏକ ସମ୍ପନ୍ନତର ଭବିଷ୍ୟ ସକାଶେ ନାନାବିଧ ଉଦ୍ୟମରେ ସଂପୃକ୍ତ ଅନେକଙ୍କୁ ଜାଗରୂକ କରି ଆଣିବା, - ଏହି ବ୍ରତଟିକୁ ପୁରୋଭାଗରେ ଉତ୍ତୋଳିତ କରି ଧରିରଖି ତାହା ଆପଣାର ପ୍ରଧାନ କର୍ତ୍ତବ୍ୟଟିର ସମ୍ପାଦନ କରିଥିଲା ।

## ୧୨।। କ୍ରିଷ୍ଟେନ୍ କଲ୍ଡ୍

ଅତ୍ୟନ୍ତ ରୁଷ୍ଟ ଭାଷାରେ ନିକୋଲାଇ ଗ୍ରୁଣ୍ଡ୍ଭିଗ୍ ତତ୍କାଳୀନ ପାଠଶାଳାଗୁଡ଼ିକୁ ଶିଶୁମାନଙ୍କ ପାଇଁ ଗୋଟିଏ ଗୋଟିଏ ମୃତ୍ୟୁଶାଳା ବୋଲି କହି ନିନ୍ଦା କଲେ । ଅତ୍ୟନ୍ତ ପ୍ରାଣହୀନ ଭାବରେ ସେହି ଶିକ୍ଷା ପ୍ରଥମେ ପିଲାମାନଙ୍କୁ ଅକ୍ଷରଗୁଡ଼ିକ ସହିତ ପରିଚିତ କରାଇ ଦେଉଥିଲା ଏବଂ କେବଳ କେତେକ ବହିପାଠରେ ହିଁ ସବୁ ଶିକ୍ଷା ସରିଗଲା ବୋଲି ଘୋଷଣା କରି ଦେଉଥିଲା । ନୂଆ ବିଚାରଟି, ଅର୍ଥାତ୍ ଯଥାର୍ଥ ଶିକ୍ଷା ସମ୍ଭବ କରି ପାରୁଥିବା ବିଦ୍ୟାଳୟଗୁଡ଼ିକ ସତକୁ ସତ କିପରି ହେବା ଉଚିତ, ସେହି ପୁରୋଦୃଷ୍ଟିଟି ନିକୋଲାଇ ଗ୍ରୁଣ୍ଡ୍ଭିଗ୍ ଅତ୍ୟନ୍ତ ସ୍ପଷ୍ଟ ଏବଂ ପ୍ରାଞ୍ଜଳ ଭାବରେ ଲୋକସମକ୍ଷରେ ଆଣି ଥୋଇଲେ ସିନା, ମାତ୍ର ତାହାକୁ କାର୍ଯ୍ୟକାରୀ କରି ସତକୁ ସତ ମାର୍ଗଟିଏ ଦର୍ଶାଇ ପାରିବାର ସେହି ଅନ୍ୟ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟଟି ନିମନ୍ତେ ସତେଅବା ଆଉଜଣଙ୍କ ସକାଶେ ଅପେକ୍ଷା ରହିଥିଲା । ନୂଆ ଶିକ୍ଷାବିଚାରକୁ ଅର୍ଥାତ୍ ଶିକ୍ଷାର କ୍ଷେତ୍ରରେ ମୃତ୍ୟୁର ଅପସାରଣ କରି ଜୀବନକୁ ହିଁ ଆସନରେ ଆଣି ବସାଇବାର ପ୍ରୟୋଗ କରିଥିଲେ ଯାବତୀୟ ଅର୍ଥରେ ଶ୍ରୀଯୁକ୍ତ କ୍ରିଷ୍ଟେନ୍ କଲ୍ଡ୍, ଡେନିଶ୍ ଭାଷାର ବନାନ୍ ଅନୁସାରେ Christen Kold; ୧୮୧୬ ମସିହାରେ ଜନ୍ମ ଏବଂ ଦେହାନ୍ତ ୧୮୭୦ ମସିହାରେ । ମାତ୍ର ଚଉବନ ବର୍ଷର ଜୀବନକାଳରେ ଆପଣାର ନାନା ସାହସପୂର୍ଣ୍ଣ ପ୍ରୟୋଗଦ୍ୱାରା ସେ ଡେନ୍‌ମାର୍କ୍‌ର ସମଗ୍ର ଶିକ୍ଷାଜଗତରେ ଏକ ତୁମୁଳ ବିପ୍ଳବ ଆଣି ଦେଇଥିଲେ । ବହୁ ଗୁଳାକୁ ଭାଙ୍ଗିଥିଲେ, ବହୁ ନୈରାଶ୍ୟକୁ ପାରି ହୋଇ ପାରିଥିଲେ ଏବଂ ଅସମ୍ଭବ ବୋଲି ସ୍ୱୀକୃତ ହୋଇ ଆସିଥିବା ବହୁତକିଛିକୁ ସମ୍ଭବ କରିଥିଲେ । ରାଜଧାନୀଠାରୁ, ସହରଠାରୁ ବହୁ ଦୂରରେ ଅତ୍ୟନ୍ତ କୋଳାହଳରହିତ ଭାବରେ ସିଏ ନିଜର ଯେଉଁ ସଫଳ ପ୍ରୟୋଗଗୁଡ଼ିକୁ କରିଥିଲେ, ତାହା ସହର ସମେତ ତାଙ୍କ ଦେଶର ସାମୁଦାୟିକ ଶିକ୍ଷାକୁ ସତେଅବା ଏକାବେଳେକେ ଅନେକ ପାହାଚ ଅଗ୍ରସର କରାଇ ନେଇଥିଲା । ସେହି ପ୍ରୟୋଗ ଆପଣାକୁ ସଂକ୍ରାମିତ କରିପାରିଲା ଏବଂ ଶିକ୍ଷାଜଗତରେ ବହୁ ନୂତନ ପ୍ରତ୍ୟୟକୁ ଆଣି ଦେଇଥିଲା । ସେହି ପ୍ରତ୍ୟୟଗୁଡ଼ିକ ଏବେ ମଧ୍ୟ ସମଗ୍ର ପୃଥିବୀ ଲାଗି ଏକାଧିକ ପ୍ରକାରେ ଅତ୍ୟନ୍ତ ପ୍ରାସଙ୍ଗିକ ହୋଇ ରହିଛି । ବିଶେଷ କରି ଯେଉଁସବୁ ଦେଶରେ ଶିକ୍ଷାବିଧାନର କ୍ଷେତ୍ରରେ ଏବେ ମଧ୍ୟ ଏକ ସମୀଚୀନ ବିଚାର ତଥା ମାର୍ଗ ପାଇବା ନିମନ୍ତେ ପ୍ରୟାସ ଚାଲିଛି, ସେହିସବୁ ଦେଶପାଇଁ ତାହାର ସମ୍ଭବତଃ ଅଧିକ ପ୍ରାସଙ୍ଗିକତା ରହିଛି ।

ଡେନ୍‌ମାର୍କ୍‌ରେ ସେହି ସମୟର ଆଉଗୋଟିଏ କିସମର ଶିକ୍ଷାପ୍ରୟୋଗ ହେଉଛି Folk High School ର ପ୍ରୟୋଗ । Folkehoejskole ର ସେହି ମୂଳ ଶବ୍ଦଟିକୁ କେହି କେହି People's College ବୋଲି ମଧ୍ୟ ଇଂରାଜୀରେ ଅନୁବାଦ କରିଛନ୍ତି । ଆମେ ଏଠାରେ ତାହାକୁ ଲୋକବିଦ୍ୟାଳୟ ବୋଲି କହିବା ଓ ଶବ୍ଦଟିର ସମ୍ପୂର୍ଣ୍ଣ ତାତ୍ପର୍ଯ୍ୟରେ ତାହାକୁ ବୁଝିବାର ପ୍ରୟାସ କରିବା । ସେହି ପ୍ରୟାସଟିର ମୂଳରେ ମଧ୍ୟ ନିକୋଲାଇ ଗ୍ରୁଣ୍ଡ୍ଭିଗ୍ ଏବଂ

କ୍ରିଷ୍ଟେନ୍ କଲ୍‌ଲ୍ ଉଭୟେ ମାର୍ଗପ୍ରଦର୍ଶକ ହୋଇ ରହିଛନ୍ତି । ବିଚାରର କ୍ଷେତ୍ରରେ ଗ୍ରୁଣ୍ଡ୍‌ଭିଗ୍ ଏବଂ ପ୍ରୟୋଗର କ୍ଷେତ୍ରରେ **ଶ୍ରୀଯୁକ୍ତ** କଲ୍‌ଲ୍ । କ୍ରିଷ୍ଟେନ୍ କଲ୍‌ଲ୍ ଦୃଶ୍ୟପଟକୁ ଆସିନଥିଲେ ବିଚାରଟି କେବଳ ବିଚାରର ସ୍ତରରେ ହିଁ ରହି ଯାଇଥାନ୍ତା । କୃଷିପ୍ରଧାନ ଗ୍ରାମଜୀବନକୁ ଏକ ଉନ୍ନତ ମାନ ଏବଂ ପ୍ରେରଣା ଆଣି ଦେବାକୁ ହେଲେ ତରୁଣ ଯୁବକଯୁବତୀଙ୍କୁ ତଦନୁରୂପ ଏକ ଶିକ୍ଷା ଦେବାକୁ ପଡ଼ିବ,- ବିଚାରଟି ସମଗ୍ରତଃ ସେହି ସତ୍ୟଟିରୁ ହିଁ ଜନ୍ମଗ୍ରହଣ କରିଥିଲା । ଗ୍ରାମର କୃଷକ କେବଳ ଜମିରେ ଖଟିବାର ଏକ ବାଧ୍ୟ ଜୀବ ହୋଇ ରହିଥିଲେ କୃଷି ମଧ୍ୟ ସମଗ୍ର ଦେଶର ସାଂସ୍କୃତିକ ମର୍ଯ୍ୟାଦାଲାଭର କ୍ଷେତ୍ରରେ ଅବହେଳିତ ଏବଂ ନିନ୍ଦିତ ହୋଇ ରହିଥିବ । କୃଷକ ଗାଆଁରେ ଜମିକୁ କାମୁଡ଼ି, କୃଷିକୁ ତାହାର ଏକମାତ୍ର ଭାଗ୍ୟ ବୋଲି ଆଦରି ପଡ଼ି ରହିଥିବ, ଏବଂ ବୃହତ୍ତର ବିଶ୍ୱକୁ ଅନାଇ ପାରିବା ନିମନ୍ତେ ତା' ଆଗରେ ଗୋଟିଏ ହେଲେ ଗବାକ୍ଷ ଖୋଲା ହୋଇ ରହିନଥିବ । ସବୁଯାକ ସଭ୍ୟତା ଏବଂ ସମ୍ମୁଖଦୃଷ୍ଟି ସହରଟାରେ ହିଁ କିଳି ହୋଇ ରହିଥିବ । ସବୁ ମଥା ଓ ସବୁ ବୁଦ୍ଧି ସହରରେ ବନ୍ଦୀହୋଇ ରହିଥିବ ଓ ଗ୍ରାମଟା ନିଜକୁ ସେହି ମଥାଟାର ଲାଙ୍ଗୁଳ ପରି ଅନୁଭବ କରୁଥିବ । ଏହି ଅତ୍ୟନ୍ତ ହାସ୍ୟାସ୍ପଦ ସ୍ଥିତିଟା ଯେ ଆଦୌ ଅବଶ୍ୟମ୍ଭାବୀ ନୁହେଁ, ଡେନ୍‌ମାର୍କରେ ଉନବିଂଶ ଶତାବ୍ଦୀରେ କରା ଯାଇଥିବା ଲୋକବିଦ୍ୟାଳୟ ନାମକ ପ୍ରୟୋଗଟି ସଂପୂର୍ଣ୍ଣ ଆମ ସମସ୍ତଙ୍କୁ ସେହି ସତ୍ୟଟିକୁ ପ୍ରୟୋଗ କରି ଦେଖାଇ ଦେଇଛି ।

ଏବଂ, ଆଉଗୋଟିଏ ବଡ଼ କଥା ହେଉଛି, ଏକ ଉନ୍ମୋଚନକାରୀ ସତ୍ୟ ପରି ଏକ ଉନ୍ମୋଚନକାରୀ ପ୍ରୟୋଗର ମଧ୍ୟ ସର୍ବତ୍ର ଏକ ସମାନ ମହତ୍ତ୍ୱ ରହିଛି । ଏବଂ, ଯାବତୀୟ ପ୍ରୟୋଗ ବ୍ୟକ୍ତି ବା ବ୍ୟକ୍ତିମାନଙ୍କ ଦ୍ୱାରା ହୋଇଥାଏ । ବ୍ୟକ୍ତି ବା ବ୍ୟକ୍ତିମାନେ ହିଁ ସ୍ୱପ୍ନ ଦେଖନ୍ତି, ବ୍ୟକ୍ତି ବା ବ୍ୟକ୍ତିମାନେ ହିଁ ସଂକଳ୍ପ କରନ୍ତି, ଉଦ୍ୟମ କରନ୍ତି, ବାଇଆ ହୁଅନ୍ତି, ଆପଣାକୁ ସମର୍ପିତ କରି ରଖନ୍ତି । ଭାଗ୍ୟବାନ୍ ବ୍ୟକ୍ତି ପ୍ରକୃତରେ ସେହିମାନେ, ଯେଉଁମାନେ ନିଜର ପ୍ରୟୋଗ ତଥା ଉଦ୍ୟମରେ ସମଧର୍ମୀମାନଙ୍କୁ ଆକର୍ଷିତ କରି ପାରନ୍ତି । ସେମାନେ ସମଧର୍ମୀମାନଙ୍କୁ ଆବିଷ୍କାର କରନ୍ତି, ନିଜକୁ ସେମାନଙ୍କ ମଧ୍ୟକୁ ସଂପ୍ରସାରିତ କରିଦେଇ ପାରନ୍ତି, ସେମାନଙ୍କୁ ସ୍ୱୀକାର କରିନିଅନ୍ତି ଏବଂ ସେମାନଙ୍କୁ ତିଆରି କରି ଆଣନ୍ତି । ଶ୍ରୀଯୁକ୍ତ କ୍ରିଷ୍ଟେନ୍ କଲ୍‌ଲ୍ ସେହିପରି ବ୍ୟକ୍ତିଟିଏ ଥିଲେ । ଖୋଜୁଥିବା ସଙ୍ଗୀମାନଙ୍କୁ ପାଇ ପାରୁଥିଲେ । ତେଣୁ ଏକ ନୂତନ ଉନ୍ମେଷଣାକୁ ଏକ ଆନ୍ଦୋଳନରେ ପରିଣତ କରି ନେବାରେ ଯୋଗ୍ୟ ଯନ୍ତ୍ରଟିଏ ହୋଇପାରିଲେ । ନିଜର ସ୍ଥାନୀୟ ଭୂମିଟି ଉପରେ ଛିଡ଼ାହୋଇ ପୃଥିବୀରେ ଆମ ସମସ୍ତଙ୍କ ନିମନ୍ତେ ସର୍ବକାଳ ଲାଗି କେତେ କେତେ ସମାଧାନ ସମ୍ଭବ କରିପାରିଲେ ।

- ୨ -

ଡେନ୍‌ମାର୍କ୍‌ର ଯେଉଁ ଅଂଶଟି ଇଉରୋପ ମହାଦେଶୀୟ ଭୂଖଣ୍ଡ ସହିତ ଲାଗି କରି ରହିଛି, ଡେନିଶ୍ ଭାଷାରେ ତାହାକୁ ଉଇଲାଣ୍ଡ(Jylland, ଇଂରାଜୀ ଭାଷାରେ Jutland) କୁହାଯାଇ ଆସିଛି । ଏହି ଉଇଲାଣ୍ଡ୍‌ର ଏକାବେଳେକେ ଉତ୍ତର ଗୋଜରେ ଥିଷ୍ଟେଦ୍ (Thisted) ବୋଲି ଗୋଟିଏ ଜାଗାରେ କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କର ଜନ୍ମ ୧୮୧୬ ଖ୍ରୀଷ୍ଟାବ୍ଦରେ । ବାପା ମିକେଲ୍ କ୍ରିଷ୍ଟେନ୍‌ସନ୍ କଲ୍‌ଲ୍ ମୋଚିକାମ କରି ଜୀବିକାନିର୍ବାହ କରୁଥିଲେ । କଠୋର ପରିଶ୍ରମ, - ସକାଳୁ କାମରେ ବସି ଯାଉଥିଲେ, ରାତି ହେବା ପର୍ଯ୍ୟନ୍ତ ମଧ୍ୟ ନିଜ ଜାଗାରୁ ଉଠୁନଥିଲେ । ଖୁବ୍ ଶାନ୍ତ ପ୍ରକୃତିର ଲୋକ, କଥା ମଧ୍ୟ କମ୍ କହୁଥିଲେ । ତାଙ୍କର ଛଅଟି ପିଲା, କ୍ରିଷ୍ଟେନ୍ ସମସ୍ତଙ୍କ ଭିତରେ ବଡ଼ । ମାଆ ସେକାଳର ମଣିଷ, - ଈଶ୍ୱରଙ୍କ ଉପରେ ଯେତିକି ବିଶ୍ୱାସ, ଭୂତ ପ୍ରେତ ଓ ଡାଆଣୀମାନଙ୍କୁ ମଧ୍ୟ ସେତିକି ଭୟ ।

ବାଳକ କଲ୍‌ଲ୍ ଏଗାର ବର୍ଷ ହୋଇଯିବାରୁ ସିଏ ବଂଶଟିର ଧନ୍ଦାକୁ ଶିକ୍ଷା କରିବାଲାଗି ବାପାଙ୍କ ପାଖରେ ବସିବାକୁ ଆରମ୍ଭ କଲେ । ମାତ୍ର ବାପା ବେଶ୍ ଆବିଷ୍କାର କରିପାରିଲେ, ସତେଯେପରି ଜୋତା ତିଆରି କାମ ନିମନ୍ତେ ଏହି ପୁଅଟିର ଆଙ୍ଗୁଠିସବୁ ଆଦୌ ଯଥେଷ୍ଟ ଟାଣ ହୋଇ ତିଆରି ହୋଇନାହିଁ । ଥରେ ପୁଅ ଉପରେ ଭାରି ରାଗିଗଲେ ଓ କହିଥିଲେ : ''ଯେତେବେଳେ ମତେ ଏଗାରବର୍ଷ ବୟସ ହୋଇଥିଲା, ସେତେବେଳେ ମୁଁ ଚମଡ଼ାରେ ସିଲାଇ କରି କେତେ କ'ଣ ତିଆରି କରି ପାରୁଥିଲି, - ଠିକ୍ ବଡ଼ ମଣିଷଙ୍କ ପରି ।'' ଏହିପରି ପ୍ରାୟ ଦେଢ଼ଦିନ ଜୋତାସଜ ପାଖରେ ବସି ସିଏ ନିଜର ଅସମର୍ଥପଣର ପ୍ରମାଣ ଦେବାପରେ ତାଙ୍କର ମାଆ ଆସି ସେଠାରେ ପହଞ୍ଚିଗଲେ ଓ ପୁଅର ହାତ ଧରି ତାକୁ ସେଠାରୁ ଉଠାଇ ନେଉ ନେଉ କହିଲେ, ''ତୁ ଆଉ ଏଠି ବସିବୁନାହିଁ, ପୁଅ ! ମୋଚିକାମ ତୋ' ଦ୍ୱାରା ହୋଇ ପାରିବନାହିଁ ।'' ତା'ପରେ ଘରେ ସେବିଷୟରେ ଆଉ କିଛି ଆଲୋଚନା ହୋଇନାହିଁ । ବାପା ମଧ୍ୟ ବିଚରା ପୁଅଟିକୁ ଆଉ ବାଧ୍ୟ କରି ନିଜ ସଜଭିତରେ ବସାଇ ଚମଡ଼ା ଜୋତା ତିଆରି କରିବାର ଧନ୍ଦା ସିଏ ଯେକୌଣସି ମତେ ଶିଖୁ ବୋଲି ତାକୁ ମୋଟେ ବାଧ୍ୟ କରିନାହାନ୍ତି । ତାଙ୍କର ମାଆ କ'ଣ ପାଇଁ ଭାବି ନେଇଥିଲେ ଯେ, ପୁଅ ଯେତେବେଳେ ଜୋତାକାମକୁ ପାରିଲାନାହିଁ, ତେବେ ସିଏ ତେଣେ ଆଉ କାହିଁକି ମନ ଦେବ ? ସିଏ ଶିକ୍ଷକ ହେବ, ପିଲାମାନଙ୍କୁ ପାଠ ପଢ଼ାଇବ, -ଏବଂ ସମସ୍ତଙ୍କ ଠାରୁ କେତେ କେତେ ସମ୍ମାନ ପାଇବ ।

ଚଉଦବର୍ଷ ବୟସରେ ସ୍ଥାନୀୟ ଗୀର୍ଜାରେ କଲ୍ଲ୍‌ଙ୍କର ଧର୍ମୋପନୟନ ହେଲା । ତାଙ୍କର ସେହି ଗୋଷ୍ଠୀଟିରେ ସିଏ ଏକ ନମ୍ବର ହୋଇ ରହିବାର ସମ୍ମାନ ଲାଭ କରିଥିଲେ । ଏହି ବିଷୟରେ ସ୍ଥାନୀୟ ପୌରବିବରଣୀରେ ଯାହା ଲେଖାହୋଇ ରହିଛି, ସେଥିରୁ ଜଣାପଡୁଛି ଯେ କ୍ରିଷ୍ଟେନ୍ କଲ୍ଲ୍ ୧୮୧୬ ମସିହା ମାର୍ଚ୍ଚ ୨୯ ତାରିଖରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୮୧୭ ମସିହା ଜୁଲାଇ ୪ ତାରିଖରେ ତାଙ୍କୁ ଟୀକା ଦିଆ ଯାଇଥିଲା । କଲ୍ଲ୍‌ଙ୍କୁ ପନ୍ଦର ବର୍ଷ ହୋଇଥିବା ସମୟରେ ତାଙ୍କ ମାଆ ତାଙ୍କୁ ସ୍ଥାନୀୟ ବୁଢ଼ା ଗ୍ରାମକର୍ମଚାରୀଙ୍କ ପାଖକୁ ନେଇ ଯାଇଥିଲେ ଓ ପୁଅକୁ କେଉଁଠାରେ ହେଲେ ଗୋଟିଏ ମାଷ୍ଟରକାମ ଦେଖି ଲଗାଇଦେବା ସକାଶେ ଅନୁରୋଧ କରିଥିଲେ । ଏହାରି ଫଳରେ କଲ୍ଲ୍‌ଙ୍କୁ ପାଖରେ ଥିବା ଗୋଟିଏ ଗ୍ରାମରେ ଶିକ୍ଷକତା କରିବାର ଥାନଟିଏ ମିଳି ବି ଗଲା । ଅର୍ଥାତ୍ ସେହି କଅଁଳ ବୟସରୁ ହିଁ କଲ୍ଲ୍ ଶିକ୍ଷକ ହେଲେ । କହିବା ବାହୁଲ୍ୟ, ଛାତ୍ରମାନଙ୍କ ଭିତରେ ମଧ୍ୟ ଅଧିକାଂଶ ତାଙ୍କ ସମବୟସର ଥିଲେ, କେତେକ ପିଲା ବୟସରେ ତାଙ୍କଠାରୁ କିଛିଟା ବଡ଼ ମଧ୍ୟ ଥିଲେ । ତେଣୁ, ଜଣେ ଶିକ୍ଷକ ହିସାବରେ ତାଙ୍କୁ ମିଳିଥିବା ଅଭିଜ୍ଞତାଗୁଡ଼ିକ ଅବଶ୍ୟ ଖୁବ୍ ତିକ୍ତମଧୁର ହୋଇଥିବ ।

ସେଠାରେ ସିଏ ଦୀର୍ଘ ସମୟ ଶିକ୍ଷକତା କରିବାର ହୁଏତ ଈଶ୍ୱରଙ୍କର ବରାଦ ନଥିଲା । ପରବର୍ତ୍ତୀ ଜୀବିକାରୂପେ ତାଙ୍କୁ ଆଉ ଏକ ଧନୀକୃଷକ ପରିବାରରେ ଘରୋଇ ଶିକ୍ଷକ ହୋଇ ରହିବାକୁ ପଡ଼ିଲା । ସେହି ଘରର ପିଲାମାନଙ୍କର ପାଠ ଦେଖିବା ସଙ୍ଗେ ସଙ୍ଗେ ତାଙ୍କୁ ପଡ଼ିଶାର କେତୋଟି ପିଲାଙ୍କୁ ମଧ୍ୟ ପାଖରେ ବସାଇବାକୁ ପଡ଼ିଲା । ସେମାନଙ୍କୁ ପାଠ ପଢ଼ାଇବା ସହିତ ଗୃହସ୍ୱାମୀଙ୍କର ବଗିଚାରେ କାମ ମଧ୍ୟ କରିବାକୁ ପଡ଼ିଲା । ବର୍ଷକୁ ବେତନ ଏଗାରଟି ରୌପ୍ୟମୁଦ୍ରା । ସେଠାରେ କଲ୍ଲ୍ କଣ୍ଟାକଣ୍ଟି ପ୍ରାୟ ତିନିବର୍ଷ ରହିଥିଲେ । ତାଙ୍କର ବିଚାରରେ ବେତନ ଅତ୍ୟନ୍ତ ଅଳପ ଥିଲା । ତାଙ୍କ ସହିତ ବଗିଚାରେ କାମ କରୁଥିବା ଅନ୍ୟମାନେ ମଧ୍ୟ ସେହିପରି ଅତ୍ୟଳ୍ପ ବେତନ ପାଉଥିଲେ ଏବଂ କ୍ରିଷ୍ଟେନ୍ କଲ୍ଲ୍ ବେଳେ ବେଳେ ସେହି କଥାଟିକୁ ସମସ୍ତେ ଶୁଣିଲା ଭଳି ବେଶ୍ ବଡ଼ପାଟିରେ କହି ପକାଉଥିଲେ । ଏଥିରେ କର୍ତ୍ତାଙ୍କ ଲୋକେ ଆପତ୍ତି କରିବା ଅତ୍ୟନ୍ତ ସ୍ୱାଭାବିକ । ତାଙ୍କ ବିରୋଧରେ ଅଭିଯୋଗ ହୋଇଥିଲା ଯେ ସିଏ ମୂଲିଆମାନଙ୍କର ମନରେ ବିପ୍ଳବର ବିଚାରମାନ ଆଣି ପୂରାଇ ଦେଉଛନ୍ତି ।

ଗୃହର ଅନ୍ୟ ପରିଚାରକମାନଙ୍କ ସହିତ କଲ୍ଲ୍ ଗୋଟିଏ ଜାଗାରେ ରହୁଥିଲେ ଏବଂ ରାତିରେ ସେମାନଙ୍କୁ କୌଣସି ବହିରୁ ପାଠ କରି ଏଇଟା ସେଇଟା ଶୁଣାଉଥିଲେ । ଅନ୍ୟମାନେ ମଧ୍ୟ ତାଙ୍କ ପରି ଗମ୍ଭୀର ହୋଇ ବସି ପଠିତ ବିଷୟଗୁଡ଼ିକୁ ମନ ଦେଇ ଶୁଣୁଥିଲେ । କଥିତ ଅଛି ଯେ, ଦିନେ ବଡ଼ ଝଡ଼ପବନଟିଏ ଆସିବାରୁ ପରିକରମାନେ

ସମସ୍ତେ ବଗିଚାରୁ ଘର ଭିତରକୁ ଚାଲି ଆସିଲେ । କିନ୍ତୁ କଲ୍ଡ୍ ନଆସି ସେହି ବଗିଚାରେ ହିଁ ଛିଡ଼ା ହୋଇଥାଆନ୍ତି । ତାଙ୍କୁ ଘରକୁ ଚାଲି ଆସ ବୋଲି କହିବା ସକାଶେ ଜଣକୁ ପଠା ଯାଇଥିଲା । କଲ୍ଡ୍ ଉତ୍ତର ଦେଇ କହିଥିଲେ, ନାଇଁ ମୁଁ ଏଇଠି ବଗିଚାରେ ଅଛି । ଝଡ଼ ସମୟରେ ଆକାଶକୁ ଅନାଇ ସେ ପବନ ଓ ମେଘମାନଙ୍କର ଗତିବିଧିକୁ ଲକ୍ଷ୍ୟ କରି ଦେଖୁଥିଲେ । ତାଙ୍କର ପିଲାଳିଆ ଢଙ୍ଗ ତଥାପି ଯାଇନାହିଁ ବୋଲି ଅନ୍ୟମାନେ ସବୁବେଳେ ଭାବୁଥିଲେ । ଥରେ ତାଙ୍କର ଅସାବଧାନତା ହେତୁ ଗୋଟିଏ କୁକୁଡ଼ାଛୁଆ ଘରକବାଟରେ ଚିପି ହୋଇ ମରିଗଲାରୁ ସିଏ ଗଭୀର ଦୁଃଖରେ ଅଭିଭୂତ ହୋଇ ପଡ଼ିଥିଲେ । ମୃତ ଛୁଆଟିକୁ ନିଜେ ଗାତ ଖୋଳି ପୋତିଲେ, ନିଜକୁ ଭର୍ତ୍ସନା କରି କବିତାଟିଏ ଲେଖିଲେ ଏବଂ ତେବେ ଯାଇ ଶାନ୍ତ ହୋଇ ପାରିଲେ । କଲ୍ଡ୍ ଗୋଟିଏ ଗିଲାସରେ ସାନ ସାନ ଦୁଇଟି ମୂଷା ବି ପାଳିଥିଲେ ଓ ନିଜ ହାତରେ ସେମାନଙ୍କୁ ଖାଇବାକୁ ପିଇବାକୁ ଦେଉଥିଲେ । ଭାରି ଖୁସୀ ହୋଇ ସେମାନଙ୍କ ସହିତ ଖେଳିବାରେ ମାତି ଯାଉଥିଲେ ।

ମାତ୍ର ଭାରି ଦାଢୁଆ କଥାମାନ କହୁଥିଲେ । ଯାହାକୁ ଯାହା ଉଚିତ ବୋଲି ଭାବୁଥିଲେ କହି ପକାଉଥିଲେ । ବଗିଚାକାମରେ ସିଏ ଅବଶ୍ୟ ଖୁବ୍‌ବେଶୀ ପାରଙ୍ଗମ ନଥିଲେ, ମାତ୍ର ପିଲାମାନଙ୍କୁ ପାଠ ପଢ଼ାଇବା ବେଳେ ସମ୍ପୂର୍ଣ୍ଣ ଭାବରେ ସେଇଥିରେ ହିଁ ବୁଡ଼ି ରହୁଥିଲେ । ଏହିପରି ଭାବରେ ତାଙ୍କୁ ଅଠରବର୍ଷ ଆସି ହୋଇଗଲା । ଏଥର ସେ ଜଣେ ଶିକ୍ଷକ ହେବାପାଇଁ ସ୍ଥାୟୀ ଟ୍ରେନିଂ ନେବାର ବୟସରେ ଆସି ପହଞ୍ଚି ଯାଇଥିଲେ ଏବଂ ସେଥିପାଇଁ ପ୍ରସ୍ତୁତ ହେଲେ । ଘରର କର୍ତ୍ତା ତାଙ୍କୁ ଲେଖି ଦେଇଥିବା ସାର୍ଟିଫିକେଟ୍‌ରେ ଏହିପରି ଭାବରେ ମନ୍ତବ୍ୟ ପ୍ରଦାନ କରିଥିଲେ; କ୍ରିଷ୍ଟେନ୍ ମିକେଲସନ୍ କଲ୍ଡ୍ ଏଠାରେ ମୋ' ଘରେ ତିନିବର୍ଷ କାର୍ଯ୍ୟ କରିଛନ୍ତି ଏବଂ ପ୍ରାଥମିକ ଶ୍ରେଣୀର ପିଲାମାନଙ୍କୁ ପାଠ ପଢ଼ାଇଛନ୍ତି । ତାଙ୍କର କାର୍ଯ୍ୟରେ ମୁଁ ଅତିଶୟ ସନ୍ତୋଷ ଲାଭ କରିଛି ଏବଂ ଖୁସୀ ମଧ୍ୟ ହୋଇଛି । ସ୍ୱଭାବ ଓ ଆଚରଣରେ ମଧ୍ୟ ସେ ମୋ'ର ସନ୍ତୋଷଭାଜନ ହୋଇ ପାରିଛନ୍ତି । ତାଙ୍କର ନୂତନ କର୍ମକ୍ଷେତ୍ରରେ ମୁଁ ତାଙ୍କର ସକଳ ସଫଳତା କାମନା କରୁଛି ।

୧୮୩୪ ନଭେମ୍ବର ମାସରେ କ୍ରିଷ୍ଟେନ୍ କଲ୍ଡ୍ ଶିକ୍ଷକ-ପ୍ରଶିକ୍ଷଣର ନୂଆ କ୍ଷେତ୍ରଟିରେ ଯୋଗ ଦେଇଥିଲେ । ପ୍ରଥମେ ପ୍ରଥମେ ସେଠି ଅତ୍ୟନ୍ତ ଖାପଛଡ଼ା ଲାଗିଲା । ସେଠାରେ ପଢ଼ା ହେଉଥିବା ପାଠକୁ ସିଏ ଉତ୍ତମରୂପେ ବୁଝି ପାରୁଥିବା ପରି ମନେ ହେଉନଥିଲା ଏବଂ ପ୍ରଶିକ୍ଷଣକେନ୍ଦ୍ରର ସାମୂହିକ ଜୀବନଟା ମଧ୍ୟ ବେଶ୍ ଅବାଗିଆ ଲାଗୁଥିଲା । ମାତ୍ର ଦିନେ ପ୍ରଶିକ୍ଷଣ-କାର୍ଯ୍ୟକ୍ରମରେ ସେ ଶ୍ରୀ ପିଟର୍ ଲାର୍ସନ୍ ସ୍କ୍ରେପେନ୍‌ବର୍ଗ୍ (Skraeppenborg) ଙ୍କର ଅଧ୍ୟାପନାରେ ବସିବାର ସୁଯୋଗ ପାଇଥିଲେ ଓ ସେଇଠାରୁ ସବୁ ବଦଳିଗଲା । ଅଧ୍ୟାପକ ସେଦିନ ନିଜ ପ୍ରବଚନରେ ମନୁଷ୍ୟମାନଙ୍କ ପ୍ରତି ଈଶ୍ୱରଙ୍କର

ଭଲ ପାଇବା ବିଷୟରେ ଅତ୍ୟନ୍ତ ହୃଦୟସ୍ପର୍ଶୀ ଭାବରେ ଯାହାସବୁ କହିଲେ, ତାହା କଲ୍ଲ୍ଙ୍କର ଅନୁଭବରାଜ୍ୟରେ ଗଭୀର ରେଖାପାତ କରିଥିଲା । ଏପରି ଗୋଟିଏ କଥା ସିଏ ସତେଅବା ଆଗରୁ କେବେହେଲେ ଶୁଣିନଥିଲେ । ସେହି କଥାଟି ତାଙ୍କର ପରବର୍ତ୍ତୀ ସମୁଦାୟ ଜୀବନରେ ସତେଅବା ସବାବଡ଼ କଥା ହୋଇ ରହିଗଲା ଏବଂ ଏକ ନିର୍ଦ୍ଦିଷ୍ଟ ଛାଞ୍ଚରେ ତାଙ୍କର ଜୀବନଟିକୁ ଗଢ଼ି ନେଇ ପାରିଥିଲା । ସେଠାରେ ଥିବା ଆଉଜଣେ ଶିକ୍ଷକ ମଧ୍ୟ ତାଙ୍କର ଅତ୍ୟନ୍ତ ପ୍ରିୟ ହୋଇ ଆସିଲେ । ସେହି ଶିକ୍ଷକ ଜଣକ ପ୍ରତ୍ୟହ ରାତିରେ ଏବଂ ରବିବାର ଉପରବେଳା ମାନଙ୍କରେ ପ୍ରଶିକ୍ଷାର୍ଥୀମାନଙ୍କୁ ନିଜ ଘରକୁ ଡାକୁଥିଲେ । ସେଠାରେ ବହୁ ବହୁ ବିଷୟର ଆଲୋଚନା ହେଉଥିଲା । ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଅଧିକ ଆଗକୁ ଦେଖି ପାରିବାରେ ସାହାଯ୍ୟ କରୁଥିଲେ । କଥାବାର୍ତ୍ତା ଖୁବ୍ ଜମୁଥିଲା ଓ ବେଳେ ବେଳେ ଅଧିକ ରାତିଯାଏ ମଧ୍ୟ ଲାଗି ରହୁଥିଲା ।

କଲ୍ଲ୍ ପ୍ରଶିକ୍ଷଣ ବିଦ୍ୟାଳୟରେ ଦୁଇବର୍ଷ ଅଧ୍ୟୟନ କରିଥିଲେ ଏବଂ ୧୮୩୬ରେ ସେଠାରେ ନିଜର ଶେଷ ପରୀକ୍ଷା ଦେଇଥିଲେ । ସାର୍ଟିଫିକେଟ୍‌ରେ 'ଅତି ଯୋଗ୍ୟ' ବୋଲି ମନ୍ତବ୍ୟଟିଏ ପାଇଲେ ଏବଂ ଧର୍ମ ଓ ହସ୍ତାକ୍ଷର, - ଏହି ଦୁଇଟି ବିଷୟରେ ସର୍ବୋଚ୍ଚ ପ୍ରାମାଣିକତାର ଅଧିକାରୀ ହୋଇଥିଲେ । ପ୍ରଶିକ୍ଷଣ ଶେଷ କରି ସେ ପୁନର୍ବାର ଆଉଗୋଟିଏ ସ୍ଥାନରେ ଘରୋଇ ଶିକ୍ଷକ ହୋଇ ରହିଲେ । ସେଠାରେ ସେ ସ୍ଥାନୀୟ ପାଦ୍ରୀଙ୍କ ଘରେ ରହୁଥିଲେ ଏବଂ ସର୍ବପ୍ରଥମ ଦିନ ହିଁ ପାଦ୍ରୀଙ୍କୁ ଯାଇ କହିଲେ, ''ଆଜ୍ଞା, ମୋ'ର ଗୋଟିଏ ଇଚ୍ଛାକୁ ଆପଣ ଅବଶ୍ୟ ପୂରଣ କରିବେ ।'' ଇଚ୍ଛାଟି କ'ଣ ବୋଲି ପାଦ୍ରୀ ପ୍ରଶ୍ନ କରିବାରୁ ଉତ୍ତର ଦେଇଥିଲେ ''ଏଠି ଥିବାଯାଏ ମୋତେ ଘରର ଭୃତ୍ୟମାନଙ୍କ ସହିତ ଏକାଠି ଖାଇବାପାଇଁ ଅନୁମତି ମିଳିବ ।'' ପୁନର୍ବାର ପ୍ରଶ୍ନ ହେଲା, ମାତ୍ର ଏଇଟା କ'ଣ ଭଲ ଦିଶିବ ? ମାତ୍ର କହିଲ, ତୁମେ କାହିଁକି ସେମାନଙ୍କ ସହିତ ଏକାଠି ଖାଇବ ବୋଲି ଇଚ୍ଛା କରୁଛ ? ଉତ୍ତର ମିଳିଲା, ''ଆଜ୍ଞା, ସ୍ୱାଧୀନ ଜୀବନ ଯାପନ କରିବାକୁ ହିଁ ମୁଁ ମୋ' ଜୀବନର ସବୁଠାରୁ ବଡ଼ କଥା ବୋଲି ବିଚାର କରିଥାଏ । ଏହି ସ୍ୱାଧୀନତାକୁ ମୁଁ ଦୁଇପ୍ରକାରେ ହାସଲ କରିପାରିବି । ହୁଏତ ଏପରି ଧନୀ ହୋଇଥିବି ଯେ ଯାହା ଇଚ୍ଛା କରିବି ତାହା କରିପାରିବି ଓ ସାରା ପୃଥିବୀକୁ ଆଦୌ କୌଣସି ଖାତିରି କରୁନଥିବି । ଅଥବା, ଏପରି ନିଷ୍କପଟ ଓ ନମ୍ର ହୋଇ ପାରୁଥିବି ଯେ ଈଶ୍ୱର ମୋ'ର ପେଟକୁ ଆବଶ୍ୟକ ହେଉଥିବା ଅନ୍ନକୁ ମୋତେ ଅବଶ୍ୟ ଯୋଗାଇଦେବେ ଏବଂ ମୋତେ ଭିକାରୀଙ୍କ ପରି ଆଦୌ ପୃଥିବୀଯାକ ବୁଲି ମାଗିବାକୁ ପଡ଼ିବନାହିଁ । ଦେଖନ୍ତୁ, ପ୍ରଥମ କଥାଟିକୁ ମୁଁ ଯେତେବେଳେ କେବେହେଲେ ସମ୍ଭବ କରି ପାରିବିନାହିଁ, ସେଥିପାଇଁ ମୋତେ ମୂଳରୁ ହିଁ ଦ୍ୱିତୀୟଟିକୁ ଅଭ୍ୟାସ କରିବାକୁ ପଡ଼ିବ ।'' ଗୃହକର୍ତ୍ତା ଏହାପରେ ଆଉ କ'ଣ କହି ପାରିଥାନ୍ତେ ? - ତେଣୁ ସେ ଯୁବକ କଲ୍ଲ୍ଙ୍କର ସର୍ତ୍ତଟିକୁ ମାନି ନେଇଥିଲେ ।

୧୮।। କ୍ରିଷ୍ଟେନ୍ କଲ୍ଲ୍

୧୮୩୮ ମସିହା ଆରମ୍ଭ ବେଳକୁ କ୍ରିଷ୍ଟେନ୍ କଲ୍ଲ୍ ଆହୁରି ଗୋଟିଏ ନୂଆ ଜାଗାରେ ଜଣେ ଘରୋଇ ଶିକ୍ଷକରୂପେ ଯୋଗ ଦେଇଥିଲେ । ବେତନ ବାର୍ଷିକ ୩୦ଟି ରୌପ୍ୟମୁଦ୍ରା ଏବଂ ରହିବା ପାଇଁ ପଇସା ଦେବାକୁ ପଡ଼ିବନାହିଁ । କଲ୍ଲ୍ କ୍ରମେ ବୁଝିବାକୁ ଆରମ୍ଭ କରୁଥିଲେ ଯେ ଏଣିକି ତାଙ୍କୁ ନିଜ ଜୀବନର ଏକ ସ୍ଥାୟୀ ବୃତ୍ତିରୂପେ ଶିକ୍ଷକର କାର୍ଯ୍ୟଟିକୁ ଗ୍ରହଣ କରିବାକୁ ପଡ଼ିବ । ତାଙ୍କର ଆଖି ଆଗରେ ଧୀରେ ଧୀରେ ଅନୁକୂଳ ଦିଗ୍‌ବଳୟଟିଏ ମଧ୍ୟ ଖୋଲି ଯାଉଥିଲା । ପରେ ସେ ଗୋଟିଏ ଚିଠିରେ ଲେଖିଛନ୍ତି: ''ପିଲାଙ୍କର ପଢ଼ିବାପାଇଁ ଯଥାର୍ଥ ସ୍କୁଲଟିଏ ପ୍ରକୃତରେ କିପରି ହେବା ଉଚିତ, ସେତେବେଳେ ମୁଁ ଅନେକ ସମୟରେ ସେହି ବିଷୟରେ ଚିନ୍ତା କରୁଥିଲି । ଆପଣାର ଶିଶୁସମୟଟିକୁ ପରିପୂର୍ଣ୍ଣ ଭାବରେ ବଞ୍ଚିବାଲାଗି ସେମାନଙ୍କର ପୂର୍ଣ୍ଣ ଅଧିକାର ଅବଶ୍ୟ ରହିବ । ସ୍ୱୟଂ ଈଶ୍ୱର ହିଁ ତ ସେମାନଙ୍କୁ ସେହି ସମୟଟି ପ୍ରଦାନ କରିଛନ୍ତି ।'' ତେଣୁ ପିଲାମାନଙ୍କର ଆବଶ୍ୟକତା ଅନୁସାରେ ହିଁ ସେମାନଙ୍କର ବିଦ୍ୟାଳୟ ନିଜକୁ ଗଢ଼ି ଆଣି ପାରୁଥିବ । ସିଏ ନିଜକୁ ପଚାରୁଥିଲେ, କ'ଣ ସବୁ ଅଭିପ୍ରାୟ ମନରେ ରଖି ପିତାମାତା ନିଜ ପିଲାମାନଙ୍କୁ ଏହି ବିଦ୍ୟାଳୟକୁ ପଠାଉଛନ୍ତି ? ପିଲାଙ୍କର ମୁଣ୍ଡରେ କେତେଗୁଡ଼ାଏ ଜୀବନହୀନ ଜ୍ଞାନତଥ୍ୟକୁ ଖୁନ୍ଦି ଦିଆ ଯାଉଥିବ ଓ ସେମାନେ ତାହାର କୌଣସି ଅର୍ଥ ବୁଝୁନଥିବେ; ପୁନଶ୍ଚ ନିଜ ଜୀବନରେ ମଧ୍ୟ ଏହିସବୁ ପାଠ ସେମାନଙ୍କର କୌଣସି କାମକୁ ଆସୁନଥିବ । ଏବଂ, ପିଲାମାନଙ୍କ ଭିତରେ ମଧ୍ୟ କ'ଣ କେଉଁଠାରେ ଗୋଟାଏ ଭଣ୍ଡାର ବା ଅମାର ମଧ୍ୟ ରହିଛି, ଯେଉଁଠି କି କାମକୁ ଆସିବା ପର୍ଯ୍ୟନ୍ତ ସେହି ପଠିତ ପାଠମାନେ ଗଚ୍ଛିତ ହୋଇ ରହିଥିବେ ? ନାଇଁ, ନାଇଁ, ସେସବୁ ମୋଟେ ବାଟ ନୁହେଁ, ସେମାନଙ୍କୁ ଏପରି କିଛି ଦେବାକୁ ପଡ଼ିବ, ଯାହାକି ପିଲାମାନଙ୍କର ଅସଲ ଆନ୍ତର ଅଭିବୃଦ୍ଧିରେ ସାହାଯ୍ୟ କରି ପାରୁଥିବ ।

କିନ୍ତୁ ସବାଆଗ ସେମାନଙ୍କର ଗ୍ରହଣଶୀଳତାକୁ ବଢ଼ାଇବାକୁ ପଡ଼ିବ । ତେବେଯାଇ ଶୁଣିବାପାଇଁ ଓ ଶିଖିବାପାଇଁ ସେମାନଙ୍କ ଭିତରେ ପ୍ରକୃତ ଆଗ୍ରହ ଜନ୍ମିବ । ସେତେବେଳେ ଯାଇ ସେମାନେ ପ୍ରକୃତରେ ବିଦ୍ୟାର୍ଜନ ନିମନ୍ତେ ପ୍ରସ୍ତୁତ ହୋଇଯିବେ । ମାତ୍ର ପାଠ ମଧ୍ୟ ଏପରି ହୋଇପାରିବା ଉଚିତ, ଯାହାକି ସେମାନଙ୍କର କାମରେ ଲାଗିବ ଓ ସେମାନେ ଯାହାକୁ ବୁଝି ବି ପାରୁଥିବେ । ପାଠଟା ଏପରି ହୋଇଥିବ, ଯାହାକୁ ପିଲାମାନେ ଖୁସୀ ହୋଇ ଗ୍ରହଣ କରିବେ । ଅର୍ଥାତ୍, ପାଠକୁ ସେମାନଙ୍କ ଉପରେ ଏକ ଭାରି ବୋଝ ପରି ଲଦିଦିଆ ଯିବନାହିଁ । ନହେଲେ ପାଠମାନେ ଶୀଘ୍ର ପାସୋର ହୋଇଯିବେ ଏବଂ ଆହୁରି ଅଧିକ ପାଠ ସକାଶେ ପିଲାମାନେ ଆଦୌ କୌଣସି କ୍ଷୁଧା ଅନୁଭବ କରିବେନାହିଁ । ଶିକ୍ଷକ କଲ୍ଲ୍ ଦେଖିପାରିଲେ, ଏଥିପାଇଁ ପିଲାମାନଙ୍କର ସାଙ୍ଗ ହୋଇଯିବାକୁ ପଡ଼ିବ । ଗ୍ରୀଷ୍ମଋତୁରେ ସେ ପିଲାଙ୍କ ସହିତ ବହୁତ ସମୟ ବାହାରେ କଟାଇଲେ, ଏକାଠି ହୋଇ ଶୋଭାମୟ ପ୍ରକୃତିର ହୃଦୟମୁଗ୍ଧକାରୀ

ଶୋଭାକୁ ଅନୁଭବ କଲେ । ଫୁଲ, ଚଢ଼େଇ, ସମୁଦ୍ରବେଳା, - ସବୁ କିଛି ଆକର୍ଷଣର ବସ୍ତୁ ହୋଇ ରହିଥିଲା । ବାହାରେ ସମସ୍ତେ ପୂରା ହାଲୁକା ହୋଇ କୋଉଠି ବସିଥିବା ସମୟରେ କଲ୍‌ଲ୍ ପିଲାମାନଙ୍କୁ ବାଇବେଲ୍‌ର କାହାଣୀମାନ କହୁଥିଲେ । ପିଲାଏ ପୂରା ଉପଭୋଗ କରୁଥିଲେ । ଅନେକ ସମୟରେ ସେ ପିଲାମାନଙ୍କ ସହିତ ଏକାଠି ଖେଳ ଖେଳୁଥିଲେ । ଖରାପାଗରେ ଏକାଠି ମାଛ ବି ଧରୁଥିଲେ ଓ ଡଙ୍ଗାରେ ବାହାରି ଯାଉଥିଲେ । ଶୀତଦିନେ ବରଫ ଉପରେ ଖସଡ଼ାରେ ଖସୁଥିଲେ । ସମ୍ପୂର୍ଣ୍ଣ ସମୟଟା ଭାରି ଜୀବନ୍ତହୋଇ ରହୁଥିଲା ଓ ବ୍ୟକ୍ତିଗତ ସମ୍ପର୍କମାନ ଯୋଡ଼ି ହୋଇ ଯାଉଥିଲା । ଉପରେ ଖୋଲା ଆକାଶ ଅନାଇ ରହିଥିଲା, ମୁହଁ ଉପରେ ଉଷୁମ ସୂର୍ଯ୍ୟକିରଣ ଅଜାଡ଼ି ହୋଇ ପଡୁଥିଲା । ବାରଣ ବୋଲି କିଛି ନଥିଲା । ପିଲାମାନେ ସେମାନଙ୍କର ଶିକ୍ଷକକୁ ଜଣେ ଜୀବନ ଥିବା ମଣିଷ ବୋଲି ଅନୁଭବ କରି ପାରୁଥିଲେ, ତାଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ପାରୁଥିଲେ । ଏହିପରି ଗୋଟିଏ ପରିବେଶରେ ହିଁ ସେମାନଙ୍କର ହୃଦୟ ଭିତରେ ନିଆଁଟିଏ ଜଳାଇ ଦେଇ ହେଉଥିଲା, ସେମାନେ ଜଣେ ଜଣେ ମନୁଷ୍ୟସତ୍ତା ହିସାବରେ ମୁକୁଳି ଉଠିବାଲାଗି ପୂର୍ଣ୍ଣ ଅନୁକୂଳତା ଲାଭ କରୁଥିଲେ ।

କେବଳ ପିଲାମାନଙ୍କର ମେଳରେ ନୁହେଁ, ପ୍ରତିବେଶର କୃଷକମାନଙ୍କୁ ଆକୃଷ୍ଟ କରି କଲ୍‌ଲ୍ ସେହି କାର୍ଯ୍ୟଟିକୁ ଆରମ୍ଭ କରିଦେଲେ । ଏହି କୃଷକମାନେ ବହୁତ ସ୍ଥଳରେ ସିଏ ପଢ଼ାଉଥିବା ପିଲାମାନଙ୍କର ବାପାମାଆ ମଧ୍ୟ ଥିଲେ । ତେଣୁ, ଏହି କାର୍ଯ୍ୟଟି ତାଙ୍କ ବିଦ୍ୟାଳୟ କାର୍ଯ୍ୟରେ ପରିପୂରକ ପରି କାର୍ଯ୍ୟ ଦେଲା । ମଣିଷମାତ୍ରକେ ଜଗତକର୍ତ୍ତା ସମସ୍ତଙ୍କୁ ଭଲ ପାଆନ୍ତି, ସେମାନେ ସମସ୍ତେ ଏହି ଭୂମିଟିର ସନ୍ତାନ ଓ ସେହି ଭୂମିକୁ ମଧ୍ୟ ସେମାନେ ଭଲ ପାଇବେ ଏବଂ ନୂଆ ପ୍ରେରଣାରେ ଜୀବନଟିଏ ବଞ୍ଚିବେ ଓ ଭବିଷ୍ୟଟିଏ ଗଢ଼ିବେ, - ତାଙ୍କର ଯାବତୀୟ କଥା ଭିତରେ ସିଏ ଏହିଗୁଡ଼ିକ ବିଷୟରେ ସଂପୃକ୍ତ ସମସ୍ତଙ୍କୁ ଚେତନାଯୁକ୍ତ କରି ଆଣୁଥିଲେ । ୧୮୪୦-୪୧ ଶୀତମାସ ଗୁଡ଼ିକରେ ସିଏ ପ୍ରତି ବୁଧବାର ଦିନ ୧୫ ଜଣ ଯୁବକଙ୍କୁ ସନ୍ଧ୍ୟାରେ ତିନିଘଣ୍ଟା କାଳ ଏକାଠି ଡକାଇଲେ, ସେମାନଙ୍କୁ କାହାଣୀ କହିଲେ ଓ ବହିମାନଙ୍କରୁ ସେମାନଙ୍କ ପାଇଁ କିଛି ବଡ଼ ପାଟି କରି ପଢ଼ିଲେ । ଏହିପରି ଭାବରେ ହିଁ ସିଏ ପରେ ପୁରୋଗାମୀ ହୋଇ ଆରମ୍ଭ କରିଥିବା ଲୋକ-ବିଦ୍ୟାଳୟର ପ୍ରଥମ ମୂଳଦୁଆଟିଏ ପଡ଼ିଥିଲା । ସେଠାରେ ସମସ୍ତେ ଏକତ୍ର ଗୀତ ମଧ୍ୟ ବୋଲୁଥିଲେ । ଦେଶାତ୍ମବୋଧକ ଗୀତଗୁଡ଼ିକ ମାଧ୍ୟମରେ ନିଜ ଦେଶକୁ ଅତ୍ୟନ୍ତ ଜୀବନ୍ତ ବୋଲି ଅନୁଭବ ବି କରୁଥିଲେ ।

ସେତେବେଳେ ପିଲାମାନଙ୍କ ସ୍କୁଲରେ ଭାଷା ଶିଖିବା ସକାଶେ ଯେଉଁ ପ୍ରଥମ ପାଠବହିଟି ଉଚ୍ଚକର୍ତ୍ତାମାନଙ୍କର ଆଦେଶରେ ବ୍ୟବହୃତ ହେଉଥିଲା, ତାହା କେଉଁ ଭଟ୍ଟଙ୍କ ଅମଳରୁ ଚଳି ଆସୁଥିଲା । ପିଲାଏ ବୁଝନ୍ତୁ ନବୁଝନ୍ତୁ, ସେଥିରେ ଥିବା ପାଠଗୁଡ଼ିକୁ ଘୋଷି

ମନେ ରଖିବାକୁ ବାଧ୍ୟ ହେଉଥିଲେ । କଲ୍‌ଲ୍ ଆରମ୍ଭରୁ ହିଁ ସ୍ଥିର କରିନେଲେ ଯେ ତାଙ୍କ ପିଲାମାନଙ୍କର ହାତରେ ସିଏ କଦାପି ସେହି ବହିଟି ଆଣି ଦେବେନାହିଁ । କାରଣ ବହି ଘୋଷ୍ଟୁ ଘୋଷ୍ଟୁ ପିଲାମାନଙ୍କ ଭିତରେ ରହିଥିବା ଶିକ୍ଷାର୍ଥୀର ଆତ୍ମାଟି ପ୍ରକୃତରେ ଶୁଖି ଶୁଖି ମରିଯିବ ଓ ସେମାନଙ୍କର ଯାବତୀୟ ବିକାଶ ପାଇଁ ଅନ୍ତରାୟ ହୋଇ ରହିବ । ମାତ୍ର ସରକାରୀ କର୍ତ୍ତା ସେହି କଥାଟିକୁ ଗ୍ରହଣ କରି ପାରିଲେନାହିଁ । ସମସ୍ତେ ଗୋଟିଏ ଗୁଳାଭିତରେ ଚାଲିଥିଲେ ସିନା ପ୍ରକୃତରେ ସବୁ ଚାଲୁଛି ବୋଲି ବିଶ୍ୱାସ କରାଯାଇ ପାରିବ । ଯେଉଁ ଚାଟଶାଳୀରେ ନିର୍ଦ୍ଧାରିତ କରିଦିଆ ଯାଇଥିବା ବହିଟି ପଢ଼ା ନଯାଉଛି, ସେଠାରେ ପିଲାମାନେ ନିଶ୍ଚୟ ମୂର୍ଖ ହୋଇ ରହୁଥିବେ ବୋଲି ତାଙ୍କର ସନ୍ଦେହ ହେଲା । ସିଏ ସ୍ଥିର କଲେ ଯେ ସେ ସ୍ୱୟଂ ବିଦ୍ୟାଳୟର ପରିଦର୍ଶନରେ ଆସିବେ ଓ ପ୍ରକୃତ ହାଲତ ଜାଣିବେ । ମାତ୍ର ତା' ପୂର୍ବରୁ ବିଦ୍ୟାଳୟର ଶିକ୍ଷକଙ୍କ ପାଖରୁ ଏହି ବିଷୟରେ ଏକ କୈଫିୟତ୍ ମଗାଗଲା । ଏବଂ, କ୍ରିଷ୍ଟେନ୍ କଲ୍‌ଲ୍ ଉତ୍ତରରେ ଯାହା ଲେଖି ପଠାଇଥିଲେ, ସେଥିରେ ଉଲ୍ଲେଖ ରହିଥିଲା, ''ବିଭାଗୀୟ କର୍ତ୍ତା ପିଲାମାନେ ପାଠବହିଟିକୁ ଘୋଷି ମନେରଖନ୍ତୁ ବୋଲି ଆମକୁ ନିର୍ଦ୍ଦେଶ ଦେଇଛନ୍ତି । ସେହି ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବାର ସପକ୍ଷରେ ମୁଁ ଆଦୌ କୌଣସି କାରଣ ରହିଥିବାର ଦେଖି ପାରୁନାହିଁ; କାରଣ ମୋ' ନିଜର ଅଭିଜ୍ଞତା ମୋତେ କହୁଛି ଯେ, ବହିରେ କ'ଣ ଲେଖା ହୋଇଛି ତାହାର ଅର୍ଥ ଭିତରେ ଆଦୌ ପ୍ରବେଶ ନକରି ଯେଉଁସବୁ ପାଠଶାଳାରେ ବିଷୟଗୁଡ଼ିକୁ ମୁଖସ୍ଥ କରିବା ନିମନ୍ତେ ପିଲାଙ୍କୁ ବାଧ୍ୟ କରାଯାଉଛି, ସେଠାରେ ପିଲା ଭିତରେ ରହିଥିବା ମଣିଷଟିର ପବିତ୍ରତମ ଏବଂ ଗଭୀରତମ ଅସଲ ଧନଟିକୁ ମାରି ଦିଆଯାଉଛି ।''

କଥାଟି ପ୍ରକୃତରେ ତା'ପରେ ଏକ ଗମ୍ଭୀର ବିବାଦର ଆକାର ଧାରଣ କରିଥିଲା । ଜଣେ ଶିକ୍ଷକ ଉଚ୍ଚକର୍ତ୍ତାମାନଙ୍କର ନିର୍ଦ୍ଦେଶକୁ ନମାନି ନିଜର ଧାରଣା ବା ବିଚାର ଅନୁସାରେ ଆଉକିଛି କରିବ, - ଏକଥା ଆଗରୁ ଶୁଣା ନଥିଲା । ଫଳରେ ଏକ ଅଭୂତପୂର୍ବ ବିବାଦର ସୂତ୍ରପାତ ହୋଇଥିଲା । ପାଠ୍ୟପୁସ୍ତକଟିରେ ଯାହାକିଛି ଲେଖା ଥିଲା, ତାହାକୁ ଏକ ସହଜ ଓ ଅନୁକୂଳ ପରିବେଶରେ କ୍ରିଷ୍ଟେନ୍ କଲ୍‌ଲ୍ ପିଲାମାନଙ୍କୁ ସରସତାପୂର୍ଣ୍ଣ ନାନା କାହାଣୀ ଆକାରରେ କହି ଦେଉଥିଲେ । ଅର୍ଥାତ୍, ପିଲାମାନେ ବହିରେ ଥିବା ସାମଗ୍ରୀଗୁଡ଼ିକ ବିଷୟରେ ଅବଗତ ଥିଲେ, ସେଗୁଡ଼ିକର ଅର୍ଥ ବୁଝୁଥିଲେ, ସେଗୁଡ଼ିକୁ ଉପଭୋଗ ବି କରୁଥିଲେ । କିନ୍ତୁ ଏଥିପାଇଁ ବହିଟି ବ୍ୟବହୃତ ହେଉନଥିଲା । ଏବଂ, ବହିରେ ଥିବା ପାଠକୁ ଧାଡ଼ୀ ଧାଡ଼ୀ କରି ଘୋଷି ମନେ ରଖିବାର କୌଣସି ପ୍ରଶ୍ନ ହିଁ ନଥିଲା । ସେହି ବିଷୟରେ ଅଧିକ ପ୍ରାଞ୍ଜଳ ଭାବରେ କଲ୍‌ଲ୍ ସେତେବେଳେ ଗୋଟିଏ ସମସାମୟିକ ପତ୍ରିକାରେ ନିଜର ଲେଖାଟିଏ ମଧ୍ୟ ପ୍ରକାଶ କରିଥିଲେ । ସେହି ଦୀର୍ଘ ଲେଖାଟିର ପ୍ରଧାନ ବକ୍ତବ୍ୟ ଏହିପରି ଥିଲା :

''ଯେଉଁ ଅସଲ କଥାଟି ଉପରେ ମୋ'ର ବିଦ୍ୟାଳୟରେ ମୁଁ ସର୍ବାଧିକ ମହତ୍ତ୍ୱ ଦେଇ ଆସିଛି, ତାହା ହେଉଛି ପିଲାର ସ୍ୱାଧୀନତା, - ଯେପରିକି ପିଲା ପ୍ରାୟ ଆଦୌ ଅନୁଭବ କରିବନାହିଁ ଯେ ତାକୁ ସ୍କୁଲଘରର ଚାରିକାନ୍ଥ ଭିତରେ ବନ୍ଦୀ କରି ରଖାଯାଇଛି ଏବଂ ବାଧ୍ୟ ହୋଇ କିଛି ଶିଖିବାକୁ ହେଉଛି । ଏହି କ୍ଷେତ୍ରରେ ଶିକ୍ଷାର ଜଗତରେ ପ୍ରକୃତରେ ବହୁତ କ୍ଷତି କରାଯାଇ ସାରିଛି । ବରଂ ଏପରି ହୋଇପାରିବା ଅନେକ ଅଧିକ ଭଲ ଯେ, ପିଲାମାନେ ନିଜ ହାତଗୁଡ଼ିକୁ କାମରେ ଲଗାଇ କିଛି କରୁଥିବେ, ଏବଂ ସେତେବେଳେ ସରସ କାହାଣୀଗୁଡ଼ିକର ମାଧ୍ୟମରେ ସେମାନଙ୍କୁ ବିଷୟଗୁଡ଼ିକୁ କହି ଦିଆ ଯାଉଥିବ । ମୋ' ପିଲାମାନଙ୍କୁ ଖରାମାସ ମାନଙ୍କରେ ମୁଁ ବାହାରକୁ ଖୋଲା କ୍ଷେତ ଓ ପ୍ରାନ୍ତରଆଡ଼କୁ ସାଙ୍ଗରେ ନେଇଯାଏ ଓ ସେମାନଙ୍କୁ ନାନାବିଧ କେତେ କ'ଣ କହିବାରେ ଲାଗିଥାଏ । ତିନି ଚାରିବର୍ଷ ହୋଇଥିବା ସମୟରେ ଯେତେବେଳେ ପିଲାଏ ପ୍ରଥମ କରି ପାଠ ପଢ଼ି ଆସନ୍ତି, ମୁଁ ସେତେବେଳେ ସେମାନଙ୍କୁ ବାଇବେଲ୍‌ର କାହାଣୀମାନ ଶୁଣାଏ । ହଁ, ପିଲାମାନେ ଶୁଣୁଥାଆନ୍ତି ଓ ହଜାର ହଜାର ପ୍ରଶ୍ନ ବି ପଚାରୁଥାଆନ୍ତି । ପିଲାମାନେ ମଧ୍ୟ ନିଜେ ଅଙ୍ଗେ ନିଭାଇଥିବା କେତେ କେତେ କାହାଣୀ ମୋତେ କହିବାରେ ଲାଗିଥାନ୍ତି । ଏହାରି ଦ୍ୱାରା ହିଁ ଶିକ୍ଷାଦାନ ଓ ଶିକ୍ଷାଗ୍ରହଣର ଏକ ସ୍ୱାଭାବିକ ବାତାବରଣ ସୃଷ୍ଟି ହୋଇଯାଏ ଓ ପିଲାମାନେ କେଡ଼େ ସହଜରେ ମୋ'ଠାରୁ ଶୁଣୁଥିବା କଥାଗୁଡ଼ିକୁ ମନେ ରଖି ନିଅନ୍ତି ।''

ଏବଂ, ଲେଖାଟିର ଉପସଂହାରରେ ଏକଥାଟି ମଧ୍ୟ ରହିଥିଲା: ''ମୁଁ ଜଣେ ଘରୋଇ ଶିକ୍ଷକ ହୋଇ କାର୍ଯ୍ୟ କରୁଛି । ଯେଉଁମାନେ ମୋତେ ନିଯୁକ୍ତ କରି ରଖିଛନ୍ତି, ସେମାନେ ଶିକ୍ଷା ବିଷୟରେ ରାମ ବିଷ୍ଟୁ କିଛି ବୁଝିନଥିଲେ ମଧ୍ୟ ତଥାପି କହୁଛନ୍ତି ଯେ ପିଲାମାନଙ୍କୁ ପାଠବହିରୁ ଅବଶ୍ୟ ଘୋଷି ମୁଖସ୍ଥ କରିବାକୁ ହେବ । ଏପରି କହିବାର ଏକମାତ୍ର କାରଣ ହେଉଛି ଯେ ଏହା ହେଉଛି ସେମାନଙ୍କର ନିର୍ଦ୍ଦେଶ । କର୍ତ୍ତାମାନେ ବହିଟାକୁ ଘୋଷି ମୁଖସ୍ଥ କରିବା ଉପରେ କାହିଁକି ଏତେ ବେଶୀ ଗୁରୁତ୍ୱ ଦେଉଛନ୍ତି ! ଏବଂ, ସେମାନେ ଯେ ବିହିତ ପ୍ରଶିକ୍ଷଣ ପାଇ ଆସିଥିବା ଜଣେ ଶିକ୍ଷକଙ୍କୁ ଏହିଭଳି ନିର୍ଦ୍ଦେଶଟିଏ ଦେଉଛନ୍ତି, ସେମାନେ ତାକୁ ବର୍ଷକୁ ୩୦ଟି ରୌପ୍ୟମୁଦ୍ରା ଦେଇ କିଣି ଆଣିଥିବାରୁ ଏପରି କରୁଛନ୍ତି କି ? ସେମାନେ ନିର୍ଦ୍ଦେଶ ଦେଉଛନ୍ତି, ଆଇନ୍ ଏହିପରି କହୁଛି ବୋଲି ଦର୍ଶାଉଛନ୍ତି ଏବଂ ତାହାକୁ ମାନିବାକୁ ହେବ ବୋଲି ଦାବୀ କରୁଛନ୍ତି ଓ ଭୟ ବି ଦେଖାଉଛନ୍ତି । ଯଦି ତାହାର କୌଣସି ଫଳ ନଫଳିଲା, ତେବେ ସେମାନେ ଅଭିଯୋଗପର୍ଦ୍ଦ ଲେଖି ଆହୁରି ଉପରକୁ ପଠାଉଛନ୍ତି । ଏବଂ, ଉପରଟା ମଧ୍ୟ ରାୟ ଦେଉଛି ଯେ, ନିୟମ ଅନୁସାରେ କାମ ନକଲେ କାହାକୁ କଦାପି ଶିକ୍ଷକପଦରେ ରଖା ଯିବନାହିଁ । ଯଦି ଶିକ୍ଷକପଦରେ ଥାଇ କେହି ଏପରି ଅମାନ୍ୟପଣ କରିବ, ତେବେ ତାକୁ ସେହି ପଦରୁ ବାହାର କରି ଦିଆଯିବ । ମାତ୍ର ଏଥିରେ

ଦେଶର ମଙ୍ଗଳ ହେବ କି ? ଏଥିରେ ଯଥାର୍ଥ ଶିକ୍ଷାର କ୍ଷେତ୍ରରେ କୌଣସି ଅଗ୍ରଗତି ହୋଇ ପାରିବ କି ?'' ସେହିପରି ଏକ ଦ୍ୱିତୀୟ ଲେଖାରେ ଶ୍ରୀଯୁକ୍ତ କଲ୍‌ଲ୍ ଲେଖିଥିଲେ, ''ମୁଁ ଖୁବ୍ ଆଶା କରୁଛି ଯେ, ମୁଁ ବହିଗୁଡ଼ିକୁ ବ୍ୟବହାର କରାଯିବାର ବିରୋଧ କରୁଛି ବୋଲି ସେମାନେ କଦାପି ବୁଝିବେ ନାହିଁ । ମାତ୍ର, ଯେଉଁଭଳି ପ୍ରଣାଳୀରେ ପିଲାମାନଙ୍କ ପାଖରେ ଆମ ଧର୍ମର ବାର୍ତ୍ତାଗୁଡ଼ିକୁ ନେଇ ପହଞ୍ଚାଯାଉଛି, ସେମାନଙ୍କ ଆଗରେ ଭାଷଣ ଆକାରରେ ଅଜାଡ଼ି ଦିଆଯାଉଛି ଏବଂ ସେଗୁଡ଼ିକୁ ଘୋଷି ମୁଖସ୍ଥ କରି ରଖିବାପାଇଁ ସେମାନଙ୍କୁ କୁହାଯାଉଛି, ମୁଁ ସେହି ପ୍ରଣାଳୀକୁ ହିଁ କ୍ଷତିକାରକ ବୋଲି ଭାବୁଛି ଓ ତେଣୁ ତାହାର ବିରୋଧ କରୁଛି ।''

ସେହି ବର୍ଷ ହିଁ କଲ୍‌ଲ୍ ଆଉଗୋଟିଏ ପରିବାରରେ ରହି ଶିକ୍ଷକତା କଲେ ଓ ଏହି ପ୍ରଥମ ପରିବାରଟିକୁ ଛାଡ଼ିଦେଲେ । ସେ କର୍ତ୍ତାମାନଙ୍କର କଥାକୁ ମାନି ନେଇଥିଲେ ହୋଇଥାନ୍ତା ବୋଲି ପ୍ରଥମ ପରିବାର ବିଚାର କରୁଥିଲେ । ମାତ୍ର କଲ୍‌ଲ୍ ତାହାକୁ ସ୍ୱୀକାର କରି ପାରିଲେନାହିଁ । ତାଙ୍କର ହିତୈଷୀମାନେ ମଧ୍ୟ ତାଙ୍କୁ ଏପରି ଜିଦ୍ ନକରିବାକୁ ତାଙ୍କୁ ପ୍ରବର୍ତ୍ତାଇ ଥିଲେ । ମାତ୍ର କଲ୍‌ଲ୍ ମାନି ପାରିଲେନାହିଁ । ନିଜର ପ୍ରତିକ୍ରିୟାକୁ ବ୍ୟକ୍ତ କରି କହିଥିଲେ, ''ନାଇଁ, ମାନିନେଲେ ମୁଁ ଏପରି ବାଧ୍ୟ ଭୁଲମଣିଷଟିଏ ହୋଇଯିବି ଯେ, ଅନ୍ୟ ସମସ୍ତଙ୍କ ଭିତରେ ଯାଇ ପଡ଼ିଯିବି ଓ ଆଉ ଆଦୌ ବାରିହୋଇ ପାରିବିନାହିଁ।'' ସିଏ ତା'ପରେ କେତେ ଜାଗାରେ ରହିଥିବା ସାଧାରଣ ପାଠଶାଳାରେ ମଧ୍ୟ ଏକ ନିଯୁକ୍ତି ପାଇବା ସକାଶେ ଚେଷ୍ଟା କରିଥିଲେ । ମାତ୍ର, ତାଙ୍କୁ ଗ୍ରହଣ କରିବାକୁ କେହି ରାଜୀ ହୋଇନଥିଲେ । ଏକମାତ୍ର କାରଣ ହେଉଛି ଯେ, ସିଏ ଯେଉଁଠାରେ ରହିବେ, ସେଠାରେ ପିଲାମାନଙ୍କୁ କଦାପି ପ୍ରଚଳିତ ପାଠ୍ୟପୁସ୍ତକଟିକୁ ଘୋଷିବାକୁ ଦେବେନାହିଁ । ତେଣୁ, ତାଙ୍କୁ ଆଉ କିଏ କ'ଣପାଇଁ ଗ୍ରହଣ କରିଥାନ୍ତା ? ସବୁବେଳେ କଲ୍‌ଲ୍ ସେହି ଗୋଟିଏ ଉତ୍ତର ହିଁ ଦେଇଥିଲେ : ''ସେକଥା ମୁଁ ମୋଟେ କରିବିନାହିଁ, ଯେଉଁଠି ରହିଲେ ମଧ୍ୟ କରିବିନାହିଁ ।''

୧୮୪୦ ସେପ୍ଟେମ୍ବର ମାସରେ ଜଣେ ପାଦ୍ରୀ ତାଙ୍କର ସରକାରୀ ପାଦ୍ରୀପଦରୁ ଅବ୍ୟାହତି ନେଲେ ଏବଂ ତା'ପରେ ଜଣେ ମିଶନାରୀ ହୋଇ ଖ୍ରୀଷ୍ଟିଆନ୍ ଧର୍ମ ପ୍ରଚାର କରିବା ସକାଶେ ମଧ୍ୟଏସିଆ ଯିବାକୁ ସ୍ଥିର କରିଥିଲେ । ତା' ପୂର୍ବରୁ ଆବଶ୍ୟକ ପ୍ରସ୍ତୁତିମାନ କରିବାଲାଗି ତାଙ୍କୁ କିଛିଦିନ ରାଜଧାନୀ କୋପେନ୍‌ହେଗେନ୍‌ରେ ରହିବାକୁ ହୋଇଥିଲା । ସପରିବାର ଏହି ଯାତ୍ରାରେ ବାହାରୁ ଥିବାରୁ ସିଏ ଜଣେ ପରିକର ସାଙ୍ଗରେ ନେଇ ଯିବାକୁ ଇଚ୍ଛା କରୁଥିଲେ । ଏବଂ, ସେହି କାର୍ଯ୍ୟ ନିମନ୍ତେ କ୍ରିଷ୍ଟେନ୍ କଲ୍‌ଲ୍ ମନୋନୀତ ହେଲେ । ଅର୍ଥାତ୍, ତାଙ୍କୁ ମଧ୍ୟ ରାଜଧାନୀରେ ଆସି ରହିବାକୁ ହୋଇଥିଲା । ସେହି ରହଣିକାଳରେ ସିଏ ମଧ୍ୟ ନିଜକୁ ଏକାଧିକ ପ୍ରକାରେ ପ୍ରଶିକ୍ଷିତ କରାଇ ନେଇଥିଲେ । ବହି ବାନ୍ଧିବା କାମଟିକୁ ଶିଖିନେଲେ । ପୂର୍ବରୁ ପିଲାମାନଙ୍କୁ ପାଠ ପଢ଼ାଉଥିବା ସମୟରେ ମଧ୍ୟ ସେ

ପିଲାମାନଙ୍କର ବହିଗୁଡ଼ିକୁ ନିଜେ ବାନ୍ଧି ଦେଉଥିଲେ ଓ ସେମାନଙ୍କ ପାଇଁ କାଗଜରେ କେତେପ୍ରକାର ଖେଳନା ଓ ଆଉ ପଦାର୍ଥ ମଧ୍ୟ ତିଆରି କରି ଦେଉଥିଲେ। ବର୍ତ୍ତମାନ ସେହି ଧନ୍ଦାଟିକୁ ପକ୍କା କରିନେବାର ସୁଯୋଗଟିଏ ମିଳିଗଲା । ବିଦେଶଯାତ୍ରା ପୂର୍ବରୁ ଥରେ ନିଜ ପିତାମାତାଙ୍କୁ ଭେଟି ଆସିଲେ ଓ ବନ୍ଧୁମାନଙ୍କ ଠାରୁ ବିଦାୟ ନେଲେ। ବନ୍ଧୁମାନେ ଏଥର ଗୋଟିଏ ନୂଆ କଥା ଲକ୍ଷ୍ୟ କରି ପାରିଥିଲେ ଯେ କଲ୍‌ଲ୍ ପିଲା ଏବଂ ପିଲାଙ୍କର ପାଠଶାଳା ବ୍ୟତୀତ କଥାବାର୍ତ୍ତାରେ ଅନ୍ୟ କୌଣସି ବିଷୟ କ୍ୱଚିତ୍ ପକାଉଥିଲେ। ସତେ ଯେପରି ସିଏ ଅନ୍ୟ ଏକ ପୃଥିବୀରେ ଯାଇ ପ୍ରବେଶ କରିଛନ୍ତି ଓ ସେଠାରେ ପ୍ରକୃତରେ ନୂତନ କିଛିର ସନ୍ଧାନ ପାଇଛନ୍ତି, ତାଙ୍କଠାରେ ତାହାରି ସୂଚନା ହିଁ ମିଳୁଥିଲା ।

ଏହି ଅବସରରେ ହିଁ ତାଙ୍କର ବିଶପ ନିକୋଲାଇ ଗ୍ରୁଣ୍ଡ୍‌ଭିଗ୍‌ଙ୍କ ସହିତ ସାକ୍ଷାତ ପରିଚୟ ହୋଇଥିଲା। ଶ୍ରୀ ଗ୍ରୁଣ୍ଡ୍‌ଭିଗ୍ ଗୀର୍ଜାରେ ଦେଉଥିବା ପ୍ରବଚନଗୁଡ଼ିକୁ ସେ ଅତ୍ୟନ୍ତ ନିୟମିତ ଭାବରେ ଶୁଣିବାକୁ ଯାଉଥିଲେ। ୧୮୪୩ ମସିହା ଅକ୍ଟୋବର ପହିଲାଦିନ ପାଦ୍ରୀ ପରିବାର ସହିତ ତାଙ୍କର ଜଳଯାତ୍ରା ଆରମ୍ଭ ହୋଇଥିଲା। ତା'ପରେ ସ୍ଥଳଭାଗରେ ବର୍ଲିନ୍, ପ୍ରାଗ୍, ଭିଏନା ଦେଇ ସେମାନେ ଡାନିଉବ୍ ନଦୀରେ ପୁନର୍ବାର ଜଳଯାତ୍ରା କଲେ ଏବଂ କୃଷ୍ଣସାଗର ଅତିକ୍ରମ କରି ତୁରସ୍କର କନ୍‌ଷ୍ଟାଣ୍ଟିନୋପେଲ୍‌ରେ ପହଞ୍ଚିଲେ। ଏକ ପରିବାରର ପରିକର ହିସାବରେ ଶ୍ରୀ କଲ୍‌ଲ୍‌ଙ୍କୁ ବହୁତ କିଛି କରିବାକୁ ପଡୁଥିଲା। ତଥାପି, ତାଙ୍କର ଆଖି ଏବଂ କାନ ସର୍ବଦା ଖୋଲା ହିଁ ହୋଇ ରହିଥିଲା ଏବଂ ସେ ଅଭିଜ୍ଞତା ରୂପେ ବହୁତ କିଛି ସଂଗ୍ରହ କରି ପାରିଥିଲେ। ନିଜ ଡାଏରୀରେ ସେଗୁଡ଼ିକୁ ଲେଖି ରଖୁଥିଲେ। ପିତାମାତା ତଥା ବନ୍ଧୁମାନଙ୍କୁ ଲେଖୁଥିବା ଚିଠିଗୁଡ଼ିକରେ ମଧ୍ୟ ସେସବୁର ଆଭାସ ଦେଉଥିଲେ। ପାଦ୍ରୀ ତୁରସ୍କର ସ୍ମିର୍ଣ୍ଣା ସହରର ନିକଟରେ ଥିବା ଗୋଟିଏ ଗାଆଁରେ ନିଜର ପ୍ରଚାରକେନ୍ଦ୍ର ସ୍ଥାପନ କଲେ ଓ ସେହିଠାରେ ରହିଲେ। କଲ୍‌ଲ୍ ପାଦ୍ରୀଙ୍କର ପିଲାମାନଙ୍କୁ ପାଠ ପଢ଼ାଇଲେ ଓ ଜଣେ ପରିକର ହିସାବରେ ତାଙ୍କୁ ସେହି ଗୃହସଂସାରର ସକଳ କାର୍ଯ୍ୟ ତୁଲାଇବାକୁ ପଡୁଥିଲା । ଏହିପରି ଦେଢ଼ବର୍ଷ ଅତିବାହିତ ହୋଇଯିବା ପରେ ୧୮୪୪ ମାର୍ଚ୍ଚ ମାସରେ ସେ ସ୍ମିର୍ଣ୍ଣା ସହରକୁ ଆସି ନିଜର ଗୋଟିଏ ସ୍ୱତନ୍ତ୍ର ଘର ଭଡ଼ାନେଇ ରହିଲେ ଏବଂ ନିଜକୁ ଜଣେ ବହିବନ୍ଧାଳିର ପରିଚୟ ଦେଇ କାମଟିଏ ଖୋଜିଲେ। କାମଟିଏ କ'ଣ ସହଜରେ ମିଳେ ? ଅତ୍ୟନ୍ତ ଅଭାବ ଭିତରେ ତାଙ୍କୁ କେବଳ ଅପେକ୍ଷା କରିବାକୁ ପଡୁଥିଲା। ''ପୂରା ସତକଥା ହେଉଛି ଯେ ଏହି ସହରରେ ବହିବନ୍ଧାଳି ହିସାବରେ ମୋ'ଠାରୁ କେହି ଅଧିକ ଦକ୍ଷ କାରିଗର ନାହାନ୍ତି'' ଘରକୁ ଦେଇଥିବା ଗୋଟିଏ ଚିଠିରେ ସେ ଏକଥା ଲେଖିଥିଲେ। ଅନ୍ୟମାନଙ୍କ ତୁଳନାରେ ସେ ଶସ୍ତାରେ ମଧ୍ୟ ବହି ବାନ୍ଧି ଦେଉଥିଲେ। ମାତ୍ର, ତଥାପି ସ୍ଥାୟୀଭାବରେ କାମଟିଏ ମିଳିଲାନାହିଁ ଓ ପାଖରେ ଥିବା ପଇସା କ୍ରମେ ସରି ସରି ଆସୁଥିଲା ।

ଦିନେ କଲ୍‌ଲ୍ ଘରେ ଥାଆନ୍ତି, ଜଣେ ଗ୍ରୀକ୍‌ଭାଷାଭାଷୀ ବ୍ୟକ୍ତି ଆସି ପହଞ୍ଚିଲା । ସେଦିନ ଘରେ ଖାଇବାପାଇଁ କିଛି ନଥାଏ । ବାହାରକୁ ଗଲେ ତ କିଛି ସାମଗ୍ରୀ କିଣିକରି ଆଣନ୍ତେ । ମାତ୍ର ତାହା ହୋଇ ପାରୁନଥାଏ; କାଳେ କେହି ଆସି କୌଣସି କାମର ବରାଦ ଦେଇ ସିଏ ନଥିବା ସମୟରେ ପହଞ୍ଚିଯିବ; କିଛି ରୋଜଗାର କରିବାର ସମ୍ଭାବନାଟି ହାତଛଡ଼ା ହୋଇଯିବ । ତେଣୁ ସେ ଲୋକଟିକୁ କିଛି ପଇସା ଦେଇ ଖାଇବା ସାମଗ୍ରୀ ଆଣିବାକୁ ପଠାଇଲେ । ଲୋକଟି ପଇସା ନେଇ ଗଲା, ଆଉ ଫେରିଲା ନାହିଁ । ଏହିପରି ସ୍ଥିତି ଅଧିକରୁ ଅଧିକ ଖରାପ ହେବାରେ ଲାଗିଥାଏ । ପାଖରେ ପଇସା ନଥାଏ ଓ ଦୁଇଦିନ ହେଲା ସିଏ ଆଦୌ କିଛି ଖାଇନଥାନ୍ତି । କାହାକୁ ସେଠି ଚିହ୍ନିଛନ୍ତି ଯେ କରଜ ମାଗି ଯିବେ ! ଏବଂ, ଯାହା ହେବ ହେଉ ପଛକେ, ଭିକ ମାଗିବେ ନାହିଁ । ତେଣୁ, ମରିବା ବ୍ୟତୀତ ଆଉ କୌଣସି ବାଟ ଦିଶୁନଥାଏ । ଏହିପରି ବଡ଼ ନିରାଶ ହୋଇ ସିଏ ସମୁଦ୍ର ଆଡ଼କୁ ଗଲେ । ସେଠାରେ କିଛି କାଳ ବସିଛନ୍ତି, ହଠାତ୍ ଏହି ଭାବନାଟି ଆସିଲା ଯେ ଜଗତକର୍ତ୍ତା ଈଶ୍ୱର ମନୁଷ୍ୟମାନଙ୍କୁ ଭଲ ପାଆନ୍ତି । ସେଉଠୁ ସେ ନିଜକୁ ନିଜେ ପଚାରିଥିଲେ, ''ତୁ ଏବେ ମଧ୍ୟ ସେକଥା ବିଶ୍ୱାସ କରୁଛୁ ତ ?'' ଭିତରୁ 'ହଁ' ବୋଲି ଉତ୍ତର ଆସିଥିଲା ।

ତେଣୁ ସେ ସେହି ଈଶ୍ୱରଙ୍କୁ ପ୍ରାର୍ଥନା କରିବେ, ରଡ଼ି କରି ତାଙ୍କୁ ହିଁ ଡାକିବେ । ଏଡ଼େ ବଡ଼ ଦରକାର ସମୟରେ ସେ ତାଙ୍କୁ ଅବଶ୍ୟ ଡାକିବେ, ଦୁଃଖ ଜଣାଇବେ । ମାତ୍ର ତାଙ୍କ ପାଟିରୁ ଗୋଟିଏ ବୋଲି ଶବ୍ଦ ବାହାରିଲା ନାହିଁ । ଆଖି ଆଗରେ ସବୁ ଝାପ୍‌ସା ଝାପ୍‌ସା ଦେଖାଗଲା । ହଁ, ନିଶ୍ଚୟ ମୃତ୍ୟୁ ଆସି ପହଞ୍ଚିବା ବେଳ ହୋଇଗଲା । ହଠାତ୍ ଚେତା ଆସିଗଲା ପରି ଲାଗିଲା; କିଏ ଜଣେ ଆଗରେ ଛିଡ଼ା ହୋଇଛି, ତାଙ୍କୁ ସୁଇଡ଼ିଶ୍ ଭାଷାରେ କ'ଣ କହୁଛି । ସିଏ ହେଉଛନ୍ତି ସୁଇଡ଼େନ୍‌ରୁ ସ୍ମିର୍ଣ୍ଣା ଆସିଥିବା ଗୋଟିଏ ଜାହଜର କପ୍ତାନ, - କଲ୍‌ଲ୍‌ଙ୍କୁ ପଚାରୁଥାନ୍ତି, ସିଏ ଏପରି କାହାକୁ ଜାଣିଛନ୍ତି ଯିଏକି ତାଙ୍କପାଇଁ କିଛି ବହି ବାନ୍ଧିଦେଇ ପାରିବ ? କଲ୍‌ଲ୍ ଆନନ୍ଦରେ ଡ଼େଇଁପଡ଼ିଲା ପରି ଅନୁଭବ କଲେ । ରାସ୍ତା ମିଳିଗଲା, ଜୀବନଟା ପୁଣି ଆଲୋକିତ ହୋଇ ଉଠିଲା । ସିଏ ଚିନ୍ତା କରୁଥିଲେ, ''ଡେନ୍‌ମାର୍କରେ କେହି କଦାପି ଅନାହାର ହେତୁ ମରନ୍ତା ନାହିଁ । କାହାର ଦାରୁଣ ଅଭାବ ଘଟିଲେ ସିଏ ଦରିଦ୍ର-ସହାୟତା ବିଭାଗରେ ଯାଇ ପହଞ୍ଚିଯିବ ଓ ତାକୁ ସହାୟତା ଅବଶ୍ୟ ମିଳିବ । ମାତ୍ର ଏଠି ତୁରସ୍କରେ ଅନାହାରରେ ମରିବାପାଇଁ ବି ଅନୁମତି ଦିଆଯାଇଛି ଏବଂ ସେଥିପାଇଁ ଆଦୌ କାହାରି ମୁଣ୍ଡ ବଥାଉନାହିଁ ।''

ଆଉ ଅସୁବିଧା ହୋଇନାହିଁ । ସେଠାରେ ଥିବା ଇଂଲଣ୍ଡର ରାଜପ୍ରତିନିଧି ତାଙ୍କ ପାଇଁ ସ୍ଥାୟୀ କାମଟିଏ ଜୁଟାଇ ଦେଇଥିଲେ । ତାଙ୍କର ବ୍ୟବସାୟ କ୍ରମେ ବଢ଼ିବାକୁ ଲାଗିଲା ଓ ନିଜ ସହିତ ସିଏ ପାଞ୍ଚ ଛଅଜଣ ଯାଏ ସାହାଯ୍ୟକାରୀ ରଖିପାରିଲେ । ଦିନେ ଅର୍ଜନ

କରିଥିବା ସ୍ୱର୍ଣ୍ଣମୁଦ୍ରାଟିଏ ହାତପାପୁଲିରେ ଧରି ତାହାରି ଆଡ଼କୁ ଅନାଇ କଲ୍‌ଲ୍ କହିବାକୁ ଲାଗିଲେ, ''ଏହି ମୁଦ୍ରାଟିର ଏତେ ବେଶୀ ଶକ୍ତି ବୋଲି ମୁଁ ଆଗରୁ ମୋଟେ ବିଶ୍ୱାସ କରିନଥିଲି ।'' ସିଏ ଗୋଟିଏ ଥାନରେ ଲେଖିଛନ୍ତି ! '' ସ୍ୱର୍ଣ୍ଣା ସହରରେ ମୁଁ ଦୀର୍ଘ ପାଞ୍ଚବର୍ଷ ଥିଲି ଏବଂ ପ୍ରତିଦିନ ଡେନ୍‌ମାର୍କର ପିଲାମାନଙ୍କ କଥା ଭାବୁଥିଲି । ବିଚରା ସେମାନେ କେଡ଼େ ଦୁଃଖରେ ବହିଗୁଡ଼ାକୁ ମୁଖସ୍ଥ କରିବାକୁ ବାଧ୍ୟ ହେଉନଥିବେ !'' ଏବଂ, ''ସେଠାରେ ମୁଁ ତିନୋଟି କଥା ଶିଖି ପାରିଥିଲି, ଯାହାଦ୍ୱାରା କି ନିଜର ଜୀବନରେ ମୋତେ ବହୁତ ବଳ ମିଳିଲା । ପ୍ରଥମଟି ମୋତେ ଅଳପରେ ସନ୍ତୁଷ୍ଟ ରହିବାକୁ ଶିକ୍ଷା ଦେଇଥିଲା । ଜୀବନରେ ସେହି ଶିକ୍ଷାଟି ମୋ'ର ବହୁତ କାମରେ ଲାଗିଛି । ଦ୍ୱିତୀୟତଃ, ସମଗ୍ର ମନୁଷ୍ୟସମଷ୍ଟିକୁ ମୁଁ ଗୋଟିଏ ଉତ୍ସରୁ ସମ୍ଭବ ହୋଇଥିବା ଭାଇଭଉଣୀଙ୍କ ପରି ଅନୁଭବ କରି ପାରିଲି, ସେମାନେ ସମସ୍ତେ ସେହି ଗୋଟିଏ ବିଧାତାଙ୍କର ବିଧାନଦ୍ୱାରା ହିଁ ଏହି ପୃଥିବୀରେ ଆତଯାତ ହେଉଛନ୍ତି । ଏହି କଥାଟିକୁ ବେଳେବେଳେ ପାସୋରି ପକାଇବାର ମଧ୍ୟ ସର୍ବଦା ଆଶଙ୍କା ରହିଛି । ଏବଂ, ସବାଶେଷରେ ମୁଁ ନୀରବ ହୋଇ ରହିବାକୁ ମଧ୍ୟ ଶିକ୍ଷା କରିଥିଲି ।

''ସିର୍ଣ୍ଣାକୁ ଯାତ୍ରା କରିବା ପୂର୍ବରୁ ମୁଁ କେବଳ କଥା କହିବାରେ ଲାଗିଥିଲି । କଥା କହି କହି ନିଜକୁ ସତେଅବା ଖୋଳ କରି ଦେଇଥିଲି । ତେଣୁ, ବୋଧହୁଏ ଆଉ ଅଧିକ କିଛି କହିବାର ପ୍ରକୃତରେ ନଥିଲା । ମାତ୍ର ଏଠାକୁ ଆସି ମୋ'ର ଅତି ଉତ୍ତମ ଶିକ୍ଷାଟିଏ ହେଲା । ମୁଁ ଅନ୍ତତଃ କିଛି ବର୍ଷ ନିମନ୍ତେ ଚୁପ୍ ରହିପାରିଲି, ଚିନ୍ତା କଲି, ସଞ୍ଚୟ କରି ଶିଖିଲି । ଏପରି ହେବାଦ୍ୱାରା ଭାରି ଭଲ ହେଲା । ମୋ' ନିମନ୍ତେ ତାହା ଖୁବ୍ ଆବଶ୍ୟକ ଥିଲା । ଆଗରୁ ବୟସ ଅଳପ ଥିଲା ଓ ମୁଁ ବଡ଼ ଅପରିପକ୍ୱ ହୋଇ ରହିଥିଲି ।''

ଏହାପରେ ଘରବାହୁଡ଼ା ଆରମ୍ଭ ହେଲା । ୧୮୪୭ ଗ୍ରୀଷ୍ମକାଳରେ କଲ୍‌ଲ୍ ସ୍ୱର୍ଣ୍ଣା ଛାଡ଼ିଲେ । ବର୍ତ୍ତମାନ ତାଙ୍କୁ ୩୧ ବର୍ଷ ହୋଇଥାଏ । ଜାହାଜରେ ଆଡ୍ରିଆଟିକ୍ ଉପସାଗର ପାରିହୋଇ ସେ ଟ୍ରିଏଷ୍ଟ୍‌ରେ ଆସି ପହଞ୍ଚିଲେ ଓ ସେଠାରୁ ସ୍ଥଳପଥ ଧରି ଡେନମାର୍କ୍ ଆସିଲେ । ଦୀର୍ଘ ଦୁଇଶହ ମାଇଲ୍ ପଥକୁ ସେ ପାଦରେ ଚାଲି ଚାଲି ପାର ହୋଇଥିଲେ । ବାପାମାଆଙ୍କୁ ଚିଠିରେ ଲେଖିଥିଲେ, ''ଏହି ଯାତ୍ରାରେ ମୁଁ ଡାକବାହକ ଗାଡ଼ୀର ସାହାଯ୍ୟ ନେଇଥିଲେ ମୋ'ର କମ୍ ଖର୍ଚ୍ଚ ହୋଇଥାନ୍ତା । ମାତ୍ର, ଆଠ ଦଶଦିନରେ ମୁଁ ଘରେ ଯାଇ ପହଞ୍ଚି ପାରିଥାନ୍ତି । ମାତ୍ର ବାଟରେ ସବୁକିଛିକୁ ରହି ରହି ଦେଖି ଦେଖି ଯିବାକୁ ଖୁବ୍ ଇଚ୍ଛା ହେଲା । ମୁଁ ସବୁବେଳେ ତାହାହିଁ ଇଚ୍ଛା କରି ଆସିଛି । '' ଟ୍ରିଏଷ୍ଟ୍ ବନ୍ଦରରେ ଓହ୍ଲାଇ କଲ୍‌ଲ୍ ଗୋଟିଏ ଠେଲାଗାଡ଼ୀ କିଣିଲେ, ନିଜର ସବୁ ଜିନିଷପତ୍ରକୁ ସେଥିରେ ଲଦି ପଦବ୍ରଜରେ ବାହାରି ପଡ଼ିଲେ । କେତେ କ'ଣ ଦେଖିଲେ, କେତେ କ'ଣସବୁ ଶୁଣିଲେ । ପରେ ପିଲା ଓ ତରୁଣମାନଙ୍କୁ ପାଠ ପଢ଼ାଇବାବେଳେ ସେସବୁ ଖୁବ୍ କାମରେ ଆସିଥିଲା । ସେପ୍ଟେମ୍ବର ମାସରେ ନିଜର ଜନ୍ମସ୍ଥାନ

ଥ୍ୟେଦ୍‌ଠାରେ ପହଞ୍ଚିଲେ । ବାପାମାଆଙ୍କ ପାଖରେ ପୂରା ମାସଟାଏ ରହିଲେ । ବେଳେ ବେଳେ ସିଏ ଭାବୁଥିଲେ ଯେ ଭାଗ୍ୟର ସନ୍ଧାନରେ ଆମେରିକା ପଳାଇଯିବେ । ନା, - ନିଜ ଦେଶରେ ହିଁ ରହିବେ, ଶିକ୍ଷକ ହେବେ । ତେଣୁ ଥାନଟିଏ ଖୋଜି ଜଣକ ଘରେ ସେ ଘରୋଇ ଶିକ୍ଷକ ହୋଇ ରହିଲେ, ସେଠାରେ ତିନୋଟି ପିଲାଙ୍କୁ ପାଠ ପଢ଼ାଇଥିଲେ । ଗୃହସ୍ୱାମୀ ନୂତନ ଚିନ୍ତାଧାରାର ମନୁଷ୍ୟ ଥିଲେ, ତେଣୁ ଏଠାରେ ତାଙ୍କୁ ଆଉ ବହି ମୁଖସ୍ଥ କରାଇବାକୁ ପଡ଼ିନଥିଲା । ୧୮୪୮ ମସିହାରେ ଯୁଦ୍ଧ ଲାଗିଲା ଏବଂ ରାଷ୍ଟ୍ରର ନିୟମ ଅନୁସାରେ ତାଙ୍କୁ ସେଥିରେ ସୈନ୍ୟ ହୋଇ ଯିବାକୁ ବି ପଡ଼ିଥିଲା ।

ଯୁଦ୍ଧରୂପକ ଧନ୍ଦାରେ ତାଙ୍କର ମୋଟେ ମନ ନଥିଲା । ଭଲ କରି ବନ୍ଧୁକ ମାରି ମଧ୍ୟ ଆସିଲାନାହିଁ ଓ ଯାବତୀୟ କାର୍ଯ୍ୟକ୍ରମରେ ସେ ଅନ୍ୟମାନଙ୍କର ତୁଳନାରେ କୋଉ ପଛରେ ଯାଇ ରହୁଥିଲେ । ସେହି ସମୟର କଥାଟିଏ ରହିଛି ଯେ ଦିନେ କଲ୍ଡ଼ ଛାଉଣି ଭିତରେ ଗୋଟିଏ ସ୍ଥାନରେ ଛିଡ଼ା ହୋଇଥିଲେ । ସେହି ସମୟର ଅନୁସାରେ କ'ଣସବୁ କାର୍ଯ୍ୟ କରୁଥିଲେ । ତାଙ୍କ ବିଭାଗୀୟ ହାକିମ ଏଡ଼େ ରଡ଼ି କରି ତାଙ୍କୁ ପଚାରିଲେ, ''ଏଠାରେ ଏପରି ଠିଆହୋଇ କ'ଣ କରୁଛ ? '' ଉତ୍ତର : ''ମୁଁ ଛିଡ଼ା ହୋଇ ଭାବୁଛି ।'' ''ଭାବୁଛ ? ଜଣେ ସୈନ୍ୟର ଭାବିବା ପାଇଁ କୌଣସି ଅଧିକାର ନାହିଁ । ସିଏ କେବଳ ଆଦେଶ ପାଳନ କରିବ ।'' ସେହିପରି ଆଉଦିନେ ସିଏ ବିଳମ୍ବରେ ପ୍ୟାରେଡ୍‌ରେ ଆସି ପହଞ୍ଚିଲେ । ବିଳମ୍ବ ହେବାର କୌଣସି କାରଣ ଅଛି କି ବୋଲି କର୍ତ୍ତା ତାଙ୍କୁ ପଚାରିଥିଲେ । କୌଣସି କାରଣ ନାହିଁ ବୋଲି କଲ୍ଡ଼ ଉତ୍ତର ଦେଇଥିଲେ । ଶେଷରେ, ଯାବତୀୟ ପ୍ରକାରେ ତାଙ୍କର ଏହି ଅସଫଳତା ଦେଖି ତାଙ୍କୁ ସୈନ୍ୟମାନଙ୍କ ପାଇଁ ଖାଇବା ରାନ୍ଧିବାର କାର୍ଯ୍ୟରେ ନିଯୁକ୍ତ କରାଗଲା । ଅବଶ୍ୟ ଫୁରସତ ସମୟରେ ଓ ସନ୍ଧ୍ୟାରେ ସେ ସେମାନଙ୍କୁ କାହାଣୀ କହି ଶୁଣାଉଥିଲେ । ଏହାପରେ ସମ୍ପୂର୍ଣ୍ଣ ଅବଧିଟି ବେଶ୍ ସୁରୁଖୁରୁରେ ଅତିବାହିତ ହୋଇ ଯାଇଥିଲା । ଅବଧିଟି ପରେ କଲ୍ଡ଼ ପୁନର୍ବାର ଦକ୍ଷିଣ ଉଇଲାଣ୍ଡର ଏକ ପରିବାରରେ ଘରୋଇ ଶିକ୍ଷକ ହୋଇ ରହିଲେ । ନିଜ ପଦ୍ଧତିରେ ପାଠ ପଢ଼ାଇବାକୁ ଏଠାରେ ମଧ୍ୟ ତାଙ୍କୁ ପୂର୍ଣ୍ଣ ସ୍ୱାଧୀନତା ମିଳିଥିଲା । ଏହି ସମୟରେ ସେ ବିଶପ୍ ଗ୍ରୁଣ୍ଟ୍‌ଭିଗ୍ ଲେଖିଥିବା 'ପୃଥିବୀର ଇତିହାସ' ପୁସ୍ତକଟିକୁ ପ୍ରଥମ ଥର ପାଇଁ ପଢ଼ିବାକୁ ପାଇଥିଲେ ଏବଂ ଅତ୍ୟନ୍ତ ଅଭିଭୂତ ହୋଇଥିଲେ । ଯୁଦ୍ଧ ସରିଥାଏ, ଦେଶରେ ଏକ ନୂତନ ସଂବିଧାନ ପ୍ରବର୍ତ୍ତିତ ହେବା ଫଳରେ ରାଜା ଲୋକମାନଙ୍କ ହାତରେ ହିଁ ଅଧିକ କ୍ଷମତା ପ୍ରଦାନ କରିଥାଆନ୍ତି । ଏକ ନୂଆ ଜାଗରଣ ଖେଳି ଗଲାପରି ମନେ ହେଉଥାଏ । ସେହି ନୂଆ ପରିବେଶଟି ମଧ୍ୟରେ ହିଁ କଲ୍ଡ଼ ନିଜର ଅସଲ କ୍ଷେତ୍ର ଓ ଅସଲ ବ୍ରତଟିକୁ ଆବିଷ୍କାର କରିଥିଲେ । ନାଇଁ, ସେ ନିଜର ଦେଶ ଏହି ଡେନ୍‌ମାର୍କ୍‌ରେ ହିଁ ରହିବେ, ତରୁଣମାନଙ୍କୁ ଆଗାମୀ ଭାବଧାରାରେ ଉଦ୍‌ବୁଦ୍ଧ କରାଇବେ

ଏବଂ ସେମାନଙ୍କୁ ଏହି ଦେଶରୂପୀ ଭୂମିଟି ନିମନ୍ତେ ତିଆରି ହେବାକୁ ଶିଖାଇବେ । ଆଉ ସ୍ଥାନରୁ ସ୍ଥାନକୁ ବକ୍ତୃତା ଦେଇ ବୁଲିବେ ନାହିଁ । ବଡ଼ମାନଙ୍କର ଏକ ବିଦ୍ୟାଳୟ ଆରମ୍ଭ କରିବେ, ଅସଲ ଶିକ୍ଷାର ମଞ୍ଜିଗୁଡ଼ିକୁ ପୋତିବେ, - ଏକ ନୂଆ ମୂଳଦୁଆ ତିଆରି କରିବେ ।

ଡେନ୍‌ମାର୍କ୍ ଦେଶର ମଝି ବଡ଼ ଦ୍ୱୀପଟି ହେଉଛି ଫୁଇନ୍ (Fyn), - ସେହି ଦ୍ୱୀପଟିର ଦକ୍ଷିଣ ଭାଗରେ ଗୋଟିଏ ଜାଗା ରୁଇସ୍‌ଲିଙ୍ଗ (Ryslinge) । ସେଠା ଗୀର୍ଜାରେ ପାଦ୍ରୀ ବିଅର୍କଡାଲ୍ ଏକ ନୂତନ ବିଚାର ଓ ଭାବନାର ବ୍ୟକ୍ତି ଥିଲେ । ଏକ ଜାଗରଣଯୁକ୍ତ ଲୋକଭୂମି ଉପରେ ହିଁ ସିଏ ଖ୍ରୀଷ୍ଟିଆନ୍ ଧର୍ମସନ୍ଦେଶ ଗୁଡ଼ିକୁ ବୁଝୁଥିଲେ ଏବଂ ଗୀର୍ଜା-ଉପାସନାର ପ୍ରବଚନମାନଙ୍କରେ ତାହାର ସୂଚନା ଦେଉଥିଲେ । ଶ୍ରୋତାମାନେ ଏକ ଅଭିନବ ଆଗ୍ରହରେ ସେହି ପ୍ରବଚନଗୁଡ଼ିକୁ ଶୁଣୁଥିଲେ । ନୂଆର ବିରୋଧ ସର୍ବତ୍ର ହୁଏ, ଏଠାରେ ମଧ୍ୟ ହେଲା । ବିଶେଷ କରି ବଡ଼ ବଡ଼ ଜମିମାଲିକମାନେ ସେହି ବିରୋଧରେ ଭାଗ ନେଇଥିଲେ । ପୁରୁଣା ଗୁଳାରେ ଚାଲି ଆସିଥିବା କେତେ କୃଷକ ବି ସେମାନଙ୍କୁ ସମର୍ଥନ କରୁଥିଲେ । ବିଅର୍କ୍‌ଡାଲ୍‌ଙ୍କ ସହିତ ଚିଠିପତ୍ରର ମାଧ୍ୟମରେ ପରିଚୟ ସ୍ଥାପିତ ହେବା ପରେ କଲ୍‌ଲ୍ ପ୍ରାୟ ଏକ ନିର୍ଦ୍ଦିଷ୍ଟ ଯୋଜନାର ଚିତ୍ର ନେଇ ରୁଇସ୍‌ଲିଙ୍ଗରେ ଆସି ପହଞ୍ଚିଥିଲେ । ଏହା ହେଉଛି ୧୮୪୯ ମସିହା ନଭେମ୍ବର ମାସର ଘଟଣା । ଏକ ଆରମ୍ଭ ହିସାବରେ ପାଦ୍ରୀଙ୍କ ଘରେ ହିଁ କଳ୍ପନାର ବିଦ୍ୟାଳୟଟି ସର୍ବପ୍ରଥମ ରୂପରେଖ ଗ୍ରହଣ କଲା । ପାଦ୍ରୀଙ୍କ ନିଜ ପିଲା, ଆଖପାଖ ଚାଷୀଘରୁ ଦୁଇଜଣ ଏବଂ ଆଉ ଦୁଇଜଣ ପାଦ୍ରୀଙ୍କର ପିଲାମାନେ । ଏହି ନବଯୁବକମାନଙ୍କ ସହିତ କ୍ରିଷ୍ଟେନ୍ କଲ୍‌ଲ୍ ନୂତନ ବିଦ୍ୟାଳୟଟିର ପ୍ରାରମ୍ଭରୁ ହିଁ ଏକାଠି ରହିଲେ, ସେମାନଙ୍କର ସାଙ୍ଗ ପରି ରହିଲେ ଏବଂ ସେମାନଙ୍କ ସହିତ ଏକାଠି ଖେଳ ବି ଖେଳୁଥିଲେ । ମାତ୍ର ତଥାପି, ସିଏ ସର୍ବପ୍ରଥମେ ସେମାନଙ୍କର ଶିକ୍ଷକ ହୋଇ ହିଁ ରହିଥିଲେ ଏବଂ ସେମାନଙ୍କ ପ୍ରତି କଠୋର ହେବାର କ୍ଷେତ୍ର ଏବଂ ଅବସରମାନଙ୍କରେ ଆଦୌ କଠୋର ହେବାରେ ତ୍ରୁଟି କରୁନଥିଲେ ।

ଏହିପରି ଭାବରେ ବିଦ୍ୟାଳୟକୁ ନେଇ ପ୍ରୟୋଗଟି ଅଗ୍ରସର ହେବାରେ ଲାଗିଥାଏ । କଲ୍‌ଲ୍ ନିୟମିତ ଭାବରେ ପ୍ରତି ରବିବାର ଦିନ ଗୀର୍ଜାର ଉପାସନାରେ ଯୋଗ ଦେବାକୁ ଯାଉଥିଲେ । ସେଠାରେ ଉପାସନା ପରେ ସ୍ଥାନୀୟ କୃଷକମାନଙ୍କ ସହିତ ତାଙ୍କର ନାନାବିଧ କଥାବାର୍ତ୍ତା ହେଉଥିଲା । ଆବଶ୍ୟକ ହେଲେ ସେ ଜଣେ ଜଣେ କୃଷକଙ୍କ ଘରକୁ ଯାଇ ମଧ୍ୟ ସେମାନଙ୍କୁ ସଂଖୋଳି ଆସୁଥିଲେ । ଶିକ୍ଷାଦାନ ତଥା ଶିକ୍ଷାଗତ ସମ୍ପର୍କର ବହୁ ନୂତନ ପରିଧିର ଆବିଷ୍କାର ହୋଇ ପାରୁଥିଲା ଏବଂ ସେହି ବିଦ୍ୟାଳୟଟି ଏକ ନୂତନ ଦୃଷ୍ଟିପ୍ରସ୍ଥକୁ ପୁଞ୍ଜି କରି ଆରମ୍ଭ ହୋଇଛି ଏବଂ ଏକ ଅଭୂତପୂର୍ବ ପ୍ରୟୋଗ ଆଡ଼କୁ ମନ ବଳାଇଛି ବୋଲି କ୍ରମେ ଅଧିକରୁ ଅଧିକ ସ୍ପଷ୍ଟ ହୋଇ ବି ଯାଉଥିଲା । ସେତିକିବେଳର ଗୋଟିଏ ଚିଠିରେ

କଲ୍‌ଲ୍ ନିଜର ଜଣେ ପରିଚିତଙ୍କ ପାଖକୁ ଲେଖିଥିଲେ: ‘‘ଏଠି ଆମର ଏହି ବିଦ୍ୟାଳୟରେ ବିଦ୍ୟାର୍ଥୀମାନଙ୍କର ଜୀବନର ଅସଲ ଉତ୍ସଗୁଡ଼ିକୁ ଉନ୍ମୋଚନ କରିଦେବା ହେଉଛି ସବାବଡ଼ କାମ ଓ ସବାଆଗ କାମ । କାରଣ, ଆଗ ସେହି ଉତ୍ସଗୁଡ଼ିକ ଖୋଲିଯାଇ ପାରିଲେ ହିଁ ପ୍ରୟୋଜନୀୟ ଆଉ ସବୁକିଛି ବଳେ ସମ୍ଭବ ହୋଇ ଆସିବାକୁ ଆରମ୍ଭ କରିବ । ଏବଂ, ସେହି ଉନ୍ମୋଚନ ନିମନ୍ତେ ମୁଁ ବ୍ୟବହାର କରୁଥିବା ପଦ୍ଧତିଟି ହେଉଛି ମୁଖ୍ୟତଃ ଜଣେ କବିର ପଦ୍ଧତି, - ଏକ ଜୀବନ୍ତ ପଦ୍ଧତି, ଯାହାକି ଭିତରର ସୁପ୍ତ କ୍ଷେତ୍ରଗୁଡ଼ିକୁ ପ୍ରକୃତରେ ଜାଗୃତ କରିଆଣି ପାରିବ । ଆଉଗୋଟିଏ ପ୍ରକାରର ପଦ୍ଧତି ରହିଛି ଯାହାକି ନାନା ଜ୍ଞାନ ଓ ତଥ୍ୟକୁ ଆଣି ଛାତ୍ରର ସମ୍ମୁଖରେ ଗଦା କରି ଦେଇଯିବ, - ମାତ୍ର ଆଦୌ କୌଣସି ଉଷ୍ମତା ସୃଷ୍ଟି କରି ପାରୁନଥିବ, - ଜୀବନଟା ତଥାପି କୋଉ ଭିତରେ ଯାଇ ଶୋଇ ରହିଥିବ ।’’ ଅନୁଭବ ଓ ଅଭିଜ୍ଞତା ବଢ଼ିଲା, ସମ୍ପର୍କର ପରିଧିମାନେ ପ୍ରସାରିତ ହେବାକୁ ଲାଗିଲେ । ନୂଆ ନୂଆ ଭାବନା ଦାନା ବାନ୍ଧି କ୍ରମେ ବାସ୍ତବ ହେବାକୁ ଲାଗିଲେ । ଆପଣାକୁ ମୁକ୍ତ ଭାବରେ ନିଜ କ୍ଷେତ୍ରରେ ଉତ୍ସର୍ଗ କରିଦେଇ ପାରିବା ଓ ନିଜ ପରିଚୟର ପୃଥିବୀଟି ସହିତ ଅଧିକରୁ ଅଧିକ ଭାବରେ ଅନ୍ତରଙ୍ଗ ହୋଇ ପାରୁଥିବା, - ଏତିକି ସମ୍ଭବ ହୋଇ ପାରୁଥିଲେ ଜଣେ ଶିକ୍ଷକପାଇଁ ସମ୍ଭବତଃ ଭାବନା ବା ଶୋଚନା ନିମନ୍ତେ ଆଉ କୌଣସି ଅବକାଶ ଆଦୌ ରହେନାହିଁ ।

କଲ୍‌ଲ୍ କ୍ରମଶଃ ନିଜ ବ୍ରତଯାତ୍ରାରେ ଏପରି ଗୋଟିଏ ବିନ୍ଦୁରେ ଆସି ପହଞ୍ଚିଗଲେ, ଯେତେବେଳେ କି ନିଜପାଇଁ ଭୂମିଟିଏ ଅବଶ୍ୟ ରହିବ ବୋଲି ଇଚ୍ଛା କରି କୌଣସି ପରିବାରରେ ଜଣେ ଘରୋଇ ଶିକ୍ଷକ ହୋଇ ରହିବାଲାଗି ଆଉ କୌଣସି ପ୍ରୟୋଜନ ରହିଲାନାହିଁ । ଏଣିକି ସିଏ ନିଜର ସ୍କୁଲଟିଏ ହିଁ ଆରମ୍ଭ କରିବେ । ଘୁଳାଟିଏ ନଖୋଜି ଘୁଳାଟିଏ ସ୍ୱୟଂ ପକାଇବେ । ୧୮୫୦ ମସିହା ଆରମ୍ଭ ବେଳକୁ ପାଖରେ ବେଶ୍ ପ୍ରଶସ୍ତ ଜାଗାଟିଏ ବିକ୍ରୀ ହେଉଥିଲା । ୧୪୦୦ ରୌପ୍ୟମୁଦ୍ରା ଦେଇପାରିଲେ ସେଇଟିକୁ କିଣାହୋଇ ପାରନ୍ତା । କଲ୍‌ଲ୍‌ଙ୍କ ପାଖରେ କେବଳ ୫୦୦ ମୁଦ୍ରା ହିଁ ଥାଏ । ସେହି ତୁରସ୍ତ ରହଣି କାଳରୁ ସେ ସେତିକି ସଞ୍ଚୟ କରି ରଖିଥିଲେ । ବାହାରୁ କିଛି ସହାୟତାର ବ୍ୟବସ୍ଥା ହୋଇ ନପାରିଲେ ସେ ଜମିଟିକୁ କଦାପି ପାଇ ପାରିବେନାହିଁ । ତେଣୁ ସେ ରାଜଧାନୀ କୋପେନ୍‌ହେଗେନ୍ ଯାତ୍ରା କରି ସେ ସେଠାରେ ଏକ ବନ୍ଧୁ ଓ ଶୁଭକାଙ୍କ୍ଷୀମାନଙ୍କର ମେଳରେ ନିଜ ଅଭିଳାଷଟି ବିଷୟରେ ସବୁକଥା ବ୍ୟକ୍ତ କରିଥିଲେ । ଅନ୍ୟମାନଙ୍କ ସମେତ ବିଶପ୍ ନିକୋଲାଇ ଗ୍ରୁନ୍ଟ୍‌ଭିଗ୍‌ଙ୍କର ମଧ୍ୟ ତାଙ୍କୁ ଏହି ପ୍ରୟାସଟି ନିମନ୍ତେ ଦୃଢ଼ ସମର୍ଥନ ମିଳିଥିଲା । ସିଏ ସ୍ୱୟଂ ଏହି ଉଦ୍ଦେଶ୍ୟରେ ପଚାଶ ରୌପ୍ୟମୁଦ୍ରା ପ୍ରଦାନ କରିଥିଲେ । ସବୁମିଶି ୫୫୦ ମୁଦ୍ରା ସଂଗୃହୀତ ହୋଇଗଲା । ତା’ପରେ ନୂଆ ଘର ତିଆରି ଆରମ୍ଭ ହୋଇଗଲା । ଅର୍ଥାତ୍ ପୁରୁଣା ଆବାସଟିକୁ ଭାଙ୍ଗି ନୂଆ ଯୋଜନା ଅନୁସାରେ ଗଢ଼ିବାକୁ ପଡ଼ିଥିଲା । ଫୁରସତ ପାଇବା ମାତ୍ରକେ ନିଜେ

ଶ୍ରୀଯୁକ୍ତ କଲ୍‌ଡ୍ ମଧ୍ୟ ସେହିସବୁ କାମରେ ଲାଗି ଯାଉଥିଲେ । ନୂଆ ଘରଟି ବାସଯୋଗ୍ୟ ହୋଇ ଆସିବାକୁ ନଭେମ୍ବର ମାସଯାଏ ହୋଇଗଲା । ନୂଆ ବିଦ୍ୟାଳୟଟି ସକାଶେ ଯାବତୀୟ ପ୍ରାରମ୍ଭିକ ପ୍ରସ୍ତୁତି ପାଇଁ ଅର୍ଥ ଅବଶ୍ୟ ଲୋଡ଼ା । କଲ୍‌ଡ୍ ସରକାରଙ୍କ ଠାରୁ ସେହି ସାହାଯ୍ୟ ମାଗିବେ କି ? ମାତ୍ର, ସାହାଯ୍ୟ ମିଳିବା ପାଇଁ ସରକାର ଯେଉଁ ସ୍ଥାନୀୟ ସରକାରୀ ବ୍ୟକ୍ତିମାନଙ୍କର ମତ ଏବଂ ସମର୍ଥନ ଲୋଡ଼ିବେ, ସେମାନେ ହୁଏତ ତାଙ୍କର ବିଚାର ଏବଂ ବ୍ୟବସ୍ଥାଗୁଡ଼ିକ ସହିତ ସହମତ ହେବେନାହିଁ । ତେଣୁ, ଅନ୍ତତଃ ନିଜର ଶିକ୍ଷାଭାବନାଗୁଡ଼ିକୁ ଗୋଟିଏ ଛାଞ୍ଚର ଆକାର ଦେଇ ସିଏ ନିଜ କଳ୍ପିତ ଲୋକବିଦ୍ୟାଳୟଟିର ଏକ ଭାବୀଚିତ୍ର ପ୍ରସ୍ତୁତ କରିଥିଲେ । ସେଥିରେ ମୋଟାମୋଟି ଏହିପରି ଭାବରେ ବର୍ଣ୍ଣନା ଦିଆ ଯାଇଥିଲା :

‘‘ଆମ ଦେଶରେ ସାଂପ୍ରତିକ ପରିବର୍ତ୍ତିତ ପରିସ୍ଥିତିକୁ ନଜରରେ ରଖି ଏକାନ୍ତ ଆବଶ୍ୟକ ହେଉଛି ଯେ, ଆମ କୃଷକକୁଳ ମଧ୍ୟ ନିଜକୁ ଏକ ନୂତନ ଅନୁରୂପ ଧାରାରେ ଅଧିକ ପ୍ରଶିକ୍ଷିତ କରି ଆଣିବେ । ବର୍ତ୍ତମାନ ପ୍ରାଥମିକ ସ୍ତରରେ ସେମାନଙ୍କୁ ଯେତିକି ଶିକ୍ଷା ସୁଲଭ ହୋଇ ପାରୁଛି, ଏଣିକି ତାହା ଆଦୌ ଯଥେଷ୍ଟ ହେବାନାହିଁ । ସେହି କଥାଟିକୁ ଉପଲବ୍ଧି କରି କ୍ରମେ କୃଷକମାନେ ମଧ୍ୟ ସେମାନଙ୍କର ସନ୍ତାନମାନେ ଅଧିକ ଶିକ୍ଷା ଲାଭ କରନ୍ତୁ ବୋଲି ଇଚ୍ଛା ପ୍ରକାଶ କଲେଣି । ସେହି ସନ୍ତାନମାନେ ଚଉଦବର୍ଷ ବୟସର ଧର୍ମୋପନୟନ ପରେ ଏହି ଶିକ୍ଷା ଗ୍ରହଣ କରିବାକୁ ଉପଯୁକ୍ତ ହୋଇଯିବେ । ସେହି ଉଦ୍ଦେଶ୍ୟରେ, ମୁଁ ନିମ୍ନସ୍ୱାକ୍ଷରକାରୀ, କେତେଜଣ ସାହାଯ୍ୟକାରୀ ବନ୍ଧୁଙ୍କଠାରୁ ଉତ୍ସାହ ପାଇ ରୁଇସ୍‌ଲିଙ୍ଗଠାରେ ସେହିପରି ଏକ ବିଦ୍ୟାଳୟ ଆରମ୍ଭ କରିଛି ଏବଂ ସେଥିରେ ନିମ୍ନମତେ କେତେକ ବ୍ୟବସ୍ଥାକୁ ଅନ୍ତର୍ଗତ କରାଯାଇଛି :

୧) ଏହି ବିଦ୍ୟାଳୟ ନଭେମ୍ବର ପହିଲାଠାରୁ ଏପ୍ରିଲ ପହିଲା, - ଏହି ଶୀତ ପାଞ୍ଚମାସ କାର୍ଯ୍ୟ କରିବ ।

୨) ଛାତ୍ରମାନଙ୍କର ବୟସ ୧୫ ରୁ ୨୦ ଭିତରେ ହୋଇଥିବ । ମୋଟ ୭୦ ଜଣ ଛାତ୍ରଙ୍କ ମଧ୍ୟରୁ ୧୦ ଜଣଙ୍କର ରହିବା ଓ ଖାଇବାର ବ୍ୟବସ୍ଥା ବିଦ୍ୟାଳୟରେ ହେବ ଓ ବାକୀମାନେ ପ୍ରତିବେଶରେ ସ୍ଥିରୀକୃତ ବସାଘରମାନଙ୍କରେ ରହିପାରିବେ । ଏଥିପାଇଁ ପ୍ରତ୍ୟେକ ଶିକ୍ଷାର୍ଥୀକୁ ପ୍ରଶିକ୍ଷଣ ବାବତରେ ବାର୍ଷିକ ୧୦ ମୁଦ୍ରା ଓ ରହିବା ତଥା ଖାଇବା ବାବତକୁ ୨୦ ମୁଦ୍ରା ଦେବାକୁ ପଡ଼ିବ । ଏବଂ, ପ୍ରଥମ ବର୍ଷଟି ପାଇଁ କେତେକ ଶିକ୍ଷାର୍ଥୀ ନିଜ ସହିତ ନିଜର ବିଛଣାପତ୍ର ମଧ୍ୟ ନେଇକରି ଆସିଥିବେ ।

୩) ବିଦ୍ୟାଳୟରେ ଶିକ୍ଷାଦାନ କରିବା ସକାଶେ ଦୁଇଜଣ ଶିକ୍ଷକ ରହିବେ ।

୪) ପ୍ରଥମ ଅଧାସମୟ କେବଳ ମୌଖିକ ଶିକ୍ଷା ଦିଆଯିବ ଏବଂ ଦ୍ୱିତୀୟ ଚରଣରେ

ଯାଇ ଲେଖିବା ଓ ପଢ଼ିବାର କାର୍ଯ୍ୟକ୍ରମ ରହିବ। କେତେଜଣ ବିଦ୍ୟାର୍ଥୀ ଇଚ୍ଛା ପ୍ରକାଶ କଲେ ସେମାନଙ୍କୁ ଜର୍ମାନ୍ କିମ୍ବା ଇଂରାଜୀ ଶିଖିବାର ସୁଯୋଗ ବି ମିଳିପାରିବ। ଆମ ନିଜ ଭାଷାଠାରୁ ଏହି ଦୁଇଟି ଭାଷା ଆଦୌ ବେଶୀ ଅଲଗା ପ୍ରକାରର ନୁହେଁ।

୫) ଶିକ୍ଷାଦାନର ଗଢଣଟି ଏହିପରି ଭାବରେ କରାଯିବ :

ମୌଖିକ ଭାବରେ ବିଶ୍ୱ ଇତିହାସ ବିଷୟରେ ଏକ ସମଗ୍ର ଧାରଣା ଦିଆଯିବ। ଅଧିକ ସ୍ପଷ୍ଟ କରି ବୁଝିପାରିବା ସକାଶେ ପୃଥିବୀର ଐତିହାସିକ ମାନଚିତ୍ର ମହଜୁଦ ରହିଥିବ।

କାହାଣୀ ଆକାରରେ ବାଇବେଲ୍‌ର ଇତିହାସ କୁହାହେବ। ଶିକ୍ଷାର୍ଥୀମାନେ ନିଜେ ପାଠ କରିବାପାଇଁ ସେହି ବିଷୟରେ କିଛି ବହି ରହିଥିବ।

ଗୀର୍ଜାର ଇତିହାସ ଏବଂ ଉତ୍ତର ଇଉରୋପର ପୁରାଣକାହାଣୀ ମଧ୍ୟ ପାଠ୍ୟ ବିଷୟ ହୋଇ ରହିବ। ସେଥିରେ ଡେନ୍‌ମାର୍କ୍‌ର ଇତିହାସ ଅଧିକ ମୁଖ୍ୟ ହୋଇ ରହିଥିବ। ମୌଖିକ ଭାବରେ କୁହାଯିବ, ବହିରୁ ପଢ଼ି ଶୁଣାଇ ଦିଆଯିବ ଏବଂ ପିଲାମାନେ ସେହି ବିଷୟକ ଗୀତଗୁଡ଼ିକୁ ମଧ୍ୟ ଗାଉଥିବେ।

ଭୂଗୋଳର ଅଧ୍ୟୟନ ହେବ। ପ୍ରଥମେ ଗ୍ଲୋବ୍‌ର ବ୍ୟବହାର କରାଯିବ। ତା'ପରେ ବିଭିନ୍ନ ଦେଶ ଓ ସେଗୁଡ଼ିକରେ ବାସ କରୁଥିବା ଲୋକମାନଙ୍କର ଜୀବନ ବିଷୟରେ କୁହାଯିବ। ତା'ପରେ ବିସ୍ତୃତ ଭାବରେ ଡେନ୍‌ମାର୍କ୍‌ର ଭୂଗୋଳ,- ସହାୟକ ଭାବରେ କିଛି ସଂଖ୍ୟାତ୍ମକ ବିବରଣୀ ମଧ୍ୟ ରହିଥିବ।

ଡେନ୍‌ମାର୍କ୍‌ର କେତେକ ଲେଖକଙ୍କର ଲେଖା ସହିତ ପରିଚିତ କରାଇ ଦିଆଯିବ। ବିଶେଷତଃ ସନ୍ଧ୍ୟା ସମୟରେ ସେଗୁଡ଼ିକୁ ପଢ଼ି ଶୁଣାଇ ଦିଆଯାଉଥିବ। ସପ୍ତାହରେ ଅନ୍ତତଃ ତିନିଦିନ।

ସଂଗୀତ, ବିଶେଷ କରି ସଂଗ୍ରାମସଂଗୀତମାନ ଗାନ କରାଯିବ।

ଏବଂ, କିଛିପରିମାଣରେ ଲିଖନକାର୍ଯ୍ୟ।

ଏଗୁଡ଼ିକ ସହିତ ସାଧାରଣ ବିଦ୍ୟାଳୟ ମାନଙ୍କରେ ଦିଆ ଯାଉଥିବା କିଛି ବିଷୟଜ୍ଞାନ ଏବଂ ବାସ୍ତବ ଜୀବନରେ ଲାଗିଲାପରି କେତେକ ପ୍ରଶିକ୍ଷଣ।

ବିଦ୍ୟାଳୟଟି ଏହି ନଭେମ୍ବର ମାସରୁ ଆରମ୍ଭ ହେବ ଓ ଜାନୁଆରୀ ମାସ ପହିଲା ସୁଦ୍ଧା ପ୍ରତ୍ୟେକେ ସେମାନଙ୍କର ଦେୟ ଦେଇଦେବେ। ଏହି କାର୍ଯ୍ୟରେ ଆଗ୍ରହ ରହିଥିଲେ ସ୍କୁଲକୁ ନିଜ ପିଲାଙ୍କୁ ପଠାଇ ନଥିବା କୃଷକମାନେ ମଧ୍ୟ ଅର୍ଥସାହାଯ୍ୟ କରିପାରିବେ।

ଏହି ବିଜ୍ଞପ୍ତିଟି ଫଳରେ କିଛି ଅର୍ଥ ସଂଗ୍ରହ ହୋଇ ପାରିଲା, ତଥାପି ପୂରା କୁଳାଇଲା ପରି ଅର୍ଥ ହାତକୁ ଆସିବା ସମ୍ଭବ ହୋଇନଥାଏ । ଆବଶ୍ୟକ ସାମଗ୍ରୀଗୁଡ଼ିକ ନିମନ୍ତେ ଆଗକୁ ସେପରି କିଛି ରାସ୍ତା ଦେଖା ଯାଉନଥାଏ, ତଥାପି ଘରତିଆରି କାମ ପୂର୍ଣ୍ଣ ହୋଇ ଆସୁଥାଏ । ବଡ଼ ବଡ଼ ବଖରା, ପବନ ଓ ଆଲୁଅ ଖୁବ୍ ମିଳିବାଭଳି ତିଆରି ହୋଇଛି । ଫର୍ଚା ଶ୍ରେଣୀଗୃହ ସହିତ ଫର୍ଚା ଆହାରଗୃହଟିଏ, ଯେଉଁଠରେ ସମସ୍ତେ ଏକାଠି ବସି ଭୋଜନ କରି ପାରିବେ । ଉପର ତାଲାରେ କେତୋଟି ସାନ ସାନ କୋଠାରୀ । ସେଥିରୁ ଗୋଟିକରେ କଲ୍‌ଲ୍‌ଙ୍କର ଭଉଣୀ ଆନ (Ane) ରହିବେ । ଆନ ପୂରା ସଂସାରବ୍ୟବସ୍ଥାଟିର ଦାୟିତ୍ୱରେ ରହିବେ । ସେଇ ଉପର ମହଲାରେ ଲମ୍ବା ହୋଇ ଆଉ ଗୋଟିଏ ବଡ଼ ବଖରା, ଯାହା ଶିକ୍ଷାର୍ଥୀ ଏବଂ ଶିକ୍ଷକମାନଙ୍କର ଶୋଇବା ଘର ରୂପେ ବ୍ୟବହୃତ ହେବ । ଉପର ଛାତଟି ଛଣରେ ଛପର ହୋଇଥିଲା । ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କ ସହିତ ତାଙ୍କର ପୂର୍ବପରିଚିତ ଏବଂ ଶିକ୍ଷକ ହେବାପାଇଁ ତାଲୀମପ୍ରାପ୍ତ ଶ୍ରୀଯୁକ୍ତ ପାଉଲ୍‌ସନ୍ ଡାଲ୍ ଆସି ପହଞ୍ଚିଗଲେ । ଡାଲ୍ ଆଗରୁ ଗୋଟିଏ ପ୍ରାଥମିକ ବିଦ୍ୟାଳୟରେ ଦୁଇବର୍ଷ ଶିକ୍ଷକତା କରି ସାରିଥିଲେ । ମାତ୍ର, ସେଠାରେ ତାଙ୍କୁ ଭଲ ନଲାଗିବାରୁ ଏଠାକୁ ଚାଲିଆସିଲେ ।

ଏହିପରି ଭାବରେ ୧୮୫୧ ମସିହା ନଭେମ୍ବର ପହିଲାରେ କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କର ପ୍ରଥମ ଲୋକବିଦ୍ୟାଳୟଟି ଆରମ୍ଭ ହୋଇଥିଲା । ସମ୍ଭବତଃ ସାରା ପୃଥିବୀରେ ଏକ ନୂତନ ବିଚାର ଓ ନୂତନ ଗଢ଼ଣର ଏକ ବିଦ୍ୟାଳୟର ମୂଳଦୁଆ ପଡ଼ିଥିଲା। ଛାତ୍ର କେତେ ଆସିବେ ଓ କେଉଁସବୁ ସ୍ଥାନରୁ ଆସିବେ, ଶେଷଯାଏ ତାହାର କୌଣସି ନିଶ୍ଚୟତା ନଥିଲା । ସେଦିନ ସକାଳେ କଲ୍‌ଲ୍ ବଡ଼ିଭୋରରୁ ଉଠି ପାଖରେ ଥିବା ଗୋଟିଏ ଜଙ୍ଗଲକୁ ଚାଲି ଯାଇଥିଲେ ଓ ସେଠାରେ ଆଣ୍ଠୁ ମାଡ଼ି ବସି ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରିଥିଲେ । କରୁଣାମୟ ଈଶ୍ୱର ତାଙ୍କୁ ଦେଖି ଦୟା କରନ୍ତୁ, ତାଙ୍କୁ ସାହାଯ୍ୟ କରନ୍ତୁ ଯେପରିକି ସିଏ ବିଦ୍ୟାଳୟଟିକୁ ଆରମ୍ଭ କରି ପାରିବେ । ଅନ୍ତତଃ ତିନିଜଣ ଛାତ୍ର ଆସି ପହଞ୍ଚିଲେ ସିଏ କାମ ଆରମ୍ଭ କରିଦେବେ । ସେଦିନ ଆହୁରି ଅନେକ ବ୍ୟକ୍ତି ମଧ୍ୟ ଏଥି ନିମନ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା କରିଥିବେ । ପ୍ରାର୍ଥନା ପୂରଣ ହେଲା, ଶୁଭେଚ୍ଛାଗୁଡ଼ିକରେ ଫଳ ଫଳିଲା, ଦଶଜଣ ଛାତ୍ରଙ୍କୁ ନେଇ ବିଦ୍ୟାଳୟ ଆରମ୍ଭ ହେଲା । ସବା ସାନଟିର ବୟସ ୧୨, ଆଠଜଣ ୧୪ରୁ ୧୭ ଭିତରେ ଓ ବାକୀ ଜଣକର ବୟସ ୧୯ । ଭାଗ୍ୟ ଅଧିକ ପ୍ରସନ୍ନ ହେଲା । ନୂଆବର୍ଷର ଆରମ୍ଭକୁ ଛାତ୍ରସଂଖ୍ୟା ୧୫ ହୋଇଗଲା । ବର୍ତ୍ତମାନ ସରକାରୀ ସର୍ତ୍ତ ଅନୁସାରେ ତେଣୁ କିଛି ସାହାଯ୍ୟ ମିଳିବାରେ ମଧ୍ୟ ଆଉ କୌଣସି ପ୍ରତିବନ୍ଧକ ରହିଲାନାହିଁ । ତଥାପି, ବିଦ୍ୟାଳୟରେ କିପରି କ'ଣସବୁ ପଢ଼ାଯିବ ଏବଂ ବିଦ୍ୟାଳୟର ପରିଚାଳନା କେଉଁସବୁ ନିୟମ ଅନୁସାରେ ହେବ, ବିଭାଗୀୟ କର୍ତ୍ତୃପକ୍ଷ ତାହାର ଏକ ସ୍ପଷ୍ଟୀକରଣ ମଧ୍ୟ ମାଗିଥିଲେ । ସଂପୃକ୍ତ କର୍ତ୍ତାମାନଙ୍କର

ସଂଶୟମୋଚନ ନିମନ୍ତେ ଶ୍ରୀଯୁକ୍ତ କଲ୍‌ଲ୍ ଯେଉଁ ଲିଖିତ ଉତ୍ତରଟି ଦେଇଥିଲେ, ସେଥିରେ ମୁଖ୍ୟତଃ ଏହିସବୁ ତଥ୍ୟ ଯୋଗାଇ ଦିଆ ଯାଇଥିଲା :

ସକାଳ ନଅଟାବେଳେ ବିଦ୍ୟାଳୟର କାର୍ଯ୍ୟକ୍ରମ ଆରମ୍ଭ ହୁଏ । ପ୍ରତ୍ୟହ ଦେଢ଼ଘଣ୍ଟା କରି ସପ୍ତାହରେ ଚାରିଦିନ ବିଶ୍ୱଇତିହାସର ଚର୍ଚ୍ଚା କରାଯାଏ । ଯେଉଁ ପିଲାମାନେ ଧର୍ମୋପନୟନ ନିମନ୍ତେ ଲୋଡ଼ା ହେଉଥିବା ବିଶେଷ ପ୍ରଶିକ୍ଷଣ ଲାଭ କରୁଥାନ୍ତି, ସେମାନେ ଅବଶିଷ୍ଟ ଦୁଇଦିନର ପୂର୍ବାହ୍ନଟି ସେଇଥିରେ କଟାନ୍ତି । ଅନ୍ୟମାନେ ଲେଖାକାମ କିଛି କରନ୍ତି ଓ ହସ୍ତାକ୍ଷର ଗୁଡ଼ିକର ସଂଶୋଧନ କରାଯାଏ ।

ତା'ପରେ ଦେଢ଼ଘଣ୍ଟା ପାଇଁ ଦ୍ୱିତୀୟ ଶିକ୍ଷକ ଶ୍ରୀଯୁକ୍ତ ପାଉଲ୍‌ସନ୍ କ୍ଲାସ୍ ନିଅନ୍ତି - ସେମାନେ ଗଣିତ ଓ ଲିଖନ ପ୍ରଭୃତି କାର୍ଯ୍ୟ କରନ୍ତି । କିଛି ବନାନ୍ ଓ ବ୍ୟାକରଣ ମଧ୍ୟ ପଢନ୍ତି । ଏଥିପାଇଁ ଚାରିଦିନ ରହିଥାଏ ଓ ବାକୀ ଦୁଇଦିନ ସାନମାନେ ପାଦ୍ରୀଙ୍କ ପାଖକୁ ଯାଆନ୍ତି, ତିନିଜଣ ସଂଗୀତ ଅଭ୍ୟାସ କରନ୍ତି ଓ ଦୁଇଜଣଙ୍କ ସକାଶେ ଇଂରାଜୀଭାଷା ଶିଖିବାର ବ୍ୟବସ୍ଥା ରହିଥାଏ ।

ଉପରବେଳା ସାଢ଼େ ଗୋଟାଏରୁ ତିନିଟା ପର୍ଯ୍ୟନ୍ତ ଭୂଗୋଳ ଓ ପ୍ରକୃତିପାଠ ଦିନେଛଡ଼ା ଦିନେ ଭାବରେ ଶିକ୍ଷା ଦିଆ ଯାଇଥାଏ । ତିନିଟାରୁ ସଢ଼େଚାରିଟା ପର୍ଯ୍ୟନ୍ତ ଲେଖକମାନଙ୍କର ଲେଖାମାନ ପଢ଼ି ଶୁଣାଇ ଦିଆଯାଏ । ତା'ସହିତ ଗୀତର ଅଭ୍ୟାସ ମଧ୍ୟ ରହିଥାଏ । ସାଢ଼େ ଚାରିଟାରୁ ପରବର୍ତ୍ତୀ ଘଣ୍ଟାଟିଏ ଡେନ୍‌ମାର୍କର ଇତିହାସରୁ କାହାଣୀସବୁ କୁହାଯାଏ । ସନ୍ଧ୍ୟାକୁ ପଡ଼ିଶା ଅଞ୍ଚଳରୁ ମଧ୍ୟ ଆଉକିଛି ଯୁବକ ଆସନ୍ତି ଓ ସମସ୍ତେ ଉତ୍ତର ଇଉରୋପ( Nord )ର ପୁରାଣକାହାଣୀ ଶୁଣନ୍ତି ।

ଇତ୍ୟାଦି, ଇତ୍ୟାଦି । ଏହି ଲୋକବିଦ୍ୟାଳୟର ମୂଳଦୁଆଟି କ୍ରମେ ଟାଣ ହୋଇ ଆସିବା ସଙ୍ଗେ ସଙ୍ଗେ ଶ୍ରୀ କଲ୍‌ଲ୍ ନିକଟବର୍ତ୍ତୀ ହିନ୍‌ସ୍‌ହଲ୍‌ମ (Hindshom) ଠାରେ ନିଜ ପଦ୍ଧତିର ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଆରମ୍ଭ କରିବାକୁ ମଧ୍ୟ ଯୋଜନା କରି ସାରିଥିଲେ । ସେଠାରେ ପ୍ରାୟ ୨୫ ଜଣ ପିଲା ହେବେ ବୋଲି ଆଶା କରା ଯାଉଥିଲା ଏବଂ ସ୍ଥିର ହୋଇଥିଲା ଯେ କଲ୍‌ଲ୍ ଏବଂ ପାଉଲ୍‌ସନ୍ ଦିନେ ଛାଡ଼ି ଦିନେ ସେଠାକୁ ପାଠ ପଢ଼ାଇବାକୁ ଯିବେ ।

ଲୋକବିଦ୍ୟାଳୟର ପ୍ରଥମ ମୁଠ ଛାତ୍ରଙ୍କର ପ୍ରଶିକ୍ଷଣ ସମାପ୍ତ ହେବା ପରେ କ୍ରିଷ୍ଟେନ୍ କଲ୍‌ଲ୍ ସରକାରୀ ଶିକ୍ଷାକର୍ତ୍ତାଙ୍କ ପାଖକୁ କାର୍ଯ୍ୟର ପୂର୍ଣ୍ଣ ବିବରଣୀ ପଠାଇ ଦେଇଥିଲେ । ସରକାରଙ୍କ ଆଡ଼ୁ ତଥାପି ଆପତ୍ତି ଆସିଥିଲା । ଛାତ୍ରମାନଙ୍କୁ କୌଣସି ପରୀକ୍ଷାରେ ବସିବାକୁ ପଡୁନାହିଁ, ତେଣୁ ସେମାନେ କେତେଦୂର କ'ଣ ଗ୍ରହଣ କଲେ କି ନକଲେ, ସେକଥା ଜାଣିହେବ କିପରି ? ଏବଂ, ଅଧିକାଂଶ ପାଠପଢ଼ା ତ ଏଠାରେ କେବଳ ମୌଖିକ ଭାବରେ

ହେଉଛି, ମାତ୍ର ଏତିକିକୁ କଦାପି ଯଥେଷ୍ଟ ବୋଲି ଧରିନିଆ ଯିବନାହିଁ। କଲ୍ଡ୍ ତ ମୂଳରୁ ଜାଣିଥିଲେ ଯେ ତାଙ୍କର ଏହି ବିଦ୍ୟାଳୟରେ ଛାତ୍ରମାନଙ୍କୁ ପରୀକ୍ଷାରେ ବସିବାକୁ ପଡ଼ିଲେ ସମଗ୍ର ପ୍ରୟାସଟିର ଆଉ କୌଣସି ଅର୍ଥ ହିଁ ରହିବନାହିଁ ଏବଂ ସବୁକିଛି ବ୍ୟର୍ଥ ହୋଇଯିବ। ତେଣେ ସରକାରୀ କର୍ତ୍ତା ଭାବୁଥିଲେ ଯେ କୌଣସି ବିଦ୍ୟାଳୟରେ ପ୍ରକୃତରେ କ'ଣ ହେଉଛି କି ନାହିଁ, ତାହା କେବଳ ପରୀକ୍ଷାଦ୍ୱାରା ହିଁ ଜାଣିହେବ। ଏହି ଉଭୟ ଦୃଷ୍ଟିକୋଣ ମଧ୍ୟରେ କୌଣସି ସେତୁର କଳ୍ପନା କରିବା ହୁଏତ ଆଦୌ ସମ୍ଭବ ନଥିଲା।

ପ୍ରଥମ ଦଳର ଛାତ୍ରମାନେ ଯିବାପରେ ହିସାବରୁ ଜଣାପଡ଼ିଲା ଯେ ମୋଟ ୨୦୦ ମୁଦ୍ରା ନିଅଣ୍ଟ ପଡ଼ିଲା। ପୁନର୍ବାର କୋପେନହେଗେନ୍ ଯାଇ ଗ୍ରୁଣ୍ଟୱିଗ୍‌ଙ୍କ ପାଖରେ ପହଞ୍ଚିବାକୁ ପଡ଼ିବ। ଆଉ ଅନ୍ୟ ଉପାୟ ବା କ'ଣ ଥିଲା ? ଏଥର କଲ୍ଡ୍ ଏବଂ ପାଉଲ୍‌ସନ୍ ଦୁହେଁ ବାହାରିଲେ। ଦୀର୍ଘ ପଥଟିକୁ ପଦବ୍ରଜରେ ଗଲେ। ଗ୍ରୁଣ୍ଟୱିଗ୍‌ଙ୍କ ପାଖରେ ପହଞ୍ଚି କଲ୍ଡ୍ ପୂରା ହିସାବଫର୍ଦ୍ଦଟି ତାଙ୍କ ସମ୍ମୁଖରେ ମେଲାଇ ଦେଇଥିଲେ। ସେମାନେ ବହୁ ପରିମାଣରେ ଶୁଖା ମାଛ ବ୍ୟବହାର କରିଛନ୍ତି, ମାତ୍ର ଏହାକୁ କଦାପି କମ୍ କରି ହୋଇନଥାନ୍ତା। ଛାତ୍ରମାନେ ତ ସମସ୍ତେ ବଢ଼ିବା ବୟସର ଥିଲେ, ତେଣୁ ସେହି ଅନୁସାରେ ଭୋଜନ ବି ଦରକାର କରୁଥିଲେ। ହଁ, ଜାଉରେ ପଡୁଥିବା କିସ୍‌ମିସ୍ ବେଳକୁ ମଧ୍ୟ ଠିକ୍ ସେହିକଥା, - ତାକୁ ମଧ୍ୟ କମ୍ କରି ହୋଇନଥାନ୍ତା। କାରଣ ଜଣକ ଭାଗରେ କେବଳ ଗୋଟିଏ କିସ୍‌ମିସ୍ ତ ପ୍ରତିଦିନ ପଡୁଥିଲା। ହଁ, ହୁଏତ ଚିନି ବାବତ ଖରଚଟା କିଛି ପରିମାଣରେ ଊଣା ହୋଇ ପାରିଥାଆନ୍ତା। କାରଣ, ପାଞ୍ଚ ମାସରେ ମୋଟ ୬ ପାଉଣ୍ଡ (ତିନି କିଲୋଗ୍ରାମ୍) ଚିନି ଆସିଥିଲା ଯେ ସବୁ ଖରଚ ହୋଇଗଲା।

ବିଶପ ଗ୍ରୁଣ୍ଟୱିଗ୍ ମୁରୁକି ମୁରୁକି ହସୁଥାଆନ୍ତି, ମାତ୍ର ତେଣେ ତାଙ୍କର ଆଖିଦୁଇଟି ଲୁହରେ ଢଳଢ଼ଳ ହୋଇ ଆସୁଥାଏ। ଶୋକାଶ୍ରୁ ନୁହେଁ, ଆନନ୍ଦାଶ୍ରୁ। ବିଶପ ନିଜ ପତ୍ନୀଙ୍କୁ ଭାବଗଦ୍‌ଗଦ ହୋଇ, ''ଦେଖୁଛ ? ଦେଖୁଛ ?'' ବୋଲି କହୁଥାନ୍ତି। ନିଅଣ୍ଟ ପୂରଣ ନିମନ୍ତେ ସିଏ ନିଜେ କିଛି ଦେଲେ, ରାଜଧାନୀରେ ରହୁଥିବା ପରିଚିତ ବନ୍ଧୁମାନେ ମଧ୍ୟ କିଛି କିଛି। ପ୍ରୟାସଟି ସଫଳ ହେଉ ବୋଲି ସମସ୍ତେ ପୂର୍ଣ୍ଣ ଆନ୍ତରିକତା ସହିତ ଇଚ୍ଛା କରୁଥିଲେ। ବହୁ ଶୁଭେଚ୍ଛୁ ବନ୍ଧୁଙ୍କ ସହିତ ସାକ୍ଷାତ କରି ଦୁଇ ଶିକ୍ଷକ ରାଜଧାନୀରୁ ବିଦାୟ ନେଲେ।

ସେହି ବର୍ଷ ଅର୍ଥାତ୍ ୧୮୫୨ ମଇ ମାସରେ ହିନ୍‌ସ୍‌ହଲ୍‌ମ୍‌ଠାରେ ନୂଆ ପ୍ରେରଣାର ପ୍ରାଥମିକ ବିଦ୍ୟାଳୟଟି ଆରମ୍ଭ ହୋଇଗଲା। ପିଲାମାନଙ୍କର ସ୍କୁଲରେ ପୁରୁଣା ଅଭ୍ୟସ୍ତତାର ଶିକ୍ଷକମାନେ ବହି ମୁଖସ୍ଥ କରାଉଛନ୍ତି ଏବଂ ପିଲାଏ ମୁଖସ୍ଥ କରି ନପାରିଲେ ସେମାନଙ୍କୁ ବେତରେ (prygl) ପିଟୁଛନ୍ତି, ଏକଥା କଲ୍ଡ୍ ଆଉ ଆଦୌ ସହି ପାରିଲେ ନାହିଁ। ଜଣକଠାରୁ ଲମ୍ବା ହୋଇ ଘରଟିଏ ଭଡ଼ାରେ ନିଆଗଲା, ଏବଂ ସେହିଠାରେ ଯେଉଁ

ସର୍ବପ୍ରଥମ ସ୍କୁଲଟି ଆରମ୍ଭ ହେଲା, ତାହାହିଁ ଭବିଷ୍ୟତ ପାଇଁ ଏକ ପ୍ରାଥମିକ ସ୍କୁଲର ପ୍ରଥମ ମୂଳଦୁଆ ପକାଇଥିଲା । ଏଇଟିକୁ ହିଁ ଆମେ ପରବର୍ତ୍ତୀ ଗୁଡ଼ିକର ଜନନୀ ବୋଲି କହିପାରିବା । ଏହିଠାରୁ ହିଁ ଦୃଷ୍ଟାନ୍ତଟି ସମଗ୍ର ଦେଶରେ ବ୍ୟାପ୍ତ ହୋଇଗଲା ଏବଂ ପାଠ ମୁଖସ୍ଥ କରିବାର ନୃଶଂସ ପରମ୍ପରାଟିର ମୂଳୋତ୍ପାଟନ କରିଥିଲା । ବେତ ମାରିବା ବନ୍ଦ ହେଲା, ଭୟ ପରିବର୍ତ୍ତେ ଅଭିଭାବକ ଓ ପିଲା ଉଭୟଙ୍କ ନିମନ୍ତେ ବହୁ ଆଶ୍ୱସ୍ତି ତଥା ଆନନ୍ଦର କାରଣ ହୋଇଥିଲା । କିନ୍ତୁ ଶିକ୍ଷାସଂସାରର ସରକାରୀ ନିଅନ୍ତାମାନେ ଗୁଳା ବାହାରର ଏହି ପ୍ରୟୋଗଟି ପ୍ରତି ପ୍ରକୃତରେ କିଭଳି ମନୋଭାବ ପୋଷଣ କରିବେ ? ସେମାନେ ଅନୁମତି ଦେବେ ତ, ଅର୍ଥାତ୍ ବାଟ ଛାଡ଼ିଦେବେ ତ ? ଆଞ୍ଚଳିକ ନିର୍ଦ୍ଦେଶାଳୟରୁ ସ୍ଥାନୀୟ କର୍ମକର୍ତ୍ତାଙ୍କ ପାଖକୁ ଆସିଥିବା ପତ୍ରରେ ଏହିପରି ଲେଖା ହୋଇଥିଲା:

''ରୁଇସ୍‌ଲିଙ୍ଗ ଲୋକବିଦ୍ୟାଳୟର ଶିକ୍ଷକ କ୍ରିଷ୍ଟେନ୍ କଲ୍‌ଲ୍ ଏହି ନିର୍ଦ୍ଦେଶାଳୟକୁ ପତ୍ର ଦ୍ୱାରା ଜଣାଇଛନ୍ତି ଯେ, ସିଏ ଇତିମଧ୍ୟରେ ଗୋଟିଏ ଘରୋଇ ପ୍ରାଥମିକ ବିଦ୍ୟାଳୟ ଆରମ୍ଭ କରି ଦେଇଛନ୍ତି ଏବଂ ସ୍ଥାନୀୟ ପାଦ୍ରୀ ମଧ୍ୟ ସେହି ବିଦ୍ୟାଳୟ ପରିଦର୍ଶନ କରି ସବୁ ଉଚିତ ପ୍ରକାରେ ଚାଲିଛି ବୋଲି ନିଜର ସନ୍ତୋଷ ବ୍ୟକ୍ତ କରିଛନ୍ତି ।

''ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର ଜଣେ ଶିକ୍ଷକ ହେବାର ଶିକ୍ଷାଗତ ଆବଶ୍ୟକ ଯୋଗ୍ୟତା ରହିଥିବାରୁ ନିର୍ଦ୍ଦେଶାଳୟର ଏହି ପ୍ରୟୋଗ ବିଷୟରେ ଆପତ୍ତି ଉଠାଇବାର ଆଦୌ କାରଣ ରହିବା ଉଚିତ ନୁହେଁ । ମାତ୍ର ବିଭାଗୀୟ ନିୟମ ଅନୁସାରେ ପିଲାମାନଙ୍କୁ ଅଧ୍ୟୟନ ଶେଷରେ ଏକ ପରୀକ୍ଷାରେ ବସିବାକୁ ପଡ଼ିବ । ସେହି ପରୀକ୍ଷା ତାଙ୍କ ନିଜ ବିଦ୍ୟାଳୟରେ ହେବ ଅଥବା ଅନ୍ୟାନ୍ୟ ସ୍କୁଲର ପରୀକ୍ଷା ସହିତ ଏକତ୍ର ମଧ୍ୟ ହୋଇପାରିବ । ସ୍କୁଲ ଯିବା ବୟସର ପିଲାମାନେ ଯେ ସେଠାରେ ମଧ୍ୟ ଅଧ୍ୟୟନ କରୁଛନ୍ତି, ତାହାର ପ୍ରମାଣସ୍ୱରୂପ ଗୋଟିଏ ବିଧିବଦ୍ଧ ଖାତା ମଧ୍ୟ ସ୍କୁଲରେ ରହିବ ।''

ଅର୍ଥାତ୍, ପ୍ରଥମରୁ ହିଁ କଲ୍‌ଲ୍‌ଙ୍କ ସ୍କୁଲରେ ପିଲାମାନେ ପରୀକ୍ଷାରେ ବସିବେ । କଲ୍‌ଲ୍ ସେକଥା ମୋଟେ ଇଚ୍ଛା କରୁନଥିଲେ । ପୁନଶ୍ଚ, କଲ୍‌ଲ୍ ଭାବୁଥିଲେ ଯେ ତାଙ୍କ ସ୍କୁଲରେ ପିଲାଏ ଗ୍ରୀଷ୍ମଋତୁରେ ପ୍ରତିଦିନ ଆସୁଥିବାରୁ ସେମାନଙ୍କ ଲାଗି ଶୀତଦିନେ ଆସିବା ଆଦୌ ଆବଶ୍ୟକ ନଥିଲା । ତା' ନହେଲେ ଶୀତମାସ ମାନଙ୍କରେ ସେ ଲୋକବିଦ୍ୟାଳୟକୁ ମଧ୍ୟ ଚଲାଇ ପାରିବେ କିପରି ? କିନ୍ତୁ, ନିର୍ଦ୍ଦେଶାଳୟ ଏକଥାଟିକୁ ସ୍ୱୀକାର କରିବ ତ ? ମୀମାଂସା ନିମନ୍ତେ କଥାଟି ବିଭାଗୀୟ ସିଡ଼ିରେ ଆହୁରି ଉପରକୁ ଗଲା, ଏକାବେଳେକେ ସଚିବାଳୟ ପର୍ଯ୍ୟନ୍ତ । ଅନ୍ୟ ଆପତ୍ତିଗୁଡ଼ିକ ଉପରେ ଜୋର୍ ନଦେଇ ତାହା ଧର୍ମଶିକ୍ଷାରେ ବହିର ସାହାଯ୍ୟ ନିଆନଯାଇ କେବଳ ମୌଖିକ ଭାବରେ ସବୁ ହେଉଛି ଓ ତେଣୁ ତଦ୍ୱାରା

ପିଲାମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପଡୁନଥିବ ବୋଲି ଆଶଙ୍କା ପ୍ରକଟ କରିଥିଲା । ତଥାପି ସେହି ପ୍ରୟୋଗଟି ୨୦ ପିଲାଙ୍କୁ ନେଇ ଚାଲିଥିଲା ଏବଂ ପରବର୍ତ୍ତୀ ବର୍ଷକୁ ଅଧିକ ପିଲା ଆସିବେ ବୋଲି ଆଶା ବି କରିହେଉଥିଲା । ସେହିପରି ଆଉ ଗୋଟିଏ ସ୍କୁଲ ଖୋଲିବାପାଇଁ ପାଖର ଏକ ଗାଆଁରୁ ମଧ୍ୟ ପ୍ରସ୍ତାବ ଆସିଥିଲା । ଏଥିପାଇଁ ପିଲାମାନେ ହିଁ ଏତେ ଆଗ୍ରହ ଦେଖାଉଥିଲେ ଯେ ବାପାମାନେ ହୁଏତ ଇଛା ନଥିଲେ ମଧ୍ୟ ସେମାନଙ୍କୁ ମନା କରି ପାରୁନଥିଲେ ।

ଲୋକବିଦ୍ୟାଳୟର ଦ୍ୱିତୀୟ ବର୍ଷକୁ ସରକାରୀ ସଚିବାଳୟରୁ କିଛି ଆର୍ଥିକ ସହାୟତା ମିଳିଲା । ତଥାପି ଗୁରୁତ୍ୱ ଦିଆଯାଇ କୁହା ଯାଇଥିଲା ଯେ, ବିଦ୍ୟାଳୟରେ ପରୀକ୍ଷା ଭଳି କିଛି ବ୍ୟବସ୍ଥା ଅବଶ୍ୟ ରହିବା ଉଚିତ । ତା' ନହେଲେ, ସେଠାରେ ପ୍ରକୃତରେ କିଛି ହେଉଛି ବୋଲି ସାଧାରଣଙ୍କର ପ୍ରତ୍ୟୟ କିପରି ଆସିବ ? ଦ୍ୱିତୀୟ ଶୀତକାଳରେ ମଧ୍ୟ ରୁଇସ୍‌ଲିଙ୍ଗଠାରେ ସର୍ବଶେଷ ବର୍ଷ ଥିଲା ଓ କଲ୍ଡ୍ ତା'ପରେ ହିନ୍‌ସ୍‌ହଲ୍‌ମ୍‌କୁ ହିଁ ଚାଲି ଆସିଥିଲେ । ଏହି ଦ୍ୱିତୀୟ ସ୍ଥାନରେ କୃଷକମାନେ ତାଙ୍କୁ ଅଧିକ ଉତ୍ତମ ଭାବରେ ବୁଝୁଥିଲେ ଓ ତେଣୁ ଅଧିକ ସହଯୋଗ ମଧ୍ୟ କଲେ । ମାତ୍ର ଏଠାରେ ସିଏ ପଥର ବା ଟାଇଲ୍ ନଦେଇ କାଠରେ ସବୁ ତିଆରି କଲେ । ହୁଏତ ଏଠାରୁ ମଧ୍ୟ ତାଙ୍କୁ ଅନ୍ୟତ୍ର ଉଠିଯିବାକୁ ହେବ ବୋଲି ତାଙ୍କୁ ଜଣାଥିଲା କି ? ଚାଷୀମାନେ ବି ଘର ତିଆରି କରିବାର କାମରେ ଆସି ସାହାଯ୍ୟ କରୁଥିଲେ । ଉପର ମହଲାରେ ଶୋଇବା ଘର,- ଗୋଟିଏ ପଟେ କଲ୍ଡ୍ ଶୋଇବେ, ଆରପଟେ ଆର ଶିକ୍ଷକ ପାଉଲ୍‌ସନ୍ ଏବଂ ମଝିରେ ପଟାଳି ପରି ଛାତ୍ରମାନେ ।

ସେତେବେଳକୁ କଲ୍ଡ୍‌ଙ୍କର ବୟସ ୩୭ ହୋଇଥିଲା । ନୂଆ ହୋଇ ଆରମ୍ଭ ହୋଇଥିବା ଶିଶୁବିଦ୍ୟାଳୟଟି ଅତ୍ୟନ୍ତ ବେଗର ସହିତ ବଢ଼ିବାରେ ଲାଗିଥିଲା ଏବଂ ଲୋକବିଦ୍ୟାଳୟ କ୍ଷେତ୍ରରେ ମଧ୍ୟ ଇତିମଧ୍ୟରେ ତାଙ୍କର ପ୍ରଭୂତ ଅଭିଜ୍ଞତା ହୋଇ ଯାଇଥିଲା । ସାହାଯ୍ୟ କରିବା ସକାଶେ ଭଉଣୀ ମାରିଇ(Marie) ଆସି ପହଞ୍ଚିଥିଲେ । କଲ୍ଡ୍ ଯାବତୀୟ ସମସ୍ୟା ବିଷୟରେ ଭଉଣୀଙ୍କ ସହିତ କଥାବାର୍ତ୍ତା ହୋଇ ପାରୁଥିଲେ, ତାଙ୍କଠାରୁ ପରାମର୍ଶ ବି ମାଗୁଥିଲେ । ଭଉଣୀ ମଧ୍ୟ ନିଜର ଭାଇକୁ ଖୁବ୍ ଭଲ କରି ବୁଝିଥିଲେ । ସଂଗ୍ରାମର ଆଗାମୀ ବର୍ଷଗୁଡ଼ିକରେ ସେ କଲ୍ଡ୍‌ଙ୍କୁ ସର୍ବଦା ବଳ ଦେଇ ପାରୁଥିଲେ । ଅସଲ ସମସ୍ୟା ଥିଲା ଅର୍ଥର ସମସ୍ୟା । ଏହି କ୍ଷେତ୍ରରେ ସମଗ୍ର ଉଦ୍ୟମଟି ମୋଟେ ଆତ୍ମନିର୍ଭରଶୀଳ ହୋଇ ପାରୁନଥିଲା । ପିତାମାତାଙ୍କର ଅବସ୍ଥା ଅନୁସାରେ ବିଦ୍ୟାର୍ଥୀମାନଙ୍କର ଦେୟ ଭିନ୍ନ ଭିନ୍ନ ରଖାଯାଇଥିଲା । ଦ୍ୱିତୀୟ ଶିକ୍ଷକ ବର୍ଷକୁ ୧୦୦ ମୁଦ୍ରା ନେଉଥିଲେ । ଉତ୍ତମ ସମୟରେ ତାଙ୍କୁ କିଛି ଅଧିକ ବି ମିଳୁଥିଲା । ଏବଂ, ଯେତେ ଅଭାବ ବା ନିଅଣ୍ଟ ହେଲେ ମଧ୍ୟ ସାନଚାଷୀ

ମାନଙ୍କ ଘରୁ ଆସିଥିବା ଛାତ୍ରମାନଙ୍କର ଦେୟରେ କେବେହେଲେ ବୃଦ୍ଧି ହେଉନଥିଲା । ତାଙ୍କ ବିଦ୍ୟାଳୟର ଆବଶ୍ୟକତା ସେହିମାନଙ୍କ ପାଇଁ ହିଁ ସର୍ବାଧିକ ଥିଲା ।

ଶିକ୍ଷକ ପାଉଲ୍‌ସନ୍ ଥରେ ଗୋଟିଏ ବର୍ଷ ବିନା ପାରିଶ୍ରମିକରେ କାର୍ଯ୍ୟ କରିବେ ବୋଲି ଆପଣା ଆଡ଼ୁ ପ୍ରସ୍ତାବ ଦେଇଥିଲେ, ମାତ୍ର କଲ୍‌ଲ୍ ତାହା ଗ୍ରହଣ କରିନଥିଲେ । ତେଣୁ, ଖର୍ଚ୍ଚକୁ ଆହୁରି କମାଇବାକୁ ପ୍ରଚେଷ୍ଟା ହେଲା । କଲ୍‌ଲ୍ ନିଜେ କାଠରେ ତିଆରି ଜୋତା ପିନ୍ଧୁଥିଲେ, ହାତକଟା ସୂତାର ପୋଷାକ ବ୍ୟବହାର କରୁଥିଲେ । ଏବଂ, ସ୍କୁଲ ଚାଲୁନଥିବା ବେଳେ ସେମାନେ ପ୍ରାୟ କ୍ଷୀର ଏବଂ ପାଉଁରୁଟିରେ କାମ ଚଳାଇ ନେଉଥିଲେ । ନିଜେ ପାଳିଥିବା ଦୁଇଟି ଗାଈଙ୍କ ପାଇଁ କଲ୍‌ଲ୍ ନିଜେ ଜଙ୍ଗଲକୁ ଯାଇ ଘାସ କାଟି ଆଣୁଥିଲେ ଏବଂ କେହି ଅତିଥି ଆସିଗଲେ ତାଙ୍କୁ ମଧ୍ୟ ସେହି କାର୍ଯ୍ୟରେ ସାଥୀ ହୋଇ ଯିବାକୁ ପଡୁଥିଲା ।

୧୮୫୩ ମସିହା ଅଗଷ୍ଟ ମାସରେ କ୍ରିଷ୍ଟେନ୍ କଲ୍‌ଲ୍ ସଚିବାଳୟକୁ ଆଉ ଗୋଟିଏ ଦରଖାସ୍ତ ଲେଖି ପଠାଇଥିଲେ । ବିଦ୍ୟାଳୟ ବିଷୟରେ ଅଧିକ ତଥ୍ୟ ଦେବାକୁ ନିର୍ଦ୍ଦେଶ ହେବାରୁ କଲ୍‌ଲ୍ ସେଗୁଡ଼ିକୁ ମଧ୍ୟ ନିମ୍ନୋକ୍ତ ପ୍ରକାରେ ଯୋଗାଇ ଦେଇଥିଲେ:

''ମୋ' ଦ୍ୱାରା ପ୍ରତିଷ୍ଠିତ ଉଚ୍ଚତର କୃଷକ-ବିଦ୍ୟାଳୟ ନିମନ୍ତେ ସହାୟତା ଲୋଡ଼ି ଗୀର୍ଜା ଏବଂ ଶିକ୍ଷା-ମନ୍ତ୍ରଣାଳୟକୁ ମୁଁ ଯେଉଁ ଦରଖାସ୍ତ କରିଥିଲି, ସେହି ବିଷୟରେ ଆପଣ ମୋ' ପାଖକୁ ପ୍ରେରଣ କରିଥିବା ପତ୍ରର ଉତ୍ତର ସ୍ୱରୂପ ମୁଁ ମଧ୍ୟ ଅକୁଣ୍ଠିତ ଭାବରେ ଏଠାରେ ତାହାର ଉତ୍ତର ଦେଉଛି ।

ବିଦେଶରେ ଦୀର୍ଘ ସମୟ କଟାଇବା ପରେ ଯେତେବେଳେ ମୁଁ ୧୮୪୭ ମସିହା ଶରତକାଳରେ ଦେଶକୁ ଫେରି ଆସିଥିଲି, ସେତେବେଳେ ଏକାଧିକ ବର୍ଷ ଧରି ଚିନ୍ତା କରି ଆସିଥିବା ଗୋଟିଏ କଥା ମୋ ଭିତରେ ପୁନର୍ବାର ସଚଳ ହେବାକୁ ଆରମ୍ଭ କଲା । ଗ୍ରାମାଞ୍ଚଳରେ ଏହି ଅଂଶରେ ମୁଁ ଘରୋଇ ଭାବରେ ଏପରି ଗୋଟିଏ ସ୍କୁଲ ଆରମ୍ଭ କରିବାକୁ ଇଚ୍ଛା କଲି, ଯାହାକି ନିକଟବର୍ତ୍ତୀ ଅନ୍ୟ ଇସ୍କୁଲଗୁଡ଼ିକ ତୁଳନାରେ କିଛି ଅଧିକ ଶିକ୍ଷାଦାନ କରିବାକୁ ପ୍ରୟାସ କରିବ ।

ଏହି ଫୁଇନ୍ ଦ୍ୱୀପରେ ସୈନିକ ହୋଇ ରହିଥିବା ସମୟରେ ଏହି ଅଞ୍ଚଳର ସାଧାରଣ ଲୋକମାନଙ୍କ ସହିତ ମୋ'ର କିଛି ପରିଚୟ ହୋଇଥିଲା ଓ ସେମାନଙ୍କ ଭିତରେ ମଧ୍ୟ ଏକ ଅନୁରୂପ ଆଗ୍ରହ ଥିବାର ଲକ୍ଷ୍ୟ କରି ମୁଁ ଜଣେ ଘରୋଇ ଶିକ୍ଷକ ହିସାବରେ ଆସି ଯୋଗ ଦେଇଥିଲି । ଲୁଇସ୍‌ଲିଙ୍ଗଠାରେ ପାଦ୍ରୀଙ୍କର ପିଲାମାନଙ୍କ ସହିତ ମୁଁ ଅନ୍ୟ କୃଷକମାନଙ୍କର ପାଞ୍ଚଟି ପିଲାଙ୍କୁ ମଧ୍ୟ ପାଠ ପଢ଼ାଉଥିଲି । ମୋ'ର ଶିକ୍ଷାଦାନ କୃଷକମାନଙ୍କର ଆବଶ୍ୟକତାକୁ କେତେଦୂର ପୂରଣ କରିପାରୁଛି, ତାହା ପରୀକ୍ଷା କରି

ଦେଖୁଥିଲି । କିଛି ସଫଳତା ମିଳିବାପରି ଅନୁଭବ ହେବାରୁ ସେହିଠାରେ ୧୮୫୦ ମସିହାରେ ଜାଗାଟିଏ କିଣି ଘରଟିଏ ତିଆରି କରି ପକାଇଲି ।

ପ୍ରଥମେ ଭାବିଥିଲି ଯେ, ମୁଁ ୧୪ ବର୍ଷର କେତେକ ବାଳକଙ୍କୁ ହିଁ ଶିକ୍ଷା ଦେବି । ସେମାନେ ପ୍ରାଥମିକ ସ୍ତରର ବିଦ୍ୟାଳୟରେ ଯେତିକି ଅର୍ଜନ କରିଥିବେ, ମୁଁ ସେଥିରେ କିଛି ଅଧିକ ଆଣି ଦେଇପାରିବି । କୃଷକକୁଳ ସମ୍ଭବତଃ ଅଧିକ ଜ୍ଞାନଲାଭର ସୁଯୋଗ ନିମନ୍ତେ ତୃଷିତ ହୋଇ ରହିଥିଲା ଏବଂ ତେଣୁ ୧୮୫୧ ବେଳକୁ ହିଁ ମୁଁ ଧର୍ମୋପନୟନ ବୟସର ସାତଜଣଙ୍କ ସହିତ ୧୮ ରୁ ୩୦ ବୟସର ଆହୁରି ଆଠଜଣଙ୍କୁ ଛାତ୍ରରୂପେ ପାଇଗଲି । କାରଣ, ଜୀବନର ଅସଲ ପ୍ରଶ୍ନଗୁଡ଼ିକ ସେହିମାନଙ୍କ ଜୀବନରେ ହିଁ ଅଧିକ ପରିପକ୍ୱତା ଲାଭ କରିଥିଲା । ଫଳରେ ଛାତ୍ରଗୋଷ୍ଠୀ ପ୍ରାୟ ଦୁଇ ଭାଗରେ ବିଭକ୍ତ ହୋଇଗଲା ଏବଂ ସେମାନଙ୍କୁ ସେହି ଅନୁସାରେ ଅଲଗା ଅଲଗା ପ୍ରକାରେ ଶିକ୍ଷା ଯୋଗାଇ ଦେବାକୁ ପଡ଼ିଥିଲା । ଭୂଗୋଳ, ହସ୍ତ ଲିଖନ, ଗଣିତ ଆଦି ବିଷୟକୁ ସମସ୍ତେ ଏକତ୍ର ଶିକ୍ଷା କଲେ; ଜଣେ ଜଣେ କିଛି ପଦାର୍ଥବିଜ୍ଞାନ ବି ପଢ଼ିଲେ, ସେମାନଙ୍କୁ ଇଂରାଜୀ ଓ ଜର୍ମାନ୍ ଭାଷାର କିଛି ପ୍ରାଥମିକ ଜ୍ଞାନ ଦିଆଗଲା, କିଛି ସଂଗୀତ ଓ ଚିତ୍ରବିଦ୍ୟା ବି ଅଧ୍ୟୟନ କରିଥିଲେ । ବଡ଼ମାନଙ୍କୁ ବିଶେଷ କରି ଡେନ୍‌ମାର୍କ୍‌ର ଇତିହାସ ଓ ବାଇବେଲ୍‌ର କାହାଣୀମାନ କୁହାଗଲା ।

ତୃତୀୟ ବର୍ଷରେ ଆମେ ଏଇଟି ସହିତ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ମଧ୍ୟ ଆରମ୍ଭ କରିଦେଲୁ । କେତେକ ବାପାମାଆଙ୍କର ଇଚ୍ଛାକୁ ସ୍ୱୀକୃତି ଦେଇ ତାହା କରା ଯାଇଥିଲା । ଏବଂ, ଭଗବାନଙ୍କର ସଦିଚ୍ଛା ରହିଥିଲେ ଆମେ ଏବର୍ଷ ନଭେମ୍ବରକୁ ମଧ୍ୟ ଉଚ୍ଚତର କୃଷକ-ବିଦ୍ୟାଳୟଟିକୁ ଆରମ୍ଭ କରିବୁ । ଖୁବ୍ ଆଶା ହେଉଛି ଯେ ସରକାରଙ୍କର ସର୍ତ୍ତ ପୂରଣ କରିବାଭଳି ଏବର୍ଷ ଯଥେଷ୍ଟ ସଂଖ୍ୟାର ଛାତ୍ର ମଧ୍ୟ ଆସିଯିବେ ।''

ଏହିପରି ଭାବରେ ସମଗ୍ର ଉଦ୍ୟମଟିରେ ତିନୋଟି ଶାଖା ସ୍ପଷ୍ଟ ହୋଇ ଆସିଲା । ସବାସାନ ମାନଙ୍କ ପାଇଁ ପ୍ରାଥମିକ ସ୍କୁଲ, ତା' ଉପରର ପିଲାଙ୍କ ନିମନ୍ତେ ଉଚ୍ଚ ପ୍ରାଥମିକ ସ୍ତରଟିଏ ଓ ବଡ଼ମାନଙ୍କ ପାଇଁ ଉଚ୍ଚତର କୃଷକ ବିଦ୍ୟାଳୟ । ଏହି ଶେଷଟିର ମାଧ୍ୟମରେ ହିଁ କ୍ରମେ ଭବିଷ୍ୟତର ଲୋକବିଦ୍ୟାଳୟ ଲାଗି ମୂଳଦୁଆ ପଡ଼ିଆସିଲା । କାର୍ଯ୍ୟଟିର ପରିମାଣ ଏବଂ ପରିସର କ୍ରମେ ବୃଦ୍ଧି ପାଉଥିଲା । ଏହି ଯାବତୀୟ କର୍ମବହୁଳତା ସତ୍ତ୍ୱେ କଲ୍ଡ୍ ତଥାପି ପ୍ରତିବେଶୀ କୃଷକମାନଙ୍କ ସହିତ ଏକାଠି ନାନା ଆଲୋଚନାରେ ବସୁଥିଲେ । ହୁଏତ କୌଣସି ଏକ ନିର୍ଦ୍ଦିଷ୍ଟ ବିଷୟରେ ସେମାନଙ୍କୁ କିଛି କହୁଥିଲେ, କିଛି ପଢ଼ି କରି ଶୁଣାଉଥିଲେ, ସାଧାରଣ କଥାବାର୍ତ୍ତା ମଧ୍ୟରେ ବଡ଼ କବିଙ୍କର କବିତା ସହିତ ପ୍ରଖ୍ୟାତ କାହାଣୀକାର ହାନ୍‌ସ୍ କ୍ରୀଷ୍ଟିଆନ୍ ଆନର୍‌ସନ୍‌ଙ୍କର ଗଳ୍ପଗୁଡ଼ିକ ମଧ୍ୟ ଖୁବ୍ ଜମି ପାରୁଥିଲା ।

୧୮୫୫ ମସିହାରେ କଲ୍‌ଲ୍ ଦେଇଥିବା ଏକ ବିବରଣୀରୁ ଜାଣିବାକୁ ମିଳୁଛି :

''ପ୍ରତ୍ୟହ ସନ୍ଧ୍ୟାରେ ପାଉଲ୍‌ସନ୍ ଅନ୍ଧାରରେ ବସି ପିଲାମାନଙ୍କୁ କ୍ରମାନ୍ୱୟରେ ପୃଥିବୀଇତିହାସର ଘଟଣାଗୁଡ଼ିକୁ ବର୍ଣ୍ଣନା କରି କହୁଛନ୍ତି, ଏବଂ ମୁଁ ସକାଳଓଳି ଗ୍ରୁଣ୍ଡ୍‌ଭିଗ୍‌ଙ୍କର ବିଶ୍ୱଇତିହାସରୁ କାହାଣୀମାନ କହୁଛି,- ମନୁଷ୍ୟସମୂହର କ୍ରମବିବର୍ତ୍ତନରେ ସେହି ଘଟଣାଗୁଡ଼ିକର ଯେଉଁ ଅନ୍ତର୍ଗତ ତାତ୍ପର୍ଯ୍ୟମାନ ରହିଛି, ମୁଁ ତାହାରି ଉପରେ ବିଶେଷ ଗୁରୁତ୍ୱ ଦେଉଛି ।

ଦ୍ୱିତୀୟ ମାସରେ ଛାତ୍ରମାନଙ୍କୁ ଆମର ଏହି ଉତ୍ତରାଞ୍ଚଳର ପୌରାଣିକ କାହାଣୀସବୁ କୁହାଯାଉଛି, ତା'ପରେ ସକାଳ ଓଳିଟା ଯାକ ହସ୍ତଲିଖନ ଓ ଗଣିତ କରାଯାଉଛି । ଏହିପରି ଭାବରେ ମୁଁ ସମ୍ପୂର୍ଣ୍ଣ ପୂର୍ବାହ୍ନଟି ବୟସ୍କମାନଙ୍କ ସହିତ ରହିଛି ଓ ପାଉଲ୍‌ସନ୍ ସାନପିଲା ମାନଙ୍କର ସ୍କୁଲରେ । ଉପରଓଳି ମୁଁ ସାନମାନଙ୍କୁ ଧରି ବସୁଛି ଓ ପାଉଲ୍‌ସନ ବଡ଼ମାନଙ୍କୁ ଶିକ୍ଷାଦାନ କରୁଛନ୍ତି । ତାହା ସହିତ ଗୀତବୋଲା ବି ଚାଲିଛି ।

ଦୀର୍ଘ ଶୀତରାତି ଗୁଡ଼ିକରେ ପ୍ରଥମେ ପିଲାମାନେ ନିଜେ ନିଜେ କିଛି ପଢୁଛନ୍ତି ଓ ଲେଖୁଛନ୍ତି ଓ ମୁଁ ବେଳେ ବେଳେ ବିଭିନ୍ନ ପୁସ୍ତକରୁ ସେମାନଙ୍କୁ କିଛି ପାଠ କରି ଶୁଣାଉଛି । ଏହିପରି ଭାବରେ ଅନ୍ୟ ବହୁତକିଛି ସହିତ ମୁଁ ସକ୍ରେଟିସ୍‌ଙ୍କ ଲେଖାରୁ କିଛି ଅଂଶ ପଢ଼ିଛି, ଆଲ୍ଲାଦିନ ଓ ଅଶ୍ଚର୍ଯ୍ୟ ପ୍ରଦୀପ କାହାଣୀଟିକୁ ମଧ୍ୟ କହିଦେଇଛି ।''

ସାନପିଲାଙ୍କର ସ୍କୁଲଟି ଆଗକୁ ପାଦ ପକାଇ ଚାଲିଥାଏ । ୧୮୫୫ ବେଳକୁ ସେଥିରେ ୬୫ ଜଣ ପିଲା ପାଠ ପଢୁଥାନ୍ତି । ସେଇଠାରେ ଯେଉଁ ସାଧାରଣ ସ୍କୁଲଟି ଥିଲା, ନୂଆ ବିଦ୍ୟାଳୟଟି ତାହାକୁ ମଧ୍ୟ ଟପିଯିବ ବୋଲି ବୋଧ ହେଉଥିଲା । ସେହି ଦୃଷ୍ଟିରୁ ଲୋକବିଦ୍ୟାଳୟଟି ଧୀର ଗତିରେ ଆଗକୁ ପାଦ ପକାଉଥାଏ । ସରକାରୀ ବିଭାଗ ବର୍ଷକୁ କେବଳ ୧୫୦ଟି ମୁଦ୍ରା ସହାୟତା ଦେଉଥାନ୍ତି । ଆହୁରି ଅନେକ ଅଧିକ ଅର୍ଥର ଆବଶ୍ୟକତା ରହିଥାଏ । କ୍ରିଷ୍ଟେନ୍ କଲ୍‌ଲ୍ ଯେ ସାନପିଲାଙ୍କର ଏବଂ କୃଷକମାନଙ୍କର ଶିକ୍ଷାକ୍ଷେତ୍ରରେ ଏକ ନୂତନ ଉଦ୍‌ବେଳନ ସୃଷ୍ଟି କରି ପାରିଛନ୍ତି, ଅଧିକରୁ ଅଧିକ ପ୍ରତିଷ୍ଠିତ ବ୍ୟକ୍ତି ତାହା ହୃଦୟଙ୍ଗମ କରୁଥାଆନ୍ତି । ସାନପିଲାଙ୍କର ଇସ୍କୁଲଟିଏ କିପରି ପୂର୍ଣ୍ଣତଃ ଏକ ନବୋନ୍ମେଷକାରୀ ରାସ୍ତା ବାହାର କରି ପାରିଛି, ସେହି ବିଷୟରେ ସେତେବେଳେ ଜଣେ ମନ୍ତବ୍ୟ ଦେଇଥିଲେ: ''ମାତ୍ର ୧୨ ଜଣ ପିଲାଙ୍କୁ ନେଇ ଏହି ବିଦ୍ୟାଳୟ ଆରମ୍ଭ ହୋଇଥିଲା ଓ ଏହାର ଛାତ୍ରସଂଖ୍ୟା କ୍ରମଶଃ ବୃଦ୍ଧି ପାଇ ସଂପ୍ରତି ୬୫ରେ ପହଞ୍ଚିଲାଣି । (ତାଙ୍କ ନିଜର ମଧ୍ୟ ଚରୋଟି ପିଲା ସେଠାରେ ପଢୁଥିଲେ) ବହୁ ବର୍ଷ ଧରି ଚାଲି ଆସିଥିବା ବିଦ୍ୟାଳୟଟିର ଶିକ୍ଷାଦାନ ପଦ୍ଧତିରେ ସ୍ଥାନୀୟ ଲୋକମାନେ କ୍ଲାନ୍ତ ହୋଇ ପଡ଼ିଲେଣି । ବହି ମୁଖସ୍ଥ କରିବା ହିଁ ସେଠାରେ ଏକମାତ୍ର ଶିକ୍ଷାଦାନ

ପଦ୍ଧତି ହୋଇ ରହିଛି । ପିଲାମାନେ ଭାରି ବିରକ୍ତ ହୋଇ ଗଲେଣି । ପାଠ ସେମାନଙ୍କୁ ଅତ୍ୟନ୍ତ ଆଗ୍ରହଶୂନ୍ୟ ବୋଧ ହେଉଛି, ସ୍ଫୂର୍ତ୍ତିହୀନ କରି ପକାଉଛି । ଏହାଦ୍ୱାରା ପିଲାମାନଙ୍କର ଅନ୍ତର୍ଗତ ତଥା ବାହ୍ୟ ଜୀବନ ବରବାଦପ୍ରାୟ ହୋଇ ଯାଉଛି ଏବଂ ଘରେ ମଧ୍ୟ ପିତାମାତା ଓ ପିଲାଙ୍କର ପାରସ୍ପରିକ ସମ୍ପର୍କରେ ତାହାର କୁପ୍ରଭାବ ପଡୁଛି ।'' ସ୍ୱୟଂ ବିଶପ ଗ୍ରୁଣ୍ଡ୍‌ଭିଗ୍ ମଧ୍ୟ ବୟସ୍କମାନଙ୍କର ବିଦ୍ୟାଳୟକୁ ଅଧିକ ସହାୟତା ଅବଶ୍ୟ ମିଳିବା ଉଚିତ ବୋଲି ଲେଖିଥିଲେ । କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କୁ ସେ ଜଣେ ଅତ୍ୟନ୍ତ ପ୍ରତିଭାସମ୍ପନ୍ନ ଏବଂ ସର୍ବାଧିକ ଉଦ୍ୟମଶୀଳ ଶିକ୍ଷକ ବୋଲି ବର୍ଣ୍ଣନା ମଧ୍ୟ କରିଥିଲେ । ଶିକ୍ଷାର କ୍ଷେତ୍ରରେ କଲ୍‌ଲ୍ ଯେଉଁ ନୂତନ ଉନ୍ମେଷଣାଟିର ସୂତ୍ରପାତ କରାଇଛନ୍ତି, ତାହା ସାଧାରଣ ଭାବରେ ମନୁଷ୍ୟମାନଙ୍କର ଜୀବନକୁ ଏବଂ ବିଶେଷ ଭାବରେ ଡେନ୍‌ମାର୍କ୍‌ର ଲୋକଜୀବନକୁ ଧନାଢ୍ୟ କରିବ ବୋଲି ଗ୍ରୁଣ୍ଡ୍‌ଭିଗ୍ ମତ ଦେଇଥିଲେ । ଆଉଜଣେ ଲେଖିଥିଲେ: '' ନିଜର କର୍ମଟିକୁ ଶ୍ରୀ କଲ୍‌ଲ୍ ଖୁବ୍ ଭଲ କରି ଜାଣନ୍ତି । ତାଙ୍କର ସବାମୂଳ ଅଭିପ୍ରାୟଟି ହେଉଛି ଯେ, ପ୍ରତ୍ୟେକ ହୃଦୟ ଭିତରେ ଜୀବନର ଯେଉଁ ଉତ୍ସଟି ପ୍ରଚ୍ଛନ୍ନ ଓ ସୁପ୍ତ ହୋଇ ରହିଛି, ସିଏ ସେଇଟିର ଦ୍ୱାରକୁ ଉନ୍ମୋଚିତ କରିଦେବେ, ନିତର ଜୀବନ୍ତ ବାକ୍ୟଗୁଡ଼ିକ ଦ୍ୱାରା ଆମ୍ଭର ପୃଥିବୀଟିକୁ ଭିତରୁ ଜାଗୃତ କରି ଆଣିବେ ଏବଂ ନିଜ ଦେଶରେ ଏପରି ପ୍ରକାରର ନାଗରିକମାନଙ୍କୁ ଗଢ଼ିହୋଇ ଆସିବାରେ ସାହାଯ୍ୟ କରିବେ, ଯେଉଁମାନେ କି ଆମ୍ଭର ସ୍ତରରେ ମଣିଷ ପରି ମଣିଷର ଜୀବନଟିଏ ପ୍ରକୃତରେ ବଞ୍ଚିପାରିବେ । ସେହି ନାଗରିକମାନଙ୍କ ଭିତରେ ଆଦୌ କୌଣସି ବ୍ୟାଧିଗ୍ରସ୍ତ ସଂକୀର୍ଣ୍ଣତା ନଥିବ, ପଶୁପରି ଆଚରଣ କରିବାର କୌଣସି ପ୍ରଲୋଭନ ନଥିବ ଏବଂ ସେମାନେ ଯୁଗପଦ୍ ଭାବରେ ଯାବତୀୟ ଉତ୍ତମ ତଥା ପ୍ରଶସ୍ତତାଯୁକ୍ତ କ୍ରିୟାଶୀଳତା ଲାଗି ସମର୍ଥ ମଧ୍ୟ ହେବେ ।''

ମହଜ୍ଜନମାନଙ୍କର ଏହିସବୁ ମନ୍ତବ୍ୟ ଏବଂ ଆବେଦନର କିଛି ଫଳ ଅବଶ୍ୟ ଫଳିଲା । କଲ୍‌ଲ୍ ବାର୍ଷିକ ୪୦୦ ମୁଦ୍ରା ସାହାଯ୍ୟ ପାଇବା ନିମନ୍ତେ ମନୋନୀତ ହୋଇ ପାରିଥିଲେ । ଏପର୍ଯ୍ୟନ୍ତ କର୍ତ୍ତାମାନେ ତାଙ୍କର ବିଦ୍ୟାଳୟ ଲାଗି ସଂପୃକ୍ତ ବିଭାଗଟି ଠାରୁ ପ୍ରଧାନତଃ ଯେଉଁ ବିମାତାର ବ୍ୟବହାର ପାଇଥିଲେ, ଏତେ ଦିନକେ ସେଥିରେ ଏକ ପରିବର୍ତ୍ତନ ଘଟିଥିଲା । ମାତ୍ର, ଶିକ୍ଷାର କ୍ଷେତ୍ରରେ ଯେତେବେଳେ ନୂଆ କରି କିଛି ହେବାକୁ ଯାଏ ଓ ଯେତେବେଳେ କେହି ଆଖି ଥିବା ଶିକ୍ଷକଜଣେ ଗୁହାରୁ ବାହାରିଯାଇ ଆଉକିଛି କରିବାକୁ ଆରମ୍ଭ କରନ୍ତି ଓ କିଞ୍ଚିତ୍ ସଫଳତା ଲାଭ କରନ୍ତି ତଥା ଲୋକସମର୍ଥନ ମଧ୍ୟ ପାଉଥିବା ପରି ବୋଧ ହୁଏ, ସେତେବେଳେ ପୁରୁଣା ଓ ପ୍ରଚଳିତ ଶିବିରଟିରେ ଚହଲ ପଡ଼ିଯାଏ । ପୁରୁଣାମାନେ କ'ଣ ପାଇଁ ନିଜକୁ ଆଉ ନିରାପଦ ଅର୍ଥାତ୍ ନିରଙ୍କୁଶ ବୋଲି ଅନୁଭବ କରନ୍ତିନାହିଁ ଏବଂ ତେଣୁ ପ୍ରତିରୋଧ ପ୍ରଦର୍ଶନ କରନ୍ତି । କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କର

ଜୀବନରେ ମଧ୍ୟ ତାହାହିଁ ଘଟିଲା । ଗୀର୍ଜା ଏବଂ ପ୍ରଚଳିତ ବିଦ୍ୟାଳୟ ସଂସ୍ଥା, ଦୁଇଆଡୁ ହିଁ ବିରୋଧ ଉଠିଥିଲା । ହୁଏତ ଆରମ୍ଭରୁ ହିଁ କୁହୁଳି କୁହୁଳି ଆସିଥିଲା, ବର୍ତ୍ତମାନ ପ୍ରତ୍ୟକ୍ଷରେ ପ୍ରକାଶ ପାଇଲା । ବିରୋଧୀମାନେ ଏକତ୍ର ବୈଠକ ଡାକି ଗୋଟିଏ କମିଟି ଗଠନ କଲେ ଏବଂ ଶିକ୍ଷାରେ ସଂକ୍ରମିତ ହୋଇ ଆସୁଥିବା ନୂତନ ବିଚାର ତଥା ପ୍ରୟୋଗଗୁଡ଼ିକର ମୁକାବିଲା କରିବାକୁ ସ୍ଥିର କରିଥିଲେ । କର୍ତ୍ତୃପକ୍ଷ ଶୀଘ୍ର କଲ୍‌ଲ୍‌ଙ୍କର ଶିକ୍ଷାନୁଷ୍ଠାନକୁ ଦେଉଥିବା ସହାୟତାକୁ ପ୍ରତ୍ୟାହାର କରିନଅନ୍ତୁ, ଏହିଭଳି ଦାବୀଟିଏ କରା ଯାଇଥିଲା । ବୈଠକରେ ଆଲୋଚନା ଦ୍ୱାରା ଘୋର ଚିନ୍ତା ବ୍ୟକ୍ତ କରା ଯାଇଥିଲା ଯେ, ବିଶପ ଗ୍ରୁଣ୍ଡ୍‌ଭିଗ୍‌ଙ୍କଠାରୁ ପ୍ରେରଣା ପାଇ ଏବେ ଗୋଟିଏ ଗୋଷ୍ଠୀ ସକ୍ରିୟ ହୋଇ ଉଠିଛନ୍ତି, ଯେଉଁମାନେ କି ସ୍ୱାଧୀନତାକୁ ନିଜର ବୃହତ୍ତମ ଲକ୍ଷ୍ୟରୂପେ ଗ୍ରହଣ କରିଛନ୍ତି । ଏମାନଙ୍କ ପଛରେ କ୍ରମେ ବେଶ୍ କିଛସଂଖ୍ୟକ ଲୋକ ବାହାରିଲେଣି । ପ୍ରବଳ ଉତ୍ତାପର ସହିତ ମନ୍ତବ୍ୟ କରା ଯାଇଥିଲା ଯେ, 'ସ୍ୱାଧୀନତା' ନାମକ ଶବ୍ଦଟା ପ୍ରକୃତରେ କେଡ଼େ ବଢ଼ିଆ ଶୁଭୁଛି, ମାତ୍ର ସ୍ୱାଧୀନତାର ଯେ ଅପବ୍ୟବହାର କରା ଯାଇପାରେ, ସେକଥା କେହି ବୁଝୁନାହାନ୍ତି । ଏହି ଗ୍ରୁଣ୍ଡ୍‌ଭିଗ୍ ଦଳଟି ଅତ୍ୟନ୍ତ ପରିମାଣରେ ସ୍ୱାଧୀନତାର ଅପବ୍ୟବହାର କରୁଛନ୍ତି ବୋଲି ଦୋଷାରୋପ ହୋଇଥିଲା । ସେମାନେ ପୁଣି ଗୀର୍ଜାର ବନ୍ଧନ ଭିତରୁ ମଧ୍ୟ ବାହାରିଯିବେ ବୋଲି କହିଲେଣି, ବିଦ୍ୟାଳୟରେ ମଧ୍ୟ ପୂରା ସ୍ୱାଧୀନତାରେ ସବୁ ଚାଲିବ ବୋଲି ଦାବୀ କରୁଛନ୍ତି । ଏହିସବୁ ସ୍ୱାଧୀନତା କେବଳ ବିନାଶ ଆଡ଼କୁ ହିଁ ସଂପୃକ୍ତ ସମସ୍ତଙ୍କୁ ନେଇଯିବ, ଶାନ୍ତିଭଙ୍ଗ କରିବ, ମନୁଷ୍ୟ ମନୁଷ୍ୟ ମଧ୍ୟରେ ରହି ଆସିଥିବା ଉତ୍ତମ ବୁଝାମଣାକୁ ନଷ୍ଟ କରିଦେବ । ଏବଂ ଏହାଦ୍ୱାରା ସାମୂହିକ ଆତ୍ମିକ ଜୀବନଟି ଘୋର ସଙ୍କଟର ସମ୍ମୁଖୀନ ହେବ ହିଁ ହେବ । ତେଣୁ, ସମୟ ଥାଉ ଥାଉ ଏଗୁଡ଼ିକୁ ବନ୍ଦ କରିବାକୁ ପଡ଼ିବ ବୋଲି ଗଭୀର ଉତ୍‌କଣ୍ଠା ପ୍ରକାଶ ପାଇଥିଲା । ଶିକ୍ଷା ବିଷୟରେ ବୈଠକରେ କୁହା ଯାଇଥିଲା ଯେ, ଦେଶରେ ପ୍ରଚଳିତ ଶିକ୍ଷାସମ୍ବନ୍ଧୀ ପ୍ରବିଧିଟି ଦ୍ୱାରା ଏହି କ୍ଷେତ୍ରରେ କେତେ ଭଲ ଫଳ ଫଳୁଛି, ମାତ୍ର ସେତିକିରେ ତଥାପି ସନ୍ତୁଷ୍ଟ ନହୋଇ ମୁକ୍ତ ବିଦ୍ୟାଳୟ (Friskoler) ଏବଂ ଲୋକ-ବିଦ୍ୟାଳୟ (Hoejskoler) ନାମକ ଦୁଇଟି ଆନ୍ଦୋଳନ ମଧ୍ୟ ମୁଣ୍ଡ ଟେକିବାକୁ ଉଦ୍ୟମ କଲାଣି । ଏବଂ, ଏହି ତଥାକଥିତ ଲୋକବିଦ୍ୟାଳୟ ଗୁଡ଼ିକରେ ପୁଣି କିଭଳି ଶିକ୍ଷାଦାନ ହେଉଛି ! ହଁ, ସେମାନେ କୃଷିବିଜ୍ଞାନ ବା ଜମିଜମା ବିଷୟରେ କିଛି କହୁଥିଲେ ପିଲାମାନଙ୍କର କିଛି ଲାଭ ସିନା ହେଉଥାନ୍ତା, - ନାଇଁ, ସେତିକିରେ ମନ ମାନିଲାନାହିଁ ଯେ, ଚାଷୀଘରର ଛୁଆମାନଙ୍କୁ ପୌରାଣିକ କାହାଣୀ କୁହାଯାଉଛି, ଆତ୍ମା ଏବଂ ଜୀବନରହସ୍ୟ ବିଷୟରେ ପ୍ରବଚନ ଦିଆଯାଉଛି । ସେମାନେ ହୃଦୟକୁ ଜାଗୃତ କରାଇ ଆଣୁଛନ୍ତି ବୋଲି କୁହାଯାଉଛି । ଏହି ସବୁକିଛିକୁ ଲକ୍ଷ୍ୟ କଲେ ଜଣାଯାଉଛି ଯେ, ସେମାନେ ଏକ ଶୃଙ୍ଖଳାହୀନ ସ୍ୱାଧୀନତା ନିମନ୍ତେ ଉତ୍ସାହୀ ହୋଇ ଏସବୁ

କରୁଛନ୍ତି ଏବଂ କହୁଛନ୍ତି । ତେଣୁ, ଏହି ପରିସ୍ଥିତିରେ ଅତ୍ୟନ୍ତ ଜରୁରୀ ହୋଇ ପଡୁଛି ଯେ ସେମାନଙ୍କର ବିରୋଧ କରି ଶକ୍ତିଶାଳୀ ଭାବରେ ସ୍ୱରଉତ୍ତୋଳନ କରାଯିବ ଏବଂ ଆମର ଏହି ନୂତନ ସଂଘଟିର ତାହାହିଁ ମୁଖ୍ୟ କାର୍ଯ୍ୟ ହୋଇ ରହିବ । ପ୍ରାୟ ୫୦ ଜଣ ସଦସ୍ୟଙ୍କର ଉପସ୍ଥିତିରେ ଏହିସବୁ ମତ ବ୍ୟକ୍ତ କରା ଯାଇଥିଲା ଏବଂ ପ୍ରସ୍ତାବ ଗୃହୀତ ହୋଇଥିଲା । ପରେ ସେମାନେ ପ୍ରାୟ ସାଢ଼େ ତିନିଶହ ବ୍ୟକ୍ତିଙ୍କ ଠାରୁ ଦସ୍ତଖତ ସଂଗ୍ରହ କରି ସରକାରଙ୍କ ପାଖକୁ ଏକ ଦୀର୍ଘ ଦରଖାସ୍ତ ବି ପଠାଇଥିଲେ ।

କଥା ଏତେଦୂର ଯିବାପରେ କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କର ବନ୍ଧୁଗୋଷ୍ଠୀ ମଧ୍ୟ ଆଉ ନୀରବ ଦ୍ରଷ୍ଟା ହୋଇ ରହିଲେନାହିଁ । ତାଙ୍କର ପୁରାତନ ଛାତ୍ର ୪୨ ଜଣ ସମ୍ମିଳିତ ଭାବରେ ସରକାରଙ୍କ ପାଖକୁ ଗୋଟିଏ ପ୍ରତିଆବେଦନ ମଧ୍ୟ ପଠାଇଥିଲେ । ସେଥିରେ ଅନ୍ୟ ପ୍ରସଙ୍ଗଗୁଡ଼ିକ ସହିତ ପୁରାତନମାନେ ପ୍ରଧାନତଃ ନିଜ ଅଭିଜ୍ଞତାକୁ ମୂଳ କରି ଏକଥା ମଧ୍ୟ କହିଥିଲେ ଯେ, ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର ସେହି ବିଦ୍ୟାଳୟରେ କେବଳ ପାଠସମ୍ବନ୍ଧୀୟ ତଥ୍ୟ ଯୋଗାଇ ଦିଆ ଯାଉନାହିଁ, ଏକ ଯଥାର୍ଥତମ ଅର୍ଥରେ ସେଠାରେ ଜାତୀୟ ଲୋକଜୀବନକୁ ଜାଗ୍ରତ କରି ଆଣିବାଲାଗି ହିଁ ପ୍ରୟାସ କରାଯାଉଛି, ଜନଗଣଙ୍କ ଭିତରେ ଲୁକ୍କାୟିତ ହୋଇ ରହିଥିବା ଶକ୍ତିଗୁଡ଼ିକୁ କ୍ରିୟାଶୀଳ କରାଯାଉଛି ଏବଂ ଲବ୍ଧ ତଥ୍ୟଜ୍ଞାନ ଗୁଡ଼ିକୁ ଜାତୀୟ ଚେତନାର ଜାଗରଣ କାର୍ଯ୍ୟରେ ବ୍ୟବହାର କରିବାର ବାଟଗୁଡ଼ିକୁ ମଧ୍ୟ ଦେଖାଇ ଦିଆଯାଉଛି । ସେମାନଙ୍କ ଭଳି ଦେଶର ଅନ୍ୟ ସମବୟସୀ ନାଗରିକମାନେ ମଧ୍ୟ ସେହି ବିଦ୍ୟାଳୟ ଦ୍ୱାରା ଉପକୃତ ହେବେ ବୋଲି ସେମାନେ ଆଶା ପୋଷଣ ବି କରିଥିଲେ । ଲୋକବିଦ୍ୟାଳୟଟି ଅଗ୍ରସର ହୋଇ ଚାଲିଥାଏ । ପିଲାଙ୍କ ସ୍କୁଲରେ ଚାରିଟି ଶ୍ରେଣୀରେ ୬୯ ଜଣ ପିଲା ଥାଆନ୍ତି । ଦିନେଛଡ଼ା ଦିନେ ସ୍କୁଲ ହେଉଥାଏ । ଲୋକବିଦ୍ୟାଳୟରେ ସାମୂହିକ ଜୀବନ ମଧ୍ୟ ପୂର୍ବପରି ଚାଲିଥାଏ । ଭୋଜନରେ କୌଣସି ଆଡ଼ମ୍ବର ନଥାଏ । ଠିକ୍ ଜଣେ କୃଷକଘରର ଭୋଜନ ପରି ଏବଂ କଲ୍‌ଲ୍‌କୁ ସେହିଭଳି ଭୋଜନ ହିଁ ସବୁଠାରୁ ସୁସ୍ୱାଦୁ ଲାଗେ ବୋଲି ଗୋଟିଏ ଚିଠିରେ ସିଏ ସ୍ୱୟଂ ଉଲ୍ଲେଖ କରିଛନ୍ତି ।

ଉର୍ଦ୍ଧ୍ୱରୁ କର୍ତ୍ତାମାନେ ତାଙ୍କ ଛାତ୍ରମାନଙ୍କର ପରୀକ୍ଷା ନେବାକୁ ଆସିଥିଲେ । ଛାତ୍ରମାନେ ଅତ୍ୟନ୍ତ ସନ୍ତୋଷଜନକ ଭାବରେ ପ୍ରଶ୍ନଗୁଡ଼ିକର ଉତ୍ତର ଦେଇଥିଲେ । ପରୀକ୍ଷାପରେ ଗୀତଟିଏ ବୋଲା ହେଲା ଏବଂ ସ୍ୱୟଂ ପରୀକ୍ଷକ ଛାତ୍ରମାନଙ୍କର ଯୋଗ୍ୟତାର ପ୍ରଶଂସା କରି ଭାଷଣଟିଏ ବି ଦେଇଥିଲେ । ମାତ୍ର, ମୋଟେ କୌଣସି ବହି ବ୍ୟବହାର କରାନଯାଇ ତଥାପି ଛାତ୍ରମାନେ ଏତେସବୁ ଶିଖି ପାରୁଥିଲେ, ସେ ସେହି ବିଷୟରେ ବିସ୍ମୟ ପ୍ରକାଶ କରିଥିଲେ । କଲ୍‌ଲ୍ ଉତ୍ତର ଦେଇ କହିଥିଲେ, ‘‘ଆମର ଏଠାରେ ସବୁକିଛି ମୌଖିକ ଭାବରେ ହୁଏ । ଛାତ୍ରମାନେ ଖୁବ୍ ଖୁସୀ ହୋଇ ଶୁଣନ୍ତି ଏବଂ ଏହାରି ଫଳରେ ଶିକ୍ଷାପ୍ରଦାନଟି

ଅତ୍ୟନ୍ତ ଜୀବନ୍ତ ହୋଇ ରହିଥାଏ ।'' ସାଧାରଣ ଭାବରେ ଛାତ୍ରମାନଙ୍କର ମୁଖମଣ୍ଡଳରେ ସର୍ବଦା ଏପରି ଏକ ଖୁସୀ ଉଦ୍‌ଭାସିତ ହୋଇ ଉଠୁଥିଲା, ଯାହା ପରୀକ୍ଷକମାନଙ୍କୁ ଆଶ୍ଚର୍ଯ୍ୟ କରି ଦେଇଥିଲା । କିନ୍ତୁ ବିଦ୍ୟାଳୟର ଗୋଷ୍ଠୀଜୀବନ ଓ ଶିକ୍ଷାଦାନର ଫଳରେ ସେହି ଖୁସୀ କିପରି ସମ୍ଭବ ହେଉଛି, ସେମାନେ ସେକଥା ଅବଶ୍ୟ ବୁଝି ପାରିନଥିଲେ ।

ସାନପିଲାଙ୍କର ଏହି ମୁକ୍ତ ସ୍କୁଲଗୁଡ଼ିକର ସଂଖ୍ୟା କ୍ରମଶଃ ବଢ଼ିବାକୁ ଲାଗିଲା । ଆଖପାଖର ତରୁଣମାନେ ମଧ୍ୟ ସପ୍ତାହକୁ ଦୁଇଥର ବିଦ୍ୟାଳୟରେ ଏକାଠି ହେଉଥିଲେ ଏବଂ କଲ୍‌ଲ୍‌ଙ୍କର ଉପସ୍ଥିତିରେ ସେଠାରେ ବହୁବିଧ ବିଷୟର ଆଲୋଚନା ହେଉଥିଲା । ଗୀର୍ଜାମାନେ କାଳକାଳରୁ ପ୍ରଚଳିତ ଗୁଳାମାନଙ୍କରେ ଚାଲି ଆସିଥିଲେ ଏବଂ ତେଣୁ କଲ୍‌ଲ୍ ଅନେକ ସମୟରେ ସେଠାରେ କାର୍ଯ୍ୟ କରୁଥିବା ପାଦ୍ରୀମାନଙ୍କ ବିଷୟରେ କଠୋର ଟୀକାମାନ କରୁଥିଲେ । ଏଣିକି ବରଂ ଲୋକମାନେ ନିଜର ନୂତନ ରୁଚି ଓ ଆବଶ୍ୟକତା ଅନୁସାରେ ନୂଆଭଳି ଗୀର୍ଜାଗୋଷ୍ଠୀ ଗଠନ କରିବା ଉଚିତ ବୋଲି ସେ ମତ ଦେଉଥିଲେ । ବେଳେ ବେଳେ କୃଷକ ମାନଙ୍କ ପ୍ରତି ମଧ୍ୟ କଲ୍‌ଲ୍ କମ୍ କଠୋର ହେଉନଥିଲେ । ରବିବାର ଗୀର୍ଜା-ଉପାସନାକୁ ବଡ଼ ଚାଷୀ ଓ ଜମିମାଲିକମାନେ ଗାଡ଼ୀରେ ଚଢ଼ି ଯାଉଥିଲେ ଏବଂ ସେହିସବୁ ଜମିରେ ମୂଲିଆ ହୋଇ କାମ କରୁଥିବା ଅଳ୍ପବଳମାନେ ପାଦରେ ଚାଲି ଚାଲି ହିଁ ଯାଉଥିଲେ । ଅନେକ ସମୟରେ ଏଥିପାଇଁ ଦୀର୍ଘ ପଥ ଅତିକ୍ରମ କରିବାକୁ ହେଉଥିଲା । ଏହି ତାରତମ୍ୟକୁ ବିଦ୍ରୁପ କରି କଲ୍‌ଲ୍ ବଡ଼ମାନଙ୍କୁ କାଟିଲାଭଳି ବହୁତ କଥା କହୁଥିଲେ ।

କ୍ରମେ ବିଦ୍ୟାଳୟଟି ଆପଣା ବେଗରେ ଚାଲିବାକୁ ଆରମ୍ଭ କଲା । ଏହାପରେ କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କୁ ଆଉ ଛାତ୍ରସଂଗ୍ରହ କରି ବୁଲିବାକୁ ପଡ଼ିଲାନାହିଁ । କୃଷକ ପିତାମାତା ନିଜ ଇଚ୍ଛାରେ ହିଁ ଆପଣାର ପିଲାଙ୍କୁ ସେଠାକୁ ପଠାଇଥିଲେ । ନଭେମ୍ବର ଠାରୁ ବିଦ୍ୟାଳୟ ଆରମ୍ଭ ହେଉଛି ଏବଂ ତେଣୁ ଇଚ୍ଛୁକ ପିତାମାତା ସେମାନଙ୍କର ପିଲାଙ୍କୁ ଏଠାକୁ ପଠାନ୍ତୁ - ଏହି ମର୍ମରେ ଖବରକାଗଜ ମାନଙ୍କରେ କୌଣସି ବିଜ୍ଞପ୍ତି ଦିଆ ଯାଉନଥିଲା । ''ସ୍ୱୟଂ ପରମେଶ୍ୱରଙ୍କର ପ୍ରେରଣାରେ ଯେତେବେଳେ ସ୍କୁଲଟି ଆରମ୍ଭ ହୋଇଛି, ସେତେବେଳେ ସେହି ପରମେଶ୍ୱର ହିଁ ସେଇଟିକୁ ଅବଶ୍ୟ ଚଳାଇନେବେ,''- ବହୁତ ଅବସରରେ ସେ ଏହିପରି କହୁଥିଲେ । କ୍ରମେ ଶିକ୍ଷାର୍ଥୀମାନେ ଦେଶର ଚାରିଆଡୁ ବିଭିନ୍ନ ପ୍ରାନ୍ତରୁ ଆସି ମଧ୍ୟ ଯୋଗ ଦେଇଥିଲେ । ମୁକ୍ତ ପ୍ରାଥମିକ ପାଠଶାଳାଗୁଡ଼ିକ ମଧ୍ୟ ସଂଖ୍ୟାରେ ବଢ଼ିବାରେ ଲାଗିଥାନ୍ତି । ୧୮୫୦ ମସିହାରେ ଶ୍ରୀ କଲ୍‌ଲ୍‌ଙ୍କର ଶିକ୍ଷାକେନ୍ଦ୍ରରେ ହିଁ ତାଙ୍କରି ଦ୍ୱାରା ପ୍ରତିଷ୍ଠିତ ୧୨ଟି ଯାକ ପାଠଶାଳାର ଶିକ୍ଷକମାନେ ଏକାଠି ଏକ ପାରସ୍ପରିକ ଆଲୋଚନାରେ ମିଳିତ ହୋଇଥିଲେ । ତାହା ଏହାଦ୍ୱାରା ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ ମଧ୍ୟ କରିଥିଲା ଏବଂ ନୂତନ ଶିକ୍ଷାପଦ୍ଧତିର ପ୍ରେରଣାଟି ଏକ ନୂତନ ସୋପାନରେ ଆସି ପହଞ୍ଚିଥିଲା । ଉଭୟ

ଲୋକବିଦ୍ୟାଳୟ ଏବଂ ମୁକ୍ତ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଏବଂ ବରିଷ୍ଠ ଶୁଭେଚ୍ଛୁମାନେ ସେହି ସମ୍ମିଳନୀରେ ଯୋଗ ଦେଇଥିଲେ । କର୍ତ୍ତୃପକ୍ଷମାନଙ୍କ ସହିତ ପାଠଶାଳାର କିଭଳି ସମ୍ପର୍କ ରହିବ, ଏଠାରେ ମୁଖ୍ୟତଃ ତାହାରି ପ୍ରସଙ୍ଗ ପଡ଼ିଥିଲା । କ୍ଷେତ୍ରୀୟ କର୍ତ୍ତାମାନେ କିପରି ଏକାଧିକ ପ୍ରକାରେ ବିଦ୍ୟାଳୟର ଶିକ୍ଷଣପଦ୍ଧତିରେ ହସ୍ତକ୍ଷେପ କରିବାକୁ ଇଚ୍ଛା କରୁଛନ୍ତି, ଉପସ୍ଥିତ ଅନେକେ ତାହାର ଦୃଷ୍ଟାନ୍ତ ଦେଇଥିଲେ । ବିଦ୍ୟାଳୟର ପ୍ରତ୍ୟେକ ଛାତ୍ର ଅବଶ୍ୟ ପରୀକ୍ଷାରେ ବସୁ ବୋଲି ସେମାନେ ଖୁବ୍ ଜୋର ଦେଉଥିଲେ ଏବଂ ଏହାକୁ ହିଁ ଉପରୁ କୌଣସି ସହାୟତା ପାଇବାର ସର୍ତ୍ତରୂପେ ଗ୍ରହଣ କରାଯାଉ ବୋଲି ଜିଦ୍ କରୁଥିଲେ । ସେହି ସମ୍ମିଳନୀରେ ଶ୍ରୀଯୁକ୍ତ କଲ୍‌ଲ୍ ହିଁ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ ଏବଂ ନୂତନ ଶିକ୍ଷାଦୃଷ୍ଟିର ଆଭିମୁଖ୍ୟକୁ ସମସ୍ତଙ୍କ ଲାଗି ସରଳ ଓ ସ୍ପଷ୍ଟ କରି ଦେଇଥିଲେ ।

ସ୍ୱପ୍ନମାନେ ପ୍ରସାରିତ ହୋଇ ଯାଉଥିବା ସଙ୍ଗେ ସଙ୍ଗେ ନୂଆ ନୂଆ ସଂକଳ୍ପ ଆସି ପହଞ୍ଚି ଯାଉଥାଏ । ହାତରେ ଯଥେଷ୍ଟ ଅର୍ଥ ନଥାଏ, କିନ୍ତୁ କୌଣସି କାର୍ଯ୍ୟ କଦାପି ଅର୍ଥପାଇଁ ଅଟକି ରହିବନାହିଁ ବୋଲି ଭିତରେ ସୁଦୃଢ଼ ବିଶ୍ୱାସ ରହିଥାଏ । ଅଧିକ ବଳ ଦେବାଭଳି ସମଧର୍ମୀ ସାଥୀମାନେ ବି ମିଳି ଯାଉଥିଲେ । ଏବଂ, ସାଥୀମାନେ ଏହିପରି ମିଳି ଯାଉଥିଲେ ଆଦୌ କୌଣସି ଅଭାବବୋଧ ଘାରିବାକୁ ମୋଟେ ଆସିବନାହିଁ । ତାହାହିଁ ଘଟିଲା । ସଂପ୍ରସାରିତ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଆଉଗୋଟିଏ ସ୍ଥାନରେ ଜମି ଖରିଦ କରାଗଲା । ନୂଆ ଆବାସମାନ ତିଆରି ହେଲା । କଲ୍‌ଲ୍ ନିରନ୍ତର ଅନୁଭବ କରୁଥିଲେ ଯେ, ସିଏ ଯାହାକିଛି କରୁଛନ୍ତି, ତାହାକୁ କେବଳ ପରମେଶ୍ୱରଙ୍କର ଇଚ୍ଛାକୁ ପୂରଣ ନିମନ୍ତେ ହିଁ କରୁଛନ୍ତି । ସତେଅବା ଯନ୍ତ୍ରୀଟିଏ ଯନ୍ତ୍ରକୁ ଚଳାଇ ନେବାରେ ଲାଗିଛି । ସିଏ ଲେଖିଛନ୍ତି: ''ଦିନ ଓ ସମୟ ଜାଣି ଆବଶ୍ୟକ ଅର୍ଥ ମିଳି ଯାଉଥିଲା । ଅର୍ଥ ପ୍ରକୃତରେ କେଉଁଠାରୁ କେଉଁ ପ୍ରକାରେ ଆସିବ, ପ୍ରାୟ ସେହି କ୍ଷଣଟି ପର୍ଯ୍ୟନ୍ତ ସେବିଷୟରେ ମୁଁ କୌଣସି ଅନ୍ଦାଜ କରି ପାରୁନଥିଲି ।'' ଆବଶ୍ୟକତା ଆସି ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ତାହାର ପୂରଣ କରିବା ସତେ ଯେପରି ଈଶ୍ୱରଙ୍କର କାର୍ଯ୍ୟ ହୋଇ ରହିଥିଲା ।

ଡାଲୁମ୍ (Dalum) ନାମକ ଏହି ନୂଆ ଜାଗାଟିକୁ ଉଠିଆସିବା ପରେ କଲ୍‌ଲ୍ ତେଣିକି କେବଳ ବୟସ୍କମାନଙ୍କ ବିଦ୍ୟାଳୟଟି ପଛରେ ଲାଗି ପଡ଼ିଥିଲେ । ପିଲାମାନଙ୍କର ସ୍କୁଲ ପାଇଁ ଖାସ୍ ସମୟ ଦେଇନଥିଲେ । ବୟସ୍କ-ବିଦ୍ୟାଳୟର ମୂଳ ଲକ୍ଷ୍ୟଗୁଡ଼ିକ ସେହି ଆଗପରି ଥିଲା, ମାତ୍ର ସେଗୁଡ଼ିକୁ ସାକାର କରି ଆଣିବାର କାର୍ଯ୍ୟଟି ସର୍ବଦା ସତେଅବା ଏକ ଦୁଃସାହସିକ ନୂତନଯାତ୍ରା ପରି ଅନୁଭବ ହେଉଥିଲା । ରୁଇସ୍‌ଲିଙ୍ଗ ଠାରେ ଦୁଇବଖରା ଥାନରେ ଛଅଟି ଛାତ୍ରଙ୍କୁ ନେଇ କାର୍ଯ୍ୟ ଆରମ୍ଭ ହୋଇଥିଲା । ଏବେ ଦୁର୍ଗ ପରି ଦେଖା ଯାଉଥିବା ଏଠି ନୂତନ ସୌଧଟିରେ ଛାତ୍ରସଂଖ୍ୟା ଶହେକୁ ଅତିକ୍ରମ କରିଗଲା । ସେଠାରେ

ପାଞ୍ଚୋଟି ଶୀତଋତୁରେ ପାଞ୍ଚମୁଥ ଛାତ୍ର ଆସି ଶିକ୍ଷା ସମ୍ପୂର୍ଣ୍ଣ କରି ଚାଲିଯିବା ପରେ ୧୮୭୩ ଗ୍ରୀଷ୍ମକାଳରେ କ୍ରିଷ୍ଟେନ୍ କଲ୍‌ଲ୍ ଡେନ୍‌ମାର୍କ୍‌ର ପ୍ରଥମ କନ୍ୟା-ବିଦ୍ୟାଳୟ ଆରମ୍ଭ କରିଥିଲେ । ସେଥିରେ ପ୍ରଥମ ବର୍ଷ ତିନିମାସିଆ ପାଠକ୍ରମ ନିମନ୍ତେ ୧୮ ଜଣ ଛାତ୍ରୀ ଆସି ଯୋଗ ଦେଇଥିଲେ । ୧୮୭୫ ଠାରୁ ସେଠାରେ ବାର୍ଷିକ ଶିକ୍ଷକ-ସମାବେଶର କାର୍ଯ୍ୟକ୍ରମ ମଧ୍ୟ ଆରମ୍ଭ ହୋଇଥିଲା ଓ ଦେଶର ଭିନ୍ନ ଭିନ୍ନ ପ୍ରାନ୍ତରୁ ଶିକ୍ଷକମାନେ ଆସି ଯୋଗ ଦେଉଥିଲେ । ଶିକ୍ଷା ବିଷୟରେ ନିର୍ଭୀକ ଚର୍ଚ୍ଚାମାନ ହେଉଥିଲା ଏବଂ ନିର୍ଭୀକ ଭାବରେ ଆଗକୁ ବାଟମାନ କଢ଼ାହେବାରେ ଲାଗିଥିଲା । ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକର ଶିକ୍ଷକମାନଙ୍କର ବାର୍ଷିକ ସମାବେଶଟି ମଧ୍ୟ ଆଗପରି ଉତ୍ସାହର ସହିତ ଲାଗି ରହିଥିଲା ।

ଘର ବଢ଼ିଲା, ଛାତ୍ରଛାତ୍ରୀଙ୍କର ସଂଖ୍ୟା ବଢ଼ିଲା, ଆହୁରି ଅଧିକ ଶିକ୍ଷକ ଆସି ଯୋଗ ଦେଲେ । ତଥାପି, ଏହି ଯାବତୀୟ ସଂପ୍ରସାରଣରେ କଲ୍‌ଲ୍ ହି ସକଳ ଅର୍ଥରେ ସକ୍ରିୟ ମୂଳବିନ୍ଦୁଆଟିଏ ହୋଇ ରହିଥାନ୍ତି । ତାଙ୍କର ବିଦ୍ୟାଳୟରୂପୀ ସେହି ସଂସାରଟିରେ କ'ଣ ଖାଲି ତଥାକଥିତ ପାଠପଢ଼ା ହେଉଥିଲା ? ଯାବତୀୟ ଅସଲ ଶିକ୍ଷାକୁ ହୁଏତ କେବେହେଲେ ଖାଲି ପାଠପଢ଼ାର ଏକ କାର୍ଯ୍ୟକ୍ରମ ବୋଲି କୁହାଯାଇ ପାରିବନାହିଁ । ଅସଲ ଶିକ୍ଷାକୁ ଏକ ବଳିଷ୍ଠତର ଏବଂ ବାସ୍ତବତର ଅର୍ଥରେ ଏକ ବ୍ୟକ୍ତିଗତ ସମ୍ବନ୍ଧସ୍ଥାପନ ଅଥବା ସଂକ୍ରମଣ ବୋଲି କୁହାଯାଇ ପାରିବ । କେବଳ ଶ୍ରେଣୀଗୃହର ଅଧ୍ୟାପନା ସହିତ ହିଁ କଦାପି ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର ଧନ୍ଦା ଶେଷ ହୋଇ ଯାଉନଥିଲା । ଶିକ୍ଷାର୍ଥୀମାନଙ୍କର ଜଣେ ଜଣେ ବ୍ୟକ୍ତି ହିସାବରେ ମଧ୍ୟ ବହୁତ ସମସ୍ୟା ରହିଥିଲା;- ସ୍ୱପ୍ନମାନ ବି ଥିଲା । ଆଗକୁ ଯାଇ ସେମାନେ ହୁଏତ ଏଇଟା ବା ସେଇଟା ହେବେ ବୋଲି ବିଚାର କରୁଥିଲେ । କିମ୍ବା ନିଜ ଭିତରେ କ'ଣସବୁ କୁଣ୍ଠା ବା ଭୟଦ୍ୱାରା ସନ୍ତାପିତ ହୋଇ ରହିଥିଲେ । ଏହି ସବୁକିଛିକୁ ନେଇ ସେମାନେ ପ୍ରତିକାର ଅର୍ଥାତ୍ ସନ୍ଦୀପନ ଲୋଡ଼ି କଲ୍‌ଲ୍‌ଙ୍କ ପାଖକୁ ଯାଉଥିଲେ, ତାଙ୍କ ପାଖରେ ସବୁ ବୋଝକୁ ନେଇ ଉତାରି ଦେଉଥିଲେ ଏବଂ ସେଠାରୁ ଉଶ୍ୱାସ ଓ ଉତ୍ସାହିତ ହୋଇ ଫେରୁଥିଲେ । ହୁଏତ ଏହାରିଦ୍ୱାରା ସେମାନେ ହଜି ହଜି ଯାଇଥିବା ପରି ବହୁ ଡ଼ୋରକୁ ପୁନର୍ବାର ପାଇ ପାରୁଥିଲେ, ସଂବଳିତ ହେଉଥିଲେ । ଏପରି ଗୋଟିଏ ଉପଚାର କ'ଣ ଖାଲି ଶିକ୍ଷାର୍ଥୀମାନଙ୍କୁ ଉପକୃତ କରିଥାଏ ? ତାହା ଶିକ୍ଷକକୁ ମଧ୍ୟ କମ୍ ଉପକୃତ କରେନାହିଁ । ତା'ର ଅଭିବୃଦ୍ଧିରେ ସାହାଯ୍ୟ କରେ, ତାକୁ ତରୁଣକରି ରଖେ ଅର୍ଥାତ୍ ଅଧିକ ଗ୍ରହଣଶୀଳ କରେ, ଅଧିକ ସହାନୁଭବ ଓ ସହାନୁଭବର ଯୋଗ୍ୟ କରାଏ । ନିଜର ପୁରାତନ ଶିକ୍ଷାର୍ଥୀମାନଙ୍କ ସହିତ ମଧ୍ୟ ଶ୍ରୀ କଲ୍‌ଲ୍ ପୂର୍ଣ୍ଣ ସମ୍ପର୍କ ରଖୁଥିଲେ । ସଂସାରରେ ପ୍ରବେଶ କରିସାରିବା ପରେ ମଧ୍ୟ ସେମାନେ ନିଜର ପ୍ରିୟ ବିଦ୍ୟାଳୟ ଓ ପ୍ରିୟ କଲ୍‌ଲ୍‌ଙ୍କୁ ଭେଟିବାକୁ ଆସୁଥିଲେ । ସର୍ବୋପରି ନିଜ କୃତଜ୍ଞତା ପ୍ରକଟ କରିବାକୁ ହିଁ ଆସୁଥିଲେ । ଆପଣାକୁ ବିଦ୍ୟାଳୟର ଏକ ଅଂଶ ବୋଲି

ଅନୁଭବ କରୁଥିଲେ । ସବୁଠାରୁ ଅଧିକ ଚାକ୍ଷୁଷ ଭାବରେ ସେହିମାନଙ୍କର ମାଧ୍ୟମରେ ହିଁ ସ୍କୁଲଟିର ବାର୍ତ୍ତାଟି ବୃହତ୍ତର ଲୋକସମାଜରେ ଖେଳିଯାଇ ପାରୁଥିଲା । ଏକାଧିକ ଦୃଷ୍ଟିରୁ ତାହାକୁ ହିଁ ଯେକୌଣସି ବିଦ୍ୟାଳୟ ଲାଗି ଏକ ଅସଲ ପରିପୂର୍ଣ୍ଣତା ବୋଲି କୁହାଯାଇ ପାରିବ ।

ତଥାପି ଗୀର୍ଜା ଓ ଶିକ୍ଷାର ସରକାରୀ ବିଭାଗଟିର ଏହି ନୂଆ ଉଦ୍ୟମଟି ପ୍ରତି ଆରମ୍ଭରୁ ରହିଥିବା ମତିଗତି ବଦଳୁନଥାଏ । ସମ୍ଭବତଃ କଲ୍‌ଲ୍‌ଙ୍କର ସ୍କୁଲଟି ସହିତ ମୁଷ୍ଟିଯୁଦ୍ଧ କରିବାକୁ ସେମାନେ ପାଖରେ ଆଉ ଗୋଟିଏ ବୟସ୍କସ୍କୁଲ ଆରମ୍ଭ କରାଇଥିଲେ । ପ୍ରାୟ ଶେଷ ପର୍ଯ୍ୟନ୍ତ କଲ୍‌ଲ୍ ତାଙ୍କର ସ୍କୁଲ ଚଳାଇବା ସକାଶେ ପାଉଥିବା ଆର୍ଥିକ ସହାୟତାରେ କୌଣସି ବୃଦ୍ଧି କରାଯାଇ ନଥିଲା । ସାହାଯ୍ୟବୃଦ୍ଧି ପାଇଁ ଆବେଦନପତ୍ର ଯାଉଥିଲା, ମାତ୍ର ଆଦୌ କିଛି ଘଟୁନଥିଲା । କାରଣ କେବଳ ଗୋଟିଏ, - ଯେଉଁ ବିଦ୍ୟାଳୟରେ ସବୁ ମୌଖିକ ଭାବରେ ଚାଲେ, କୌଣସି ପାଠ୍ୟପୁସ୍ତକ ବ୍ୟବହାର କରା ଯାଏନାହିଁ ଓ ଶିକ୍ଷାର୍ଥୀମାନେ ପରୀକ୍ଷା ଦିଅନ୍ତିନାହିଁ, କର୍ତ୍ତାମାନେ କେଉଁ ନ୍ୟାୟରେ ତାହାକୁ ଏକ ବିଦ୍ୟାଳୟ ବୋଲି ଗ୍ରହଣ କରି ଥାଆନ୍ତେ ? ଗୋଟିଏ ପତ୍ରରେ ସରକାରଙ୍କ ପକ୍ଷରୁ ତାହାକୁ ଏକ 'ତଥାକଥିତ' ବୟସ୍କ ସ୍କୁଲ ବୋଲି କୁହା ଯାଇଥିଲା ଏବଂ ଆକ୍ଷେପ କରି ସେଠାରେ କେତେକ ଗ୍ରୁଣ୍ଡ୍‌ଭିଗ୍‌ପନ୍ଥୀ ଧର୍ମୀୟ ପ୍ରୋପାଗାଣ୍ଡା କରୁଛନ୍ତି ବୋଲି ଅପବାଦ ଦିଆ ଯାଇଥିଲା । ତେଣୁ, ବାରମ୍ବାର ପତ୍ର ଲେଖି କିଛି ଫଳ ଫଳିଲାନାହିଁ । ଏହି ଭିଡ଼ାଓଟରାର ଅବସାନ ହେଲା, ଯେତେବେଳେ ସ୍ୱୟଂ କ୍ରିଷ୍ଟେନ୍ କଲ୍‌ଲ୍ ନିଜ ଆଡୁ ହିଁ ଏହି ସାହାଯ୍ୟ ଦରକାର ନାହିଁ ବୋଲି କର୍ତ୍ତାମାନଙ୍କୁ ଜଣାଇ ଦେଇଥିଲେ । ଆର୍ଥିକ ଦୃଷ୍ଟିରୁ ତାଙ୍କ ବିଦ୍ୟାଳୟ ଏଣିକି ସରକାରୀ ସାହାଯ୍ୟ ବ୍ୟତୀତ ବି ଚଳିପାରିବ, ସେ ସରକାରଙ୍କୁ ସେହି କଥାଟି ଜଣାଇ ଦେଇଥିଲେ । ବନ୍ଧୁମାନେ ଏହି ପଦକ୍ଷେପଟିରେ ଖୁବ୍‌ବେଶୀ ସୁଖୀ ହୋଇନଥିଲେ । ସେମାନେ ଭାବୁଥିଲେ, - ଅଧିକ ପଇସା ଆସୁ, ସେଇ ପଇସା ଅନ୍ୟାନ୍ୟ ବହୁତ କାର୍ଯ୍ୟରେ ଲାଗି ପାରିବ । ହୁଏତ ଶିକ୍ଷକମାନଙ୍କର ପାରିଶ୍ରମିକ ବଢ଼ିବ କିମ୍ବା ଦରିଦ୍ର ଶିକ୍ଷାର୍ଥୀମାନଙ୍କୁ ସାହାଯ୍ୟ ରୂପେ ଦିଆଯିବ । କିନ୍ତୁ, କଲ୍‌ଲ୍‌ଙ୍କର ନିଷ୍ପତ୍ତିଟି ହିଁ କାର୍ଯ୍ୟକାରୀ ହୋଇଥିଲା । ଏବଂ, ଏହି ଘଟଣାର ଛଅସପ୍ତାହ ପରେ କଲ୍‌ଲ୍ ଏହି ପୃଥିବୀରୁ ବିଦାୟ ନେଇଥିଲେ ।

୧୮୬୮ ମସିହା ଜାନୁଆରୀ ମାସରେ ହିଁ କ୍ରିଷ୍ଟେନ୍ କଲ୍‌ଲ୍ ସଂପୃକ୍ତ କର୍ତ୍ତାମାନଙ୍କ ପାଖକୁ ବିଦ୍ୟାଳୟ ବିଷୟରେ ତାଙ୍କର ସର୍ବଶେଷ ବିବରଣୀଟି ପ୍ରେରଣ କରିଥିଲେ । ସେଥିରେ ସିଏ ତାଙ୍କ ଜୀବନଯାକର ଉଦ୍ୟମ ଓ ପ୍ରୟୋଗ ସମ୍ପର୍କରେ ସତେଅବା ଗୋଟିଏ ସଂକ୍ଷିପ୍ତ ସାର ଉପସ୍ଥାପିତ କରିଥିଲେ :

''ଏହି ବିଦ୍ୟାଳୟଟିକୁ ନିମ୍ନସ୍ୱାକ୍ଷରକାରୀ ବୟସ୍କ ତରୁଣ, ବିଶେଷତଃ କୃଷକ

ପରିବାରର ତରୁଣମାନଙ୍କ ପାଇଁ ୧୮୪୯ ମସିହା ନଭେମ୍ବର ମାସରେ ରୁଇସ୍‌ଲିଙ୍ଗଠାରେ ଆରମ୍ଭ କରିଥିଲା । ପ୍ରଥମେ ସେହି ବିଦ୍ୟାଳୟରେ ଛଅଜଣ ଛାତ୍ର ହିଁ ଥିଲେ । ପରବର୍ଷ ବିଦ୍ୟାଳୟ ଆଉ ଏକ ଜାଗାକୁ ଉଠିଗଲା ଓ ସେବର୍ଷ ଛାତ୍ରସଂଖ୍ୟା ଏଗାରକୁ ବୃଦ୍ଧି ପାଇଥିଲା । ପରବର୍ତ୍ତୀ ଦୁଇବର୍ଷ ମଧ୍ୟରେ ସ୍କୁଲର ନିଜ ଗୃହ ନିର୍ମିତ ହୋଇଥିଲା ଏବଂ ଦୁଇଜଣ ଶିକ୍ଷକଙ୍କ ସହିତ ୧୫ ଜଣ ଛାତ୍ର ରହିଥିଲେ ।

" ୧୮୫୩ ରୁ ୧୮୬୨ ପର୍ଯ୍ୟନ୍ତ ବିଦ୍ୟାଳୟଟି ନିଜ ଗୃହରେ ହିନ୍‌ସ୍‌ହଲ୍‌ମ୍ ନିକଟବର୍ତ୍ତୀ ଡାଲ୍‌ବୁଇ (Dalby) ଠାରେ ଚାଲିଥିଲା; ଶିକ୍ଷକ ସେହି ଦୁଇଜଣ ଥିଲେ ଓ ୧୬ ଓ ୩୬ ପର୍ଯ୍ୟନ୍ତ ଛାତ୍ର ଯୋଗ ଦେଉଥିଲେ । ପାଖରେ ସେତେବେଳେ ସାନପିଲାଙ୍କ ପାଇଁ ମଧ୍ୟ ପାଠଶାଳାଟିଏ ଆରମ୍ଭ ହୋଇଥିଲା ଓ ସେହି ମୁକ୍ତ ପାଠଶାଳାରେ ୭୦ ଜଣ ପିଲା ପାଠ ପଢୁଥିଲେ ।

୧୮୬୩ରେ ବିଦ୍ୟାଳୟଟି ପୁନର୍ବାର ଡାଲୁମ୍‌କୁ ସ୍ଥାନାନ୍ତରିତ ହୋଇଗଲା । ସେଠାରେ ସଂପ୍ରତି ଶୀତଋତୁରେ ୭୦ ଯାଏ ଛାତ୍ର ଯୋଗଦେବାକୁ ଆସୁଛନ୍ତି ଓ ଗ୍ରୀଷ୍ମମାସରେ ମଧ୍ୟ ସେତିକି ସଂଖ୍ୟାର ଝିଅ ଯୋଗ ଦେଉଛନ୍ତି । ଏବଂ, ମୋଟ ତିନି ଚାରିଜଣ ଶିକ୍ଷକ କାର୍ଯ୍ୟ କରୁଛନ୍ତି । ଏବର୍ଷ ଗ୍ରୀଷ୍ମଋତୁରେ ୮୦ ଜଣ ଝିଅ ଯୋଗ ଦେଇଥିଲେ ଓ ବର୍ତ୍ତମାନ ଶୀତଋତୁରେ ୬୬ ଜଣ ପୁଅ ଯୋଗ ଦେଇଛନ୍ତି । କ୍ରମେ ଏହି ସଂଖ୍ୟାଟି ମଧ୍ୟ ୮୦ ପର୍ଯ୍ୟନ୍ତ ହୋଇଯିବ ।

ଅନ୍ୟ ଲୋକବିଦ୍ୟାଳୟ ଗୁଡ଼ିକ ପରି ଆମର ଏଠାରେ ମଧ୍ୟ ସେହି ଏକା ବିଷୟଗୁଡ଼ିକ ପଢ଼ା ହେଉଛି : ଇତିହାସ ଓ ଭୂଗୋଳ, ଗଣିତ, ଜମିମାପ, ଜ୍ୟାମିତି, ଅଙ୍କନ, ଲିଖନ, ପ୍ରକୃତିପାଠ ଏବଂ ସଂଗୀତ । ଆଗଭଳି ଏବର୍ଷ ମଧ୍ୟ ବିଦ୍ୟାଳୟ ଶିକ୍ଷାମନ୍ତ୍ରଣାଳୟ ଦ୍ୱାରା ସ୍ୱୀକୃତ ପାଠ୍ୟକ୍ରମଟିକୁ ଅନୁସରଣ କରୁଛି ।"

ଯୁବତୀ କନ୍ୟାମାନଙ୍କ ଲାଗି ଡେନ୍‌ମାର୍କ୍‌ର ସର୍ବପ୍ରଥମ ବିଦ୍ୟାଳୟଟି ମଧ୍ୟ ତାଙ୍କରି ଦ୍ୱାରା ୧୮୬୦ ମସିହାରେ ପ୍ରତିଷ୍ଠିତ ହୋଇଥିଲା । ଅବଶ୍ୟ ଭାବନାଟି ବହୁ ପୂର୍ବରୁ ଭିତରେ ଭିତରେ ଦାନା ବାନ୍ଧୁଥିଲା । ହୁଏତ ତାଙ୍କର ପୁରାତନ ଶିକ୍ଷାର୍ଥୀମାନେ କୌଣସି ସମୟରେ ତାଙ୍କ ସହିତ କଥାବାର୍ତ୍ତା କରିବା ସମୟରେ ଏପରି ବି କହିଥିବେ: " ଆମ ଘରେ ମୋ'ର ଭଉଣୀଟିଏ ଅଛି, ଯିଏକି ପୂରା ମାଦଳଟିଏ । ତା'ର ନିଦ ଭଙ୍ଗାଇ ପାରିବାର କ'ଣ କୌଣସି ଉପାୟ ନାହିଁ ? ସିଏ ବି ତ ଏଠାରେ ସ୍କୁଲକୁ ଆସିପାରନ୍ତା ଓ ତୁମର କଥା ଶୁଣିପାରନ୍ତା ଏବଂ ତାପରେ ତା'ର ଜଡ଼ତା ଭାଙ୍ଗିପାରନ୍ତା ।" ଅଥବା, ଆଉ କିଏ ଏଭଳି ମଧ୍ୟ କହିଥିବ, "ମୁଁ ଆଉ ଅଳ୍ପଦିନ ଗଲେ ବିବାହ ସିନା କରିବି, ମାତ୍ର ଯାହାକୁ ବାହା ହେବି, ତା' ଭିତରେ

ବୁଝିବା ଶକ୍ତି ଟିକିଏହେଲେ ନାହିଁ । ବିବାହ ପରେ ତାକୁ ନେଇ ମୁଁ କିପରି ସଂସାର କରିବି କେଜାଣି ! ଯଦି ଏଠାରେ ସୁବିଧା ଥାଆନ୍ତା ଓ ସିଏ ମଧ୍ୟ ଆସି ତୁମ ମୁହଁର କଥାକୁ ଶୁଣିପାରନ୍ତା !'' କଲ୍‌ଲ୍ କେବେ କାହାକୁ ମନା କରୁନଥିଲେ । ମାତ୍ର ଏପରି ଭାବରେ ପୁଅ ଝିଅ ଏକତ୍ର ହୋଇ ବସିବାଟା ମଧ୍ୟ ତାଙ୍କୁ ବାଗର ଦିଶୁନଥିଲା । ସମ୍ଭବତଃ ସେଇଥିରୁ ହିଁ ଝିଅମାନଙ୍କ ପାଇଁ ଖରାମାସରେ ଅଲଗା ସ୍କୁଲର ବ୍ୟବସ୍ଥା କରିବାର ପ୍ରସ୍ତାବଟି ତାଙ୍କ ମନକୁ ଆସିଥିବ । ଏହି ନୂତନ କାର୍ଯ୍ୟକ୍ରମଟିର ମୁଖ୍ୟ ଦାୟିତ୍ୱ ଗ୍ରହଣ କରିବା ନିମନ୍ତେ କଲ୍‌ଲ୍ ନିଜ ଭଉଣୀଙ୍କୁ ମଧ୍ୟ ପାଖକୁ ଡାକି ଆଣିଥିଲେ । କ୍ରମେ ଝିଅମାନଙ୍କର କାର୍ଯ୍ୟକ୍ରମ ପ୍ରତି ମଧ୍ୟ ସିଏ ଅଧିକ ଆଗ୍ରହର ସହିତ ଯତ୍ନଶୀଳ ହେଲେ । ପୁଅମାନଙ୍କ ତୁଳନାରେ ଝିଅମାନେ ତାଙ୍କୁ ଅଧିକ ସହଜ ଲାଗିଲେ । ଝିଅମାନଙ୍କର ଗୀତବୋଲାକୁ ସିଏ ଅଧିକ ପ୍ରଶଂସା କରୁଥିଲେ । କହୁଥିଲେ: ''ଝିଅମାନେ ହୃଦୟ ଦେଇ ଗୀତ ଗାଇ ପାରନ୍ତି । କିନ୍ତୁ ପୁଅମାନେ ଗାଇବା ସମୟରେ କ'ଣ ସବୁ ଯାଉ୍ତୁସାଉ୍ତୁ କଳ୍ପନା କରିବାରେ ଲାଗିଥାନ୍ତି ଓ ଅନ୍ୟମନସ୍କ ରହନ୍ତି ।''

ଥରେ କୌଣସି ସ୍ଥାନରେ ଭାଷଣ ଦେବାକୁ ଯାଇ କଲ୍‌ଲ୍ ଗୋଟିଏ କାହାଣୀରୁ ହିଁ ଆରମ୍ଭ କରିଥିଲେ: ଜଣେ ପାଦ୍ରୀ, ତାଙ୍କର ଘରେ ତାଙ୍କର ଭାରିଜା । ଭାରିଜା ସବୁ କାମକୁ ପାରନ୍ତି, ମାତ୍ର ମୁହଁଟା ସର୍ବଦା ଅଧିକ ଖର ହୋଇ ରହିଥାଏ । ବେଳେ ବେଳେ ହାତମାନେ ହୁଏତ ରହିଯାଆନ୍ତି, କିନ୍ତୁ ମୁହଁରୁ କଥା ବାହାରିବାରେ ଲାଗିଥାଏ । ତେଣୁ, କେବଳ ଗୀର୍ଜାରେ ଉପାସନା ପରିଚାଳନା କରୁଥିବା ସମୟରେ ପାଦ୍ରୀ ଯାହା ଟିକିଏ ଶାନ୍ତିରେ ରହିପାରନ୍ତି । ଦିନେ ତାଙ୍କର ଧୈର୍ଯ୍ୟ ରହିଲାନାହିଁ ଓ ସିଏ ପତ୍ନୀଙ୍କୁ କହିଲେ, ''ମନେ ଅଛିଟି, ତୁ ପରା ଈଶ୍ୱରଙ୍କୁ ସାକ୍ଷୀ କରି ପ୍ରତିଜ୍ଞା କରିଥିଲୁ ଯେ ସବୁବେଳେ ପତିର କଥା ମାନି ଚଳିବୁ ! ମୁଁ ତୋତେ ଆଦେଶ ଦେଉଛି ଯେ ତୁ ଏଣିକି ମୋଟେ ପାଟି ଖୋଲିବୁ ନାହିଁ । ନୀରବ ରହିଥିବୁ ।'' ପତ୍ନୀ ରଡ଼ି କରି ଉତ୍ତର ଦେଲା, ''କାହିଁକି ବା ? ମୁଁ ମୋଟେ ପାଟି ବନ୍ଦ କରିବିନାହିଁ । ପୁରୁଷଗୁଡ଼ାକ ଖାଲି ଜୁଲମ କରି ଜାଣନ୍ତି, ଆମକୁ ଚାକରାଣୀ କରି ରଖିବାକୁ ଇଚ୍ଛା କରନ୍ତି । ବିଶପ୍ ଗ୍ରୁଣ୍ଡଭିଗ୍ ପ୍ରକୃତ ପୁରୁଷଙ୍କ ପରି ଭଲ କଥାଟିଏ କହିଛନ୍ତି । ସିଏ ତ କହିଛନ୍ତି ଯେ ନାରୀ ହେଉଛି ଗୃହର ଜୀବନ ।'' ପାଦ୍ରୀ ମୁଣ୍ଡ ନୁଆଁଇ ଉତ୍ତର ଦେଲେ, ''ଗ୍ରୁଣ୍ଡଭିଗ୍ ପ୍ରକୃତ କଥା ହିଁ କହିଛନ୍ତି । ମୁଁ ତାଙ୍କ କଥାକୁ ଅବଶ୍ୟ ମାନୁଛି ।''

କଲ୍‌ଲ୍ ଆହୁରି କହିଲେ, ''ହଁ, ଗୃହରେ ଜୀବନ ହୋଇ ରହିବେ ବୋଲି ହିଁ ପରମେଶ୍ୱର ନାରୀମାନଙ୍କୁ ସୃଷ୍ଟି କରିଛନ୍ତି । ନାରୀ ଯେପରି ହେବ, ଘର ଏବଂ ପିଲାମାନେ ସେହିପରି ଅବଶ୍ୟ ହେବେ । ଘରେ ପିଲାମାନଙ୍କ ଉପରେ ଜଣେ ପିତାର ଯେତିକି ପ୍ରଭାବ ପଡ଼େ, ମାଆର ପ୍ରଭାବ ତାହାର ତିନି ଚାରିଗୁଣ ଅଧିକ ପଡ଼ିଥାଏ । ବାପ ଯେତେ ମନ୍ଦ ହୋଇଥାଉ ପଛକେ, ମାଆ ଉତ୍ତମ ହୋଇଥିଲେ ପିଲାମାନଙ୍କୁ ସେଥିରୁ ନିଶ୍ଚୟ ରକ୍ଷା କରି

ପାରିବ । ନାରୀ ଉତ୍ତମ ହୋଇଥିଲେ ଘର ଆଲୋକିତ ହୋଇ ରହିଥିବ । ମାତ୍ର, ନାରୀ ମନ୍ଦ ହୋଇଥିଲେ, ଯେତେ ଧନସମ୍ପଦ ଅଥବା ବଢ଼ିଆରୁ ବଢ଼ିଆ ପରିଚ୍ଛଦ ରହିଥିଲେ ମଧ୍ୟ ତାହା ମୋଟେ ସାହାଯ୍ୟ କରି ପାରିବନାହିଁ । ''

୧୮୬୩ ମସିହା ନଭେମ୍ବର ମାସରେ କଲ୍‌ଲ୍ ସରକାରଙ୍କର ମନ୍ତ୍ରଣାଳୟକୁ ଲେଖି ଜଣାଇ ଦେଇଥିଲେ : ''ବହୁ ବ୍ୟକ୍ତିଙ୍କର ଇଚ୍ଛାକୁ ସମ୍ମାନ ଦେଇ ଗତ ମଇମାସ ଠାରୁ ଏକ ତିନିମାସିଆ ପାଠ୍ୟକ୍ରମ ଆରମ୍ଭ କରାଯାଇଛି । ୧୮ରୁ ୩୦ ବୟସର ଚାଷୀକନ୍ୟାମାନେ ଏଥିରେ ଯୋଗ ଦେଇଛନ୍ତି । ପ୍ରଥମ ବର୍ଷ ୩୦ ଜଣ କନ୍ୟା ଏହି ପାଠ୍ୟକ୍ରମକୁ ଗ୍ରହଣ କରିବାକୁ ଆସିଥିଲେ । ସେମାନେ ଦେଶର ବିଭିନ୍ନ ଅଞ୍ଚଳରୁ ଆସିଥିଲେ । ପାଠ୍ୟକ୍ରମରେ ଇତିହାସ, ଭୂଗୋଳ, ଲିଖନ ଏବଂ ହସ୍ତାକ୍ଷର ପ୍ରଭୃତି ବିଷୟ ରହିଛି । ସ୍ତ୍ରୀମାନଙ୍କର ଉପଯୁକ୍ତ କିଛି ହାତକାମ ବି ଅଛି । ଏହାଛଡ଼ା କିଛି ଗଣିତ, ବିଶେଷ କରି ମାନସାଙ୍କ କରାଯାଉଛି । ଇତ୍ୟାଦି, ଇତ୍ୟାଦି ।''

ଦିନଯାକ ଅଧ୍ୟାପନାରେ ବ୍ୟସ୍ତ ରହି କଲ୍‌ଲ୍ ସନ୍ଧ୍ୟା ବେଳକୁ ବେଶ୍ କ୍ଳାନ୍ତ ହୋଇ ପଡୁଥିଲେ ଏବଂ ଗୋଟିଏ କୋଠରୀରେ ଯାଇ କିଞ୍ଚିତ୍ ବିଶ୍ରାମ ଗ୍ରହଣ କରୁଥିଲେ । ଭଉଣୀ ପ୍ରତ୍ୟହ କମ୍ବଳଟିଏ ନିଆଁସେକ ଦେଇ ଗରମ କରି ରଖୁଥିଲେ । ସେଇଟିକୁ ଘୋଡ଼ାଇ ହୋଇ ଭାଇ ବିଛଣା ଉପରେ ଲମ୍ବ ହୋଇ ପଡ଼ି ଯାଉଥିଲେ ଓ ସେଠାରେ ତାଙ୍କୁ ବେଢ଼ି ବସିଥିବା ଶିକ୍ଷାର୍ଥୀମାନଙ୍କୁ ଶ୍ରେଣୀଗୃହର ବାହାରେ ଅର୍ଜନ କରିଥିବା ଅଭିଜ୍ଞତାଗୁଡ଼ିକୁ ବର୍ଣ୍ଣନା କରି ଶୁଣାଉଥିଲେ । କଲ୍‌ଲ୍‌ଙ୍କର ଭଉଣୀ ଝିଅମାନଙ୍କର ପାଠ୍ୟକ୍ରମ ସମୟରେ ସେମାନଙ୍କର ମାଆପରି ହୋଇ ରହିଥିଲେ ।

ଠିକ୍ ସେହିପରି ପିଲାମାନଙ୍କ ପାଇଁ କୌଣସି ଶିକ୍ଷା-କାର୍ଯ୍ୟକ୍ରମର ପ୍ରଚଳନ କରିବାକୁ କ୍ରିଷ୍ଟେନ୍ କଲ୍‌ଲ୍ ୧୮୫୩ ମସିହାରୁ ହିଁ ଚିନ୍ତା କରିଥିଲେ । ସେଥିପାଇଁ ଗ୍ରୁଣ୍ଡ୍‌ଭିଗ୍‌ଙ୍କଠାରୁ କିଛି ଅର୍ଥସାହାଯ୍ୟ ଆଣିବା ନିମନ୍ତେ ମଧ୍ୟ ଭାବୁଥିଲେ । ସାନ ପିଲାମାନେ ପ୍ରଚଳିତ ସାଧାରଣ ସ୍କୁଲମାନଙ୍କରେ ପାରମ୍ପରିକ ଭାବରେ ଯେତିକି ହାସଲ କରୁଥିଲେ, ତାହା ଆଦୌ ଯଥେଷ୍ଟ ହେଉନଥିଲା ବୋଲି କଲ୍‌ଲ୍ ସବୁବେଳେ ଅନୁଭବ କରି ଆସୁଥିଲେ । ଏକଦା କଥାବାର୍ତ୍ତା ଛଳରେ ସେ ମନ୍ତବ୍ୟ କରି କହିଥିଲେ ଯେ, ସାଧାରଣ ପାଠଶାଳାରେ ପିଲାମାନଙ୍କୁ ଶିକ୍ଷା ବୋଲି ଯେତିକି ମିଳୁଛି, ସେଥିରେ କୌଣସି ମଜ୍ଜା ନାହିଁ କି ମେରୁଦଣ୍ଡ ବି ନାହିଁ । ସକଳ ଶିକ୍ଷା ନିତାନ୍ତ ଜୀବନହୀନ ହୋଇ ରହିଛି । ପାଖରେ ଥିବା ସମସ୍ତେ ସେଥିରେ ଏକମତ ହୋଇଥିଲେ ସିନା, ମାତ୍ର ଏଥିରେ କିପରି ପରିବର୍ତ୍ତନ ଆଣିହେବ ବୋଲି ପ୍ରଶ୍ନ କରିଥିଲେ । ''ଏଥିରେ ମୁଁ ପରିବର୍ତ୍ତନ ଆଣିପାରିବି'' ବୋଲି କଲ୍‌ଲ୍ ସଙ୍ଗେ ସଙ୍ଗେ ଜବାବ

ଦେଇଥିଲେ ।

ବସ୍ତୁତଃ ସେହିପରି ହିଁ ଫଳିଲା । ଏକ ଅନ୍ୟଭଳି ପୁରୋଦୃଷ୍ଟି ନେଇ ସ୍କୁଲଟିଏ ଆରମ୍ଭ ହେଲା । ସେହି ଆରମ୍ଭ ସମୟରେ ସେଠାରେ ଛାତ୍ର ହୋଇଥିବା ଜଣେ ନିଜର ସଂସ୍କରଣରେ ଲେଖିଛନ୍ତି : ''ହିନ୍ସ୍‌ହଲ୍ମ୍ ଯାଇ ମୁଁ କଲ୍ଡ୍‌ଙ୍କ ସ୍କୁଲରେ ପାଠ ପଢ଼ିବି ବୋଲି ମୋତେ ଯେତେବେଳେ ଘରେ ସମସ୍ତେ କହିଲେ, ସେତେବେଳେ ମୋ'ର ହାଲୁକ ଶୁଖି ଯାଇଥିଲା । ଅବଶ୍ୟ ସେଠାରେ ମୁଁ ମୋ' ଆଈଙ୍କ ପାଖରେ ରହି ପାଠ ପଢ଼ିବି ବୋଲି ମୋତେ କୁହା ଯାଇଥିଲା । କୌଣସି ସ୍କୁଲକୁ ପାଠ ପଢ଼ି ଯିବାର କଥା ଶୁଣିବାକୁ ହିଁ ସେତେବେଳେ ଭାରି ଡର ମାଡୁଥିଲା । ଶିକ୍ଷକ କହିଲେ ପୃଥିବୀଯାକରେ ଥିବା ସବୁଠାରୁ ମନ୍ଦ ଜଣେ ମଣିଷକୁ ବୁଝାଉଥିଲା । ଆଗରୁ ମୁଁ ସ୍କୁଲରେ କେତେ ବେତମାଡ଼ ଖାଇଥିଲି ଏବଂ ଅନେକ ସମୟରେ ମାଷ୍ଟ୍ରେ ଦୁଇଜଣ ପିଲାଙ୍କର ମୁଣ୍ଡକୁ ଚୁଟି ସାହାଯ୍ୟରେ ଝିଙ୍କି ଆଣି ଭାରି ଜୋର୍‌ରେ ଏକାଠି ଲଢ଼ାଇ ଦେଉଥିଲେ । ବା, ସ୍କୁଲ ଛୁଟୀ ହେବା ପରେ ମଧ୍ୟ ଦିନେ ଦିନେ ଆମକୁ ଘରକୁ ଯିବାକୁ ଅନୁମତି ମିଳୁନଥିଲା ଏବଂ ଘଣ୍ଟା ଘଣ୍ଟା ଧରି ଇସ୍କୁଲରେ ବସି ବଡ଼ ପାଟିରେ ପାଠ ଘୋଷିବାକୁ ହେଉଥିଲା । ଶିକ୍ଷକ ତ ତାଙ୍କ କୋଠରୀରେ ଥିଲେ, ତେଣୁ ସିଏ ଶୁଣି ପାରିବେ ବୋଲି ବଡ଼ପାଟିରେ ଘୋଷିବାକୁ କୁହା ଯାଉଥିଲା । ଆମେ ପଢୁଥିଲୁ ଓ ତା' ସହିତ ଭେଁ ଭେଁ ହୋଇ କାନ୍ଦିବାରେ ଲାଗିଥିଲୁ । ଆଉ ଉପାୟ ବା କ'ଣ ଥିଲା । ମାଷ୍ଟ୍ରଙ୍କୁ ରାସ୍ତାରେ ଦେଖିଲେ ବି ଏତେ ଡର ଲାଗୁଥିଲା ଯେ ଆମ ଉପରେ ତାଙ୍କ ଆଖି ପଡ଼ିବା ଆଗରୁ ଆମେ କୁଆଡ଼େ ଲୁଚି ଯାଉଥିଲୁ ।

''ଏହିପରି ମନ ଦେଇ ମୁଁ ଆଈ ପାଖରେ ଆସି ରହିଲି ଓ କଲ୍ଡ୍‌ଙ୍କ ସ୍କୁଲରେ ମୋ'ର ନାମଲେଖା ହୋଇଗଲା । ମୋ' ଭିତରେ ରାଗ ରହିଥିଲା, ଭୟ ମଧ୍ୟ ରହିଥିଲା । ଇସ୍କୁଲ କଥା ଭାବିଲା ବେଳକୁ ମୋ' ଭିତରେ ହୃଦ୍‌କମ୍ପ ହେବାପରି ମନେ ହେଉଥିଲା । ତେଣୁ ମୋ' ଆଈକୁ କହି ପକାଇଲି ଯେ ମୁଁ ଗାଆଁର ମୂଲିଆଙ୍କ ସାଙ୍ଗରେ ଖତ ବୋହିବି ପଛକେ ମାତ୍ର ମୋତେ ସ୍କୁଲକୁ ଯିବିନାହିଁ ।

''ଯେଉଁ ଦିନ ପ୍ରଥମ କରି ସ୍କୁଲକୁ ଗଲି, ସେଦିନ କଲ୍ଡ୍ ନିଜେ ଆମ ଘରକୁ ଆସି ମୋତେ ସ୍କୁଲକୁ ନେଇ ଯାଇଥିଲେ । ତେଣୁ ମୁଁ ଆଉ କ'ଣ କରି ପାରିଥାନ୍ତି ? ତାଙ୍କ ସହିତ ଯିବାକୁ ହିଁ ପଡ଼ିଲା । କେହି କାହାକୁ ପଦେ ହେଲେ କଥା କହୁନଥାଉ । ଶେଷକୁ କଲ୍ଡ୍ ଆଗ ମୁହଁ ଖୋଲିଲେ : ଡର ମାଡୁଛି କି ସୁନାପୁଅ ! କିନ୍ତୁ ଦେଖିବ, ଏକାଠି ଆଠଟା ଦିନ ରହିବା ପରେ ଆମେ ପରସ୍ପରର ବନ୍ଧୁ ହୋଇଯିବା । ଆମେ ସ୍କୁଲରେ ଆସି ପହଞ୍ଚିବା ପରେ ଆଗ ସମସ୍ତେ ମିଶି ଗୀତଟିଏ ବୋଲିଲେ । ତା'ପରେ କଲ୍ଡ୍ ବାଇବେଲ୍‌ରୁ କାହାଣୀ କହିଲେ । ଆମେ ଲେଖିଲୁ, ଅଙ୍କ କଲୁ । ଶେଷକୁ ସିଏ ପରୀଗପଟିଏ କହିଲେ ଏବଂ

ଆମେ ପିଲାଏ ପୁଣି କେତୋଟି ଗୀତ ବୋଲିଥିଲୁ । ମୋତେ ଲାଗିଲା, ଇଏ ତ ଗୋଟିଏ ଅଦ୍‌ଭୁତ ଇସ୍କୁଲ । ମାଷ୍ଟ୍ରେ ପାଠ ପଢ଼ାଇବାକୁ ଗୋଟାସୁଦ୍ଧା ଭୁଲି ଗଲେନାହିଁ ତ ! ମାତ୍ର ତହିଁ ଆରଦିନ ମଧ୍ୟ ଠିକ୍ ସେହିପରି ହେଲା ଏବଂ ମୁଁ ଆହୁରି ଅଧିକ ଆଶ୍ଚର୍ଯ୍ୟ ହୋଇଗଲି । ପୁଣି, ତାଙ୍କ ସହିତ ଆମର ଆଉଜଣେ ଶିକ୍ଷକ ଯିଏ ଥିଲେ, ସିଏ ତ ଆମକୁ ବୁଲାଇ ନେଲେ, ଆମ ସହିତ ତଙ୍ଗା ଖେଳିଲେ । ଦିନେ ଆମ ଭିତରୁ ଜଣକର ଜନ୍ମଦିନ ପଡ଼ିଲା ଯେ, ସେଇଟିକୁ ମଧ୍ୟ ସମସ୍ତେ ମିଶି ମହା ଆନନ୍ଦରେ ପାଳନ କରିଥିଲୁ । ସବୁପିଲାଙ୍କୁ ଚକୋଲେଟ୍ ଦିଆଗଲା, ଶେଷକୁ ନାଚ ବି ହେଲା । କଲ୍ଡ୍ ଓ ତାଙ୍କର ଭଉଣୀ ମଧ୍ୟ ଆମ ସାଥିରେ ଆସି ଯୋଗ ଦେଇଥିଲେ ।

''କଲ୍ଡ୍ କେଡ଼େ ଖୁସୀ କରାଇଦେବା ଭଳି ଗପସବୁ କହୁଥିଲେ । ଶୁଣୁ ଶୁଣୁ ପୂରା ମନେ ରହି ଯାଉଥିଲା । ମୁଁ ଘରକୁ ଯାଇ ସେଗୁଡ଼ିକୁ ଆଈମାଆଙ୍କ ଆଗରେ ବି କହୁଥିଲି । ସ୍କୁଲରେ ଆମେ ସମସ୍ତେ ଭୟମୁକ୍ତ ହୋଇ ଯାଇଥିଲୁ । ଆମ ଶିକ୍ଷକମାନେ ଆମକୁ ଅତ୍ୟନ୍ତ ନିଜର ବୋଲି ଲାଗିଲେ ।''

ପିଲାଠାରୁ ଆରମ୍ଭ କରି ବଡ଼ ସମସ୍ତଙ୍କ ସହିତ ଯାବତୀୟ ସମ୍ପର୍କରେ କଲ୍ଡ୍ କୌଣସି ଦୂରତା ରଖୁନଥିଲେ । ଭୟ ନଥିଲେ ଦୂରତା ବା କାହିଁକି ରହିବ ? ''ପ୍ରତ୍ୟେକ ମନୁଷ୍ୟକୁ ଜଣେ ଜଣେ ବ୍ୟକ୍ତି ପରି ଦେଖିଲେ ଦୂରତା ଓ କପଟ ରହିବାର କୌଣସି କାରଣ ଆଦୌ ରହେନାହିଁ ।'' - କଲ୍ଡ୍ ଅନେକ ସମୟରେ କହୁଥିଲେ । ଏହି ମୂଳ ସୂତ୍ରଟିକୁ ସିଏ ସୁନିଶ୍ଚିତ ଭାବରେ ଗାଆଁର ଚାଷୀମାନଙ୍କ ଠାରୁ ଶିକ୍ଷା କରିଥିଲେ । ''ଆମେ କେହିହେଲେ ଏହି ସଂସାରକୁ ଏକା ଏକା ସୁଖ ଭୁଞ୍ଜି ଆରାମରେ ରହିବାକୁ ଆସିନାହୁଁ; ଆମେ ଯେପରି ଆହୁରି ଅନ୍ୟମାନଙ୍କୁ ସୁଖ ଓ ଆନନ୍ଦ ଦେଇ ପାରିବାର ନାନା କାମରେ ଲାଗିପାରିବୁ, ସେଇଥିଲାଗି କାମ କରିବା ନିମନ୍ତେ ହିଁ ଆସିଛୁ । ଏବଂ, ଏହିପରି କରି ପାରିଲେ ହିଁ ଆମକୁ ଭଗବାନଙ୍କର ଆଶୀର୍ବାଦ ସର୍ବଦା ଅବଶ୍ୟ ମିଳୁଥିବ'' - ସତେ ଅବା ଏହି ସତ୍ୟଟି କଲ୍ଡ୍‌ଙ୍କର ଜୀବନରେ ସର୍ବପ୍ରଧାନ ସନ୍ଦେଶ ହୋଇ ରହିଥିଲା ।

କଲ୍ଡ୍‌ଙ୍କର ପ୍ରେରଣାରେ ପ୍ରତିଷ୍ଠିତ ସେତେବେଳର କୌଣସି ମୁକ୍ତ ପାଠଶାଳାକୁ ଆମେ ମୋଟାମୋଟି ଏହିପରି କଳ୍ପନା କରିପାରିବା: ''ଶିକ୍ଷକମାନେ ଅତ୍ୟନ୍ତ ଅଳ୍ପସମ୍ବଳ, ବେତନ ମଧ୍ୟ କମ୍ । ପିଲାମାନଙ୍କର ବାପାମାଆ ମଧ୍ୟ ଜଣେ ଜଣେ ଅତି ସାଧାରଣ ମଣିଷ । ଇସ୍କୁଲ କହିଲେ ଆଦୌ ଏକ ଲମ୍ବା ଚଉଡ଼ା ଘରକୁ ବୁଝାଇବ ନାହିଁ । ନିଜର ଶୋଇବାପାଇଁ ମଧ୍ୟ ଭଲ କରି ବଖରାଏ ସ୍ଥାନ ନାହିଁ । ରାତିଶୁଆ ମଧ୍ୟ ସେହିଠାରେ ଏବଂ ବାହାରୁ ଟିକିଏ ପବନ ଆସି ପାରିବ ବୋଲି କବାଟଟାକୁ ମଧ୍ୟ ଖୋଲିକରି ରଖିବାକୁ

ପଡ଼ିବ । ତଥାପି, ଏଠାରେ ରହୁଥିବା ବ୍ୟକ୍ତିମାନେ କେଡ଼େ ଖୁସୀ ହୋଇ ତାହାକୁ ହିଁ ଘର ବୋଲି ଗ୍ରହଣ କରି ନେଇଛନ୍ତି । ସେମାନଙ୍କର ମୁହଁ ଉପରେ ସର୍ବଦା ଏକ ଆଲୋକ ଉଦ୍‌ଭାସିତ ହୋଇ ରହିଛି, ଏକ ସ୍ଥିର ଆନନ୍ଦବୋଧ ପ୍ରତିଭାତ ହେଉଛି । ସେହି ପାଠଶାଳାକୁ ଅଳ୍ପ କେତେ ଘଣ୍ଟା ପାଇଁ ଆସିଥିବା ଜଣେ ନବାଗତକୁ ମଧ୍ୟ ତାହା ଅତ୍ୟନ୍ତ ସ୍ପଷ୍ଟ ହୋଇ ଦେଖା ଯାଉଥିଲା ।

ତଥାପି, ସେତେବେଳର ଶହ ଶହ ସାଧାରଣ ବିଦ୍ୟାଳୟ ତୁଳନାରେ ଏହି ମୁକ୍ତ ପାଠଶାଳା ପ୍ରକୃତରେ ସର୍ବବିଧ ଶିକ୍ଷାଆହରଣର ଏକ ଖୁସୀରେ ଭରପୂର ଉଦ୍ୟାନ ହୋଇ ରହିଥିଲା । ପିଲାମାନେ ଖୁସୀ ହୋଇ ଗ୍ରହଣ କରି ପାରୁଥିଲେ ଓ ଶିକ୍ଷକମାନେ ମଧ୍ୟ ଖୁସୀ ଓ ପୂର୍ଣ୍ଣ ସମ୍ମତି ସହିତ ନିଜକୁ ଦେଇ ପାରୁଥିଲେ । ଅନ୍ୟ ପକ୍ଷରେ ପ୍ରଚଳିତ ସାଧାରଣ ସ୍କୁଲଟିଏ ସବାଆଗ ଶିକ୍ଷକର ଆତ୍ମାଟିକୁ ହିଁ ଖାଇ ଯାଉଥିଲା । ସେହି ପୁରୁଣା ପାଠଶାଳାମାନଙ୍କୁ ଦେଖି ଶ୍ରୀ କଲ୍‌ଲ୍ ଥରେ କହିଥିଲେ ଯେ, ପ୍ରଥମତଃ ପିଲାମାନଙ୍କର ଘରଗୁଡ଼ିକ ସହିତ ସେଗୁଡ଼ିକର ଆଦୌ କୌଣସି ସମ୍ବନ୍ଧ ନାହିଁ । ତେଣୁ, ପିଲାଏ ଇସ୍କୁଲରେ ଯାହାକିଛି ପାଉଛନ୍ତି, ଘରକୁ ଆସି ସେସବୁ ସମ୍ପୂର୍ଣ୍ଣ ଭାବରେ ନଷ୍ଟ ହୋଇଯାଉଛି । ବିଚରା ସେହି ପିଲାମାନେ ବିଦ୍ୟାଳୟକୁ ଯାଇ ଆଉ କିପରି କି ମଣିଷ ହୋଇ ପାରିବେ ? ସେମାନେ ପଥର ପରି ଟାଣ, ସଂବେଦନାଶୂନ୍ୟ ହୋଇ ଯାଉଛନ୍ତି । ବାପାମାନେ ବି ଭାବୁଛନ୍ତି ଯେ ପିଲାଙ୍କୁ ବେତ ବସାଇବା ବ୍ୟତୀତ ବିଦ୍ୟାଳୟର ପ୍ରକୃତରେ ଆଉ କୌଣସି କାମ ହିଁ ନାହିଁ । ଦ୍ୱିତୀୟତଃ, ସେଠି ପାଦ୍ରୀ ଓ ବିଶପ୍‌ମାନେ ସବା ଉପରେ କର୍ତ୍ତା ହୋଇ ବସିଛନ୍ତି । ଏମାନେ ତ ଇଚ୍ଛା କରୁଛନ୍ତି ଯେ ଯାହା ଚିରକାଳ ରହିଆସିଛି ତାହାହିଁ ରହୁ ଓ ଆଦୌ କିଛି ନବଦଳୁ । ଯଦି ଶିକ୍ଷକମାନେ ଏତେ ଟିକିଏ କିଛି ଅନ୍ୟପ୍ରକାରେ ହେବାକୁ ଇଚ୍ଛା କରିବେ, ତେବେ ସେମାନେ ସଙ୍ଗେ ସଙ୍ଗେ ଆକ୍ରମଣ କରିବାକୁ ଆସିବେ । ପିଲାମାନଙ୍କର ଭଲ ହେବ ବୋଲି ବିଚାର କରି ଆଦୌ କିଛି ନୂଆ କଥା ଗ୍ରହଣ କରିବାକୁ ବାହାରିଲେ କର୍ତ୍ତାମାନେ ବାଟ ଓଗାଳି ବସିବେ ।

ମାତ୍ର କଲ୍‌ଲ୍ ପୁରୋଗାମୀ ହୋଇ ଆରମ୍ଭ କରିଥିବା ମୁକ୍ତ ପାଠଶାଳାରେ ସେହିସବୁ ଦୁରବସ୍ଥା ବା ବାଧାର ମୋଟେ ସମ୍ମୁଖୀନ ହେବାକୁ ପଡ଼ିବନାହିଁ: ଘରେ କୌଣସି ପ୍ରତିକୂଳ ପରିବେଶ ନାହିଁ, ବହୁ ଅବହେଳାର ଶିକାର ହୋଇଥିବା ସେହି ପିଲାମାନେ ନାହାନ୍ତି କିମ୍ବା ଉପରେ କର୍ତ୍ତାମାନଙ୍କର ଦୌରାତ୍ମ୍ୟ ମଧ୍ୟ ନାହିଁ । ତେଣୁ ପିଲାଙ୍କର ବିଦ୍ୟାର୍ଜ୍ଜନ କ୍ଷେତ୍ରରେ ପ୍ରକୃତ ଜୀବନଟିଏ ସମ୍ଭବ କରି ଆଣିବାକୁ ହେଲେ ଏହି ମୁକ୍ତ ବିଦ୍ୟାଳୟ ହିଁ ଏକମାତ୍ର ବିକଳ୍ପ । ଏଠାରେ ସତ୍ୟ ହିଁ ମୂଳଦୁଆ ପରି ହୋଇ ରହିଛି, ପରିବାରରେ ବାପାମାଆ ନିଜ ପିଲାମାନଙ୍କ ପ୍ରତି ରହିଥିବା ସେମାନଙ୍କର ଦାୟିତ୍ୱକୁ ଉପଲବ୍ଧି କରୁଛନ୍ତି । ତେଣୁ, ଆମେ

ଏହିଭଳି ବିଦ୍ୟାଳୟକୁ ହିଁ ସମସ୍ତ ଶକ୍ତି ଦେଇ ଗଢ଼ିବା । ଏହାରିଦ୍ୱାରା ହିଁ ଆମେ ସମୟ ସହିତ ଆଗକୁ ପାଦ ପକାଇ ପାରିବା । କୃଷକଜୀବନକୁ ମଧ୍ୟ ଟାଣ କରି ତିଆରି କରିଆଣି ପାରିବା ।

ଥରେ ଜଣେ ବୟସ୍କ ଗ୍ରାମାଞ୍ଚଳୀୟ ସରକାରୀ ଉଚ୍ଚ କର୍ମକର୍ତ୍ତା ଶ୍ରୀ କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କୁ କହିଥିଲେ: ମୋ' କାର୍ଯ୍ୟକାଳ ମଧ୍ୟରେ ଉପଯୁକ୍ତ ଶିକ୍ଷକମାନଙ୍କୁ ବାଛିବା ହିଁ ମୋ ଲାଗି ସବୁଠାରୁ ଅଧିକ କଷ୍ଟକର ହୋଇ ରହିଥିଲା । ଏହି କାମଟି କରୁଥିବା ସମୟରେ ମୁଁ ବଡ଼ ଚିନ୍ତିତ ହୋଇ ପଡୁଥିଲି ଓ ରାତିରେ ନିଦ ବି ହେଉନଥିଲା । ପ୍ରାର୍ଥୀମାନଙ୍କର ଶିକ୍ଷାଗତ ପ୍ରମାଣପତ୍ର ଦେଖୁଥିଲି, ସେମାନଙ୍କର ଜ୍ଞାନର ପରୀକ୍ଷା ମଧ୍ୟ କରାଉଥିଲି । ମାତ୍ର ତଥାପି ବିଫଳ ହୋଇ ଯାଉଥିଲି । କିନ୍ତୁ, ତୁମେ ମୁକ୍ତ ବିଦ୍ୟାଳୟଗୁଡ଼ିକ ସକାଶେ ଶିକ୍ଷକ ବାଛିବା ସମୟରେ ଖୁବ୍ କ୍ୱଚିତ୍ ବିଫଳ ହେଉଛ । ଏହା ତୁମେ ପ୍ରକୃତରେ କିପରି କରିପାରୁଛ ? କଲ୍‌ଡ୍ ଉତ୍ତର ଦେଇ କହିଥିଲେ : ହଁ, ମୁଁ କରିପାରୁଛି ସତ, ମାତ୍ର ଆପଣ ପାରିବେନାହିଁ । କାରଣ, ଆପଣଙ୍କ ବେଳକୁ ତାହା ଏକ ଏକାବେଳେକେ ଅନ୍ୟ କଥା ହୋଇଯିବ । ଆପଣଙ୍କ ପାଇଁ ଶିକ୍ଷକମାନେ ଜଣେ ଜଣେ କର୍ମଚାରୀ, - ଅମୁକ ନମ୍ବରର ଶିକ୍ଷକ ଅମୁକ ସ୍କୁଲରେ ରହିବ, - ଏହି ଭାଷାରେ ଆପଣଙ୍କର ସବୁ କାମ ଚାଲେ । କିନ୍ତୁ, ଶିକ୍ଷକ ହେବାକୁ ଇଚ୍ଛା କରି କେହି ମୋ' ପାଖକୁ ଆସିଲେ ମୁଁ ତାଙ୍କୁ କହେ, ହଁ, ତୁମ ପାଇଁ ଆମ ମୁକ୍ତ ବିଦ୍ୟାଳୟରେ ଖାଲି ଜାଗାଟିଏ ରହିଛି । ମାତ୍ର ସେଠାରେ ତୁମକୁ କେବଳ ନିଜପାଇଁ କିଛି ଖାଇବା ଏବଂ ପିନ୍ଧିବା ଖର୍ଚ୍ଚ ମିଳିବ, - ଆଉ ଅଧିକ କିଛି ଦେବାପାଇଁ ଆମର ସାମର୍ଥ୍ୟ ହେବନାହିଁ । ମୋ' କଥା ଶୁଣି ସିଏ ଏଡ଼େ ଲମ୍ବା ମୁହଁଟାଏ କରି ମୋ' ପାଖରୁ ଚାଲିଯାଆନ୍ତି । ହୁଏତ, ଏପରି ଆଉଜଣେ ବି କେହି ଆସନ୍ତି, ଯିଏକି ମୋ'ର ସେହି କଥାଗୁଡ଼ିକୁ ଶୁଣିବାପରେ ତଥାପି କହନ୍ତି, 'ହଉ ହେଲା । ମୁଁ ରହିବାପାଇଁ ରାଜୀ' । ତାଙ୍କ ମୁହଁଟା ଉଜ୍ଜ୍ୱଳ ହୋଇଯାଏ । ସେଇଥିରୁ ମୁଁ ନିଃସନ୍ଦେହ ଭାବରେ ପ୍ରମାଣ ପାଇଯାଏ ଯେ ଇଏ ବିଦ୍ୟାଳୟର କାର୍ଯ୍ୟଟିକୁ ସବାଆଗର କାର୍ଯ୍ୟବୋଲି ଗ୍ରହଣ କରିବେ । ହଁ, ତାଙ୍କପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରିଥାଏ ଓ ନବାଗତ ବ୍ୟକ୍ତିଙ୍କୁ ସିଏ ବାଟ ଦେଖାଇବେ ବୋଲି ଜଣାଏ । ଆଜ୍ଞା, ଏକଥା ଆପଣ ବି କରିପାରନ୍ତେ ।

କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କ ପାଖରେ ଶିକ୍ଷାଲାଭ କରି ପରେ ମୁକ୍ତ ବିଦ୍ୟାଳୟର ଶିକ୍ଷକ ହୋଇଥିବା ଆଉଜଣେ ତାଙ୍କର ସଂସ୍କରଣରେ ଲେଖିଛନ୍ତି: ପ୍ରଶିକ୍ଷଣର ଅବଧି ସରିଆସିଲା ଓ ବିଦାୟ ନେବାର ବେଳ ପହଞ୍ଚିଗଲା । ଆମ ସମସ୍ତଙ୍କର ଆଖିରେ ଲୁହ ଛଳଛଳ ହୋଇ ଆସୁଥାଏ । କେହି କାହାରିକୁ ଆଦୌ ବିଦାୟ ବୋଲି କହି ପାରୁନଥାନ୍ତି । ଏଠାରେ ଆମେ ଏକାଠି ଏତେଦିନ ରହିଥିଲୁ, ସମସ୍ତଙ୍କୁ ସତେଅବା ଗୋଟିଏ ଆତ୍ମୀୟତାର ଡୋର ବାନ୍ଧି ରଖିଥିଲା । ଏବଂ, ଆମେ ପ୍ରତ୍ୟେକେ ନିଜକୁ ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ ଭାବରେ ଏହି ପ୍ରଶ୍ନଟିକୁ

ପଚାରୁଥାଉ : 'ଏଠାରେ ତୁ ଯେଉଁ ଆତ୍ମୀୟତା ଏବଂ ସହୃଦୟତାକୁ କେଡ଼େ ସହଜରେ ବଞ୍ଚି ପାରୁଥିଲୁ, ପୃଥିବୀରେ ଆଉ କେଉଁ ଜାଗାକୁ ଗଲେ ତୁ ସେହି ସୌଭାଗ୍ୟ ଏବଂ ଈଶ୍ୱରକୃପା ଲାଭ କରି ପାରିବୁ ? ନିଜ ଘରେ ମଧ୍ୟ ତୋତେ ଏହା କଦାପି ମିଳିବନାହିଁ ।'

ପିଲାମାନେ ଖୁସୀରେ ପାଠ ପଢ଼ିବେ, ଆମ ପିଲାମାନଙ୍କୁ ଆମେ ଆମର ସମ୍ପତ୍ତିରୂପେ ନୁହେଁ, ସେମାନଙ୍କୁ ଈଶ୍ୱରଙ୍କର ଏହି ସୃଷ୍ଟିରେ ଜଣେ ଜଣେ ବିକଶମାନ ଆତ୍ମା ପରି ଭଲ ପାଇବେ, ସେକାଳର ଇଉରୋପରେ ସେକଥା କିଏ କହୁଥିଲା ? ହଁ, ଦାର୍ଶନିକମାନେ ତାହାକୁ ବହିରେ ଲେଖୁଥିଲେ, ମାତ୍ର ଜଣେ ଶିକ୍ଷକ ସେହି ସତ୍ୟଟିକୁ ଅନୁଭବ କରିବା, ପିଲାମାନଙ୍କୁ ଏପରିକି ସମାଜର ସର୍ବନିମ୍ନ ସ୍ତରର ପିଲାମାନଙ୍କୁ ସେହିଭଳି ସ୍ୱୀକୃତି ସହିତ ଦେଖିବା ଏବଂ ସେମାନଙ୍କୁ ଶିକ୍ଷା ଦେବାର କ୍ଷେତ୍ରରେ ଏକ ସାହସିକ ପ୍ରୟୋଗ କରି ବାହାରିବା, - ସେତେବେଳେ କେବଳ କଲ୍ଡ୍ ହିଁ ସମ୍ଭବତଃ ଏକମାତ୍ର ଓ ଅନନ୍ୟ ଉଦାହରଣ ହୋଇ ରହିଥିଲେ । ସମୟ ପାଇଲେ ହିଁ କଲ୍ଡ୍ କୃଷକମାନଙ୍କର ମେଳ ଭିତରେ ବସି ସେହି ନୂଆ ବିଚାରର ମଞ୍ଜିଗୁଡ଼ିକୁ ବୁଣିବାରେ ଲାଗିଥିଲେ । ଏକ ବିସ୍ମିତ ଆଗ୍ରହରେ କୃଷକମାନେ ଦୂରଦୂରାନ୍ତରୁ ମଧ୍ୟ ତାଙ୍କ ମୁହଁର କଥାକୁ ଶୁଣିବାଲାଗି ଆସୁଥିଲେ । କଲ୍ଡ୍ ଏକାବେଳେକେ ଦୁନିଆଛଡ଼ା ଅସମ୍ଭବ କଥାମାନ କହୁଛନ୍ତି ଶୁଣି ଥରେ ଜଣେ ଚାଷୀ ଭାରି କ୍ରୋଧ କରି ସିଏ କହୁଥିବା ସମୟରେ ମେଳଟିରେ ଆସି ପଶିଗଲେ ଓ ଏଡ଼େ ପାଟିରେ କହିବାକୁ ଲାଗିଲେ: 'ଶୁଣିଲି ଆପଣ କୁଆଡ଼େ କହୁଛନ୍ତି ଯେ ପିଲାମାନଙ୍କ ପାଇଁ ଏଣିକି ସ୍କୁଲରେ କୌଣସି ଦଣ୍ଡର ବନ୍ଧନ ରହିବନାହିଁ ଓ ସେମାନେ ଯାହା ଇଚ୍ଛା ତାହା କରିପାରିବେ ? ଆପଣ ପ୍ରକୃତରେ ସେପରି କହୁଛନ୍ତି ? ତେବେ ସେମାନେ ଆମକୁ ଆଉ ସମ୍ମାନ କରିବେଟି ? ନାଇଁ, ନାଇଁ, ବେତ ଯେମିତି ହେଲେ ରହିବ, - ଅଲବତ ରହିବ ।' କଲ୍ଡ୍ ଉତ୍ତର ଦେଲେ, 'ମାତ୍ର ଜାଣିଛନ୍ତି ? ଯେତେବେଳେ ମାଡ଼ ଦେଇ ଆପଣ ପିଲା ଭିତରୁ ଗୋଟିଏ ଶଇତାନକୁ ହୁଏତ ନିକାଲିଦେବେ, ତା'ପରେ ଗୋଟାକ ସ୍ଥାନରେ ସାତଟା ଆସି ପହଞ୍ଚିଯିବେ । ଏବଂ, ଆପଣ ସେତେବେଳେ କ'ଣ କରିବେ ?' ଯେଉଁ ଆଖିରେ ତାଙ୍କ ଆଡ଼କୁ ଅନାଇ କଲ୍ଡ୍ ଏହି କଥାଟିକୁ କହିଲେ, ତାହାହିଁ ଏକ ପ୍ରଭାବ ପକାଇବା ସକାଶେ ଯଥେଷ୍ଟ ଥିଲା, - ସେଠାରେ ସମବେତ ଅନ୍ୟମାନେ ଠୋ' କରି ହସିଉଠିଲେ ଏବଂ ଅପ୍ରସ୍ତୁତ ହୋଇଗଲା ପରି ପ୍ରଶ୍ନକର୍ତ୍ତା ସେଠାରୁ ପ୍ରସ୍ଥାନ କରିଥିଲେ । ବାହାରକୁ ଯାଇ ସିଏ କହୁଥିବାର ଶୁଣା ଯାଇଥିଲା, ''ବାପ୍‌ରେ, ଭାରି ଭୟାନକ ମଣିଷ ଇଏ ! ଏକାବେଳେକେ ନଖରେ ଆମ୍ଭୁଡ଼ି ପକାଇବେ । ତେଣୁ ଭାରି ସାବଧାନ ହୋଇ ଯାଙ୍କ ସହିତ କଥା କହିବାକୁ ହେବ ।''

କୃଷକମାନଙ୍କର ଏହି ଏକତ୍ର ଆଲୋଚନା ପାଇଁ କଲ୍ଡ୍ ଅଧିକାଂଶ ସମୟରେ ପାଦରେ ଚାଲିଚାଲି ଯାଉଥିଲେ । ହାତରେ ଯଥେଷ୍ଟ ସମୟ ରଖି ହିଁ ସିଏ ସେସବୁ କାର୍ଯ୍ୟରେ

ଯାଉଥିଲେ । ଅଧିକାଂଶ ଜାଗାରେ ପାଦ୍ରୀମାନେ ଚାଷୀମାନଙ୍କ ସହିତ ମିଶି କଲ୍‌ଡ୍‌ଙ୍କର ଏହିସବୁ ଅନ୍ୟଢ଼ଙ୍ଗର ଆଲୋଚନାକୁ ଭଲ ଆଖିରେ ଆଦୌ ଦେଖି ପାରୁନଥିଲେ। କଲ୍‌ଡ୍‌ଙ୍କର ନୂତନ ବିଦ୍ୟାଳୟ ଓ ନୂତନ ଶିକ୍ଷାବିଚାର ଗୁଡ଼ିକ ବିଷୟରେ ଯେ ସେମାନଙ୍କ ବିଶେଷ ଆପତ୍ତି ରହିଥିଲା, ସେକଥା ନୁହେଁ। ମାତ୍ର, କଲ୍‌ଡ୍ ଆସି ସାଧାରଣ ଚାଷୀମାନଙ୍କ ସହିତ ଏପରି ମିଶି ଯାଉଥିଲେ, ସେମାନଙ୍କ ସହିତ ନିଜର କୌଣସି ଭେଦ ରଖୁନଥିଲେ, - ଏବଂ ତାଙ୍କ ଆଲୋଚନାଗୁଡ଼ିକରୁ ନାନା କନ୍ଦଳ ଓ ଦ୍ୱନ୍ଦ୍ୱ ସୃଷ୍ଟି ବି ହେଉଥିଲା, ଶ୍ରୋତାମାନଙ୍କର ମନ ଭିତରେ ରହିଥିବା କାଳକାଳର ଧାରଣାମାନ ଦୋହଲିଗଲା ପରି ଲାଗୁଥିଲା, ତାହା ହିଁ ଆପତ୍ତିଜନକ ଥିଲା।

ଥରେ ଯୁବାଶିକ୍ଷକଙ୍କର ଏକ ଦଳକୁ ସମ୍ବୋଧନ କରି କଲ୍‌ଡ୍ କହିଥିଲେ : ''ଏପର୍ଯ୍ୟନ୍ତ ଶିକ୍ଷକକୁଳ ପ୍ରଧାନତଃ ସରକାରୀ ବଡ଼ ଅମଲା ମାନଙ୍କର ଲାଙ୍ଗୁଡ଼ ପରି ହୋଇ ରହି ଆସିଛନ୍ତି । କଥାଟି ଶୁଣିବା ବେଳକୁ ହସ ମାଡୁଛି, କାନ୍ଦ ମଧ୍ୟ ମାଡୁଛି । ଅନେକ ଶିକ୍ଷକ ଇଚ୍ଛା କରନ୍ତି ଯେ, ସେମାନେ ବରଂ ଅମଲାମାନଙ୍କର ଲାଙ୍ଗୁଳ ହୋଇ ରହିବେ ପଛକେ, ମାତ୍ର କଦାପି ଚାଷୀମାନଙ୍କର ମଥା ହେବାକୁ ମନ କରିବେନାହିଁ। ଥରେ ସେହି ପ୍ରବୃତ୍ତିଟିର ଫାଶରେ ପଡ଼ିଗଲେ ସେଥିରୁ ଆଉ ମୁକୁଳିବାର କୌଣସି ବାଟ ରହିବନାହିଁ। ଏବଂ, ସେଥିରେ ବହୁତ ବିପଦ ରହିଛି । ସେପରି ହେଲେ ଆମେ ଶିକ୍ଷକମାନେ କ୍ରମେ ପାଦ୍ରୀ ଏବଂ ଅମଲାମାନଙ୍କ ଆଡ଼କୁ ହିଁ ଟାଣିହୋଇ ଚାଲିଯିବୁ । ଏବଂ, ସେମାନଙ୍କୁ ନେଇ ଆଣି ଥୋଇ ଜାଣିବାପାଇଁ ଆମର ଏହି ସାନ ଦେଶ ଡେନ୍‌ମାର୍କ୍‌ର କୌଣସି ସାମର୍ଥ୍ୟ ନଥିବ । ତେଣୁ, ଆମର ସର୍ବପ୍ରଥମ କର୍ତ୍ତବ୍ୟ ହେଉଛି ଯେ ଆମେ ପରସ୍ପର ସହିତ ଦୃଢ଼ ଡୋରରେ ବନ୍ଧା ହୋଇଥିବା ଗୋଟିଏ ଲୋକସମୂହ ରୂପେ ନିଜକୁ ଗଠନ କରି ଆଣିବା।''- ତା'ପରେ ଉପସଂହାର କରି ସେ କହିଲେ, ''ଆମ ଦେଶର କୃଷକମାନଙ୍କ ଭିତରେ ଆମ ଦେଶର ଶିକ୍ଷକମାନେ ହେଉଛନ୍ତି ଗୋଟିଏ ଗୋଟିଏ ଫୁଲ ପରି । ତେଣୁ, ସେମାନେ ଆଉ ନିଜକୁ ବିକି ଦିଅନ୍ତୁନାହିଁ। ଜଣେ ଲୋକଶିକ୍ଷକ ନିଜକୁ କେବେହେଲେ ଜଣେ ସମ୍ଭ୍ରାନ୍ତ ଓ ଏଡ଼େ ଉଚ୍ଚ ବାବୁ ଭଳି ତିଆରି କରିବାକୁ ମନ କରିବନାହିଁ। ରାସ୍ତାରେ ସତେ ଅବା ରଣପା ଚଢ଼ି ଯାଉଥିବା ପରି ଉଚ୍ଚା କଲର୍‌ର ଜାମା ପିନ୍ଧିଥିବା ଓ ପାଟିରୁ ଫସ୍ ଫସ୍ ଧୂଆଁ ଛାଡୁଥିବା ଗୋଟାଏ ବାବୁପରି ହେବାକୁ ଆଦୌ ଇଚ୍ଛା କରିବନାହିଁ।''

ଏହିଭଳି ଜଣେ ଶିକ୍ଷକର ଆଖିଟା ପ୍ରକୃତରେ କେଡ଼େ କେଡ଼େ ନହୋଇଥିବ । ହୃଦୟଟା ମଧ୍ୟ କେତେ କ'ଣ ନହୋଇଥିବ । ଜଣେ ଶିକ୍ଷକ ଯେ କେଉଁ ଶ୍ରେଣୀଗୃହ ଭିତରେ ନିଜକୁ କିଳି କରି ରଖିନଥାଏ, କଲ୍‌ଡ୍ ତାଙ୍କ ଶିକ୍ଷକଜୀବନର ପ୍ରତ୍ୟେକ କରଣିରେ

ତାହାରି ଗୋଟିଏ ପ୍ରେରଣାମୟ ଦୃଷ୍ଟାନ୍ତ ହୋଇ ରହିଥିଲେ । ଏବଂ, ଅନ୍ୟପକ୍ଷରେ, ପୂର୍ଣ୍ଣ ମମତା ଓ ସହାନୁଭବ ସହିତ ସେ ଶ୍ରେଣୀଗୃହର ଭିତରେ ମଧ୍ୟ ପ୍ରତ୍ୟେକ ଛାତ୍ରକୁ ନିବିଡ଼ ଭାବରେ ଅନୁଭବ କରି ପାରୁଥିଲେ । ସାନ ସାନ ପିଲାଙ୍କର ଶିକ୍ଷକ ହେବା ପ୍ରକୃତରେ ଏକ ଦୁଃସାଧ୍ୟ କଳା ବୋଲି ଥରେ ଜଣେ ଶିକ୍ଷକ ଶ୍ରୀ କଲ୍ଲ୍‌କୁ କହିଥିଲେ । ନିଜ ଶିକ୍ଷକଜୀବନର ଏକ ପ୍ରକୃତ ଘଟଣାର ଉଦାହରଣ ଦେଇ କଲ୍ଲ୍ ସେହି ପରିସ୍ଥିତିରେ ନିଜେ କ'ଣ କରିଥାଆନ୍ତେ ବୋଲି ତାଙ୍କୁ ପ୍ରଶ୍ନ କରିଥିଲେ: ''ମୋ' ସ୍କୁଲରେ ପୁଅପିଲାଟିଏ ପଢୁଛି, ଭାରି ଅଳସୁଆ, କେବେହେଲେ ନିଜର ପାଠ କରି ଆସିନଥିବ । ଦିନେ ମୁଁ ଭାରି ଚିଡ଼ି ଯାଇ ତାକୁ ବେତରେ ଗୁଡ଼ାଏ ପିଟିଲି । ତାହା ଦେଖି ଆଉଗୋଟିଏ ସାନ ପିଲା ଆଗକୁ ବାହାରି ଆସିଲା ଓ ମୁହଁ ରଙ୍ଗା କରି କହିଲା ଯେ, ଯଦି ମୁଁ ତାକୁ ମଧ୍ୟ କେବେ ସେହିପରି ବେତରେ ବାଡ଼େଇବି, ତେବେ ସିଏ ତା'ର ମାଆଙ୍କୁ ଯାଇ କହିବ ଓ ମାଆ ଶିକ୍ଷକଙ୍କ ପାଇଁ ଆଣି ଦେଉଥିବା କୁକୁଡ଼ାଅଣ୍ଡା ଦେବା ବନ୍ଦ କରିଦେବେ । ପିଲାଟାର ଏପରି ଆଚରଣ ଦେଖି ମୁଁ କ'ଣ କରିଥାନ୍ତି ? ଜଣେ ପିଲାକୁ ତା' ଶିକ୍ଷକଙ୍କୁ ଏଭଳି କଥା କହିବାକୁ ଛାଡ଼ି ଦିଆଯିବ କି ? ଏପରି ଏକ ପରିସ୍ଥିତିରେ ଆପଣ କ'ଣ କରିଥାନ୍ତେ ?''

ଶ୍ରୀଯୁକ୍ତ କଲ୍ଲ୍ ଉତ୍ତର ଦେଲେ, ''ମୁଁ ଅତ୍ୟନ୍ତ ବନ୍ଧୁତାପୂର୍ଣ୍ଣ ଆଖିରେ ପିଲାଟିକୁ ଚାହିଁ ଦେଖିଥାନ୍ତି, ତା' କାନ୍ଧରେ ହାତ ଥାପଡ଼େଇ କହିଥାନ୍ତି, 'ତୁ ବାବୁ ଭାରି ବଢ଼ିଆ ପିଲାଟିଏ । ସବୁବେଳେ ଏହିପରି ଯାହା ଭାବିବୁ, ସାହସର ସହିତ ନିଶ୍ଚୟ କହିଦେବୁ । ତଦ୍ୱାରା ତୋର ଅନେକ ଉପକାର ହେବ ଓ ବଡ଼ ହୋଇ ତୁ ଜଣେ ଭଲ ମଣିଷ ହୋଇ ଏହି ଦେଶର ବହୁତ କାମରେ ଆସିବୁ ।' ଏଇଟା କହିପାରିବା କ'ଣ ସତରେ ଏଡ଼େ କଷ୍ଟ ?''

ମାତ୍ର କ୍ରିଷ୍ଟେନ୍ କଲ୍ଲ୍ କେବେହେଲେ ବହୁତ ଭାଷଣ ହେଉଥିବା ବଡ଼ ବଡ଼ ସଭାକୁ ଯାଉନଥିଲେ । ଥରେ ପାଦ୍ରୀ ଏବଂ ଶିକ୍ଷକମାନଙ୍କର ଗୋଟିଏ ସଭାରେ ସରକାରୀ ସ୍କୁଲ ବନାମ ମୁକ୍ତ ପାଠଶାଳା ବିଷୟରେ ବହୁତ ବିତର୍କ ଏବଂ ବାକ୍‌ଯୁଦ୍ଧ ହେଲା । କଲ୍ଲ୍ ସେହି ସଭାକୁ ଯାଇନଥିଲେ । ସେଠାକୁ ଯାଇଥିବା ଆଉଜଣେ ଶିକ୍ଷକ ତାଙ୍କୁ କହିଥିଲେ ଯେ, କଲ୍ଲ୍ ଯାଇଥିଲେ ମୁକ୍ତ ବିଦ୍ୟାଳୟ ପକ୍ଷରେ ଦୃଢ଼ ଯୁକ୍ତିମାନ ବାଢ଼ି ପାରିଥାନ୍ତେ ଓ ତାହା ଖୁବ୍ ସାହାଯ୍ୟ କରିଥାନ୍ତା । କଲ୍ଲ୍ ଜବାବ ଦେଇଥିଲେ, ''ମୁଁ କ'ଣ ଗୋଟିଏ ପବନଚକ ହୋଇଛି କି ? ମୋ'ର ପ୍ରକୃତରେ ବହୁତ କିଛି କରିବାର ଅଛି - ଅଧିକ ବୃହତ୍ ଓ ଅଧିକ ଭଲ ବହୁତ କିଛି । ତୁମର ମଧ୍ୟ !''

ଲୋକବିଦ୍ୟାଳୟର ଜୀବନଧାରଣ ଅତ୍ୟନ୍ତ ସରଳ ଥିଲା । ଭୋଜନ ଠିକ୍ ଯେକୌଣସି କୃଷକଘରର ଭୋଜନ ପରି । ସରଳ ଅଥଚ ପୁଷ୍ଟିକାରକ । ଆବଶ୍ୟକ

ଲହୁଣୀ(Butter) କଲ୍‌ଲ୍‌ଙ୍କର ଭଉଣୀ ନିଜେ ତିଆରି କରି ନେଉଥିଲେ । ପ୍ରଥମେ କଫି ନଥିଲା, ପରେ କିଛି କିଛି ତାହାର ପ୍ରବେଶ ଘଟିଥିଲା । ୧୮୬୬ରେ ଭଉଣୀ ମେରୀ ବିବାହ କଲେ ଓ ଅନ୍ୟତ୍ର ରହିଥିଲେ । ସେହି ୧୮୬୬ରେ କଲ୍‌ଲ୍ ସ୍ୱୟଂ ବିବାହ କରିଥିଲେ ଓ ଏହିପରି ଭାବରେ ଘଟଣାଟିର କିଞ୍ଚିତ୍ କ୍ଷତିପୂରଣ ମଧ୍ୟ ଘଟିଥିଲା । ସେହି ସମୟରୁ ରହିଥିବା ଏକ ବିବରଣୀରୁ ଜଣାପଡୁଛି ଯେ, ପ୍ରତ୍ୟହ ପ୍ରାତଃଭୋଜନରେ ଅଳପ ବିଅର୍ ପଡ଼ି କଅଁଳ କରା ଯାଇଥିବା ପାଉଁରୁଟି ଏବଂ ଗରମ କ୍ଷୀର ଦିଆ ଯାଉଥିଲା । ତା' ସହିତ ବଟର୍ ଲଗା ଯାଇଥିବା ମାଣ୍ଡିଆ ପାଉଁରୁଟି ମଧ୍ୟ ଉପଲବ୍ଧ ହେଉଥିଲା । ଖରାବେଳର ଖାଦ୍ୟରେ ରନ୍ଧା ହୋଇଥିବା ମାଂସ, ପତରକୋବି ଓ ଲୁଣରେ ଭୁଆ ହୋଇଥିବା ମାଂସ ମିଳୁଥିଲା । ସପ୍ତାହରେ ଥରେ ସୋରିଷସସ୍ ସହିତ ମାଛ, ସପ୍ତାହରେ ଥରେ ଚିନିସିରା ସହିତ ମୋଟା କରି ଖଣ୍ଡେ ପ୍ୟାନ୍‌କେକ୍ । ଅପରାହ୍ନରେ ଟିକିଏ ଟିକିଏ ବହଳ କ୍ଷୀର ଓ ଖଣ୍ଡେ ନବାତ ସହିତ ପିଆଲାଏ କଫି । ତା'ସହିତ ଲୁଣଦିଆ ମାଂସ, ଏବଂ କାହାର ଆବଶ୍ୟକ ହେଲେ ମାଣ୍ଡିଆର ପାଉଁରୁଟି । ଏବଂ ସନ୍ଧ୍ୟାଭୋଜନରେ କ୍ଷୀର ସହିତ ପରିଜ୍, ମାଂସ । ପ୍ରତ୍ୟେକ ବ୍ୟକ୍ତିକୁ ତା' ଭାଗର ସିଝା ଆଳୁରୁ ସ୍ୱୟଂ ଚୋପା ଛଡ଼ାଇ ଖାଇବାକୁ ପଡୁଥିଲା । ସମସ୍ତେ କାଠଟେବୁଲ ଚାରିପାଖରେ ବସି ଖାଉଥିଲେ । ବିଶେଷ ଅନୁଷ୍ଠାନ ଦିନମାନଙ୍କରେ ଟେବୁଲ୍ ଉପରେ ଧଳା ଚାଦର ବିଛା ଯାଉଥିଲା । ଛାତ୍ର ଏବଂ ଶିକ୍ଷକ ଏକା ପ୍ରକାରର ଖାଦ୍ୟ ଖାଇବେ ଏବଂ କାହାକୁ ନିର୍ଦ୍ଦିଷ୍ଟ ସମୟ ବ୍ୟତୀତ ଭୋଜନ ଦିଆଯିବ ନାହିଁ, ଏହି ନିୟମରେ କଦାପି ବ୍ୟତିକ୍ରମ ଘଟୁନଥିଲା ।

- ୩ -

ଡେନ୍‌ମାର୍କ୍ ଦେଶର ଲୋକଶିକ୍ଷା ଏବଂ ଲୋକବିଦ୍ୟାଳୟର ଇତିହାସରେ ସବାଆଗ ଆମେ ଯେଉଁ ଦୁଇଜଣଙ୍କୁ ସବାଆଗ ଭେଟିବା, ସେମାନେ ହେଉଛନ୍ତି ବିଶପ୍ ନିକୋଲାଇ ଗ୍ରୁଣ୍ଡଭିଗ୍ ଏବଂ କ୍ରିଷ୍ଟେନ୍ କଲ୍‌ଲ୍। ମୂଳତଃ ଗ୍ରୁଣ୍ଡଭିଗ୍‌ଙ୍କୁ ସାକ୍ଷାତ କରିବା ନିମନ୍ତେ କଲ୍‌ଲ୍ ରାଜଧାନୀ କୋପେନହେଗେନ୍ ସହରକୁ ଯାଉଥିଲେ। ଗ୍ରୁଣ୍ଡଭିଗ୍ ସେତେବେଳେ ପ୍ରଖ୍ୟାତ କବି, ଜାତୀୟ ଜାଗରଣର ପ୍ରବକ୍ତା ଓ ନେତା, ନୂତନ ଶିକ୍ଷା-ଆନ୍ଦୋଳନର ଯାବତୀୟ ପ୍ରୟାସ ତଥା ପ୍ରୟୋଗରେ ସିଏ ପ୍ରଧାନତମ ପ୍ରେରଣା। ରାଜଧାନୀରେ ତାଙ୍କୁ ସମସ୍ତେ କେଡ଼େ ବଡ଼ ଓ କେଡ଼େ ବହୁସମର୍ଥ ବୋଲି ଜାଣନ୍ତି। ଅପର ପକ୍ଷରେ କ୍ରିଷ୍ଟେନ୍ କଲ୍‌ଲ୍ ସମ୍ବଳହୀନ ଅଥଚ ସଂକଳ୍ପସଚେତନ। ଦେଶରେ ଗଣବିଦ୍ୟାଳୟର ସାହସୀ ପ୍ରୟୋଗକାରୀ। ଡେନ୍‌ମାର୍କର ଚାଷୀକୁଳକୁ ସବାମଝିରେ ରଖି ହିଁ କଲ୍‌ଲ୍ ଆଗକୁ ଏକ ଅନ୍ୟଭଳି ସତ୍ୟ ତଥା ଅନ୍ୟଭଳି ବାସ୍ତବକୁ ସାକାର କରି ଆଣିବାରେ ଲାଗିଥାନ୍ତି। ଦୁହେଁ ଦୁହିଁଙ୍କୁ ଅତ୍ୟନ୍ତ ନିକଟବର୍ତ୍ତୀ ରୂପେ ଚିହ୍ନିବାରେ ଏବଂ ଦୁହେଁ ଦୁହିଁଙ୍କ ଉପରେ ବିଶ୍ୱାସସ୍ଥାପନ କରିବାର କ୍ଷେତ୍ରରେ ଆଦୌ ବିଶେଷ ବିଳମ୍ବ ଲାଗିନଥିଲା। ବହୁଦୂରରେ ଫୁଇନ୍ ଦ୍ୱୀପର ଗୋଟିଏ ଗ୍ରାମ୍ୟ ପରିବେଶରେ କଲ୍‌ଲ୍ ଯାହାକିଛି କରୁଥାନ୍ତି, ରାଜଧାନୀରୁ ବିଶପ୍ ଗ୍ରୁଣ୍ଡଭିଗ୍ ପରିପୂର୍ଣ୍ଣ ସହାନୁଭୂତି ସହିତ ତାହାସହିତ ନିଜକୁ ସଂଶ୍ଳିଷ୍ଟ କରି ରଖିଥାଆନ୍ତି। ସତେଅବା ସେମାନେ ନିଜ ସମ୍ମୁଖରେ ସେହି ଗୋଟିଏ ତାରାକୁ ଠାବ କରି ତାହାର ଅନୁଧାବନ କରୁଥାନ୍ତି।

ଗଣବିଦ୍ୟାଳୟଟିଏ ଆରମ୍ଭ କରିବାର ମସୁଧା ସହିତ ସେଥିପାଇଁ ଆବଶ୍ୟକ କିଛି ଅର୍ଥର ଯୋଗାଡ଼ କରିବାରେ ଗ୍ରୁଣ୍ଡଭିଗ୍‌ଙ୍କର ସହାୟତା ଲୋଡ଼ି ପ୍ରଥମଥର ପାଇଁ ଯେତେବେଳେ କଲ୍‌ଲ୍ କୋପେନହେଗେନ୍ ଯାଇଥିଲେ, ସେଇଟି ବିଷୟରେ ବେଶ୍ ମନୋରମ କେତେକ ବର୍ଣ୍ଣନା ରହିଛି। କଲ୍‌ଲ୍ ଗୋଟାସୁଦ୍ଧା ଗାଉଁଲି ଥିଲେ, ଗ୍ରାମ୍ୟ କୃଷକର ପରିଧାନ ବ୍ୟବହାର କରୁଥିଲେ। ଗୋଡ଼ରେ ଚାଷୀମାନଙ୍କ ପରି କାଠତିଆରି ଜୋତା ପିନ୍ଧୁଥିଲେ। ଏହିପରି ଅଜବ ବେଶରେ ସିଏ ଯେତେବେଳେ ରାଜଧାନୀର ଉପକଣ୍ଠରେ ପହଞ୍ଚିଲେ, ସେତେବେଳେ ସହରୀ ଛୁଆଙ୍କର ଆଖି ତାଙ୍କ ଉପରେ ପଡ଼ିବାକୁ ଆଦୌ ବିଳମ୍ବ ହୋଇନଥିଲା। ପିଲାମାନେ ତାଙ୍କୁ ପାଗଳ ବୋଲି ଭାବିଲେ। ସିଏ ହୁଏତ ନିଜ ଚେହେରାରୁ ଅତ୍ୟନ୍ତ ଯୁକ୍ତିଯୁକ୍ତ ଭାବରେ ସେହିପରି ଦେଖା ଯାଉଥିଲେ। ଖୁବ୍ ଉତ୍ସାହରେ ପିଲାଏ

ତାଙ୍କର ପିଛା ଧରିଲେ । ତାଙ୍କ ଉପରକୁ ଟେକା ପକାଇଲେ ଓ ତାଙ୍କୁ ଚିଡ଼ାଇବା ଓ ଟିହାଇବା ପାଇଁ ବିବିଧ ଉପକ୍ରମ କରିଥିଲେ । ରାସ୍ତାର ଟାଙ୍ଗର ଚଟାଣ ଉପରେ କଲ୍‌କ୍ ପିନ୍ଧିଥିବା କାଠଜୋତାର ଖଡ଼ଖଡ଼ ଶବ୍ଦ ପିଲାମାନଙ୍କୁ ସବୁଠାରୁ ବେଶୀ ଆକୃଷ୍ଟ କରିଥିଲା ଓ ବହୁ ଉପମା ଫାନ୍ଦି ପଛରେ ଗୋଡ଼ାଇବାର ଅବସର ଆଣିଥିଲା । ମୁଠେ ପିଲା ଚାଲିଯିବା ପରେ ଆଉ ମୁଠେ ପିଲା ଆସି ପହଞ୍ଚି ଯାଇଥିଲେ । ଏଥିରେ କିଛିତ୍ ଆତଙ୍କିତ ହୋଇ ପଡ଼ିବାର ଯଥେଷ୍ଟ କାରଣ ରହିଥିଲା । ତେଣୁ, କ୍ଷଣେ ସୁବିଧା ପାଇ କଲ୍‌କ୍ ଜୋତା ଦୁଇଟିକୁ ଗୋଡ଼ରୁ ଓହ୍ଲାଇ ରାସ୍ତାକଡ଼ର କୌଣସି ବୁଦା ଭିତରେ ଲୁଚାଇ ଦେଇଥିଲେ ଓ ଖାଲି ପାଦରେ ଅଗ୍ରସର ହେବାକୁ ଲାଗିଲେ । ଏହି ଅନ୍ୟ ପରିସ୍ଥିତିଟି ମଧ୍ୟ ପିଲାଙ୍କୁ କମ୍ ମୁଖର ଓ ସକ୍ରିୟ ହେବାର ନୂତନ ସୁଯୋଗଟିଏ ଆଣି ଦେଇନଥିବ ।

ବାଟ ଅନ୍ଦାଜ କରି କରି କଲ୍‌କ୍ ଗ୍ରୁନ୍‌ଡ୍‌ଭିଗ୍ ରହୁଥିବା ସ୍ଥାନରେ ଯାଇ ପହଞ୍ଚିଲେ । ଏପରି ଗୋଟିଏ ମନୁଷ୍ୟମୂର୍ତ୍ତି ଦେଖି ବିଶପ୍‌ଙ୍କ ଗହଣରେ ସେଠାରେ ବସିଥିବା ଅନ୍ୟମାନେ କ'ଣସବୁ ଧାରଣା କରିଥିବେ କେଜାଣି ? ଏପରି ଗୋଟିଏ ପ୍ରୟୋଗ ହେଉଛି ବୋଲି ଗ୍ରୁନ୍‌ଡ୍‌ଭିଗ୍ ଆଗରୁ ନିଶ୍ଚୟ ସମ୍ବାଦ ପାଇଥିବେ, ତେଣୁ ସିଏ ଅବଶ୍ୟ ଏକ ଅନୁମାନ କରି ପାରିଥିବେ । ଶ୍ରୀଯୁକ୍ତ କଲ୍‌କ୍ ଆସନ ଗ୍ରହଣ କରି ଗଣବିଦ୍ୟାଳୟ ସମ୍ପର୍କରେ ନିଜର କଳ୍ପିତ ଯୋଜନାଟି ବିଷୟରେ କହିଥିଲେ । ଅତ୍ୟନ୍ତ ସଂକ୍ଷିପ୍ତ ଭାବରେ ହିଁ କହିଥିଲେ । ସିଏ ଆଗରୁ ନିଜର ଖର୍ଚ୍ଚରୁ କାଟି କିଛି ଅର୍ଥ ସଂଚୟ କରିଛନ୍ତି, ଏବଂ ଆବଶ୍ୟକ ଆଉକିଛି ନିମନ୍ତେ ବିଶପ୍‌ଙ୍କର ସହାୟତା ଲୋଡ଼ି ଆସିଛନ୍ତି । ହୁଏତ ଆଦୌ କୌଣସି ଭାବପ୍ରବଣତା ପ୍ରକାଶ ନକରି ସେ ଏହିକଥା କହିଥିବେ । ବିଶପ୍ କୁଆଡ଼େ ପଚାରିଲେ, ତୁମର ଆଉ କେତେ ଆବଶ୍ୟକ ? କଲ୍‌କ୍ ଯେଉଁ ସଂଖ୍ୟାଟି ଦେଲେ, ତାହା ଗ୍ରୁନ୍‌ଡ୍‌ଭିଗ୍‌ଙ୍କର ମନକୁ ପାଇଲା ନାହିଁ । ଏତେ ସ୍ୱଳ୍ପ ଅର୍ଥରେ ଏଡ଼େ ବିରାଟ କାର୍ଯ୍ୟଟିର କିଭଳି ଆରମ୍ଭ ହୋଇ ପାରିବ ? ସିଏ ଏହି ବିଷୟରେ ନିଜର ସଂଶୟ ପ୍ରକଟ କରିଥିଲେ । କ୍ରିଷ୍ଟେନ୍ କଲ୍‌କ୍ ଫଟ୍ କରି ଉତ୍ତର ଦେଇଥିଲେ, "ଆଜ୍ଞା, ଯଦି ଅଳ୍ପରେ ହୋଇ ନପାରିବ, ତେବେ ଅଧିକରେ ବି ମୋଟେ ହୋଇ ପାରିବନାହିଁ । ମାତ୍ର ସର୍ବଦା କିଛିର ଅବଶ୍ୟକତା ଅବଶ୍ୟ ରହିଥିବ ।" ଇଏ ଯେ ଜଣେ ଅନ୍ୟ କାଟର ବ୍ୟକ୍ତି, ଗ୍ରୁନ୍‌ଡ୍‌ଭିଗ୍ ସେହି କଥାଟିକୁ ଅବଶ୍ୟ ଠଉରାଇ ନେଇ ପାରିଥିବେ । ସେହି ଦିନଠାରୁ ଉଭୟଙ୍କ ମଧ୍ୟରେ ଘନିଷ୍ଠତା ବୃଦ୍ଧି ପାଇଥିଲା । କଲ୍‌କ୍‌ଙ୍କର ଉଦ୍ୟମରେ ଯେପରି ସ୍ଥାୟୀ ଭାବରେ ତାଙ୍କୁ ଅନ୍ତତଃ କିଛି ଅଂଶରେ ଅର୍ଥସହାୟତା ମିଳିବ, ଗ୍ରୁନ୍‌ଡ୍‌ଭିଗ୍ ସର୍ବଦା ସେଥିପ୍ରତି ଦୃଷ୍ଟି ରଖିଥିଲେ । ତାଙ୍କରି ନେତୃତ୍ୱରେ ରାଜଧାନୀରେ ପୂର୍ବରୁ ଏକ ବନ୍ଧୁଗୋଷ୍ଠୀର ପ୍ରତିଷ୍ଠା ହୋଇଥିଲା । ସେହି ଗୋଷ୍ଠୀ ନିୟମିତ ଭାବରେ ବସି ସମସାମୟିକ ପ୍ରଶ୍ନଗୁଡ଼ିକ ବିଷୟରେ ନାନା ପ୍ରବଚନ ତଥା ଆଲୋଚନାର ଆୟୋଜନ କରୁଥିଲା । ଏହିପରି ଗୋଟିଏ ବୈଠକକୁ

(Vennemoede) ଏକ ପରବର୍ତ୍ତୀ କାଳରେ ୧୮୬୬ ସେପ୍ଟେମ୍ବର ୧୦-୧୧ ତାରିଖରେ କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କୁ ବକ୍ତାରୂପେ ଡକା ଯାଇଥିଲା । ଏକ ଦୀର୍ଘ ବର୍ଣ୍ଣନା ଦେଇ କଲ୍‌ଡ୍ ସେଠାରେ ନିଜ ସମଗ୍ର ଜୀବନ ଏବଂ ପ୍ରୟାସର ଅନ୍ତରଙ୍ଗ ପରିଚିତିଟିଏ ପ୍ରଦାନ କରିଥିଲେ ।

ସେଦିନ ମଙ୍ଗଳବାର ହୋଇଥାଏ । ସଭାସ୍ଥଳରେ ପ୍ରାୟ ହଜାର ପର୍ଯ୍ୟନ୍ତ ବ୍ୟକ୍ତି ଉପସ୍ଥିତ ଥାଆନ୍ତି । ସର୍ବପ୍ରଥମେ ବିଶପ୍ ଗ୍ରୁନ୍ଡ୍‌ଭିଗ୍ ହିଁ କାର୍ଯ୍ୟକ୍ରମଟିର ଯେଉଁ ଅବତରଣିକା ପ୍ରଦାନ କରିଥିଲେ, ତାହା ମଧ୍ୟରେ ଏହି କେତୋଟି ପ୍ରଧାନ କଥା ରହିଥିଲା: ''ମନୁଷ୍ୟତା ଏବଂ ଗଣଭାବନା ଦୃଷ୍ଟିରୁ ବିଦ୍ୟାଳୟରେ ଦିଆ ଯାଉଥିବା ଶିକ୍ଷାର ଯେଉଁ ଅପରିସୀମ ତାତ୍ପର୍ଯ୍ୟ ରହିଛି, ଆଜି ବନ୍ଧୁଗୋଷ୍ଠୀରେ ସେହି ବିଷୟରେ ଏକ ବିସ୍ତାରିତ ଆଲୋଚନା ହେଉ ବୋଲି ଇଚ୍ଛା କରି ମୁଁ ଆପଣମାନଙ୍କୁ ଏଠାକୁ ନିମନ୍ତ୍ରିତ କରି ଆଣିଛି । ବିଗତ ବର୍ଷମାନଙ୍କରେ ଏହି କ୍ଷେତ୍ରରେ ଆମ ଦେଶରେ ଯେତିକି ଅଗ୍ରଗତି ହୋଇଛି, ସେଥିରୁ ପ୍ରତ୍ୟୟ ମିଳିଯାଉଛି ଯେ ଭବିଷ୍ୟତରେ ଏହାଲାଗି ଆହୁରି ବହୁ ସଫଳତା ଅପେକ୍ଷା କରି ରହିଛି । ଦେଶର ଉଚ୍ଚଶିକ୍ଷିତ ଓ ନିଜକୁ ଅଧିକ ବିଚାରବନ୍ତ ବୋଲି ଭାବୁଥିବା ବ୍ୟକ୍ତିମାନେ ଆମର ଏହିସବୁ ଉଦ୍ୟମକୁ ଉପହାସ କରି ଇସ୍କୁଲମାଷ୍ଟର ମାନଙ୍କର ଉଦ୍ୟମ ବୋଲି କହୁଛନ୍ତି । ନୂତନ କରି ସ୍ଥାପିତ ଗଣବିଦ୍ୟାଳୟ ଗୁଡ଼ିକୁ ସେମାନେ ଏତେ ନିମ୍ନସ୍ତରୀୟ କାର୍ଯ୍ୟ ବୋଲି ଭାବୁଛନ୍ତି ଯେ ତେଣେ ଦୃଷ୍ଟିଦେବାକୁ ହିଁ ଉଚିତ ବୋଲି ଅନୁଭବ କରୁନାହାନ୍ତି । ....ତଥାପି ସେମାନଙ୍କର ଉଜ୍ଜ୍ୱଳ ଆଖିଗୁଡ଼ିକୁ ଏହି କାର୍ଯ୍ୟଟି ଯେତେ ଦରିଦ୍ର ଏବଂ ଅକ୍ଷମସମର୍ଥ ପରି ବୋଧ ହେଉଥିଲେ ମଧ୍ୟ ମୁଁ ଏହାକୁ ହିଁ ଯଥାର୍ଥ ମାନବିକତାର ପ୍ରତିଷ୍ଠା କରିବାର ଅଭିଳାଷ ରଖିଥିବା ଏକମାତ୍ର ଶିକ୍ଷାଯୋଜନା ବୋଲି ଅବଶ୍ୟ କହିବି । କାରଣ, ମନୁଷ୍ୟ ପ୍ରକୃତରେ ଯାହା, ଏହି ଶିକ୍ଷା ତାହାକୁ ଠିକ୍ ସେହି ପରିପ୍ରେକ୍ଷୀରେ ହିଁ ଦେଖୁଛି; ଗୋଟିଏ ପୋଷା ପ୍ରାଣୀରୂପେ ନୁହେଁ, ଈଶ୍ୱରଙ୍କର ପ୍ରତିରୂପକୁ ବହନ କରି ପୃଥିବୀକୁ ଆସିଥିବା ଏକ ସର୍ଜନା ସଦୃଶ ହିଁ ଦେଖୁଛି । ଏହି ମନୁଷ୍ୟ ଭିତରେ ଏକ ହୃଦୟ ଅଛି, ଆତ୍ମା ବି ରହିଛି ।....ତେଣୁ ମୁଁ ପୂର୍ଣ୍ଣ ନିଃସନ୍ଦେହ ଭାବରେ କହିପାରେ ଯେ, ଏହି ଶିକ୍ଷାପ୍ରଣାଳୀଟି ହିଁ ଅଚିରେ ଅଧିକରୁ ଅଧିକ ପରିମାଣରେ ନିଜର ପ୍ରାସଙ୍ଗିକତାକୁ ପ୍ରତିପାଦିତ କରିପାରିବ ।

''ଆମେ ସମସ୍ତେ ଏକ ଯଥାର୍ଥ ସ୍ୱାଧୀନତା ଲାଗି ଆକାଂକ୍ଷା କରି ରହିଛୁ; କେବଳ ଆମର ଚିନ୍ତା ଓ ଭାବନାରେ ନୁହେଁ, ମନୁଷ୍ୟ ହିସାବରେ ଆମର ସମଗ୍ର ଜୀବନରେ ହିଁ ସେହି ସ୍ୱାଧୀନତାର ଆକାଂକ୍ଷା ରଖିଛୁ ।....ଏବଂ ଏହି ନୂତନ ଶିକ୍ଷାପ୍ରଣାଳୀଟି ଆମକୁ ସେହି ଆଡ଼କୁ ଅଗ୍ରସର କରାଇ ନେଇଯିବ । ତାହା ଆମକୁ ନିଜକୁ ଗଭୀରଭାବେ ଜାଣିବାରେ ସହାୟତା କରିବ । 'ମନୁଷ୍ୟ, ତୁ ନିଜକୁ ଜାଣିବୁ, ନିଜକୁ ବୁଝିବୁ ।' - ଏହି ଶକ୍ତିଶାଳୀ

ବାକ୍ୟଟି ପ୍ରତ୍ୟେକ ବିଦ୍ୟାଳୟର ତୋରଣ ଉପରେ ଲିଖିତ ହୋଇ ରହିବା ଉଚିତ ବୋଲି ପ୍ରାଚୀନ କାଳର ଜଣେ ଦାର୍ଶନିକ ଏକଦା କହି ଯାଇଛନ୍ତି । ଏହାହିଁ ଅନ୍ୟ ଯାବତୀୟ ଜ୍ଞାନ ନିମନ୍ତେ ସବାମୂଳ ଭୂମି ହୋଇ ରହିବ । କାରଣ, ହୃଦୟ, ଆତ୍ମା, ସ୍ୱର୍ଗୀୟ ଜୀବନ,- ଏଗୁଡ଼ିକୁ ଆମ ନିଜର ଜୀବନରେ ପ୍ରତିଫଳିତ କରି ନପାରିବା ପର୍ଯ୍ୟନ୍ତ ଆମେ କଦାପି ସେଗୁଡ଼ିକର ଉପଲବ୍ଧି କରି ପାରିବାନାହିଁ । ଅର୍ଥାତ୍ ଏହି ପୃଥିବୀସ୍ଥ ଜୀବନରେ ହିଁ ସେହିଗୁଡ଼ିକ ପ୍ରଥମେ ଜୀବନଲାଭ କରିପାରିବ ।

''ସେହି ସବୁଯାକ ଆଦର୍ଶାଭିଳାଷ ଆମର ଜୀବନ ମଧ୍ୟକୁ ଆସି ଫଳ ଧରି ପାରିଲେ ଯାଇ ଆମେ ସେଗୁଡ଼ିକର ଯଥାର୍ଥ ବାହକ ହୋଇପାରିବା । ଏବଂ, ସେଥିପାଇଁ ଏକ ଅନୁରୂପ ଶିକ୍ଷାବ୍ୟବସ୍ଥା ହିଁ ଆମପାଇଁ ସର୍ବଦା ଅପରିହାର୍ଯ୍ୟ ହୋଇ ରହିଥିବ । ଆମକୁ ଯଥାର୍ଥ ମନୁଷ୍ୟ କରି ନିର୍ମାଣ କରିବ । ଆମ ସମ୍ମୁଖରେ ଯେ ସେହି ଘଟଣାଟି ପ୍ରକୃତରେ କେତେକ ପରିମାଣରେ ଘଟୁଛି, ଜଣେ ବ୍ୟକ୍ତିର ଦୃଷ୍ଟାନ୍ତରୁ ଆମେ ତାହାର ଏକ ପ୍ରତ୍ୟକ୍ଷ ପରିଚୟ ମଧ୍ୟ ପାଇ ପାରିଲୁଣି । ସେହି ବ୍ୟକ୍ତି ଶିକ୍ଷାର ସେବା କରି ଆସିଛନ୍ତି ଓ ଆପଣାର ଦୀର୍ଘ ଅନୁଭବରୁ ବିଦ୍ୟାଳୟର ପୃଥିବୀଟିକୁ ଆଦ୍ୟରୁ ଅନ୍ତ ପର୍ଯ୍ୟନ୍ତ ଚିହ୍ନିବାରେ ମଧ୍ୟ ସମର୍ଥ ହୋଇଛନ୍ତି । ସେହି ବ୍ୟକ୍ତି ଆଜି ଏଠାରେ ସ୍ୱୟଂ ମୁଖ ଖୋଲି ଆମକୁ ଯାବତୀୟ କଥାକୁ ଶୁଣାଇବେ,- ଶିକ୍ଷାକୁ ମାଧ୍ୟମ କରି ମାନବିକତା ଓ ହୃଦୟର ଅନୁଶୀଳନକୁ ସିଏ କିଭଳି ଜୀବନର କ୍ଷେତ୍ରକୁ ସଂଚାରିତ କରି ଆଣଛନ୍ତି, ଆଜି ଆମେ ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କ ଠାରୁ ତାହାରି କାହାଣୀ ଶୁଣିବା । ଫୁଇନ୍ ଦ୍ୱୀପରେ ମାନବୀୟ ତଥା ଗଣଶିକ୍ଷାର କ୍ଷେତ୍ରରେ ସର୍ବପୁରୋଭାଗରେ ରହିଥିବା ତାଙ୍କୁ ମୁଁ ଆଜି ଏଠାକୁ ଅନୁରୋଧ କରି ଡାକି ଆଣିଛି । ଶ୍ରୀଯୁକ୍ତ କଲ୍‌ଲ୍, ଆପଣ ଆଜି ଆମକୁ ସେହିସବୁ କଥା କହିବେ, ଆପଣଙ୍କର ସମଗ୍ର ଜୀବନପଥଟିର କଥା ଅନୁଗ୍ରହ କରି କହିବେ । ବିଦ୍ୟାଳୟର ଶିକ୍ଷା, - ଉଭୟ ସାନପିଲା ଏବଂ ବଡ଼ମାନଙ୍କର ଶିକ୍ଷା ବିଷୟରେ ଆପଣ ନିଜର ଅନୁଭବଗୁଡ଼ିକ ବିଷୟରେ କହିବେ । ଶେଷରେ ମୁଁ ନିଜର କେବଳ ଗୋଟିଏ ଇଚ୍ଛାକୁ ବ୍ୟକ୍ତ କରି କହିବି ଯେ, - ଆଗରୁ କୌଣସି ବକ୍ତାଙ୍କ କ୍ଷେତ୍ରରେ ମୁଁ ସେପରି କରିନାହିଁ, - ଆପଣ ନିଜର ବକ୍ତବ୍ୟଟିକୁ ଆଦୌ ସଂକ୍ଷେପରେ ସାରି ଦେବେନାହିଁ । ଆପଣ ତ ଏତେଦିନ ଯାଏ ପାଟି ବନ୍ଦ କରି ରଖି ଆସିଛନ୍ତି, - ଏବଂ ତେଣୁ ଆପଣଙ୍କର ଆମ ସମସ୍ତଙ୍କୁ ବହୁତ କିଛି ନିଶ୍ଚୟ କହିବାକୁ ଅଛି । ଏବଂ, ମୁଁ ମଧ୍ୟ ଜବାବ ଦେଉଛି ଯେ, ଆମର ବି ଶୁଣିବା ନିମନ୍ତେ ଯଥେଷ୍ଟ ସମୟ ରହିଛି ।''

ଏହାପରେ ଶ୍ରୀ କଲ୍‌ଲ୍ ନିଜର ବକ୍ତବ୍ୟ ପ୍ରଦାନ କରିଥିଲେ :

''ଏଥର ମୋତେ କହିବାକୁ ପଡ଼ିବ ବୋଲି ଆପଣମାନେ ସମସ୍ତେ ଶୁଣିଲେ ।

ମୋତେ କେଉଁ ବିଷୟରେ କହିବାକୁ ହେବ, ଆପଣମାନଙ୍କୁ ସେକଥା ମଧ୍ୟ ଜଣାଇ ଦିଆଯାଇଛି । ନିଜର ବକ୍ତବ୍ୟଟିକୁ ଆରମ୍ଭ କରିବାକୁ ଯାଉଥିବା ସମୟରେ ମୁଁ ଭାବୁଛି ଯେ ଏହି ବିଷୟରେ କହିବା ସକାଶେ ମୋ'ର ବହୁତ ଇଚ୍ଛା ରହିଛି । ଏହି କଥାଟିକୁ ମୁଁ କେତେଦୂର ଯଥାର୍ଥ ଭାବରେ କହିପାରିବି, ଅବଶ୍ୟ ତାହା ହେଉଛି ଗୋଟିଏ ଅନ୍ୟ ପ୍ରଶ୍ନ । ଏବଂ, ବିଶେଷ ଭବରେ ଏଠାରେ ତାହା କହି ପାରିବି କି ନାହିଁ, ସେହି ବିଷୟରେ ମୁଁ ନିର୍ଭର ଦେଇ ଆଦୌ କିଛି କହି ପାରିବିନାହିଁ । ଏଠାରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କ ପ୍ରତି ମୋ' ଭିତରେ ଯେ କୌଣସି ଭୟ ରହିଛି, ଅବଶ୍ୟ ସେକଥା ସତ ନୁହେଁ; ମାତ୍ର କେଜାଣି କାହିଁକି ଏହି ସ୍ଥାନଟିରେ ମୋତେ ବେଶ୍ ଡର ଡର ଲାଗୁଛି । ଏହି ସ୍ଥାନଟିରେ ମୋତେ ଆଦୌ ଘର ପରି ସହଜ ଲାଗୁନାହିଁ । ନିଜକୁ ଅତ୍ୟନ୍ତ ବହିରାଗତ ପରି ବୋଧ ହେଉଛି । ମୋତେ ଯଦି ସେପରି ଲାଗୁନଥାନ୍ତା, ତେବେ ଏହି ବିଷୟଟିକୁ ଆଠଭାଗରେ ବିଭକ୍ତ କରି ଆଠ ଦିନରେ ଆଠଟି ବକ୍ତୃତା ଦେବାର ଅନୁମତି ମୋତେ ଦିଆ ଯାଇଥିଲେ ମଧ୍ୟ ମୁଁ ତଥାପି ଆଦୌ ଭୟ କରିନଥାନ୍ତି । ମାତ୍ର, ଯେହେତୁ ଏଠାରେ ମୋତେ ଆଦୌ ସହଜ ଏବଂ ମୁକ୍ତ ବୋଧ ହେଉନାହିଁ ଓ ଏହି ଗୋଟିଏ ଅବସରରେ ହିଁ ସବୁ କଥା କହିବାକୁ ନିର୍ଦ୍ଦେଶ ଦିଆଯାଇଛି, ମୋତେ ପ୍ରକୃତରେ କିଞ୍ଚିତ୍ ଭୟ ବି ଲାଗୁଛି । ଆପଣମାନେ ଶୁଣିଥିବେ, - ଗୋଟିଏ ଗୋଟିଏ କୁକୁରଙ୍କ ବିଷୟରେ କୁହା ଯାଇଥାଏ ଯେ, ସେମାନେ ନିଜ ଡିହଟା ଉପରେ ଭାରି ଶକ୍ତି ଦେଖାନ୍ତି, ମାତ୍ର ବାହାରେ ସେମାନଙ୍କର ଗୋଡ଼ ଥରିବାରେ ଲାଗିଥାଏ,- ମୋତେ ଆପଣମାନେ ସେହିପରି ବି କଳ୍ପନା କରିନେଇ ପାରିବେ । ତେଣୁ, ବର୍ତ୍ତମାନ ମୁଁ ଯେତେବେଳେ ନିଜ ବକ୍ତବ୍ୟଟିକୁ ଦେବାକୁ ଚେଷ୍ଟା କରିବି, ଏବଂ ଯଦି ସେଥିପାଇଁ ପ୍ରକୃତରେ ପାରୁନଥିବି, ସେତେବେଳେ ଆପଣମାନେ ଦୟା କରି କଦାପି ଭାବିନେବେ ନାହିଁ ଯେ ମୁଁ ନିଜ ଘରେ ଅର୍ଥାତ୍ ନିଜ ସ୍ଥାନରେ ମଧ୍ୟ ତାହା କରି ପାରିନଥାନ୍ତି ।

ଏହି ଗଣପ୍ରଶିକ୍ଷଣର କ୍ଷେତ୍ରକୁ ମୁଁ କିଭଳି ଆସିଲି, ସେଇଟି ହେଉଛି ପ୍ରଥମ ପ୍ରଶ୍ନ । ମୁଁ ପ୍ରକୃତରେ କୌଣସି ପ୍ରକାରେ ସେହି ପ୍ରଶ୍ନଟିର ଉତ୍ତର ଦେଇ ପାରିବିନାହିଁ । କାରଣ, ଆପଣମାନେ ତ ଗ୍ରୁନ୍ଡ଼୍ଭିଗ୍ ମହାଶୟଙ୍କ ମୁହଁରୁ ଶୁଣି ସାରିଛନ୍ତି ଯେ ମୁଁ କେବେହେଲେ ଗମ୍ଭୀର ପାଣ୍ଡିତ୍ୟ ଓ ଜ୍ଞାନର ବିତରଣ କରୁଥିବା ବିଦ୍ୟାଳୟଗୁଡ଼ିକର ଦ୍ୱାର ମାଡ଼ିନାହିଁ, - ସେଠାରେ ନିଜର ଶିକ୍ଷା ସମାପ୍ତ କରିଥିବା ତ ଆହୁରି ଅଧିକ ଦୂରର କଥା । ମୁଁ ଯେ ନିଜ ଜୀବନରେ ଜଣେ ଶିକ୍ଷକ ହୋଇ ପାରିଲି, ସେଇଟି ମଧ୍ୟ ଗୋଟିଏ ବିଶେଷ ଘଟଣା । ଆଜିକାଲି ଏହିଭଳି ଏକ ଦୃଷ୍ଟାନ୍ତ କ୍ୱଚିତ୍ ଦେଖିବାକୁ ମିଳିବ । ମାତ୍ର ଆମେ ସମ୍ପ୍ରତି ସମସ୍ତେ ଯେଉଁ ସମୟଟିର ମଧ୍ୟଦେଇ ଗତି କରୁଛୁ, ସେହିଭଳି ସମୟଟିଏ ପୂର୍ବରୁ କେବେହେଲେ ଆସିନଥିଲା । ତେଣୁ, ଏକ ନୂତନ ସମୟରେ ନୂତନ ଘଟଣାଟିଏ ଘଟିବା ମଧ୍ୟ ଅତ୍ୟନ୍ତ ସ୍ୱାଭାବିକ । ତେଣୁ,ଏପରି

କିଭଳି ହେଲା ଯେ ମୁଁ ଲୋକମାନଙ୍କ ନିମନ୍ତେ ଏକ ଶିକ୍ଷକର ଭୂମିକା ଆସି ଗ୍ରହଣ କଲି, ଅତି ସହଜରେ ସେହି ପ୍ରଶ୍ନଟିର ଉତ୍ତର ଦେଇ ଆପଣମାନଙ୍କୁ ମୁଁ କହିବି ଯେ, ଜଣେ ଶିକ୍ଷକ ହେବାକୁ ହିଁ ମୋ'ର ଜନ୍ମ ହୋଇଥିଲା। ମାତ୍ର, କ'ଣଟିଏ ହେବାଲାଗି ଖାଲି ଜନ୍ମ ହୋଇଥିଲେ ହିଁ ତ ସବୁକିଛି ହୋଇ ଯିବନାହିଁ, - ସେଇଟିକୁ ସମ୍ମୁଖକୁ ଆଣିବାକୁ ହେବ, ନିଜ ଜୀବନରେ କ୍ରମବିବର୍ତ୍ତିତ କରି ଆଣିବାକୁ ବି ହେବ। ମୋ' ନିଜ ବିଷୟରେ ଆପଣମାନଙ୍କୁ ବର୍ତ୍ତମାନ ସେହି କଥାଟିକୁ କରିବି। ଭିତରେ ରହିଥିବା ସେହି ସମ୍ଭାବନାଟି ପ୍ରକୃତରେ କିଭଳି ଭାବରେ ପୁରୋଭାଗକୁ ଆସିଲି ? ମୁଁ ଯେ ଶିକ୍ଷକ ହେବି ବୋଲି ଜନ୍ମ ହୋଇଥିଲି, ସେଥିପାଇଁ ମୋତେ ପରମେଶ୍ୱରଙ୍କୁ ଧନ୍ୟବାଦ ଦେବାକୁ ହେବ। ହଁ, ମୋ' ନିଜ ବୋଉକୁ ମଧ୍ୟ। କାରଣ ସେଇ ସର୍ବପ୍ରଥମେ ମୋ' ଭିତରର ସେହି ସମ୍ଭାବନାଟି ବାହାରକୁ ଆସିବାର ପ୍ରକ୍ରିୟାଟିକୁ ଆରମ୍ଭ କରିଥିଲା। ମୁଁ ପ୍ରସଙ୍ଗଟିକୁ ଏତେ ପଛକୁ ଯାଇ ଏକାବେଳେକେ ମୋ'ର ବୋଉ ପାଖରୁ ଆରମ୍ଭ କରୁଛି ବୋଲି ଆପଣମାନେ ମୋତେ କ୍ଷମା ଦେବେ। ମାତ୍ର ଏମିତି ଅନେକ ଅଭିଜ୍ଞତା ନଥିବା ବକ୍ତାମାନେ ମଧ୍ୟ ମିଳିବେ, ଯେଉଁମାନେ କି ହୁଏତ ପୃଥିବୀସୃଷ୍ଟିର ପ୍ରଥମ ପୁରୁଷ ଓ ପ୍ରଥମ ନାରୀ - ଆଡ଼ାମ୍ ଏବଂ ଇଭ୍‌ଙ୍କ ଠାରୁ ମଧ୍ୟ ଖିଅଟିକୁ ଆରମ୍ଭ କରିବାକୁ ମନ କରିବେ। ତେଣୁ, ମୁଁ ଯେ ଆପଣମାନଙ୍କୁ ସେତେ ଲମ୍ବାଯାଏ ନେବାକୁ ଇଚ୍ଛା କରିନାହିଁ, ଆପଣମାନେ ସେକଥାଟିକୁ ଅବଶ୍ୟ ବିଚାର କରିବେ।

ମୋ' ବୋଉ ବିଷୟରେ ମୁଁ କହିବି ଯେ, ସିଏ ମୋଟେ ଅନ୍ୟ ଅନେକ ବୋଉମାନଙ୍କ ପରି ନଥିଲା। ସିଏ ଜଣେ ବିଶେଷ, ଏପରିକି ବିଚିତ୍ର ପ୍ରକାରର ମନୁଷ୍ୟ ଥିଲା। ତା' ସହିତ କାରବାର ହେଉଥିବା ଅନ୍ୟ ମନୁଷ୍ୟମାନେ ତାକୁ ଅଧିକାଂଶ ସମୟରେ ଆଦୌ ବୁଝି ପାରୁନଥିଲେ। ସିଏ ମଧ୍ୟ ସେହି ଅନ୍ୟମାନଙ୍କୁ ବୁଝି ପାରୁଥିଲା କି ନାହିଁ, ମୁଁ ସେକଥା ଜାଣିନାହିଁ। ମାତ୍ର, ସେହି ଅନ୍ୟମାନେ ଯେତେବେଳେ କିଛି ଅସୁବିଧାରେ ପଡ଼ି ଯାଉଥିଲେ, ସେତେବେଳେ ସେମାନଙ୍କୁ କିପରି ଭାବରେ ସାହାଯ୍ୟ କରିବାକୁ ହେବ, ମୋ' ବୋଉ ତାହା ଜାଣିଥିଲା। କେବଳ ଏହି ସାହାଯ୍ୟ କରିବାର ଅବସରଟିକୁ ଛାଡ଼ିଦେଲେ ମୋ' ବୋଉ ଅନ୍ୟ ମଣିଷଙ୍କ ସମ୍ବନ୍ଧରେ ଆଦୌ ବେଶୀ କିଛି ଚିନ୍ତା କରୁନଥିଲା। ସିଏ ସାଧାରଣତଃ କେବେ ଅନ୍ୟ ମନୁଷ୍ୟମାନଙ୍କ ସହିତ ବେଶୀ ନିକଟକୁ ଆସିବାକୁ ଇଚ୍ଛା କରୁନଥିଲା ଏବଂ, କେବଳ ସ୍ଥାନୀୟ ପାଦ୍ରୀଙ୍କୁ ଛାଡ଼ିଦେଲେ ସିଏ ଆଉ କାହାକୁ ଭଲ ପାଉଥିଲା ବୋଲି ମୋ'ର ମନେ ହେଉନାହିଁ। ପାଦ୍ରୀଙ୍କୁ ସିଏ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଦେଖୁଥିଲା, - ଭାରି ଅସାଧାରଣ ଭାବରେ ତାଙ୍କୁ ଭଲ ପାଉଥିଲା। ତାଙ୍କର କଥାକୁ ଭାବିବା ସମୟରେ ସିଏ କାନ୍ଦି ପକାଉଥିଲା, ହାତ କଚାଡ଼ି ହେଉଥିଲା ଏବଂ ଅନ୍ୟ ପାଦ୍ରୀ କିମ୍ବା ଶିକ୍ଷକଙ୍କର ପ୍ରସଙ୍ଗ ପଡ଼ିଲେ କଳହ କରିବାକୁ ମଧ୍ୟ ବାହାରି ପଡୁଥିଲା। ସିଏ ଭାବୁଥିଲା, ସେଇ

ପାଦ୍ରୀଜଣକ ଯେମିତି, ଅନ୍ୟ ପାଦ୍ରୀମାନେ ମଧ୍ୟ ସେହିଭଳି ହେବା ଉଚିତ । ସେଇ ବୋଧହୁଏ ସର୍ବପ୍ରଥମେ ମୋ' ଭିତରେ ଲୋକଶିକ୍ଷଣ ବିଷୟରେ ଆଦୌ କୌଣସି ଧାରଣା ଆଣି ଦେଇଥିଲା ଏବଂ ମୋତେ ସେହିଭଳି ଏକ ଅନ୍ଦାଜରେ ନିର୍ମିତ କରାଇ ଆଣିଥିଲା । ସିଏ ଏଭଳି କରୁଛି ବୋଲି କେତେବେଳେ ହେଲେ ସଚେତନ ନଥିଲା । କାରଣ ସିଏ ମୋ' ପରି ଏତେ ବୁଦ୍ଧିମାନ୍ ନଥିଲା ଏବଂ ବସ୍ତୁତଃ ମୋତେ ମଧ୍ୟ ଆଦୌ ସେତେ ବୁଦ୍ଧିମାନ୍ ବୋଲି କୁହା ଯିବନାହିଁ ।

ଉଭୟ ଆନ୍ତର ଏବଂ ବାହ୍ୟ ଶାରୀରିକ କ୍ଷେତ୍ରରେ ମୋ'ର ମାଆ ଅସାଧାରଣ ଭାବରେ ନିପୁଣତା ଅର୍ଜନ କରିଥିଲେ । ସର୍ବଦା କର୍ମବ୍ୟସ୍ତ ରହୁଥିଲେ । ଏବଂ, ବ୍ୟସ୍ତ ରହିବାର ଏକ ବାଧ୍ୟବାଧକତା ମଧ୍ୟ ରହିଥିଲା, କାରଣ ମୋ'ର ପିତାମାତାଙ୍କର ଆର୍ଥିକ ଅବସ୍ଥା ଭଲ ନଥିଲା । ସେମାନେ ମୂଳରୁ ହିଁ ଦରିଦ୍ର ଥିଲେ; ମାତ୍ର କଠିନ ପରିଶ୍ରମ ଦ୍ୱାରା ସେମାନଙ୍କର ସଂସାରଟିକୁ ଚଳାଇ ନେଇ ପାରୁଥିଲେ । ସଂସାରଟି ଏକାଧିକ ଅର୍ଥରେ ଉତ୍ତମରୂପେ ଚଳି ଯାଉଥିଲା । ଆମେ ପିଲାମାନେ ଯେତେବେଳେ ଖେଳିବାକୁ ଚାହୁଥିଲୁ ଓ ଘରେ କୌଣସି ଖେଳିବା ସାମଗ୍ରୀ ନଥିଲା, ଆମ ମାଆ ସେତେବେଳେ ନିଜ ସିଲାଇ କଲାବେଳେ ଆଙ୍ଗୁଠିରେ ଲଗାଉଥିବା ଧାତୁତିଆରି ଠିପିଟିକୁ କାଢ଼ି ଆମକୁ ଦେଉଥିଲା । ଆମେ ବାଲିରେ ଛେନା ତିଆରି କରୁଥିଲୁ ଏବଂ ଆମକୁ ବିଜାର ନଲାଗିବା ପର୍ଯ୍ୟନ୍ତ ସେଇଥିରେ ହିଁ ବ୍ୟସ୍ତ ରହି ଯାଉଥିଲୁ । ଏହିପରି ଭାବରେ ଖେଳିବାପାଇଁ କ'ଣ ମନ କ'ଣଟାଏ ଛୁଟି ଯାଉଥିଲା । ଅନେକ ସମୟରେ ମୁଁ ଏଡ଼େ ନିକୁନା ହୋଇ ଯାଉଥିଲି ଯେ ଅନ୍ୟମାନେ ତିଆରି କରୁଥିବା ଛେନାକୁ ଭାଙ୍ଗି ପକାଉଥିଲି ଏବଂ ସେତେବେଳେ ମାଆ ଆସି ମୋ' କାନକୁ ଭାରି ଜୋର୍‌ରେ ମୋଡ଼ି ଦେଉଥିଲେ । କହୁଥିଲେ, 'ତୁ ପ୍ରକୃତରେ ଭାରି ଖରାପ ଛୁଆଟାଏ,'- ମାଆ ଅନେକ ସମୟରେ ଏକଥା ମଧ୍ୟ କହୁଥିଲେ, 'ଆସିଲ ଛୁଆମାନେ, ମୁଁ ଗୋଟିଏ ଗପ କହିବି, ମୋ' ପାଖକୁ ଆସ ।' ମୋର ବିକାଶରେ ତାହା ପ୍ରକୃତରେ ବହୁତ ପରିମାଣରେ ସହାୟତା କରିଥିଲା । ଏବଂ, ଏହିପରି ଭାବରେ ଯେତେବେଳେ ସେ ଆମକୁ ଗପଟି କହି ସାରୁଥିଲେ, ସେତେବେଳେ ଆମେ କେଡ଼େ ଖୁସୀ ଓ କେଡ଼େ ସଚଳ ହୋଇ ଯାଉଥିଲୁ ଓ ତା'ପରେ ପୁନର୍ବାର ନୂତନ ଉତ୍ସାହରେ ଛେନା ତିଆରି କରିବାରେ ଲାଗି ଯାଉଥିଲୁ । ପୂର୍ବକଥା କୁଆଡ଼େ ଭୁଲି ଯାଉଥିଲୁ । ସେତେବେଳେ ମୁଁ ଆଦୌ ବୁଝି ପାରୁନଥିଲି ଯେ, ଆମକୁ କ'ଣ ଗୋଟିଏ ବିଷୟରେ ଗପଟିଏ କହି ଦିଆ ଯାଉଥିଲା - ମାଆ ଖୁବ୍‌ବେଶୀ ହେଲେ ହୁଏତ ଦଶଟି ବା ନଅଟି ସେହିଭଳି ଗପ ଜାଣିଥିଲେ,- ଏବଂ କହିବାବେଳେ ମାଆ କେଉଁଠାରେ ଭୁଲ କଲେ ଆମେ ତାଙ୍କୁ ସଂଶୋଧନ ବି କରିଦେଇ ପାରୁଥିଲୁ । ଏକଥା ମଧ୍ୟ ଅତ୍ୟନ୍ତ ସୁନିଶ୍ଚିତ ଭାବରେ ସବୁବେଳେ ଘଟୁଥିଲା ଯେ, ଗପଟିଏ

ଶୁଣି ସାରିବାପରେ ଆମେ ପୁନର୍ବାର ଜୀବନ୍ତ ହୋଇ ଉଠୁଥିଲୁ ଓ ପୁଣି ଖେଳିବାରେ ମାତି ଯାଉଥିଲୁ ।

ହୁଏତ ସେହି ଘଟଣାଟି ମୋ' ଭିତରେ କ୍ରମେ ମୋ'ର ହୃଦ୍‌ବୋଧ କରାଇ ଆସିଛି ଯେ, ପିଲାମାନଙ୍କ ଉପରେ ଗପଗୁଡ଼ିକର ପ୍ରକୃତରେ ବହୁତ ପ୍ରଭାବ ପଡ଼ିଥାଏ । ପରେ ଏକଥାଟିରେ ମଧ୍ୟ ମୋ'ର ଦୃଢ଼ ପ୍ରତ୍ୟୟ ହୋଇ ଯାଇଥିଲା ଯେ, ପିଲାମାନଙ୍କର ଶିକ୍ଷକ ହେବାକୁ ହେଲେ ମୋତେ ମଧ୍ୟ ସେହି ପ୍ରଣାଳୀଟିର ଅନୁସରଣ କରିବାକୁ ହେବ । ଅର୍ଥାତ୍, ସର୍ବପ୍ରଥମେ ମୁଁ ଶବ୍ଦଗୁଡ଼ିକର ଶକ୍ତିକୁ ଯଥେଷ୍ଟ ପ୍ରକାରେ ଉପଲବ୍ଧି କରିବି ଯେପରିକି ମନୁଷ୍ୟମାନଙ୍କର ହୃଦୟକୁ ସ୍ପର୍ଶ କରି ପାରିବି ଏବଂ ତଦ୍ୱାରା ସେମାନେ ଉତ୍ତମ ସ୍ୱଭାବର ହୋଇ ପାରିବେ, ଖୁସୀ ଅନୁଭବ କରିବେ ଏବଂ ସ୍ୱାଧୀନ ଭାବରେ ଜୀବନ ବି ବଞ୍ଚିପାରିବେ । ଆଦୌ କୌଣସି କାରଣରୁ ନିଜ ଭିତରେ ଚାପି ହୋଇ ରହିବେନାହିଁ, କଳହ କରିବେନାହିଁ ଏବଂ କାହାରି କୌଣସି ଅନିଷ୍ଟ କରିବାକୁ ବି ଇଛା କରିବେନାହିଁ । ସେମାନଙ୍କ ଜୀବନରେ ଖୁସୀର ଓ ଭଲ ପାଇବାର ଏକ ମୂଳଦୁଆ ପଡ଼ି ପାରିବ । ତେଣୁ,ମୋତେ ସର୍ବପ୍ରଥମେ ଏହିପରି ଭାବରେ ହିଁ ଶବ୍ଦର ଶକ୍ତିକୁ ବ୍ୟବହାର କରି ଶିଖିବାକୁ ହେବ, - ମୋ' ନିଜ ଭିତରେ ମଧ୍ୟ ଠିକ୍ ସେହିଭଳି ଅନୁଭବ କରିବି । ଏବଂ, ଇଚ୍ଛା କଲାମାତ୍ରକେ ମୋତେ ସେହିପରି ଶବ୍ଦଗୁଡ଼ିକ ମିଳି ଯାଉଥିବ ଓ ମୋ' ଉପରେ ମଧ୍ୟ ପ୍ରଭାବ ପକାଇ ପାରୁଥିବ । ଏହିଭଳି ଗୋଟିଏ ଅବସ୍ଥାକୁ ଆସିପାରିଲେ ଯାଇ ମୁଁ ଯଥାର୍ଥ ଭାବରେ ଶିକ୍ଷାଦେଇ ପାରିବି ଏବଂ, କୌଣସି ଶିକ୍ଷାକୁ ମୁଁ ତଥା ଅନ୍ୟମାନେ ପ୍ରକୃତରେ କେତେଦୂର ଗ୍ରହଣ କରି ପାରିଲୁ, କାଳକ୍ରମେ ତାହାହିଁ ପ୍ରତିପାଦିତ ହୋଇଯିବ ।

ଏହାପରେ, ମୁଁ ଟିକିଏ ପୂର୍ବରୁ ପାଦ୍ରୀଙ୍କ ବିଷୟରେ କହୁଥିଲି, ପାଠଶାଳାରେ ତାଙ୍କରି କଥାଗୁଡ଼ିକୁ ମଧ୍ୟ ଶୁଣିବାର ସୁଯୋଗ ଲାଭ କଲି, ତଦ୍ୱାରା ମୁଁ କେଡ଼େ ଖୁସୀ ବି ହୋଇ ଯାଉଥିଲି । ମୁଁ ଥରେ ସେହି ପାଦ୍ରୀଙ୍କୁ ଯାଇ ଦେଖା କରି ଆସନ୍ତିନାହିଁ ?- ମାଆଙ୍କର ଅନୁମତି ମାଗିଥିଲି । ମାଆ ଅନୁମତି ଦେଲେ ନାହିଁ; କହିଥିଲେ, ସେଥିରେ କିଛି ଲାଭ ହେବନାହିଁ, ତାଙ୍କୁ ଦେଖା କରି କ'ଣ ପାଇବୁ ? ମୁଁ ଦେଖା କରିବି ବୋଲି ଜିଦ୍ ଧରିଲି ଓ ମାଆ ପୁନର୍ବାର ମନା କଲେ । ମୁଁ ତଥାପି କହି ପକାଇଲି, ନାହିଁ ମାଆ, ତୁମେ ମନା କଲେ ମଧ୍ୟ ମୁଁ ଯେମିତିହେଲେ ଯିବି । ତାଙ୍କୁ ଯାଇ ତୁ କ'ଣ ପଚାରିବୁ ?- ମାଆ ପ୍ରଶ୍ନ କଲେ । ମୁଁ କହିବି ମୁଁ ପାଦ୍ରୀଙ୍କ ସହିତ କଥା ହେବା ସକାଶେ ଆସିଛି, - ମୁଁ ଉତ୍ତର ଦେଲି । ହଁ, ସେଦିନ ମୁଁ ଯେଉଁପରି ଏକ ଅନୁଭବ ନେଇ ପାଦ୍ରୀଙ୍କ ପାଖକୁ ଯାଇଥିଲି, ଠିକ୍ ସେହି ଅନୁଭବଟି ସହିତ ଆଜି ଏଠାକୁ ମଧ୍ୟ ଆସିଛି । ହଁ, ପାଦ୍ରୀଙ୍କ ଘରେ ପହଞ୍ଚି ଦେଖିଲି, ସେଠାରେ

ଅନେକ କବାଟ ରହିଛି; କୋଉ କବାଟଟି ଉପରେ ଖଡ଼ଖଡ଼ କରିବି, କିଛି ଜାଣି ପାରୁନଥାଏ । ପୂରା ଭୁଲ କବାଟ ଉପରେ ହାତଟା ଯାଇ ଲାଗି ଯିବନାହିଁ ତ ? - ତେଣୁ ଭାରି ଡର ମାଡୁଥିଲା । ଏମିତି ଭାରି ଅସହଜ ଭାବରେ ମୁଁ ପାଦ୍ରୀଙ୍କର ବୈଠକଖାନାରେ ଯାଇ ପଶି ଯାଇଥିଲି ଓ କିଭଳି ପୁଣି ସେଠାରୁ ବାହାରକୁ ବାହାରିବି, କିଛି ଜାଣି ପାରିଲିନାହିଁ । ବାହାରିଗଲା ବେଳକୁ ମୋତେ କେହି ଚୋର ବୋଲି ସନ୍ଦେହ କରିବନାହିଁ ତ ? ତଥାପି, ଗୋଟିଏ କବାଟ ଉପରେ ହାତ ବାଢ଼େଇଦେଲି ଏବଂ ମୋ'ର ବହୁତ ସୌଭାଗ୍ୟ ଯେ ପାଦ୍ରୀମହୋଦୟ ସ୍ୱୟଂ ସେପାଖରୁ କବାଟଟିକୁ ଆସି ଖୋଲି ଦେଇଥିଲେ । କ'ଣ କହି କଥା ଆରମ୍ଭ କରିବି ବୋଲି ଭାବି ମୁଁ ଯେଉଁ ବିବ୍ରତ ହୋଇ ପଡୁଥିଲି, ସେଇଟିର ମଧ୍ୟ ଏକ ସମାଧାନ ହୋଇ ଯାଇଥିଲା; ପାଦ୍ରୀ ନିଜେ ପ୍ରଥମେ କଥା ଆରମ୍ଭ କରିଦେଲେ । ଏବଂ, ମୁଁ ଭାବୁଛି, ଯେତେବେଳେ ପିଲାମାନେ କୌଣସି ବ୍ୟକ୍ତି ପାଖକୁ ଆସିବେ, ସେହି ବ୍ୟକ୍ତିର ସବୁବେଳେ ପ୍ରକୃତରେ ତାହାହିଁ କରିବା ଉଚିତ । କାରଣ, ସେଦିନ ମୁଁ କିଭଳି କ'ଣ କହି କଥାବାର୍ତ୍ତା ଆରମ୍ଭ କରିବି, ପାଦ୍ରୀଙ୍କ ଘରେ ତାହା ମୋତେ ଏକ ଭୟଙ୍କର ସମସ୍ୟା ପରି ଲାଗୁଥିଲା । ପାଦ୍ରୀ ମୋତେ କହିଲେ, ମୁଁ ତ ତୁମକୁ ଇସ୍କୁଲରେ ଦେଖିଛି । ତା'ପରେ ସିଏ ମୋତେ କେତେକ ପ୍ରଶ୍ନ ପଚାରିଥିଲେ ଓ ମୁଁ ଉତ୍ତର ଦେଇଥିଲି । ଅନ୍ୟ କଥାଗୁଡ଼ିକ ମଧ୍ୟରେ ମୋ' ମାଆ କିପରି ଅଛନ୍ତି ବୋଲି ମଧ୍ୟ ପଚାରିଥିଲେ । ସେଦିନ ସେ ମୋତେ ଚାରିଖଣ୍ଡ ବହି ବି ଦେଲେ,- ବହିଗୁଡ଼ିକୁ ପଢ଼ି ମୁଁ ପ୍ରଭୂତ ଆନନ୍ଦ ଅନୁଭବ କରିଥିଲି । ସେଦିନ ତାଙ୍କୁ ସାକ୍ଷାତ କରିପାରିଲି ବୋଲି ମୁଁ ଅତ୍ୟନ୍ତ ଖୁସୀ ହୋଇଥିଲି, ଏବଂ ସେକଥା ଭାବିଲା ବେଳକୁ ଆଜି ମଧ୍ୟ କେଡ଼େ ଖୁସୀ ଲାଗୁଛି । ଅବଶ୍ୟ ମୋତେ ସିଏ ଆଦୌ କୌଣସି କାହାଣୀ କହି ଶୁଣାଇ ନଥିଲେ; ମାତ୍ର ତଥାପି ଏପରି କିଛି କହିଥିଲେ, ଯାହା ଶୁଣି ମୁଁ ବଡ଼ ଖୁସୀ ହୋଇଥିଲି ଓ ଯାହା ମୋ'ର ହୃଦୟକୁ ସ୍ପର୍ଶ କରିଥିଲା । ଏହି କଥାଟି ଯେ ଆକସ୍ମିକ ଭାବରେ ସେଦିନ ଘଟିଲା, ଆମ ପାଠଶାଳାରେ ମଧ୍ୟ ପ୍ରତିଦିନ ତାଙ୍କର କଥାଗୁଡ଼ିକ ମୋତେ ସେହିଭଳି ହିଁ ଲାଗୁଥିଲା ।

ମୋ'ର ଶୈଶବକାଳଟି ଏହିଭଳି କଟି ଯାଇଥିଲା । ହଁ, ମୋ' ଜନ୍ମସହର ଥିଷ୍ଟେଦ୍‌ରେ ଏଭଳି ପ୍ରାୟ ଅଧଡ଼ଜନ ବୟସ୍କା ସ୍ତ୍ରୀଲୋକ ଥିଲେ, ଯେଉଁମାନଙ୍କ ଭିତରୁ ଦୁଇଜଣ ଭୂତକାହାଣୀ କହି ପାରୁଥିଲେ,- ଆହୁରି ଜଣେ ଦୁଇଜଣ ପୁଣି ଏଭଳି ଲମ୍ବାଲମ୍ବା ଗପସବୁ କହୁଥିଲେ ଯାହାର କି ଆଦୌ କୌଣସି ଶେଷ ଥିବାପରି ମନେ ହେଉନଥିଲା । ଏବଂ, ମୋ' ବୁଢ଼ୀ ପିଇସୀ ଜଣେ ପୁରାତନ ସମୟର କେତେ ଆଖ୍ୟାନ ଓ କିମ୍ବଦନ୍ତୀକୁ ମଧ୍ୟ ଗଳ୍ପ ଆକାରରେ କହି ପାରୁଥିଲେ । ଏହି କାରଣରୁ ମୁଁ ସର୍ବଦା ଅନୁଭବ କରୁଥିଲି, ସତେଯେପରି ଅନ୍ୟ ସମସ୍ତଙ୍କ ଘର ତୁଳନାରେ ସେହି ବ୍ୟକ୍ତିମାନଙ୍କର ଘରେ ହିଁ ସୂର୍ଯ୍ୟ

ଅଧିକ ଉଜ୍ଜ୍ୱଳ ଭାବରେ ଆଲୋକ ପ୍ରଦାନ କରୁଥିଲେ ଏବଂ, ଏହିସବୁ ଘରେ ମୋତେ ଯେଉଁ କଫି ପିଇବାକୁ ମିଳୁଥିଲା, ତାହା ଅନ୍ୟ ଘରମାନଙ୍କରେ ମିଳୁଥିବା କଫି ତୁଳନାରେ ପ୍ରକୃତରେ ଅଧିକ ଭଲ ଲାଗୁଥିଲା । ଏହିସବୁ ଘର ମୋତେ ସର୍ବଦା ଅଧିକ ସ୍ନେହଶୀଳ ଏବଂ ଆରାମଦାୟକ ବୋଧ ହେଉଥିଲା । ଅନ୍ୟମାନଙ୍କର ଘରମାନ ମୋତେ ବଡ଼ କଳା ଦେଖା ଯାଉଥିଲା ଓ ଭାରି କାଳୁଆ ଲାଗୁଥିଲା ।

ମୋତେ ତେର ବର୍ଷ ହୋଇଥାଏ, ଏହି ସମୟରେ ମୋ' ମାଆ ଗାଆଁର ତତ୍ତ୍ୱାବଧାରକଙ୍କ ପାଖକୁ ଯାଇ ମୋ' ସକାଶେ ଶିକ୍ଷକ ଚାକିରିଟିଏ ଜୁଟାଇ ଦେବାକୁ ତାଙ୍କୁ ଅନୁରୋଧ କରିଥିଲେ । ମୋ' ବାପାଙ୍କ ଭଳି ମୁଁ ମଧ୍ୟ ବଡ଼ ହେଲେ ମୋଚି କାମ କରିବି ବୋଲି ସିନା ନିଶ୍ଚିତ ହୋଇ ରହିଥିଲା, କିନ୍ତୁ ମୋ' ବାପା ବେଶ୍ ଦେଖି ପାରିଲେ ଯେ ମୋ' ହାତର ଆଙ୍ଗୁଠିଗୁଡ଼ିକ ଆଦୌ ଦକ୍ଷ ନଥିଲେ ଏବଂ ମୋଚିକାମ କରିବା ନିମନ୍ତେ ମୋ' ଭିତରେ ଆଦୌ କୌଣସି ରୁଚି ନଥିଲା । ସେଥିପାଇଁ ସିଏ ଖୁବ୍ ରାଗୁଥିଲେ ଏବଂ ଗାଳି ବି ଦେଉଥିଲେ । ସିଏ କହୁଥିଲେ ଯେ, ଏଗାରବର୍ଷ ବୟସରେ ସିଏ ତମ୍ବାଖୁ ରଖିବାର ମୁଣା ଓ ଖାତାବହି ସିଲେଇ କରି ପାରୁଥିଲେ । ବାପା ପିଲା ଥିବାବେଳେ ପ୍ରକୃତରେ କିପରି କ'ଣ ଥିଲେ, ସେକଥା ମୋତେ ସ୍ମରଣ କରି ପାରୁନଥିଲେ; ମାତ୍ର ଆପଣମାନେ ସ୍ୱୟଂ ସେକଥା ଅବଶ୍ୟ ମନେ ପକାଇ ପାରୁଥିବେ, ତା' ନହେଲେ ଆପଣମାନେ ନିଜ ବିଷୟରେ ତଥା ନିଜ ପିଲାମାନଙ୍କ ବିଷୟରେ ପ୍ରକୃତରେ ବହୁତ ଅନ୍ୟାୟ କରିବେ । ଉଦାହରଣ ସ୍ୱରୂପ, ଯେତେବେଳେ ମୁଁ ପିଲାଟିଏ ହୋଇଥିଲି, ସେତେବେଳେ ଭଲ କରି ନିଜ କୋଟ୍‌ର ବୋତାମ୍ ଲଗାଇ ପାରୁନଥିଲି ବୋଲି ବାପା ମୋ' ଉପରେ ଭାରି ବିଗିଡ଼ିଯାଇ କହୁଥିଲେ : 'ବଡ଼ ହୋଇ ତୁ ସଂସାରରେ କିଛି ହୋଇ ପାରିବୁନାହିଁ । ପିଲାଦିନେ ମୁଁ ମଧ୍ୟ ମୋ' ଜ୍ୟାକେଟ୍‌ର ବୋତାମଗୁଡ଼ିକୁ ଠିକ୍ କରି ଲଗାଇ ପାରୁନଥିଲି ।' ବାପା ଏହିପରି ଭାବୁଥିଲେ ଯେ ମୁଁ ମଧ୍ୟ ବଡ଼ ହେଲେ ଠିକ୍ ସେହିପରି ରହିଯିବି । ମୁଁ ଜୀବନଟା ଯାକ ଏହିପରି ଅପଦାର୍ଥ ହୋଇ ରହିବି ଓ କୌଣସି କାମର ହେବିନାହିଁ ବୋଲି ବାରବାର ଶୁଣିବାକୁ ମୋତେ ଭୟଙ୍କର ବୋଧ ହେଉଥିଲା । ଏକଥା କ'ଣ ପ୍ରକୃତରେ ସତ ବୋଲି ମୁଁ ମାଆଙ୍କୁ ଯାଇ ପଚାରିଲି । କାରଣ ମୁଁ ତ ପାଠଶାଳାରେ ସବୁ ପିଲାଙ୍କ ତୁଳନାରେ ବେଶୀ ଭଲ ପାଠ ପଢୁଥିଲି । ମାଆ ଉତ୍ତର ଦେଇ କହିଥିଲେ: ବାବୁରେ, ତୁ ମୋତେ ଏଡ଼େ ଅଯୋଗ୍ୟ ନୋହୁ । ମାତ୍ର, ସେଥିରୁ ତଥାପି ମୋତେ କୌଣସି ସାନ୍ତ୍ୱନା ମିଳି ପାରୁନଥିଲା । ହଁ, ଦେଢ଼ଟା ଦିନ ବାପାଙ୍କର ମୋଚିଶାଳରେ ଯାଇ ବସିବାପରେ ଦିନେ ବିକାଳ ପ୍ରାୟ ତିନିଟା ସମୟରେ ମାଆ ସେଠାରେ ଆସି ପହଞ୍ଚିଲେ, ଆଦୌ କୌଣସି କଥା ନକହି ମୋ' ହାତଧରି ମୋତେ ଉଠାଇ ନେଇଗଲେ । ମୁଁ ବସିଥିବା ବେଞ୍ଚ୍ ଉପରୁ ମୋତେ ଟାଣି ନେଇଗଲେ । ସେତେବେଳେ

କେବଳ ଏତିକିମାତ୍ର କହିଥିଲେ: ତୁ ମୋ' ସାଙ୍ଗରେ ଆ',- ତୋତେ ଆଉ ମୋଚି ହେବାକୁ ପଡ଼ିବନାହିଁ । ତା'ପରେ ସିଏ କେବଳ ଏହି ଗୋଟିଏ କଥା ସବୁବେଳେ କହୁଥିଲେ ଯେ ମୁଁ ଇସ୍କୁଲମାଷ୍ଟର ହିଁ ହେବି । ଶିକ୍ଷକ ନିଯୁକ୍ତ କରୁଥିବା ମହକୁମାର ଲୋକମାନେ ମଧ୍ୟ କମ୍ ଭୟାନକ ନୁହନ୍ତି ବୋଲି ମଧ୍ୟ ମାଆ ବହୁତ ସମୟରେ କହୁଥିଲେ ।

ମୁଁ ବାରବାର ଶୁଣିବାକୁ ପାଉଥିଲି ଯେ, ଯେହେତୁ ମୁଁ ଆଉ କୌଣସିଥିକୁ ଯୋଗ୍ୟ ହୋଇ ପାରିବିନାହିଁ, ତେଣୁ ଶିକ୍ଷକଟିଏ ହିଁ ହେବି । ଆଉ କେଉଁଥିକୁ ଉପଯୁକ୍ତ ହୋଇ ପାରୁନଥିବା ମଣିଷମାନେ ଶିକ୍ଷକ ହେବା ହିଁ ସବୁଠାରୁ ଭଲ, ସେତେବେଳେ ଏହିଭଳି ଅପବାଦଟିଏ ରହିଥିଲା । ସେହି କାରଣରୁ ହିଁ ମୋ' ମାଆ ମୋତେ ତତ୍ତ୍ୱାବଧାରକଙ୍କ ପାଖକୁ ନେଇ ଯାଇଥିଲେ ଓ ମୋ' ପାଇଁ ଏକ ମାଷ୍ଟରକାମ ଜୁଟାଇ ଦେବାଲାଗି ତାଙ୍କୁ ଅନୁରୋଧ କରିଥିଲେ । ମୋ' ପାଇଁ ଇସ୍କୁଲଟିଏ ଠିକ୍ ହୋଇଗଲା, ଆମ ଜାଗାଠାରୁ ପ୍ରାୟ ଅଧମାଇଲ ବାଟରେ । ସେଠାରେ ମୋତେ କୁହାଗଲା ଯେ ପିଲାମାନଙ୍କୁ ସ୍କୁଲରେ ଚଳୁଥିବା ପାଠ୍ୟପୁସ୍ତକରୁ ଏହି କଥାଗୁଡ଼ିକୁ ମୁଖସ୍ଥ କରାଇବି : ଅନୁଭବରୁ ପ୍ରମାଣ ମିଳୁଛି ଯେ, ମନୁଷ୍ୟମାନେ ଆଦୌ ସେପରି ଭଲ ନୁହନ୍ତି । ସେମାନଙ୍କର ଆହୁରି ଅଧିକ ଭଲ ହେବା ପ୍ରକୃତରେ ଉଚିତ ଥିଲା । ମୋତେ ଦିଆ ଯାଇଥିବା ଏହି କାର୍ଯ୍ୟଟିକୁ ମୁଁ କିପରି କରି ପାରିଲି, ସେକଥା ମୁଁ ଆଦୌ କହି ପାରିବିନାହିଁ; ମାତ୍ର ମୁଁ ଅତି ଚମତ୍କାର ଭାବରେ ମୋତେ ଦିଆ ଯାଇଥିବା କାର୍ଯ୍ୟଟିକୁ କରିପାରିଲି ବୋଲି ତତ୍ତ୍ୱାବଧାରକ ମତ ଦେଲେ ଏବଂ ଏହିପରି ଭାବରେ ଲକ୍ଷ୍ୟଟି ହାସଲ ହୋଇ ଯାଇଥିଲା । ମୋତେ ଦେଖି ଚାଷୀମାନେ କହିଥିଲେ: ଏ ପିଲାଟି ସହରରୁ ଆସିଛି ମ ! ସେତେବେଳେ ସହର ଆଉ ଗ୍ରାମାଞ୍ଚଳ ଭିତରେ ପରସ୍ପର ପ୍ରତି ମୋଟେ ଭଲ ଧାରଣା ନଥିଲା । ଏବଂ, ଆଉଗୋଟିଏ ଅଧିକ ଦୁର୍ଭାଗ୍ୟଜନକ କଥା ମଧ୍ୟ ଥିଲା ଯେ, ମୋ'ର ଉଚ୍ଚତା ତୁଳନାରେ ସେହି ପାଠଶାଳାର ବେଶ୍ କେତେଜଣ ପିଲା ଅଧିକ ଉଚ୍ଚ ଦେଖା ଯାଉଥିଲେ । ମୁଁ ସବୁଦିନେ ନିଜ ବୟସ ଅନୁପାତରେ ପ୍ରକୃତରେ ବାଙ୍ଗରା ଦେଖା ଯାଉଥିଲି । ବର୍ତ୍ତମାନ ମଧ୍ୟ ସ୍ଥିତିଟି ସେହିଭଳି ଅଛି । ତେବେ ମୋତେ ଏହି ପିଲାମାନଙ୍କର ହିଁ ଶିକ୍ଷକ ହୋଇ ରହିବାକୁ ହେବ ବୋଲି ମୁଁ ଭାବୁଥାଏ । ପିଲାମାନଙ୍କ ସହିତ ସେମାନଙ୍କର ପିତାମାତାମାନେ ମଧ୍ୟ ଥରେ ଜୁଣ୍ଡ ହୋଇଥାନ୍ତି । ମୁଁ ପାଠ ନପଢ଼ାଇ ଆଗ ସେମାନଙ୍କୁ କିଛି କହିବି ବୋଲି ସ୍ଥିର କରିଥିଲି । ସେଠାରେ ସେଇଟି ହେଉଛି ମୋ'ର ସର୍ବପ୍ରଥମ ଭାଷଣ । ଉପସ୍ଥିତ ସମସ୍ତଙ୍କୁ ମୁଁ ସମ୍ବୋଧନ କରି କହିଥିଲି: ଆପଣମାନେ ସମସ୍ତେ ମୋ'ଠାରୁ ବଡ଼ ଦେଖା ଯାଉଛନ୍ତି ଏବଂ, ଯଦି ଆମ ଭିତରେ ହଠାତ୍ ମାଡ଼ ମରାମରି ଲାଗିଯାଏ, ତେବେ ଆପଣମାନେ ମୋତେ ଅତି ସହଜରେ ମାରି ଗଡ଼ାଇଦେଇ ପାରିବେ । ମାତ୍ର, ଆପଣମାନଙ୍କୁ ମାଡ଼ ମାରିବାକୁ ମୋ'ର ଆଦୌ କୌଣସି ଇଚ୍ଛା ନାହିଁ, ଏବଂ ତେଣୁ

ମୁଁ ମଧ୍ୟ ଆଶା କରୁଛି ଯେ, ଆପଣମାନେ ବି କେବେହେଲେ ମୋତେ ମାରଧର କରିବେନାହିଁ; କିନ୍ତୁ ମୁଁ ଏକଥାଟି ମଧ୍ୟ ଏହାସହିତ କହିବି ଯେ, ମୁଁ ଆପଣମାନଙ୍କ ଠାରୁ ଅଧିକ ବୁଦ୍ଧିଆ, - ଏଇଟା ପ୍ରକୃତରେ ସତ ବି ଥିଲା,- ଏବଂ, ଯଦି ଆପଣମାନଙ୍କର ବୁଦ୍ଧି ଥିବ, ତେବେ ଆପଣମାନେ ମୋ'ଠାରୁ କିଛି ନା କିଛି ଶୁଣିବାଲାଗି ଅବଶ୍ୟ ଇଚ୍ଛା କରିବେ । ଉପସ୍ଥିତ କୃଷକମାନେ ଏଇଟିକୁ ଉଚିତ କଥା ବୋଲି ଗ୍ରହଣ କରିଥିଲେ ଏବଂ ସେମାନଙ୍କର ତଥା ସେମାନଙ୍କର ସନ୍ତାନମାନଙ୍କର ମୁଖମଣ୍ଡଳ ଗୁଡ଼ିକ ତତ୍‌କ୍ଷଣାତ୍ ଉଜ୍ଜ୍ୱଳ ହୋଇ ଉଠିଥିଲା ।

ମୁଁ ଏହିପରି ଭାବରେ ସେମାନଙ୍କ ପାଇଁ ଇସ୍କୁଲ କଲି ଏବଂ ନାନା ଘଟଣା ମଧ୍ୟରେ ବିଶେଷ କରି ଏପରି ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଘଟିଲା, ଯାହାକୁ କି ମୁଁ ଏଠାରେ ଅତି ସଂକ୍ଷେପରେ କହିଦେବାକୁ ଇଚ୍ଛା ପ୍ରକାଶ କରୁଛି । ପ୍ରକୃତରେ ଭାରି ଭଲ ଘଟଣାଟିଏ । ମୋତେ କୁହା ଯାଇଥିଲା ଯେ ମୁଁ ମୋ' ଛାତ୍ରମାନଙ୍କ ସାଙ୍ଗରେ କେବେହେଲେ ଏକାଠି ବଲ୍ ଖେଳିବିନାହିଁ, କାରଣ ସେପରି କଲେ ଜଣେ ଶିକ୍ଷକ ହିସାବରେ ମୋ'ର ଆଉ କୌଣସି ସମ୍ମାନ ରହିବନାହିଁ । ମାତ୍ର, ମୋ'ର ପ୍ରକୃତି ଆଦୌ ସେହି ଶୃଙ୍ଖଳାଟାକୁ ମାନିଲାନାହିଁ ଏବଂ ଦିନେ ମଧ୍ୟାହ୍ନ ସମୟରେ ମୁଁ ପିଲାମାନଙ୍କ ସହିତ ବଲ୍ ଖେଳିବାକୁ ରାସ୍ତା ଉପରକୁ ଚାଲିଗଲି । ଆମେ ଯେଉଁଠାରେ ଖେଳୁଥିଲୁ, ଠିକ୍ ସେଇଠି ରାସ୍ତାର ଅପର ପାର୍ଶ୍ୱକୁ ଜଣେ ଉତ୍ତମ ବ୍ୟକ୍ତି ବାସ କରୁଥିଲେ । ନିଜ ଦୁଆରମୁହଁରେ ଛିଡ଼ା ହୋଇ ମୋତେ ସିଏ ଦେଖି ପାରିଥିଲେ ଏବଂ ମୋ ପାଖକୁ ଆସି କହିଲେ ଯେ ଜଣେ ସ୍କୁଲଶିକ୍ଷକ ପକ୍ଷରେ ଏପରି ପିଲାଳିଆ ଆଚରଣ ଦେଖାଇବାକୁ କେହି ଆଦୌ ପସନ୍ଦ କରିବେନାହିଁ । ମୁଁ ବୁଝିପାରିଲି ଓ ହାତରେ ଧରିଥିବା ବଲ୍‌ଟିକୁ ରାସ୍ତାକୁ ଫୋପାଡ଼ି ଦେଇଥିଲି । ସିଏ ମୋତେ ତାଙ୍କ ଘରକୁ ଯିବାକୁ କହିଲେ; ମୁଁ ତାଙ୍କ ପଛେ ପଛେ ଗଲି । ମାତ୍ର ବାଟରେ ସିଏ ମୋଟେ କିଛି କହୁନଥାନ୍ତି । ଉଭୟେ ଘର ଭିତରକୁ ଆସିଗଲୁ । ମୁଁ ଭାବୁଥାଏ, ସିଏ ହୁଏତ ଇହାଦେ ମୋତେ ଅବଶ୍ୟ କିଛି ନା କିଛି କହିବେ; ସିଏ ତଥାପି ଚୁପ ରହିଥାନ୍ତି, ତା'ପରେ ନିଜ ପତ୍ନୀଙ୍କୁ ଡାକି ଆମପାଇଁ ଦୁଇ କପ୍ କଫି ଆଣିଦେବାକୁ କହିଲେ । ସେତେବେଳେ ଯାଇ ମୁଁ ଟିକିଏ ଆଶ୍ୱସ୍ତ ଅନୁଭବ କଲି । କଫି ତଳା ହେଉଥିବା ସମୟରେ ସିଏ ମୋତେ କହିଲେ: ମାଷ୍ଟ୍ରେ, ତୁମେ ପଢ଼ାଉଥିବା ପିଲାଙ୍କ ସହିତ କେବେ ଏକାଠି ବଲ୍ ଖେଳିବନାହିଁ । ଯଦି ଖେଳିବାକୁ ଇଚ୍ଛା ହେବ, ତେବେ ମଧ୍ୟାହ୍ନବିରତି ସମୟରେ ମୋ' ଘରକୁ ଚାଲିଆସିବ । ମୋ' ପୁଅର ତ ଇସ୍କୁଲପାଠ ଶେଷ ହୋଇଯାଇଛି, ତୁମେ ତା' ସହିତ ଖେଳିବ । ଏକଥା ଶୁଣି ମୋତେ ବହୁତ ଖୁସୀ ଲାଗିଲା ଓ ମୁଁ ତାଙ୍କୁ କହିଲି, ଆଜ୍ଞା ଏତେଯାଏ ଯିବା ଆଦୌ ଆବଶ୍ୟକ ହେବନାହିଁ, ମୁଁ ବଲ୍ ନଖେଳିଲେ ବି ତ ଚଳିବ । ସିଏ ପୁଣି କହିଲେ, ନାଇଁ, ନାଇଁ, ତୁମର ଖେଳଟାକୁ ବନ୍ଦ କରିଦେବା ମଧ୍ୟ ଅନ୍ୟାୟ ହେବ ଏବଂ, ତୁମକୁ ବଦଳରେ କିଛି ଅଧିକ ଭଲ ନଦେଇ ତୁମଠାରୁ କିଛି ନେଇଯିବା

ମୋ' ପକ୍ଷରେ ପ୍ରକୃତରେ ଉଚିତ ହେବ କି ? ଆପଣମାନେ ଦେଖୁଛନ୍ତି ତ, ସେହି ବ୍ୟକ୍ତିଙ୍କ ଠାରେ ଭଲ ପାଇବା ଓ ବୁଝିବାର କେତେ ଅଧିକ ସାମର୍ଥ୍ୟ ରହିଥିଲା !

ତା'ପରେ ମୁଁ ଜଣେ ବଡ଼ ଜମିମାଲିକଙ୍କ ଘରେ ଘରୋଇ ଶିକ୍ଷକର କାମ କରିଥିଲି । ସନ୍ଧ୍ୟାବେଳେ ମୁଁ ମେଲାଘରେ ବସି ତାଙ୍କ ଘରେ କାମ କରୁଥିବା ପରିକରମାନଙ୍କୁ ନାଟକ ଶିଖାଉଥିଲି; ସେମାନେ ଭିନ୍ନ ଭିନ୍ନ ଭୂମିକା ଗ୍ରହଣ କରି ବକ୍ତବ୍ୟଗୁଡ଼ିକୁ କହୁଥିଲେ । ମୁଁ ପ୍ରତ୍ୟେକଙ୍କୁ ସେମାନଙ୍କର କଥାଂଶଗୁଡ଼ିକୁ ଶିଖାଇ ଦେଉଥିଲି । ଭାରି ଆନନ୍ଦଦାୟକ ହେଉଥିଲା । ବେଳେବେଳେ ମୁଁ ବହିରୁ ବଡ଼ ପାଟିରେ କିଛି ପଢ଼ି ବି ସେମାନଙ୍କୁ ଶୁଣାଉଥିଲି । ଏହିପରି ଭାବରେ ମୋତେ ୧୮ ବର୍ଷ ହୋଇ ଯାଇଥିଲା ଏବଂ ମୁଁ ଶିକ୍ଷକ ହେବାର ଔପଚାରିକ ପ୍ରଶିକ୍ଷଣ ସକାଶେ ଗୋଟିଏ ତଦନୁରୂପ ଶିକ୍ଷାନୁଷ୍ଠାନରେ ଯାଇ ଯୋଗ ଦେଇଥିଲି । ସେଠାରେ ପ୍ରଥମ ମାସେ ଦୁଇମାସ ମୋତେ ଭାରି ନିରାଶ ଓ ଉଦାସ ଲାଗୁଥିଲା । କୌଣସି କିଛି ଲାଗି ଉତ୍ସାହ ଆସୁନଥିଲା, କାଳେ ଟିକିଏ ଖୁସୀ ହେଲେ ମନ ବଦଳିଯିବ ବୋଲି ଭାବି ବାପା ମୋତେ ଗୋଟିଏ ହାତଘଡ଼ି ମଧ୍ୟ କିଣିଦେଲେ । ମାତ୍ର, ଏକାବେଳେକେ ଏକ ଅଲଗା କାରଣରୁଯାଇ ମୋ'ର ଉଦାସୀନତା ଭାଙ୍ଗି ଯାଇଥିଲା ଏବଂ ମୁଁ ଶକ୍ତିମନ୍ତ ହୋଇ ଉଠିଥିଲି । ଆଗରୁ ଶିକ୍ଷକମାନେ ଯାହା କହୁଥିଲେ, ମୁଁ କେବଳ ଶୁଣି ହିଁ ଯାଉଥିଲି, ମାତ୍ର କିଛି ବୁଝି ପାରୁନଥିଲି । ତାହାହିଁ ମୋତେ ନିଃସ୍ପୃହ କରି ରଖିଥିଲା । କାରଣ, ତୁମେ ଗୋଟିଏ ଅନୁଷ୍ଠାନରେ ଶିକ୍ଷାର୍ଥୀ ଭାବରେ ଯୋଗ ଦେଇଥିବ ଅଥଚ ସେଠାରେ ଯାହା ପଢ଼ା ହେଉଥିବ କିଛି ବୁଝି ପାରୁନଥିବ, ତାହାହେଲେ ସେଇଥିରୁ ହିଁ ସବୁ ହରକତ ଅବଶ୍ୟ ଜନ୍ମଲାଭ କରିବ । ପାଦ୍ରୀଙ୍କର ଉପାସନାକାଳୀନ ଧର୍ମୋପଦେଶ ମଧ୍ୟ ମୋର ଜଡ଼ତାକୁ ଦୂର କରି ପାରୁନଥିଲା । ସେହିଭଳି ଏକ ସମୟରେ ଦିନେ ପିଟର୍ ଲାର୍ସନ୍ ସ୍ତ୍ରେପେନ୍‌ବର୍ଗ ଆମ ଶ୍ରେଣୀକୁ ଆସିଲେ । ସିଏ ଏହି ମୂଳକଥାଟି ବିଷୟରେ ଆମର ଧ୍ୟାନ ଆକର୍ଷଣ କରି ଆମ ଭାବନାର ଅଭ୍ୟସ୍ତ ରୀତିଗୁଡ଼ିକୁ ଭାଙ୍ଗିଦେଇ କହିଲେ ଯେ ପରମେଶ୍ୱର ମନୁଷ୍ୟମାନଙ୍କୁ ପ୍ରକୃତରେ ଭଲ ହିଁ ପାଆନ୍ତି । ମୁଁ ଏତେଦିନ ଯାଏ ଏତେ ଏତେ କଥା ଜାଣି ଓ ଚିନ୍ତା କରି ମଧ୍ୟ କାହିଁକି କେବେହେଲେ ଏହି କଥାଟିକୁ ଜାଣିନଥିଲି, ତାହା ଭାବିଲା ବେଳକୁ ମୋତେ ପ୍ରକୃତରେ ଭୟଙ୍କର ବୋଧ ହୋଇଥିଲା । ମୋ' ଭିତରେ ସତେଯେପରି କେଉଁଠାରେ କ'ଣ ବନ୍ଦ ହୋଇ ରହିଥିଲା ଯାହାଫଳରେ କି ଏହି ନିତାନ୍ତ ସହଜ କଥାଟା ମୋତେ କେବେହେଲେ ଛୁଇଁ ପାରିନଥିଲା । ଶୁଣିବା ମାତ୍ରକେ ଏକାନ୍ତ ନୂଆ ପରି ଲାଗିଲା ଏବଂ ମୋତେ ଗୋଟାସୁଦ୍ଧା ଅଭିଭୂତ କରି ପକାଇଥିଲା । କଥାଟି ଏକ ଅପାର ଶକ୍ତିରେ ମୋ' ଭିତରର ଗଭୀରକୁ ପ୍ରବିଷ୍ଟ ହୋଇ ଯାଇଥିଲା । ଭିତରୁ ମୋ' ଆଖିଉପରୁ ସବୁଯାକ ପରଳକୁ ପୋଛିନେଇ କିଏ ସତେଅବା କେତେ ମନ କେତେ ବିଶ୍ୱାସ ଭରିଦେଇ ମୋତେ କହିଲା ଯେ, ପରମେଶ୍ୱର

ମନୁଷ୍ୟମାନଙ୍କୁ ଭଲ ପାଆନ୍ତି ଏବଂ ତେଣୁ ସିଏ ମୋତେ ମଧ୍ୟ ଭଲ ପାଆନ୍ତି । ତେଣୁ ସେ ମନୁଷ୍ୟମାନଙ୍କୁ ଓ ତେଣୁ ମତେ ମଧ୍ୟ ଅଧିକ ଖୁସୀର ଅଧିକାରୀ ହେବାକୁ ହିଁ ଯାହାକିଛି କରୁଥିବେ । ଏବଂ, ଏହି କଥାଟି କଦାପି ମିଥ୍ୟା ହେବନାହିଁ ଓ ଦିନେ ଅବଶ୍ୟ ଘଟିବ । ଆଗରୁ ତ ମୁଁ ପରମେଶ୍ୱରଙ୍କୁ ଜଣେ ପୁଲିସ୍ ଅଫିସର ବୋଲି ଭାବୁଥିଲି,- ଅଥବା ଚିନ୍ତା କରୁଥିଲି ଯେ ସିଏ ନିଶ୍ଚୟ ଜଣେ ଅତ୍ୟନ୍ତ କଠୋର ଇସ୍କୁଲମାଷ୍ଟର ହୋଇଥିବେ, ଯିଏକି ଆମେ କିଛି ମନ୍ଦ କାର୍ଯ୍ୟ କରି ପକାଇଲେ ଆମକୁ ସତର୍କ କରି ଦେଉଥିବେ । ତାଙ୍କ କଥାକୁ ଅମାନ୍ୟ କଲେ ହୁଏତ କଷି କରି ଆମ କାନକୁ ମୋଡ଼ି ବି ଦେଉଥିବେ । ମାତ୍ର, ବର୍ତ୍ତମାନ ସବୁକିଛି ଓଲଟି ଗଲାପରି ଲାଗିଲା: ଭଗବାନ ମନୁଷ୍ୟମାନଙ୍କୁ ଓ ମୋତେ ଭଲ ପାଆନ୍ତି । ଏବଂ, ସେହି ମାର୍ଗରେ ଆହୁରି ଆଗକୁ ଚିନ୍ତା କରି ମୁଁ ଜାଣିପାରିଲି ଯେ ମୁଁ ମଧ୍ୟ ମନୁଷ୍ୟମାନଙ୍କୁ ଭଲ ପାଏ । ଅବଶ୍ୟ ଏକଥା ସତ ଯେ, ଈଶ୍ୱର ମନୁଷ୍ୟମାନଙ୍କୁ ଯେପରି ଭଲ ପାଉଥିବେ, ମୁଁ ସେମାନଙ୍କୁ କଦାପି ସେତେ ବେଶୀ ଭଲ ପାଇ ପାରୁନଥିବି; ମାତ୍ର, ତା'ପରେ ଏପରି ହୋଇଗଲା ଯେ ମୁଁ ନିଜକୁ ମଧ୍ୟ ଭଲ ପାଇଲି ଏବଂ ପରମେଶ୍ୱର ମୋତେ ଭଲ ପାଉଥିବେ ଜାଣି ବହୁତ ଆନନ୍ଦ ଅନୁଭବ କରିଥିଲି ।

ମୋ' ଭିତରେ ଯେତେ ଶକ୍ତି ଓ ଯେଉଁ ଅଭୀପ୍ସା ଗଚ୍ଛିତ ଓ ପ୍ରଚ୍ଛନ୍ନ ହୋଇ ରହିଥିଲା, ମୁଁ ପୂର୍ବରୁ ତାହାର କୌଣସି ପରିଚୟ ପାଇନଥିଲି; ତେଣୁ ଏହି ଘଟଣାଟି ପରେ ମୋ' ଆନନ୍ଦର ଆଉ ସୀମା ରହିଲାନାହିଁ । ଏହିପରି ଏକ ଆବିଷ୍କାରର ସାମନା ସାମନି ହୋଇ ଛିଡ଼ା ହୋଇ ମୁଁ ପ୍ରକୃତରେ କୋଉ ଗୋଡ଼ଟି ଉପରେ ଥିର ହୋଇ ଛିଡ଼ାହୋଇ ପାରିବି, ସେକଥା ମୋଟେ ନିଷ୍ପତ୍ତି କରି ପାରିନଥିଲି । ସହରକୁ ଯାଇ ନିଜ ଉତ୍ତମ ବନ୍ଧୁମାନଙ୍କ ଆଗରେ ଏହି ଅଭୂତପୂର୍ବ ଘଟଣାଟିକୁ ବର୍ଣ୍ଣନା କରି କହିଥିଲି । କ'ଣ କହୁଥିଲି, ସେହି ବିଷୟରେ କ୍ୱଚିତ୍ ଥିର ହୋଇ ରହି ପାରୁଥିଲି । କିନ୍ତୁ ସବୁଠାରେ ଅବଶ୍ୟ ଏହି କଥାଟିକୁ କହି ପାରୁଥିଲି ଯେ, ପରମେଶ୍ୱର ମୋତେ ଭଲ ପାଆନ୍ତି, ଆମ ସମସ୍ତଙ୍କୁ ଭଲ ପାଆନ୍ତି - ଆମର ଯାବତୀୟ ଦୋଷ ଏବଂ ଅପରାଧ ସତ୍ତ୍ୱେ ଆମ ସମସ୍ତଙ୍କୁ ଭଲ ପାଆନ୍ତି । ମୋ'ର ଏହି କଥା ଶୁଣି କେତେ ଜାଗାରେ ଲୋକମାନେ ଶାନ୍ତ ହୋଇ ମୋ' କଥାକୁ ଶୁଣୁଥିଲେ ଏବଂ, ଆଉ କେତେ ଜାଗାରେ ଏଭଳି ମଧ୍ୟ ଶୁଣିବାକୁ ମିଳୁଥିଲା: ବିଚରା କଲ୍‌ଲ୍, ସିଏ ନିଜର ସବୁଯାକ ବୁଝିବାଶକ୍ତି ହରାଇ ବସିଲେଣି । ସେତେବେଳେ ମୋ'ର ବହୁ ଦିନର ଜଣେ ଅନ୍ତରଙ୍ଗ ବନ୍ଧୁ ମୋତେ ଅପାର ବିଶ୍ୱାସ ଦେଇ କହିଥିଲେ ଯେ, ବସ୍ତୁତଃ ମୁଁ ଆଦୌ ମୋ' ବୁଦ୍ଧିକୁ ହରାଇ ବସିନଥିଲି, ବରଂ ସେହି ଅନ୍ୟମାନଙ୍କର ବୁଦ୍ଧି ହିଁ ବିଭ୍ରାନ୍ତ ହୋଇ ଯାଇଥିଲା । ସେହି ଅବସରରେ ତଥାପି ବଡ଼ ଆଶ୍ଚର୍ଯ୍ୟଜନକ ଭାବରେ ମୁଁ ଏପରି ଏକ ଧାରଣା କରି ପକାଉଥିଲି ଯେ, ମୋତେ ଜାଣିଥିବା ସବୁ ମଣିଷ ମୋ'ର ବୁଝିବାଶକ୍ତି ନଷ୍ଟ ହୋଇଯାଇଛି ବୋଲି ମୋତେ

କହୁଛନ୍ତି । ବାଇବେଲ୍‌ରେ ଯେଉଁ ଈଶ୍ୱରଦୂତ ମାନଙ୍କର କଥା କୁହାଯାଇଛି, ସେମାନଙ୍କୁ ମଧ୍ୟ ତାଙ୍କ ସମକାଳୀନମାନେ ସେହିଭଳି ଅପବାଦ ଦେଇଛନ୍ତି, ସେମାନେ ମଧ୍ୟ ଠିକ୍ ମୋ' ଭଳି ସେଗୁଡ଼ିକୁ ସହ୍ୟ ହିଁ କରିଛନ୍ତି । ମୁଁ ମଧ୍ୟ ଶବ୍ଦର ଶକ୍ତିଦ୍ୱାରା ମନୁଷ୍ୟମାନଙ୍କର ହୃଦୟକୁ ବାର୍ତ୍ତାଟିକୁ ବହନ କରି ଆଣିବି, ସେହି ଭାବନାଟି ମୋ' ଲାଗି ବହୁତ ଆନନ୍ଦର କାରଣ ହୋଇଥିଲା । ଏଭଳି ପ୍ରକୃତରେ ଦ୍ୱିତୀୟଥର ସକାଶେ ହେଲା, କାରଣ ପୂର୍ବରୁ ମୋ' ପିଲାଦିନେ ମୋ' ମାଆ ମଧ୍ୟ ଏକଦା ମୋ ଭିତରେ ସେହି ଅନୁଭୂତିଟିକୁ ବି ଆଣି ଦେଇଥିଲେ । ଈଶ୍ୱର ସ୍ୱୟଂ ମୋ' ମୁହଁର ଶବ୍ଦଗୁଡ଼ିକରେ ସେହି ଶକ୍ତିକୁ ସଂଚାରିତ କରି ରଖିଛନ୍ତି ବୋଲି ମୋ'ର ଅନୁଭବ ହୋଇଥିଲା; ଭିତରୁ କିଏ ସଙ୍କେତ ଦେଲାପରି କହିଦେଲା ଯେ ମୁଁ ମଧ୍ୟ ତାହା କରିପାରିବି ଏବଂ ସେହି କ୍ଷଣଟିଠାରୁ ମୁଁ ସଂକଳ୍ପବଦ୍ଧ ହୋଇଗଲି ଯେ ମୁଁ ସେହି ଶକ୍ତିଟିକୁ ଅବଶ୍ୟ ଧାରଣ କରି ରଖିବାର ଉପଯୁକ୍ତ ହେବି ଏବଂ ତେଣୁ ଏହି ପ୍ରଶିକ୍ଷଣସଂସ୍ଥାଟିକୁ ମୋଟେ ଛାଡ଼ି ପଳାଇ ଯିବିନାହିଁ । ଏହି କାର୍ଯ୍ୟକ୍ରମଟିକୁ ସମ୍ପୂର୍ଣ୍ଣ କରିବି ଏବଂ, ମନୁଷ୍ୟମାନଙ୍କର ହୃଦୟଗୁଡ଼ିକୁ ଏହି ଆନନ୍ଦର ସନ୍ଦେଶଟିକୁ ବହନ କରି ଆଣିବା ହିଁ ଏହି ପୃଥିବୀରେ ମୋ' ଜୀବନର ଅସଲ ବ୍ରତ ଓ ଅସଲ ଧର୍ମ ହୋଇ ରହିବ । ଯେଉଁ ସନ୍ଦେଶଟି ଦୃଢ଼ ଭାବରେ କହି ପାରୁଥିଲା ଯେ, ଆମେ ମନୁଷ୍ୟମାନେ ଯେତେ ଅପରାଧ କରିଥିଲେ ମଧ୍ୟ ସେଥିପ୍ରତି ଆଦୌ କୌଣସି ଦୃଷ୍ଟି ନଦେଇ ପରମେଶ୍ୱର ଆମ ସମସ୍ତଙ୍କୁ ଭଲ ହିଁ ପାଆନ୍ତି ।

ସେହିଦିନ ଠାରୁ ଅନୁଷ୍ଠାନରେ ଯାହାସବୁ କୁହା ଯାଉଥିଲା ମୁଁ ସବୁକିଛି ବୁଝି ପାରିଲି, ସବୁ କିଛି ମନେ ରହିଲା ଏବଂ ସେଗୁଡ଼ିକୁ ନିଜେ ପ୍ରକାଶ ମଧ୍ୟ କରିପାରିଲି । ମୋ'ଦ୍ୱାରା ପଢ଼ିବା କାର୍ଯ୍ୟଟା ଖୁବ୍ ବେଶୀ ହୋଇ ପାରୁନଥିଲା; ମାତ୍ର ମୁଁ କେବଳ ଶୁଣି ଯାଉଥିଲି । ବଡ଼ଦିନ ସମୟକୁ ଆମେ ଶିକ୍ଷାର୍ଥୀମାନେ ଗୋଟିଏ ସ୍ଥାନକୁ ବୁଲି ଯାଇଥିଲୁ ଏବଂ ସେଠାରେ ସୌଭାଗ୍ୟବଶତଃ ଏପରି ବହୁତ ଲୋକଙ୍କ ସହିତ ଭେଟ ହୋଇପାରିଲା ଯେ, ସେମାନେ ମଧ୍ୟ ଆମ ଖୁସୀରେ ଯୋଗ ଦେଇ ପାରୁଥିଲେ, ଆମେ ଏକାଠି ଗୀତ ଗାଉଥିଲୁ, ଏକାଠି କଥା ହେଉଥିଲୁ, ପ୍ରାର୍ଥନା କରୁଥିଲୁ ଓ ପୁଣି ଗୀତ ବୋଲୁଥିଲୁ । ଏବଂ, ସବୁଠାରୁ ଉଲ୍ଲେଖଯୋଗ୍ୟ କଥାଟି ହେଉଛି ଯେ, ମୁଁ ନିରନ୍ତର ନିଜ ଭିତରେ ଶବ୍ଦର ସେହି ପ୍ରଭାବକୁ ଅନୁଭବ କରି ପାରୁଥିଲି । କିଛିଦିନ ପରେ ସେହି ପ୍ରଶିକ୍ଷଣକେନ୍ଦ୍ରରେ ହିଁ ମୁଁ ଡେନିଶ୍ ଇତିହାସ ଉପରେ ଆଧାରିତ କେତୋଟି ଉପନ୍ୟାସ ପଢ଼ିବାକୁ ପାଇଥିଲି ଓ ଲଗାତର ଦୁଇ ରାତି ଓ ତିନି ଦିନରେ ସେଗୁଡ଼ିକୁ ପଢ଼ି ଶେଷ କରିଦେଲି । ଡେନ୍‌ମାର୍କ୍ ଯେ ଏକଦା ଉନ୍ନତି ଏବଂ ଗୌରବର କେତେ ଉଚ୍ଚ ଯାଏ ପହଞ୍ଚି ପାରିଥିଲା, ସେହି ବିଷୟରେ କେତୋଟି ପୁସ୍ତକ ପାଠ କରି ତାହାର ଏକ ବଳିଷ୍ଠ ପରିଚୟ ପାଇଥିଲି । ଭାବିଲି, ସେହିସବୁ ଗୌରବମୟ ସମୟ

କୁଆଡ଼େ ଚାଲିଗଲା ! ନିଜ ଭିତରେ ଥାଇ କିଏ ସତେଅବା କେତେ ଭରସା ଦେଇ କିଏ କହି ପକାଉଥିଲା ଯେ ସେହି ଗୌରବ ପୁନର୍ବାର ଫେରିଆସିବ ଏବଂ ସେହି ଫେରାଇ ଆଣିବାର ମହାନ୍ କାର୍ଯ୍ୟରେ ସହଯୋଗ କରିବାର ଶକ୍ତି ମୋ' ଭିତରେ ମଧ୍ୟ ରହିଛି । ମାତ୍ର, ସେଥିଲାଗି ଅପେକ୍ଷା କରିବାକୁ ପଡ଼ିବ ଓ ପ୍ରସ୍ତୁତ ହେବାକୁ ପଡ଼ିବ । ପରମେଶ୍ୱର ଆମ ସମସ୍ତଙ୍କୁ ଭଲ ହିଁ ପାଆନ୍ତି, - ଏତିକି ବ୍ୟତୀତ ମୁଁ ସେତେବେଳେ ଆଉ କ'ଣ ବା ଅଧିକ ଜାଣିଥିଲି !

ଶିକ୍ଷକ ହେବାଲାଗି ଆବଶ୍ୟକ ପ୍ରଶିକ୍ଷଣ ଲାଭ କରି ମୁଁ ସେଠାରୁ ବିଦାୟ ନେଇଥିଲି ଏବଂ ଦକ୍ଷିଣ ଉଇଲାଣ୍ଡ ଅଞ୍ଚଳରେ ଜଣକ ଘରେ ଘରୋଇ ଶିକ୍ଷକ ହୋଇ ରହିଲି । ସେହି ଇଲାକାର ଲୋକମାନେ ଶିକ୍ଷାଦୀକ୍ଷାରେ ବେଶ୍ ଆଗୁଆ ଥିଲେ, ସେମାନଙ୍କର ଧର୍ମପ୍ରତି ମଧ୍ୟ ଅନୁରକ୍ତି ରହିଥିଲା, - ମାତ୍ର ସେମାନଙ୍କଠାରେ ପ୍ରାଣଶକ୍ତି ବୋଲି ଆଦୌ କିଛି ନଥିଲା । ମୋତେ ପ୍ରକୃତରେ ଏକ ଅତ୍ୟାବଶ୍ୟକ କାର୍ଯ୍ୟ ମିଳି ଯାଇଥିଲା । ସେମାନଙ୍କୁ ମୁଁ ନିଜେ ଆଗରୁ ପାଠ କରିଥିବା ଉପନ୍ୟାସଗୁଡ଼ିକୁ ପଢ଼ି ଶୁଣାଇଲି । ଯାହାଦ୍ୱାରା ମୁଁ ନିଜେ ଏତେ ଅଧିକ ପରିମାଣରେ ଉପକୃତ ହୋଇ ପାରିଛି, ଅନ୍ୟମାନେ ମଧ୍ୟ କାହିଁକି ସେହିଭଳି ଉପକୃତ ନହେବେ ବୋଲି ମୁଁ ଚିନ୍ତା କରୁଥିଲି । ମୋତେ ପ୍ରକୃତରେ ଖୁବ୍ ସଫଳତା ମିଳିଲା । ତେଣୁ ଅଧିକ ଉତ୍ସାହିତ ହୋଇ ମୁଁ ଡେନ୍‌ମାର୍କ୍‌ର ଗୌରବମୟ ଅତୀତ ବିଷୟରେ ଆହୁରି ଅଧିକ ପୁସ୍ତକ ପଢ଼ିଲି । 'ଡେନ୍‌ମାର୍କ୍ ଦିନେ ଯାହା ଥିଲା, ଡେନ୍‌ମାର୍କ୍ ପୁନର୍ବାର ତାହା ଅବଶ୍ୟ ହୋଇପାରିବ,'- କୌଣସି ଏକ ପୁସ୍ତକରେ ଏହି ବାକ୍ୟଟି ପାଠ କରିବାକୁ ପାଇ ମୋ' ଆଖି ପ୍ରକୃତରେ କେଡ଼େ ଉଜ୍ଜ୍ୱଳ ଓ ଛଳଛଳ ହୋଇ ଉଠିଲା । ମୁଁ ଭାରି ଅଶାନ୍ତ ହୋଇପଡ଼ିଲି । ସେହି ଲକ୍ଷ୍ୟଟି ପାଇଁ ସକ୍ରିୟ ଭାବରେ କିଛି ଆରମ୍ଭ ନକରିବା ପର୍ଯ୍ୟନ୍ତ କିଏ କିଭଳି ଥୟ ହୋଇ ବସିରହି ପାରନ୍ତା ? ସ୍ଥାନୀୟ କେତେଜଣ ଯୁବକଙ୍କୁ ନେଇ ଆମେ ଗୋଷ୍ଠୀଟିଏ ଗଢ଼ିଲୁ ଏବଂ ସେମାନଙ୍କ ନିମନ୍ତେ ମୁଁ ପ୍ରତି ସପ୍ତାହରେ କେତେଥର ଆମ ଦେଶର ପୁରାତନ ଆଖ୍ୟାନଗୁଡ଼ିକୁ ପଢ଼ି ଶୁଣାଉଥିଲି । ଆମେ ଏକାଠି ହୋଇ ଗୀତ ବି ଗାଉଥିଲୁ । ସଂପୃକ୍ତ ସମସ୍ତଙ୍କ ମଧ୍ୟରେ ଯେ ଏକ ନୂତନ ଜୀବନ ସଂଚରିତ ହୋଇ ଆସୁଛି, ପରସ୍ପରର ମୁହଁକୁ ଦେଖି ତାହା ଖୁବ୍ ସୂଚିତ ହୋଇ ଯାଉଥିଲା ।

ସାନ ପିଲାମାନଙ୍କ ପାଇଁ ମଧ୍ୟ କିଭଳି ସ୍କୁଲଟିଏ ଆରମ୍ଭ କରାଯାଇ ପାରିବ, ସେତେବେଳେ ମୁଁ ସେହି ବିଷୟରେ ବି ଚିନ୍ତା କରୁଥିଲି । ଏପରି ଏକ ପାଠଶାଳା, ଯାହାକି ସେହି ଗୋଟିଏ ଲକ୍ଷ୍ୟ ଦିଗରେ କାର୍ଯ୍ୟ କରିବ ଏବଂ ପିଲାମାନଙ୍କ ମଧ୍ୟରେ ଏପରି ଏକ ଜୀବନ୍ୟାସ ସମ୍ଭବ କରିପାରିବ, ଯେପରିକି ସେମାନେ ପରମେଶ୍ୱରଙ୍କର ଭଲ ପାଇବା ଉପରେ ଅତୁଟ ବିଶ୍ୱାସ ରଖିପାରିବେ ଏବଂ ଡେନ୍‌ମାର୍କ୍‌ର ଏକ ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ

ଆଶାବାନ୍ ହୋଇପାରିବେ । ଏବଂ, ପାଠଶାଳାଟି ଏପରି ଗଠିତ ହେବ, ଯେପରିକି ପାରିପାର୍ଶ୍ୱିକ ଅବସ୍ଥା ହୁଏତ ଦରିଦ୍ର ହୋଇ ରହିଥିଲେ ମଧ୍ୟ ତଥାପି ସମୁଚିତ ଭାବରେ ଲକ୍ଷ୍ୟଟି ଆଡ଼କୁ ଅଗ୍ରସର ହେବା ସମ୍ଭବ ହେଉଥିବ । ମୁଁ ତ ନିଜେ ଘରୋଇ ଶିକ୍ଷକ ଭାବେ କାର୍ଯ୍ୟ କରୁଥିଲି; ତେଣୁ ମୋ' ପାଖରେ ପଢୁଥିବା ପିଲାମାନେ ପାଠ ପ୍ରସ୍ତୁତ କରି ସାରିବା ପରେ ଆମେ ବାହାରକୁ ଚାଲି ଯାଉଥିଲୁ, ଖେଳୁଥିଲୁ, ମାଛ ଧରୁଥିଲୁ, ଡଙ୍ଗା ବାହୁଥିଲୁ ଏବଂ ଆହୁରି କେତେ ଭଳି ମଜା କରୁଥିଲୁ । ମାତ୍ର, ପାଠ ଘୋଷି ମନେ ରଖିବାରେ ହିଁ ସବୁଠାରୁ ଅଧିକ ସମୟ ଚାଲି ଯାଉଥିଲା । ସେହି ପିଲାମାନଙ୍କ ଭିତରେ ଟୁଇଁ ବୁଇଟିଏ ଥିଲା, ଯାହାକୁ ମୁଁ ଖୁବ୍ ଭଲ ପାଉଥିଲି, ମାତ୍ର ସିଏ ପାଠ ମନେ ରଖିବାରେ ବହୁତ ମନ୍ଥର ଥିଲା । ଅନ୍ୟ ପିଲାମାନେ ଭାରି ଝଅଟି ସେମାନଙ୍କର ପାଠ ପ୍ରସ୍ତୁତ କରି ଦେଉଥିଲେ ଏବଂ ଝିଅଟିର ତଥାପି ସରୁନଥିଲା । ମାତ୍ର ଝିଅଟିକୁ ସାଙ୍ଗରେ ନନେଇ ସେମାନେ ଖେଳିବାକୁ ଯିବାପାଇଁ ଇଚ୍ଛା କରୁନଥିଲେ । ଝିଅଟି ପଢୁଥାଏ ଓ ଭେଁ ଭେଁ ହୋଇ କାନ୍ଦିବାରେ ଲାଗିଥାଏ; ପୁନର୍ବାର ପଢୁଥାଏ ଓ କାନ୍ଦିବାରେ ଲାଗିଥାଏ । ମୁଁ ମଧ୍ୟ ପିଲାଦିନେ ମାଆଙ୍କ ପାଖରେ ଠିକ୍ ସେହିପରି ହିଁ କରୁଥିଲି । ମାତ୍ର, ମାଆ ସେତେବେଳେ ମୋତେ ଆସି କହୁଥିଲେ, ନାଇଁ, ଆଉ ଅଧିକ ସମୟ ପଢ଼ିବା ଦରକାର ନାହିଁ, ବର୍ତ୍ତମାନ ଯାଆ ପଢୁଥିବା ବିଷୟଗୁଡ଼ିକୁ ମନେ ମନେ ଭାବିବାକୁ ଚେଷ୍ଟା କରିବୁ ।

ଏହି ଟୁଇଁ ଝିଅଟିର କ୍ଷେତ୍ରରେ ମଧ୍ୟ ମୁଁ ତାହାହିଁ କରିବି ବୋଲି ସ୍ଥିର କଲି । ଚିନ୍ତା କରିବାକୁ ଲାଗିଲି, ଏଇଟା କ'ଣ ପ୍ରକୃତରେ ଈଶ୍ୱରଙ୍କର ଇଚ୍ଛା ଯେ ଏହିପରି ବଡ଼ପାଟିରେ ପଢ଼ି ପିଲାମାନେ ପାଠ ମନେ ରଖିବାକୁ ବାଧ୍ୟ ହେବେ ! ଈଶ୍ୱର ଯଦି ମନୁଷ୍ୟମାନଙ୍କୁ ଭଲ ପାଉଥିବେ, ତେବେ ସିଏ ଏପରି କିଭଳି ଇଚ୍ଛା କରିବେ ? ଏବଂ, ବହି ମୁଖସ୍ଥ କରିବାକୁ ବାଧ୍ୟ ହେଲେ ପିଲାମାନେ ବି କେବେ ଈଶ୍ୱରଙ୍କୁ ଭଲ ପାଇ ପାରିବେ କି ? ମୁଁ ଖୁବ୍ ଭଲ କରି ବୁଝିପାରିଲି ଯେ, ସେକଥା କଦାପି ସମ୍ଭବ ହେବନାହିଁ । ଯଦି ତାହା ହେବନାହିଁ, ତେବେ ଏଭଳି ପାଠ ଘୋଷିବାରେ ଆଉ ପ୍ରକୃତରେ ଆଉ କି ପ୍ରୟୋଜନ ଅଛି ? ହଁ, କେବଳ ଧର୍ମୋପନୟନ ସକାଶେ ହିଁ ଯାହା ପିଲାମାନଙ୍କୁ ତାହା କରିବାକୁ ପଡୁଛି । ମାତ୍ର, ମୁଁ ଚିନ୍ତା କଲି, ଏମିତି କ'ଣ ହୋଇ ପାରନ୍ତାନାହିଁ ଯେ ପିଲାମାନେ ଆଉ ଏକ ଅନ୍ୟ ପଦ୍ଧତିରେ ଧର୍ମୋପନୟନ ସକାଶେ ପ୍ରସ୍ତୁତ ହୁଅନ୍ତେ ଏବଂ ତେବେ ଏହି ଭୟଙ୍କର ପଦ୍ଧତିଟିକୁ ବର୍ଜନ କରାଯାଇ ପାରନ୍ତା । ମୁଁ ଏହି ବିଷୟରେ ଅତ୍ୟନ୍ତ ଗମ୍ଭୀର ଭାବରେ ଭାବିବାକୁ ଲାଗିଲି ଏବଂ ଅନ୍ତରାତ୍ମା ମୋତେ ଏହିପରି ଉପାୟଟିଏ ବତାଇ ଦେଇଥିଲା । କହିଲା, ତୁ ସେମାନଙ୍କୁ କଥାରେ ସବୁକିଛି କହି ଶୁଣାଇବୁ ଯେପରିକି ଶୁଣି ଶୁଣି ସେମାନଙ୍କର ସବୁକଥା ମନେ ରହିଯିବ । ସେମାନଙ୍କୁ ଯେପରି କାହାଣୀ କହି ଶୁଣାଉଛୁ, ଠିକ୍ ସେହିପରି ଭାବରେ ଏଗୁଡ଼ିକୁ

ମଧ୍ୟ କହିଦେଇ ପାରିବୁ । ଏହି କଥାଟିକୁ ହୃଦୟଙ୍ଗମ କରିବା ମାତ୍ରକେ ସତେଯେପରି ମୁଁ ଏକ ଆଲୋକରେଖା ଦେଖିବାକୁ ପାଇଲି, ନିଜ ଭିତରେ ପ୍ରାୟ ଏକ ନୂତନ ବଳ ମଧ୍ୟ ଅନୁଭବ କରିଥିଲି ।

ତେଣୁ ଆଉ ଅପେକ୍ଷା କରି ପାରିଲିନାହିଁ । ସନ୍ଧ୍ୟା ହେଲା, ରାତ୍ରିଟା ମଧ୍ୟ ଅତିବାହିତ ହୋଇଗଲା । ପରବର୍ତ୍ତୀ ସକାଳଟି ଆସି ପହଞ୍ଚିଲା । କିପରି ଏହି ନୂଆ ପ୍ରଣାଳୀଟିକୁ ପ୍ରୟୋଗ କରି ଦେଖିବି ବୋଲି ଆଉ ତର ସହୁନଥାଏ । ଭାବୁଥାଏ, ଯଦି ପ୍ରୟୋଗଟି ପ୍ରକୃତରେ ସଫଳ ହେବ, ତେବେ ମୁଁ ମଧ୍ୟ ଆର୍କିମିଡ଼ିସ୍‌ଙ୍କ ପରି ରାସ୍ତା ଉପରକୁ ଯାଇ 'ପାଇଛି, ମୁଁ ପାଇଛି' ବୋଲି ଘୋଷଣା କରିଦେଇ ପାରିବି । ସକାଳ ଓଳି ପିଲାମାନଙ୍କୁ ମୁଁ ସେମାନଙ୍କର ପାଠ୍ୟକ୍ରମରେ ଅନ୍ତର୍ଗତ ରହିଥିବା ବାଇବେଲ୍-ଗଳ୍ପମାଳାରୁ ଗୋଟିଏ ଗପ ମୁହେଁ ମୁହେଁ କହିଦେଲି । ପିଲାମାନେ ଖୁସୀ ହୋଇ ଶୁଣିଲେ । ମାତ୍ର, ଯେତେବେଳେ ସେମାନେ ଧର୍ମୋପନୟନ ଏବଂ ପରୀକ୍ଷାରେ ପ୍ରଶ୍ନଗୁଡ଼ିକର ଉତ୍ତର ଦେବେ, ସେତେବେଳେ ଗପଟି ସେମାନଙ୍କର ମନେ ରହିଥିବ ତ ? ଏହିପରି ମୁଁ ଚଉଦଦିନ ପର୍ଯ୍ୟନ୍ତ ପିଲାମାନଙ୍କୁ ବାଇବେଲ୍‌ର କାହାଣୀଗୁଡ଼ିକୁ ଗପ ଭଳି କହି ଶୁଣାଉଥିଲି । ଆରମ୍ଭ କରିବା ପାଇଁ ଏହିଗୁଡ଼ିକ ହିଁ ସର୍ବୋତ୍ତମ ହେବ ବୋଲି ମୋ'ର ମନେ ହୋଇଥିଲା । ପିଲାଏ ସତକୁ ସତ ମନେ ରଖିଲେ କି ନାହିଁ, ତାହାର ଏକ ପରୀକ୍ଷା ନେଇଥିଲି । ଏବଂ ଯାହା ପ୍ରମାଣ ପାଇଲି, ସେଥିରୁ ହୋଇଥିବା ମୋ' ବିସ୍ମୟର କଥା ମୁଁ ଆପଣମାନଙ୍କୁ କ'ଣ କହିବି,- ମୁଁ ଗପଗୁଡ଼ିକୁ ଯେମିତି ଯେମିତି କହିଥିଲି, ପିଲାମାନେ ମୋତେ ସେଗୁଡ଼ିକୁ ଠିକ୍ ସେମିତି ସେମିତି ଶୁଣାଇ ଦେଇଥିଲେ, - ଶବ୍ଦଗୁଡ଼ିକରେ ମଧ୍ୟ କୌଣସି ପରିବର୍ତ୍ତନ ହୋଇନଥିଲା । ଏହି କ୍ଷେତ୍ରରେ ପିଲା ଓ ବଡ଼ମାନଙ୍କ ଭିତରେ ସଚରାଚର ଗୋଟିଏ ପ୍ରଭେଦ ରହିଥାଏ । ବଡ଼ମାନେ ଯାହା ଶୁଣନ୍ତି, ତାହାକୁ ନିଜେ ବି ଭାବନ୍ତି ଓ ସେହି ପ୍ରକ୍ରିୟାରେ ସେଥିରେ ନିଜର ମଧ୍ୟ କିଛି କିଛି ମିଶାଇ ଦେଇଥାଆନ୍ତି । ତେଣୁ ଅବିକଳ ମନେ ରଖି ପାରନ୍ତିନାହିଁ । ପିଲାମାନେ ସେତେଯାଏ ପାରନ୍ତିନାହିଁ ଏବଂ ତେଣୁ ଯାହା ଯେପରି ଶୁଣିଥାନ୍ତି, ତାହାକୁ ଠିକ୍ ସେହିପରି ଭାବରେ ମନେ ରଖି କହିପାରନ୍ତି । ମୁଁ ଏକଥା ମଧ୍ୟ ଚିନ୍ତା କରିଥିଲି ଯେ, ଆମକୁ ଯେତେବେଳେ ଗୋଟିଏ ଯଥାର୍ଥ ଉପାୟ ମିଳିଗଲା, ସେତେବେଳେ ଡେନ୍‌ମାର୍କର ସବୁପିଲା ମଧ୍ୟ କାହିଁକି ସେହି ଉପାୟଟି ଦ୍ୱାରା ଉପକୃତ ନହେବେ ? ଏବଂ, ଏହିପରି ଗୋଟିଏ ନୂତନ ପଦ୍ଧତିର ପ୍ରୟୋଗ ଦ୍ୱାରା ଆମେ ଡେନ୍‌ମାର୍କର ସେହି ଅତ୍ୟୁଜ୍ଜ୍ୱଳ ଅତୀତ ପାଖକୁ ମଧ୍ୟ କାହିଁକି ଫେରିଯାଇ ନପାରିବା ? ଏଭଳି ଚିନ୍ତା କରିବାକୁ ଅନେକେ ତୁଚ୍ଛା ଗର୍ବ ବୋଲି କହିଥିଲେ । ମାତ୍ର, ଅସଲ ଗର୍ବଟି ବିଷୟରେ ସେହି ଲୋକମାନେ ପ୍ରକୃତରେ କ'ଣ ବା ଜାଣିଛନ୍ତି ଏବଂ ଏହି ନୂତନ ପ୍ରଣାଳୀଟିକୁ ମଧ୍ୟ କେତେ କମ୍ ବୁଝିଛନ୍ତି !

ଏହାପରେ ବିଦ୍ୟାଳୟରେ ସବୁକିଛି ଖୁବ୍ ଚମ୍‌ତ୍କାର ପ୍ରକାରେ ଚାଲିବାକୁ ଲାଗିଲା । ଗୋଟିଏ ଖୁବ୍ ସାନ ପିଲାଟିଏ ଥିଲା, - ସିଏ ଏବେ ମଧ୍ୟ ସ୍କୁଲକୁ ଯାଇନାହିଁ,- ଭାରି ବଢ଼ିଆ ପୁଅପିଲାଟିଏ,- ତାକୁ ମୁଁ ଦିନେ ଆବିଷ୍କାର କରିଥିଲି ଯେ, ସେ ମୁଁ ପିଲାମାନଙ୍କୁ କହିଥିବା ବାଇବେଲ୍‌ର ଆବ୍ରାହାମ୍‌ଙ୍କ ଗପଟିକୁ ଏକୁଟିଆ ବଗିଚା ଭିତରେ ଛିଡ଼ା ହୋଇ ଆବୃତ୍ତି କରିବାରେ ଲାଗିଛି । ଗୋଟିଏ ବୋଲି ଶବ୍ଦ ଏପାଖ ସେପାଖ ହେଉନାହିଁ । ଠିକ୍ କୌଣସି ନାଟକରେ ଅଭିନୟ କରୁଥିଲା ଭଳି କହିଯାଉଛି । ପିଲାଟି ଘରକୁ ଗଲାବେଳେ ବାଇବେଲ୍ ପୁସ୍ତକଟିକୁ ସାଙ୍ଗରେ ନେଇ ଯାଇଥିଲା ଓ ନିଜେ ନିଜେ ସେଥିରୁ କିଛି ଆହୁରି ଆଗକୁ ପଢ଼ି ବି ଦେଇଥିଲା । ମୋ' ମନ ଭିତରକୁ ତତ୍‌କ୍ଷଣାତ୍ ଏପରି ବିଚାରଟିଏ ଆସିଲା ଯେ, ମୁଁ ସମ୍ପୂର୍ଣ୍ଣ ନୂଆ ଢ଼ଙ୍ଗରେ ପିଲାମାନଙ୍କ ପାଇଁ ଏହିପରି ସ୍କୁଲଟିଏ କରିବି, ଯେଉଁଠାରେ ସେମାନଙ୍କ ଉପରେ କୌଣସି ବାଧ୍ୟବାଧକତା ରହିବନାହିଁ । ଏବିଷୟରେ ମୁଁ ପାଦ୍ରୀ ଅଥବା ଅନ୍ୟ ସ୍ଥାନୀୟ କର୍ତ୍ତାମାନଙ୍କର ମତ ବା ପରାମର୍ଶ ମଧ୍ୟ ଲୋଡ଼ିନଥିଲି । କାରଣ ସେମାନେ କଦାପି ସେଥିପାଇଁ ଅନୁମତି ଦେଇନଥାନ୍ତେ । ତେଣୁ ଆଦୌ କିଛି କରି ହୋଇନଥାନ୍ତା । ମୋ' କଳ୍ପନାର ଏହି ସ୍ୱାଧୀନ ଇସ୍କୁଲଟିରେ ଅତିକମ୍‌ରେ ଛଅଜଣ ଓ ଅତିବେଶୀ ଅଠରଟି ପିଲା ରହିବେ ଏବଂ, ମୁଁ ଚିନ୍ତା କରି ପାରିଲିନାହିଁ ଯେ ପିଲାଙ୍କର ମାଧ୍ୟମରେ ଯେଉଁସବୁ ପରିବାର ସେହି ଉଦ୍ୟମଟି ସହିତ ସଂପୃକ୍ତ ରହିବେ, ସେହି ଅଳ୍ପ କେତୋଟି ସେଇଟିକୁ ପ୍ରକୃତରେ ଚଳାଇ ପାରିବେ । ତେଣୁ ମୋତେ ସ୍ଥାନୀୟ କର୍ତ୍ତାମାନଙ୍କର ସହଯୋଗ ମଧ୍ୟ ଲୋଡ଼ିବାକୁ ପଡ଼ିଥିଲା । ଜନରବରୁ ସମସ୍ତେ ଶୁଣି ସାରିଥିଲେ ଯେ ପିଲାମାନଙ୍କୁ ପାଠ ମନେ ରଖିବାର ଗୋଟିଏ ନୂଆ ଉପାୟ ମୁଁ ଆବିଷ୍କାର କରିଛି । ସ୍ଥାନୀୟ କର୍ତ୍ତା ସର୍‌ଜମିନ୍ ପରୀକ୍ଷା କରିବା ନିମନ୍ତେ ସ୍ଥିର ବି କରିଥିଲେ ।

ସିଏ ପିଲାମାନଙ୍କୁ ବୁଲାଇ ବୁଲାଇ କେତେ କେତେ ପ୍ରଶ୍ନ ପଚାରିଥିଲେ, ପିଲାଏ ସବୁ ପ୍ରଶ୍ନର ଭାରି ଭଲ ଉତ୍ତର ଦେଇଥିଲେ । ପ୍ରଶ୍ନୋତ୍ତରର ଭାଗଟି ସରିବା ପରେ ସେ ଆମର ସବାବଡ଼ ଝିଅଟିକୁ ପଚାରିଲେ ତୁ ବର୍ତ୍ତମାନ ବହିରୁ ଚତୁର୍ଥ ଅଧ୍ୟାୟରୁ ତୃତୀୟ ପାରାଟି ପଢ଼ି ମତେ ଶୁଣାଇଲୁ ! ବିଚାରୀ ବୁଇଟି ଉତ୍ତର ଦେଇ କହିଲା, ଆମର ଏଠାରେ କୌଣସି ବହିରୁ ମୋଟେ କିଛି ପଢ଼ା ହୁଏନାହିଁ । କର୍ତ୍ତା ବଡ଼ ବିସ୍ମିତ ହୋଇ ଯାଇଥିଲେ ଓ ମୋ' ଆଡ଼କୁ ମୁହଁ ବୁଲାଇ କହିଲେ, ପିଲାମାନେ ଏଠି ବହିଟିକୁ ପଢ଼ିନାହାନ୍ତି । ମୁଁ ଉତ୍ତର ଦେଲି, ଆମ ପିଲାମାନେ ବହିରୁ ଘୋଷି କିଛି ମନେ ରଖନ୍ତିନାହିଁ, କିନ୍ତୁ ବହିରେ ଥିବା ସାମଗ୍ରୀଗୁଡ଼ିକ ସେମାନଙ୍କୁ ଯେ ଜଣା ଅଛି, ସେକଥା ତ ଆପଣ ପରୀକ୍ଷା କରି ଦେଖିଲେ ! ଜାଣିନଥିଲେ ସେମାନେ ଆପଣ ପଚାରିଥିବା ପ୍ରଶ୍ନଗୁଡ଼ିକର କିପରି ଏଡ଼େ ଚମତ୍କାର ଉତ୍ତର ଦେଇ ପାରିଥାନ୍ତେ ? ମାତ୍ର, ମୁଁ ଭାବୁଛି ଯେ ପିଲାମାନଙ୍କୁ ବହିଟିକୁ ଘୋଷି ମୁଖସ୍ଥ କରିବାକୁ

ବାଧ୍ୟ କରିବାଦ୍ୱାରା ସେମାନଙ୍କ ପ୍ରତି ଏକ ଅପରାଧ କରାଯାଉଛି । ପିଲାମାନଙ୍କ ସକାଶେ ତାହା ଅତ୍ୟନ୍ତ କଷ୍ଟକର ହୋଇଯାଉଛି ଓ ତଦ୍ୱାରା କୌଣସି ଫଳ ମଧ୍ୟ ମିଳୁନାହିଁ । ତା'ପରେ କର୍ତ୍ତା କହିଲେ, କ'ଣ ଫଳ ମିଳୁଛି କି ନାହିଁ, ତୁମକୁ ମୁଁ ସେହିକଥା ପଚାରୁନାହିଁ । ତୁମେ ସେହି ନିର୍ଦ୍ଦେଶଟିକୁ ମାନିବ ନା ମାନିବନାହିଁ ? ମୋତେ ଯେକୌଣସି ମତେ ନିର୍ଦ୍ଦେଶଟିକୁ ମାନିବାକୁ କୁହାଯାଉଛି ବୋଲି ଜାଣି ମୁଁ ଉତ୍ତର ଦେଲି, ନାଇଁ, ମୁଁ ଆଦୌ ତାହା କରି ପାରିବିନାହିଁ । 'ତେବେ ଏହି ଖାତା ଉପରେ ସେହି କଥାଟିକୁ ଲେଖିଦିଅ'- କର୍ତ୍ତା ପାଦ୍ରୀଙ୍କୁ ନିର୍ଦ୍ଦେଶ ଦେଲେ । ପାଦ୍ରୀ ତାହାହିଁ ଲେଖିଲେ, - ଲେଖିଦେଲେ ଯେ ମୋ' ସ୍କୁଲରେ ମୁଁ ସେହି ପୁରାତନ ପ୍ରଣାଳୀରେ ଆଦୌ କାର୍ଯ୍ୟ କରିବିନାହିଁ । ସେହିଠାରେ ହିଁ କଥାଟି ଛିଣ୍ଡି ଯାଇଥିଲା ।

ଏହି ଘଟଣାର କିଛିଦିନ ପରେ ଉପରୁ ବିଶପ୍‌ଙ୍କ ପାଖରୁ ଗୋଟିଏ ଚିଠି ଆସି ପହଞ୍ଚିଥିଲା । ମୁଁ ପ୍ରକୃତରେ ଶିକ୍ଷାଦାନର କେଉଁ ପଦ୍ଧତିଟିକୁ ଅନୁସରଣ କରୁଛି, ସେଇଟିକୁ ବ୍ୟାଖ୍ୟା କରି କହିବାଲାଗି ମୋତେ ନିର୍ଦ୍ଦେଶ ଦିଆ ଯାଇଥିଲା । ଉତ୍ତର ଦେଇ ମୁଁ ଜଣାଇଥିଲି ଯେ, ମୁଁ ପିଲାମାନଙ୍କୁ କଥୋପକଥନ ମାଧ୍ୟମରେ ବାଇବେଲ୍‌ରେ ରହିଥିବା କାହାଣୀଗୁଡ଼ିକୁ କହି ଦେଇଥିଲି, ତା'ପରେ ମୁଁ ବହିଟିକୁ ମଧ୍ୟ ସେମାନଙ୍କ ଆଗରେ ପଢ଼ି ଦେଉଥିଲି ଓ ଉଭୟ ମଧ୍ୟରେ କେଉଁଠାରେ କିଭଳି ଫରକ ରହିଲା ଆମେ ତାହା ପରୀକ୍ଷା କରି ଦେଖୁଥିଲୁ । ଉତ୍ତରରେ ମୁଁ ଚାରୋଟି କଥା ଲେଖିଥିଲି; ମାତ୍ର ବର୍ତ୍ତମାନ ସେଥିଭିତରୁ କେବଳ ଗୋଟିଏ ହିଁ ମନେ କରି ପାରୁଛି । ସେଇଟିରେ ମୁଁ ଉଲ୍ଲେଖ କରିଥିଲି, ଯଦି ଡେନ୍‌ମାର୍କ୍‌ର ପିଲାମାନେ ପାଠବହିଟାକୁ ଘୋଷି ମନେ ରଖିବାକୁ ବାଧ୍ୟ ହେବେ, ତେବେ ସେମାନେ ଏହି ଦେଶ ନିମନ୍ତେ ଏକାନ୍ତ ଅଯୋଗ୍ୟ ବୋଲି ପ୍ରମାଣିତ ହୋଇଯିବେ । ଏହି ଚିଠିଟିକୁ ପାଇବାପରେ ବିଶପ୍ ମୋତେ ଡକାଇ ପଠାଇଥିଲେ । ଏବଂ, ସେ ମୋତେ କହିଥିଲେ: ହଁ, ମୁଁ ହୁଏତ ବୁଝିପାରୁଛି ଯେ ତୁମେ ଜଣେ ପ୍ରତିଭାବାନ୍ ବ୍ୟକ୍ତି ଓ ତୁମେ ନିଜେ ବହୁତ କିଛି କରିପାରିବ ବୋଲି ତୁମର ନିଜ ଉପରେ ବିଶ୍ୱାସ ମଧ୍ୟ ରହିଛି । ମୁଁ ପୂରା ଭରସା କରିପାରୁଛି ଯେ, ପିଲାମାନଙ୍କୁ ପାଠ୍ୟପୁସ୍ତକ ନଘୋଷାଇ ତୁମେ ସେମାନଙ୍କୁ ଅବଶ୍ୟ ଶିକ୍ଷାଦାନ କରିପାରିବ । ମାତ୍ର, ଅନ୍ୟ ସ୍କୁଲଶିକ୍ଷକମାନେ ତାହା କିପରି କରିପାରିବେ କହିଲ ! ସେମାନଙ୍କର ଏତେ ପ୍ରତିଭା କାହୁଁ ଆସିବ ? ଏକଥା ଶୁଣି ମୁଁ ଉତ୍ତର ଦେଲି : ଆଜ୍ଞା, ଏଥିପାଇଁ କ'ଣ ମୁଁ ଦାୟୀ ହେବି ? ସିଏ ପୁନର୍ବାର କହିଲେ, ସମସ୍ତେ ତ ପୁଣି ଏକାଭଳି ହେବେ ନା ଅଲଗା ଅଲଗା ପ୍ରକାରର ହୋଇ ରହିବେ ? ମୁଁ ଉତ୍ତରରେ କହିଥିଲି: ଇଏ ତ ଆଜ୍ଞା ଏକ ଅତ୍ୟନ୍ତ ଭୟଙ୍କର କଥା ଯେ ସେମାନଙ୍କୁ ସମସ୍ତଙ୍କୁ ଗୋଟିଏ ସ୍ତରକୁ ଖସାଇ ଆଣିବାକୁ ହେବ ! ଧରନ୍ତୁ ଗୋଟିଏ ସହରରେ ଜୋତା ତିଆରି କରୁଥିବା ଅନେଶ୍ୱତ ଜଣ ମୋଚି ଅଛନ୍ତି, ସେମାନେ ଜୋତା

ତିଆରି କରିବାରେ କେହିହେଲେ କୁଶଳୀ ନୁହନ୍ତି । ସେହି ସହରରେ ଜଣେ ମୋଚି ଏପରି ଅଛି, ଯିଏକି ଭଲ ଜୋତା ବନାଇ ପାରୁଛି । ଏହି କୁଶଳୀ ଜଣକୁ କ'ଣ ଆପଣ ଭଲ ଜୋତା ତିଆରି ନକରିବାକୁ ବାଧ୍ୟ କରିବେ, କାରଣ ତା' ନହେଲେ ସେମାନେ ଏକାଭଳି ହୋଇ ପାରିବେନାହିଁ ? ମୋ'କଥା ଶୁଣି ବିଶପ୍ ବିଚରା ଆଉ କିଛି ନକହି ନିଜର କାନ୍ଧଟିକୁ ଉପର ଆଡ଼କୁ ହଲାଇଦେଲେ; କାରଣ, ତାଙ୍କ ହୃଦୟଟି ମୋ' ପଟେ ରହିଥିଲା ମାତ୍ର ମଥାଟି ତେଣେ ସାଧାରଣ ପୃଥିବୀଟା ପଟରେ ରହିଥିଲା । ତା'ପରେ ସିଏ କହିଲେ: ତଥାପି, ତଥାପି, ଯାହା ନିୟମ ରହିଛି, ସେଇଟା ହେଉଛି ଆମ ସମସ୍ତଙ୍କର ଊର୍ଦ୍ଧ୍ୱରେ । ମୁଁ ତତ୍‌କ୍ଷଣାତ୍ ଉତ୍ତର ଦେଇ କହିଲି, ତେବେ ଏପରି ଗୋଟିଏ ନିୟମକୁ ଆପଣ ସାଙ୍ଗେ ସାଙ୍ଗେ ବଦଳାଇ ଦେବା ଉଚିତ । ସିଏ ଶେଷକୁ କହିଥିଲେ ଯେ ସିଏ ଆହୁରି ଉପର କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରି ଲେଖିବେ, ଯଦି ଅନ୍ତତଃ ମୁଁ ଥିବାଯାଏ ନିୟମଟା ଭିତରେ କିଞ୍ଚିତ୍ ସ୍ୱାଧୀନତା ଲାଗି ସ୍ଥାନ ଦେଲାଭଳି କିଛି ଅଦଳବଦଳ କରାଯାଇ ପାରିବ !

ପରିଶେଷରେ ଆହୁରି ଉପରୁ ମଧ୍ୟ ଖଣ୍ଡେ ଲେଖା ଆସି ପହଞ୍ଚିଲା । ସେଥିରେ କୁହା ଯାଇଥିଲା ଯେ ପ୍ରଚଳିତ ବହିଟିକୁ ଘୋଷି ଅବଶ୍ୟ ମୁଖସ୍ଥ କରିବାକୁ ହେବ, ମାତ୍ର ପିଲାଙ୍କୁ ଧର୍ମଶିକ୍ଷା ଦେବା ସମୟରେ ବହିରୁ ପଢ଼ି ପିଲାମାନଙ୍କୁ ମନେ ରଖିବାକୁ କହିବା ବାଧ୍ୟତାମୂଳକ ହୋଇ ରହିବନାହିଁ । ମୋତେ ବାଟଟିଏ ମିଳିଗଲା । ମୁଁ ତ ସକଳ ଶିକ୍ଷାଦାନକୁ ଅଧିକତର ଅର୍ଥରେ ଏକ ଅସଲ ଧର୍ମର କାର୍ଯ୍ୟ ବୋଲି ଅନୁଭବ କରୁଥିଲି ଏବଂ ତେଣୁ ଆଉ ଘୋଷି ମୁଖସ୍ଥ କରାଇବାର ନିୟମଟିକୁ ମୁଁ ଗ୍ରହଣ କଲିନାହିଁ । ଏହାପରେ ମୁଁ ଯେତେଦିନ ସେଠାରେ ରହିଲି, ମୋ' ନିଜ ପଦ୍ଧତିରେ ଶିକ୍ଷକକାର୍ଯ୍ୟ କରିବାରେ ମୁଁ ଆଉ କୌଣସି ବାଧାର ସମ୍ମୁଖୀନ ହୋଇନଥିଲି ସତ, ମାତ୍ର ଯେତେଥର କୌଣସି ଶିକ୍ଷକପଦ ନିମନ୍ତେ ପ୍ରାର୍ଥୀ ହୋଇଥିଲି, କର୍ତ୍ତାମାନେ ମୋ'ର ଅବେଦନଟିକୁ ଆଉ ମୋଟେ ଗ୍ରହଣ କଲେନାହିଁ । ମୋତେ ସବୁଥର କେବଳ ନାହିଁ ବୋଲି ଶୁଣିବାକୁ ମିଳିଲା । ପିଲାମାନଙ୍କୁ ପାଠ୍ୟପୁସ୍ତକ ମୁଖସ୍ଥ କରାଇ ପାଠ ପଢ଼ାଇବାକୁ ରାଜୀ ନହେଲେ କେହି ମୋତେ ସ୍ଥାନଟିଏ ଦେବାକୁ ଆଉ ଇଚ୍ଛା କରିନଥିଲେ । ତଥାପି ମୁଁ ଟଳି ନଥିଲି ଓ ମୁଁ ତାହା କରିବିନାହିଁ ଓ କରିବାକୁ ଇଚ୍ଛା କରୁନାହିଁ ବୋଲି ସିଧା କହି ଦେଉଥିଲି । ସିଏ ମୋ' ପାଇଁ ପ୍ରକୃତରେ ଅତ୍ୟନ୍ତ ଦୁଃଖିତ ବୋଲି ଥରେ ଜଣେ ବିଶପ୍ ମଧ୍ୟ କହିଥିଲେ । ତାଙ୍କୁ ମୁଁ ଜବାବ ଦେଇ ଏପରି କହିଥିଲି ଯେ, ହୁଏତ ମୁଁ ତଥାପି କେବେ ନା କେବେ ବିଦ୍ୟାଳୟଟିଏ ଆରମ୍ଭ କରିପାରିବି ଏବଂ ଶିକ୍ଷକ ପଦପାଇଁ ସ୍ୱୀକୃତ ନହେଲେ ମଧ୍ୟ ଏହି କାର୍ଯ୍ୟଟିକୁ କରିବାରେ କୃତକାର୍ଯ୍ୟ ହୋଇ ପାରିବି । ବିଶପ୍ କହିଥିଲେ, ଯଦି ତୁମେ ସତକୁ ସତ ତାହା କରିପାରିବ, ତେବେ ତାହାହିଁ ସର୍ବୋତ୍ତମ ହେବ ।

ତା'ପରେ ମୁଁ ଏପରି ଗୋଟିଏ ଅଞ୍ଚଳକୁ ଗଲି, ଯେଉଁଠାରେ ପାଠବହିଟିକୁ ମୁଖସ୍ଥ କରିବା ଉପରେ ସେତେ ଜିଦ୍ ସହିତ ଗୁରୁତ୍ୱ ଦିଆ ଯାଉନଥିଲା । ସେହିଭଳି ଗୋଟିଏ ସ୍ଥାନରେ ସଂପୃକ୍ତ କର୍ତ୍ତା ମୋତେ ଅନେକ ପ୍ରଶ୍ନ ପଚାରିଲେ, ମୋ' ଜ୍ଞାନର ପରୀକ୍ଷା ନେଲେ ଏବଂ ମୁଁ ସନ୍ତୋଷଜନକ ଭାବରେ ସେଗୁଡ଼ିକରେ ବେଶ୍ ଉତ୍ତୀର୍ଣ୍ଣ ହୋଇ ପାରିଥିଲି । ମୁଁ ପିଲାମାନଙ୍କୁ କ'ଣସବୁ ବିଷୟ ପଢ଼ାଇବି, ମୋତେ ସିଏ ସେହି ପ୍ରଶ୍ନଟିକୁ ମଧ୍ୟ କରିଥିଲେ । ମୁଁ ଉତ୍ତର ଦେଇଥିଲି : ସେମାନଙ୍କୁ ମୁଁ ଡ଼େନ୍‌ମାର୍କ୍‌ର ଇତିହାସ ଶୁଣାଇବି, ସେମାନଙ୍କୁ ପ୍ରସିଦ୍ଧ ଲେଖକମାନଙ୍କର ଗପସବୁ ପଢ଼ି ଶୁଣାଇବି । ମାତ୍ର ସିଏ ସେଥିରେ ରାଜୀ ହୋଇନଥିଲେ । କହିଲେ, ସାଧାରଣ ମନୁଷ୍ୟମାନଙ୍କର ଆଦୌ ଏତେ ଯୋଗ୍ୟତା ନାହିଁ ଯେ ଏତିକିରେ ସବୁ ହାସଲ ହୋଇଯିବ । ମୁଁ ବୁଝାଇବାକୁ ଚେଷ୍ଟା କରି ପୁଣି କହିଥିଲି ଯେ, ସେମାନଙ୍କ ଭିତରେ ତଥାପି ଏକ ହୃଦୟ ରହିଛି ଓ ସେହି ହୃଦୟକୁ ସ୍ପର୍ଶ କରି ପାରିଲେ ବହୁତ କିଛି ସମ୍ଭବ ହୋଇ ପାରିବ । ସିଏ ତଥାପି ରାଜୀ ହେଉନଥାନ୍ତି; ମୁଁ ଟିକିଏ ଉତ୍ତେଜିତ ହୋଇ ପଡ଼ିଲି ଏବଂ ଅଶ୍ରୁପୂର୍ଣ୍ଣ ଆଖିରେ ପ୍ରାୟ କାନ୍ଦି କାନ୍ଦି ଉତ୍ତର ଦେଲି: ଆଜ୍ଞା, ସମଗ୍ର ପୃଥିବୀରେ ମୁଁ କେବଳ ଦୁଇଟି କ୍ଷେତ୍ରରେ ହିଁ କୌଣସି ସାଲିଶ୍ କରି ପାରିଲି ନାହିଁ, ଗୋଟିଏ ହେଉଛି ଭଗବାନଙ୍କ ପ୍ରତି ରହିଥିବା ମୋ'ର ଭଲ ପାଇବା ଏବଂ ଆରଟି ମୋ' ମାତୃଭୂମି ପ୍ରତି ରହିଥିବା ମୋ'ର ଭଲ ପାଇବା । ଆଉ ଗୋଟିଏହେଲେ ଶବ୍ଦ ଉଚ୍ଚାରଣ ନକରି ସେଠାରୁ ବାହାରି ଆସିଲି । ସିଏ ମଧ୍ୟ ଆଉ କିଛିହେଲେ କହିନଥିଲେ ।

ତା'ପରେ ଭାବିଲି ଯେ ଏଠାରୁ ଆଉ କୁଆଡ଼େ ପଳାଇଯିବି ଏବଂ କୌଣସି ଜାଗାରେ ନିଜକୁ ଲୁଚାଇ ରଖିବି । ହୁଏତ ଆମେରିକାର ଅରଣ୍ୟ ଭିତରେ ଅଥବା ଆଉ କେଉଁଠାରେ, ଯେପର୍ଯ୍ୟନ୍ତ ଏହି ଜୀବନ ଧାରଣ କରି ରହିଥିବି, କାରଣ ଏହି ପୃଥିବୀରେ ମୁଁ ପ୍ରକୃତରେ କିଛିହେଲେ ହୋଇ ପାରିବିନାହିଁ । ମୁଁ ଯେଉଁ କେବଳ ଗୋଟିଏମାତ୍ର କଥାକୁ ପାରିଥାନ୍ତି, ସେଇଟିରେ କିଛି କରିବା ଲାଗି ଯଦି ମୋତେ କ୍ଷେତ୍ରଟିଏ ମିଳିଲାନାହିଁ, ତେବେ ମୋ'ଦ୍ୱାରା ଆଉ କ'ଣ ହୋଇ ପାରିବ ? ସେତିକିବେଳେ ଶୁଣିବାକୁ ପାଇଲି ଯେ ଜଣେ ପାଦ୍ରୀ ଦୂରସ୍ଥ ଯାତ୍ରା କରୁଛନ୍ତି ଓ ସାଙ୍ଗରେ ଯିବା ସକାଶେ ଜଣେ ପରିକର ଆବଶ୍ୟକ କରୁଛନ୍ତି । ଭାବିଲି, ତାଙ୍କ ସହିତ ଯାଇ ପାରିଲେ ଅନ୍ତତଃ କିଛି କାମରେ ତ ଲାଗିବି । ତେଣେ ମୁଁ ଦୀର୍ଘ ପାଞ୍ଚବର୍ଷ ରହିଲି ଏବଂ ସବୁବେଳେ ବହି ଘୋଷି ମୁଖସ୍ଥ କରିବାପାଇଁ ବାଧ୍ୟ ହେଉଥିବା ଡେନ୍‌ମାର୍କ୍‌ର ଛୁଆମାନଙ୍କ ବିଷୟରେ ହିଁ ଭାବୁଥିଲି । ଦୂରସ୍ଥର କୌଣସି ସ୍କୁଲ ବାଟଦେଇ ଗଲାବେଳେ ସେହି କଥାଟି ବେଶୀ ହିଁ ମନେ ପଡୁଥିଲା । କାରଣ ସେଠାରେ ମଧ୍ୟ ପିଲାମାନେ ଠିକ୍ ସେହିପରି ବାଧ୍ୟ ହେଉଥିଲେ । ଶିକ୍ଷକ ପ୍ରଥମେ କୌଣସି ପ୍ରାର୍ଥନାରୁ ଦୁଇଟା ଧାଡ଼ୀ ବଡ଼ ପାଟି କରି କହୁଥିଲେ ଏବଂ ସ'ବୁ ପିଲା ତା'ପରେ ତାହାର ପୁନରାବୃତ୍ତି

କରୁଥିଲେ। ମୁଁ ତ ଦୂରସ୍ଥ ଦେଶର ଭାଷା ବୁଝି ପାରୁନଥିଲି, ତେଣୁ ସବୁକିଛି ଆମର ଏଠାରେ ଯେକୌଣସି ଗାଆଁସ୍କୁଲରେ ଘଟୁଥିବା ବ୍ୟାପାରଟିଏ ପରି ମନେ ହେଉଥିଲା । ପୁନର୍ବାର ଦେଶକୁ ଫେରିବି ବୋଲି ମୁଁ ସେଠାରେ କେବେହେଲେ ଚିନ୍ତା କରିନଥିଲି ସତ, ମାତ୍ର ସେହି ପ୍ରବାସ ସମୟରେ ନିଜର ମାତୃଭୂମିକୁ ମୁଁ କିଛିତ୍ ଅନ୍ୟପ୍ରକାରେ ଭଲ ପାଇ ଶିଖିଲି। ନିଜ ମାତୃଭୂମିଠାରୁ ଏତେ ଦୂରରେ ଆସି ରହିଛି ବୋଲି ଅତ୍ୟନ୍ତ ବ୍ୟଥିତ ହୋଇ ପଡୁଥିଲି । ସେଠି ପୋତାଶ୍ରୟକୁ କୌଣସି ଡେନିଶ୍ ଜାହାଜ ଆସିଥିବା ବେଳେ ଯେତେବେଳେ ସେଥିରେ ଡେନ୍‌ମାର୍କ୍‌ର ପତାକାକୁ ଉଡୁଥିବାର ଦେଖୁଥିଲି, ସେତେବେଳେ ମୁଁ ସତେଅବା ନୂଆ କରି ଜନ୍ମ ହେଉଥିବା ପରି ଅନୁଭବ କରୁଥିଲି। ପିଲାଙ୍କ ପରି କଇଁ କଇଁ ହୋଇ କାନ୍ଦୁଥିଲି ଏବଂ ସେହି ଜାହଜ ଉପରକୁ ଦଉଡ଼ି ଯାଉଥିଲି। ଏପରିକି ସୁଇଡେନ୍ କିମ୍ବା ନରୱେର ଜାହଜଟିଏ ଦେଖିଲେ ମଧ୍ୟ ମୁଁ କେଡ଼େ ଉତ୍‌ଫୁଲ୍ଲ ହୋଇ ଉଠୁଥିଲି। ଏହିପରି କିଭଳି ଭାବରେ ସେଠାରେ ଯେ ପାଞ୍ଚବର୍ଷ ଚାଲିଗଲା, ମୁଁ କିଛି ଜାଣି ପାରିନଥିଲି। ଏଥର ନିଜ ଘରକୁ ଫେରି ଆସିବା ଉଚିତ ଓ ମୁଁ ମଧ୍ୟ ଫେରି ଆସିଥିଲି । ମଣିଷ ଯେଉଁଠାକୁ ଅବଶ୍ୟ ଆସିବା କଥା, ସିଏ ପ୍ରକୃତରେ ସେହିଠାକୁ ହିଁ ଆସିଥାଏ। ୧୮୪୭ରେ ଦେଶରେ ଆସି ପହଞ୍ଚିଲି ଏବଂ ପୁନର୍ବାର ଆମେରିକା ଯିବି ବୋଲି ତଥାପି ଚିନ୍ତା କରୁଥିଲି । ଏହି ସମୟରେ ୧୮୪୮ ଆରମ୍ଭରେ ଯୁଦ୍ଧ ଆରମ୍ଭ ହୋଇଗଲା ଏବଂ ଗୋଟିଏ ନୂଆ ଅଭିଜ୍ଞତା ପାଇବା ସକାଶେ ମୁଁ ସେଥିରେ ବି ଯାଇ ଯୋଗ ଦେଲି। ଯୁଦ୍ଧ ବିଷୟରେ ବହୁତ କଥା ଆଗରୁ ଶୁଣିଥିଲି, ମାତ୍ର କେବେହେଲେ ନିକଟରେ ଥାଇ ଅଙ୍ଗେ ନିଭାଇ ନଥିଲି। ପିଲାଦିନେ ବାପା ମୋ'ର ଯେଉଁ ଆଙ୍ଗୁଠିଗୁଡ଼ିକୁ ହିଁ କୌଣସି କାମର ନୁହନ୍ତି ବୋଲି ଘୋଷଣା କରି ମୋତେ ଗାଳି ଦେଇଥିଲେ, ଏଠାରେ ମଧ୍ୟ ସେହି ଆଙ୍ଗୁଠିମାନେ ବାଧା ହୋଇ ଛିଡ଼ାହେଲେ । ବନ୍ଧୁକରୁ ଗୁଳି ଫୁଟାଇବାରେ ମୋ'ର ସବୁବେଳେ ଭାରି ଡେରି ହୋଇ ଯାଉଥିଲା । ଆଙ୍ଗୁଠିମାନେ ପ୍ରସ୍ତୁତ ହୋଇ ପାରୁନଥିଲେ ।

ଯୁଦ୍ଧ ସରିଲା। ମୁଁ ପୁଣି ସାଧାରଣ ଜୀବନକୁ ଫେରିଆସିଲି। ମୋତେ ଲାଗୁଥିଲା, ମୋ'ର ପ୍ରକୃତରେ ଯାହା ହେବାକଥା, ମୁଁ ସତେଅବା ସେହିଭଳି ଏକ ସମୟର ସମ୍ମୁଖୀନ ହୋଇ ଠିଆ ହୋଇଥିଲି । ଆମେରିକା ନଯାଇ ଘରେ ରହିଲି । ପୁଣି ଠାଏ ଘରୋଇ ଶିକ୍ଷକଭାବେ କାର୍ଯ୍ୟ କଲି, ଏଥର ଜଣେ ପାଦ୍ରୀଙ୍କର ପିଲାମାନଙ୍କୁ ପାଠ ପଢ଼ାଇବାର କାର୍ଯ୍ୟରେ ନିଯୁକ୍ତି ମିଳିଥିଲା । ସେହିଠାରେ ହିଁ ନିକୋଲାଇ ଗ୍ରୁନ୍‌ଟ୍‌ଭିଗ୍‌ଙ୍କ ଦ୍ୱାରା ଲିଖିତ ପୃଥ୍ୱୀଇତିହାସ ନାମକ ପୁସ୍ତକଟିକୁ ପାଠ କରିବାର ସୁଯୋଗ ପାଇଲି। ପୁସ୍ତକଟି ମୋ'ର ଯାବତୀୟ ଭାବନା ତଥା ଅନୁମାନରେ ଗଭୀର ରେଖାପାତ କଲା। ସୃଷ୍ଟିକର୍ତ୍ତା ପରମେଶ୍ୱର ଯୁଗ ଯୁଗ ଧରି ମନୁଷ୍ୟପରିବାରକୁ ଗୋଟିଏ ଉପଲବ୍ଧିରୁ ଆଉଗୋଟିଏ ଉପଲବ୍ଧିକୁ କିପରି

ପରିଚାଳିତ କରି ଆଣିଛନ୍ତି, ଏବଂ ସତ୍ୟର ସୋପାନଗୁଡ଼ିକୁ କ୍ରମୋନ୍ମୋଚିତ କରି ଦେଇଛନ୍ତି, ତାହାର ପ୍ରାୟ ଏକ ସୁନିଶ୍ଚିତ ପରିଚୟ ପାଇ ଏକ ମୁଁ ସ୍ତବ୍ଧ ହୋଇ ଯାଇଥିଲି । ସେହି ପୁସ୍ତକଟିରେ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ କହି ଦିଆ ଯାଇଥିଲା ଯେ, ଏହିପରି କ୍ରମାଗ୍ରସର ହୋଇ ମନୁଷ୍ୟସମୁଦାୟ ପରିଶେଷରେ ମୃତ୍ୟୁ, ଅନ୍ଧକାର, କ୍ଲାନ୍ତି, ବିରକ୍ତି, ନିରର୍ଥକତାବୋଧ ଏବଂ ନିଃସଙ୍ଗତା ଉପରେ ପୂର୍ଣ୍ଣ ବିଜୟ ହାସଲ କରିବ । ଏହି ଉଦ୍‌ବୋଧନଟି ମୋତେ ସମ୍ପୂର୍ଣ୍ଣ ଭାବରେ ନୂଆ ହିଁ ଲାଗିଲା । ଏବଂ, ପୁସ୍ତକଟି ପଢ଼ି ସାରିବାର ଅବ୍ୟବହିତ ପରେ ମୋ'ର ପୂର୍ଣ୍ଣ ହୃଦ୍‌ବୋଧ ମଧ୍ୟ ହୋଇ ଯାଇଥିଲା ଯେ, ପ୍ରକୃତରେ ଏହାହିଁ ହେଉଛି ସତ୍ୟ, ଏହି ବାଟରେ ହିଁ ଯିବାକୁ ହେବ । ଭାବିଲି, ଏହି ସନ୍ଦେଶଟିକୁ ଆମକୁ ଗଣଜୀବନ ମଧ୍ୟକୁ ବହନ କରି ନେବାକୁ ହେବ, ତାହାର ବିବେକଟିକୁ ସ୍ପର୍ଶ କରିବାକୁ ପଡ଼ିବ ଓ ତଦ୍ୱାରା ସଚଳ କରିବାକୁ ହେବ । ସେତେବେଳେ ଅବଶ୍ୟ ଦେଶସାରା ଏକ ଜାଗରଣ ଆରମ୍ଭ ହୋଇ ଯାଇଥିଲା,- ଲୋକେ ଏକ ନୂତନ ଆଶାବାଦ ସହିତ ଭବିଷ୍ୟତ ଆଡ଼କୁ ଦୃଷ୍ଟିପାତ କରୁଥିଲେ, ଏକାଠି ଗୀତ ଗାଉଥିଲେ ଏବଂ ଏକତାବଦ୍ଧ ହୋଇ ଆସୁଥିଲେ । ତଥାପି ସେହି ନୂତନ ଉନ୍ମେଷଣାଟି ସବୁ ମଣିଷଙ୍କ ଯାଏ ପହଞ୍ଚି ପାରିନଥିଲା । ୧୮୪୮ରୁ ହିଁ ଏକ ନୂଆ ଜୀବନ ଓ ଏକ ନୂତନ ଉତ୍ସାହର ବନ୍ୟା ଲୋକଚିତ୍ତକୁ ଉଦ୍‌ବେଳିତ କରିଥିଲା ଏବଂ ତାହାର ଏକ ପ୍ରଭାବ ମଧ୍ୟ ଅଧିକରୁ ଅଧିକ ନିଶ୍ଚିତ ଭାବରେ ଅନୁଭବ କରି ହେଉଥିଲା ।

ଏହି ଉଦ୍‌ବୋଧନଟିକୁ କିପରି ବୃହତ୍ତର ଲୋକକ୍ଷେତ୍ର ଯାଏ ପହଞ୍ଚାଇ ହେବ, ମୋ' ଭିତରେ ସେହି କଥାଟି ଏକ ଗଭୀର ଆଲୋଡ଼ନ ସୃଷ୍ଟି କରି ଆସୁଥିଲା । ଶବ୍ଦର ଶକ୍ତିଟି ଦ୍ୱାରା କିପରି ଲୋକମାନଙ୍କର ଅନ୍ତର୍ଚିତ୍ତରେ ପ୍ରବେଶ କରିହୁଏ, ପୂର୍ବରୁ କେବଳ ସେତିକି ହିଁ ମୋତେ ଜଣା ଥିଲା । ସେହି ଶକ୍ତିକୁ ମୁଁ ନିଜ ଭିତରେ ଅନୁଭବ କରି ପାରୁଥିଲି ଏବଂ କିଛି ମାତ୍ରାରେ ମୋ'ଠାରୁ ଆଉଜଣେ ମନୁଷ୍ୟ ମଧ୍ୟକୁ ସଂଚାରିତ ବି କରି ପାରୁଥିଲି । ହଁ, ସେଇଟି ମଧ୍ୟ ମୁଖ୍ୟତଃ ଜଣେ ଜଣେ ବ୍ୟକ୍ତିଙ୍କ ସହିତ ମୋ'ର ସମ୍ବନ୍ଧକ୍ଷେତ୍ରରେ ସମ୍ଭବ ହେଉଥିଲା । ମୁଁ ଭାବିବାକୁ ଲାଗିଲି ଯେ, ଏଥର ସମଗ୍ର ଗଣଟିକୁ ହିଁ ଜାଗ୍ରତ ତଥା ଅନ୍ତର୍ସଚେତନ କରି ଆଣିବାକୁ ହେବ; ଏବଂ ଏହାପରେ ମୁଁ ଆମର ଏହି ଜାତିର ମଧ୍ୟ ଏକ ସମୂହ ଅନ୍ତର୍ଚେତନା ରିହିଛି ବୋଲି ଉପଲବ୍ଧି କଲି । ସେତିକିବେଳେ ହିଁ ମୁଁ ମୋ' ଲାଗି ଉଦ୍ଦିଷ୍ଟ ହୋଇ ରହିଥିବା କାର୍ଯ୍ୟଟିକୁ ଅତ୍ୟନ୍ତ ସ୍ପଷ୍ଟଭାବରେ ବୁଝିପାରିଥିଲି । ସେହି କାର୍ଯ୍ୟଟି ହେଉଛି : ୧୮୪୮ ମସିହାରୁ ହିଁ ଯେଉଁ ଅନୁଭବ ଓ ବିସ୍ମୟବୋଧ ଏକ ଜାଗରଣ ରୂପେ ଗଣଚିତ୍ତରେ ସ୍ଥାନଟିଏ ଅଧିକାର କରି ରହିଥିଲା, ମୁଁ ତାହାକୁ ସ୍ଥାୟୀ ହୋଇ ରହିବାରେ ସାହାଯ୍ୟ କରିବି, ତାହାକୁ ଆହୁରି ଶକ୍ତିଯୁକ୍ତ ଭାବରେ ଜାଗୃତ କରି ଆଣିବି । ଏବଂ, ବିଦ୍ୟାଳୟ ଅର୍ଥାତ୍ ଶିକ୍ଷାର ମାଧ୍ୟମରେ ହିଁ ଶବ୍ଦର ଶକ୍ତିକୁ ସାଧନରୂପେ ବ୍ୟବହାର କରି ମୁଁ ଏହି ସମଗ୍ର

ମନୁଷ୍ୟସମୁଦାୟକୁ ଏକ ନୂତନ ସଂକଳ୍ପରେ ସଚେତନ କରାଇ ଆଣିବି । ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର 'ପୃଥ୍ୱୀଇତିହାସ' କୁ ପାଠ କରିସାରିବା ପରେ ମୋ' ଆଗରେ ଏହିପରି ଏକ ଯୋଜନା ସ୍ପଷ୍ଟ ହୋଇ ଉଠିଲା ଯେ ମୁଁ ବିଦ୍ୟାଳୟକୁ ମାଧ୍ୟମ କରି ସେହି ଗଣଶିକ୍ଷାର ଦାୟିତ୍ୱଟିକୁ ହିଁ ଗ୍ରହଣ କରିନେବି । ତେଣୁ ଆଉ ବକ୍ତୃତା ଦେଇ ଏଠି ସେଠି ହେଲେ କିଛି ହେବନାହିଁ, ମୋତେ ଗୋଟିଏ ଜାଗାରେ ରହି ଏକ ଗୋଷ୍ଠୀ ଭିତରେ ହିଁ ତାହା କରିବାକୁ ହେବ । ତା'ନହେଲେ, ହଠାତ୍ ହୁଏତ କିଛି ପ୍ରଭାବ ପଡ଼ିବ, ମାତ୍ର ଆଦୌ ସ୍ଥାୟୀ ହୋଇ ପାରିବନାହିଁ । ମୁଁ ଯେ ସେତେବେଳେ ବକ୍ତୃତା ଦେବାରେ ପାରଙ୍ଗମ ଥିଲି, ସେକଥା ଆଦୌ ନୁହେଁ, - ବର୍ତ୍ତମାନ ମଧ୍ୟ ମୁଁ ସେହି ପାରଙ୍ଗମତାକୁ ହାସଲ କରି ପାରିନାହିଁ । ମାତ୍ର, ମୋ'ର ତଥାପି ଏକ ଅନୁଭୂତି ରହିଛି ଯେ, ଯେତେବେଳେ ଲୋକେ ପୁରାତନ ଇତିହାସର କାହାଣୀଗୁଡ଼ିକୁ ପଢ଼ନ୍ତି, ସେତେବେଳେ ସେମାନେ ଅବଶ୍ୟ ତଦ୍ୱାରା ଅନୁପ୍ରେରିତ ହୋଇଥାନ୍ତି । ଇତିମଧ୍ୟରେ ମଧ୍ୟ ମୁଁ ବିଶ୍ୱାସ କରି ପାରୁଛି ଯେ ଆମର ଲୋକେ ସାମୂହିକ ଭାବରେ ଗ୍ରୁଣ୍ଡ୍‌ଭିଗ୍‌ଙ୍କର 'ପୃଥ୍ୱୀଇତିହାସ' ସହିତ ମଧ୍ୟ ଅବଶ୍ୟ ପରିଚିତ ହେବେ । ମାତ୍ର, ଏକ ବିଦ୍ୟାଳୟର ଶିକ୍ଷା ମାଧ୍ୟମରେ ହୋଇ ନପାରିଲେ ସେହି ଦିଗରେ ଆଦୌ ବିଶେଷ ସିଦ୍ଧି ହାସଲ କରି ହେବନାହିଁ ।

ଡେନ୍‌ମାର୍କ୍‌ର ସର୍ବପ୍ରଥମ ଗଣବିଦ୍ୟାଳୟ ହିସାବରେ ର୍‍ୟୁଦିଙ୍ଗ୍ (Roedding) ଠାରେ ଯାହା ପ୍ରତିଷ୍ଠା ହୋଇଥିଲା, ମୁଁ ଜାଣିଛି, ସେଥିରେ ୪୮୦୦୦ ମୁଦ୍ରା ବ୍ୟୟ କରା ଯାଇଛି । ମୋ' ପାଖରେ କେବଳ ୫୦୦ ମୁଦ୍ରା ଅଛି । ତୁରସ୍କଦେଶରୁ ବହି ବାନ୍ଧି ମୁଁ ତାହା ସଞ୍ଚୟ କରିଛି । ମୁହଁଟିକୁ କାମରେ ଲଗାଇ ନପାରୁଥିବାରୁ ମୁଁ ହୁଏତ ହାତଦ୍ୱାରା ମୋ' ଦେଶରେ କିଛି ଉତ୍ତମ କାର୍ଯ୍ୟ କରିପାରିବି ବୋଲି ଯେତେବେଳେ ଏକଦା ଭାବିଲି, ସେତିକିବେଳେ ଏହି ବହି ବାନ୍ଧିବା କାର୍ଯ୍ୟଟିକୁ ଶିକ୍ଷା କରିଥିଲି । ମୁଁ ତୁରୁସ୍କରେ ଜଣେ ପାଦ୍ରୀଙ୍କର ପରିକର ଭାବରେ ସେଠାକୁ ଯାଇଥିଲି । ସେହି କାର୍ଯ୍ୟ ପାଇଁ ସ୍ଥାନୀୟ ଲୋକଙ୍କୁ ପାଇବା ପରେ ମୋ'ର ସେଠି ଆଉ କୌଣସି ପ୍ରୟୋଜନ ନଥିଲା । ତାଙ୍କୁ ଜଣେ ପରିଚାରିକା ମିଳିଗଲା ଓ ସିଏ ମୋ' ଯାବତୀୟ କାମକୁ ଅଧିକ ଭଲଭାବରେ ମଧ୍ୟ କରିପାରିଲା । ପାଦ୍ରୀଙ୍କର ପତ୍ନୀ ମଧ୍ୟ କହିଲେ ଯେ ଏହି ଝିଅଟି ଆସିବା ପୂର୍ବରୁ ମୁଁ ସେହି କାର୍ଯ୍ୟଟି କରୁଥିବା ସମୟରେ ତାଙ୍କର ପ୍ଲେଟ୍‌ଗୁଡ଼ିକ କେବେହେଲେ ଏତେ ବଢ଼ିଆ ସଫା ହୋଇ ପାରୁନଥିଲା । ମୋ'ର ମଧ୍ୟ ସେହି କାର୍ଯ୍ୟରେ ଆଗରୁ କୌଣସି ଅଭ୍ୟାସ ନଥିଲା ଏବଂ କାମଟି ବଡ଼ ମଠ ହେଉଥିଲା । ଏବଂ, ଖୁବ୍ ଭଲ ନହେଲେ ମଧ୍ୟ ଅବଶ୍ୟ ଭଲଭାବରେ ହେଉଥିଲା । ହଁ, ମୁଁ ପରା କହୁଥିଲି ଯେ, ତୁରସ୍କରୁ ଦେଶକୁ ଫେରିଆସିବା ସମୟରେ ମୋ' ପାଖରେ ସର୍ବମୋଟ ୫୦୦ଟି ମୁଦ୍ରା ରହିଥିଲା । ୪୮୦୦୦ ତ ୫୦୦ ଠାରୁ କେତେ ନା କେତେ ଅଧିକ ହେବ ।

ଅବଶ୍ୟ ଏହା ଅତ୍ୟନ୍ତ ସୁନିଶ୍ଚିତ ଯେ ମୁଁ ଏଡ଼େ ବଡ଼ ଆକାରରେ ଆଦୌ କୌଣସି ବିଦ୍ୟାଳୟ ଆରମ୍ଭ କରିବାକୁ ଆଦୌ ଇଚ୍ଛା କରୁନାହିଁ । ତଥାପି, ବିଦ୍ୟାଳୟଟିଏ କଲେ କିଛି ଅର୍ଥ ତ ନିଶ୍ଚୟ ଦରକାର ହେବ । ଅନ୍ତତଃ ଗୋଟିଏ ଲମ୍ବା ଘର ତିଆରି କରିବାକୁ ପଡ଼ିବ, ଯହିଁରେ ଅନ୍ତତଃ ୧୪-୧୫ ଜଣ ବ୍ୟକ୍ତି ଏକାଠି ରହିପାରିବେ । ତେବେଯାଇ ମୁଁ ଆଶା କରି ପାରିବି ଯେ, ଯେଉଁ ସଚେତନ ପରିବାରଗୁଡ଼ିକୁ ମୁଁ ଚିହ୍ନିଛି, ସେମାନେ ନିଜର ସନ୍ତାନମାନଙ୍କୁ ସେହି ବିଦ୍ୟାଳୟକୁ ପଠାଇବେ ଏବଂ ମୁଁ ଏକ ପ୍ରୟୋଗ ଆରମ୍ଭ କରି ପାରିବି । ସେହି ବିଦ୍ୟାଳୟରୂପକ ପ୍ରୟୋଗଟିର ମାଧ୍ୟମରେ ହିଁ ଗଣମାନସରେ ଈଶ୍ୱର ଏବଂ ଆମ ମାତୃଭୂମିଟି ବିଷୟରେ ସମୁଚିତ ଚେତନାଟି ଜାଗୃତ ହୋଇ ଆସିବ । ପରମେଶ୍ୱର ଯେ ମନୁଷ୍ୟମାନଙ୍କୁ ପ୍ରକୃତରେ ଭଲ ପାଆନ୍ତି ଏବଂ ଯଥାର୍ଥ ପ୍ରୟାସଦ୍ୱାରା ଯେ ଏହି ଦେଶରେ ଆମେ ଭବିଷ୍ୟତରେ ଏକ ସୁଖୀ ଜୀବନ ସମ୍ଭବ କରିପାରିବୁ, ସେହି ବିଷୟରେ ଜନଗଣର ହୃଦ୍‌ବୋଧ ହୋଇଯିବ ।

ନିଜର ଏହି ସ୍ଥିରୀକୃତ କାର୍ଯ୍ୟଟିକୁ ଆରମ୍ଭ କରିପାରିବା ନିମନ୍ତେ ବର୍ତ୍ତମାନ ମୋ' ପାଖରେ ଯଥେଷ୍ଟ ସାଧନ ନଥିବାରୁ ମୁଁ ରୁଇସ୍‌ଲିଙ୍ଗଠାରେ ବାସ କରୁଥିବା ଶ୍ରୀ ବିଅର୍କଡାଲ୍‌ଙ୍କ ପାଖକୁ ଚିଠି ଲେଖିଥିଲି । ଗୋଟିଏ ବର୍ଷ ସକାଶେ ତାଙ୍କ ଘରେ ଘରୋଇ ଶିକ୍ଷକ ହୋଇ ରହିବାର ସମ୍ଭାବନା ବିଷୟରେ ତାଙ୍କୁ ପ୍ରଶ୍ନ କରିଥିଲି । ସେଠାରେ ତାଙ୍କ ନିଜ ପିଲାଙ୍କ ସହିତ ମୁଁ ଅନ୍ୟ କେତେକ କୃଷକ ପରିବାରରୁ ମଧ୍ୟ ୩-୪ ଜଣ ପିଲାଙ୍କୁ ଗ୍ରହଣ କରିବି ଏବଂ ସେମାନଙ୍କର ଅନ୍ତରାତ୍ମା କ୍ଷେତ୍ରରେ ଏକ ଜାଗୃତି ଘଟାଇବା କେତେଦୂର ସମ୍ଭବ ହେବ ବା ନହେବ, ମୁଁ ଏକ ପରୀକ୍ଷା କରି ଦେଖିବି । କାରଣ, ଯଦି ସେପରି କୌଣସି ପ୍ରୟୋଗ ସମ୍ଭବ ନହୁଏ, ତେବେ ଅଧିକ ଆଗକୁ ଯିବାଦ୍ୱାରା କୌଣସି ଲାଭ ହେବନାହିଁ । ହଁ, ରୁଇସ୍‌ଲିଙ୍ଗଠାରେ ଗୋଟିଏ ଘର ମଧ୍ୟ ମିଳିଲା । ତା' ଚତୁର୍ଦ୍ଦିଗରେ କିଛି ଜମି ମଧ୍ୟ ଥିଲା । ଘରଟା ଭାରି ପୁରୁଣା ଓ ସେଇଟିକୁ ବାସଯୋଗ୍ୟ କରିବାକୁ ହେଲେ ମୋଟ ପ୍ରାୟ ୧୪୦୦ ମୁଦ୍ରା ଖରଚ କରିବାକୁ ପଡ଼ିବ । ମୁଁ ତ ୧୦୦୦ ମୁଦ୍ରା ମଧ୍ୟ ଦେଇ ପାରିନଥାନ୍ତି । ତେଣୁ ସ୍ଥାନଟି ହାତଛଡ଼ା ହୋଇ ଯାଇଥିଲା । ଭାବିଲି, ବର୍ତ୍ତମାନ ବିଦ୍ୟାଳୟଟି ବିଷୟରେ ଚିନ୍ତା କଲେ ଆଦୌ କୌଣସି ଲାଭ ହେବନାହିଁ । ତେଣୁ, ନିଷ୍ପତ୍ତି କରିଥିଲି ଯେ ସେହି ପରିବାରରେ ଆଗ ଗୋଟିଏ ବର୍ଷଲାଗି ଘରୋଇ ଶିକ୍ଷକ ହୋଇ ରହିବି ଏବଂ ଆଗକୁ କ'ଣ କିପରି ସମ୍ଭବ ହେଉଛି, ଲକ୍ଷ୍ୟ କରି ଦେଖୁଥିବି । ମାତ୍ର, ଠିକ୍ ଏହି ସମୟରେ ହଠାତ୍ ଏକ ଡାକରା ଆସି ପହଞ୍ଚିଲା, ଆଗକୁ ବାଟଟିଏ ଖୋଲି ଯାଇଥିଲା ।

ଇତ୍ୟବସରରେ ଏଠାରେ ରାଜଧାନୀରେ ବିଶପ୍ ଗ୍ରୁନ୍ଟ୍‌ଭିଗ୍‌ଙ୍କର ଏକ ତଥାକଥିତ

ମିତ୍ରଗୋଷ୍ଠୀ ଏକତ୍ର ହୋଇଥିଲେ ଏବଂ ଆମ ଦେଶର କୃଷକମାନଙ୍କର ଶିକ୍ଷା ନିମନ୍ତେ କ'ଣ କରିବାକୁ ହେବ, ସେହି ବିଷୟରେ ଚର୍ଚ୍ଚା କରିଥିଲେ । ସେତେବେଳେ ସେମାନଙ୍କୁ ଏକ ନୂଆ ସଂବିଧାନ ଅନୁସାରେ ନାଗରିକ ସ୍ୱୀକୃତି ମିଳିଥାଏ । ସେହି ଅଧିକାର ଏବଂ ସ୍ୱାଧୀନତାର ଯଥାର୍ଥ ଉପଯୋଗ କରି ପାରିବାକୁ ହେଲେ ଉପଯୁକ୍ତ ଓ ଯଥାନୁରୂପ ଶିକ୍ଷା ମଧ୍ୟ ଏକାନ୍ତ ଆବଶ୍ୟକ; ତେଣୁ, ଏହି ଦିଗରେ ଅବଶ୍ୟ ଏକ ପଦକ୍ଷେପ ନିଆଯାଉ ବୋଲି ସହମତ ହୋଇ ସେମାନେ ଆଲୋଚନାଟିଏ କରିବାକୁ ଏକାଠି ବସିଥିଲେ । ସେହି କାର୍ଯ୍ୟଟି କରିବାର ଦାୟିତ୍ୱ କାହା ଉପରେ ନ୍ୟସ୍ତ କରାଯିବ ବୋଲି ସେମାନେ ଜଣେ ଆଉଜଣକୁ ପ୍ରଶ୍ନ କରୁଥିବା ସମୟରେ ସେଠାରେ ଉପସ୍ଥିତ ଥିବା ଜଣେ ବ୍ୟକ୍ତି କହିଥିଲେ ଯେ, କ୍ରିଷ୍ଟେନ୍ କଲ୍ଡ୍‌ଙ୍କୁ ଛାଡ଼ିଦେଲେ ଏହି କାର୍ଯ୍ୟଟି ଆଉ କାହାରିଦ୍ୱାରା ମୋଟେ ହୋଇ ପାରିବନାହିଁ । ସେହି ଏକମାତ୍ର ଯୋଗ୍ୟ ବ୍ୟକ୍ତି ବୋଲି ଉପସ୍ଥିତ ଆଉ ସମସ୍ତେ ମଧ୍ୟ ମତ ଦେଇଥିଲେ । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ, ମୁଁ ନିଜେ ମଧ୍ୟ ପ୍ରକୃତରେ ଯୋଗ୍ୟ ହୋଇ ପାରିବି ବୋଲି ଭାବୁନଥିଲି । ଅବଶ୍ୟ ବର୍ତ୍ତମାନ ନିଜକୁ ଅଧିକ ଯୋଗ୍ୟ ବୋଲି କିଞ୍ଚିତ୍ ଅନୁଭବ କରି ପାରିଲିଣି । ତଥାପି ଆଦୌ ସମ୍ପୂର୍ଣ୍ଣ ଭାବରେ ଯୋଗ୍ୟ ହୋଇନାହିଁ । ସେମାନେ ମୋତେ ଆସିବାପାଇଁ ଚିଠି ଲେଖିଲେ; ଗଣଶିକ୍ଷଣର କଳ୍ପିତ କାର୍ଯ୍ୟକ୍ରମଟି ନିମନ୍ତେ ମୁଁ ଆସି ଆବଶ୍ୟକ ପରାମର୍ଶ ଦେବି ବୋଲି ସେହି ପତ୍ରରେ ମୋତେ ନିର୍ଦ୍ଦେଶ ଦିଆ ଯାଇଥିଲା । କୁହା ଯାଇଥିଲା ଯେ ମୁଁ ଉଇଲାଣ୍ଡର ଚାରିଆଡ଼େ ବୁଲି ତରୁଣ ସ୍କୁଲଶିକ୍ଷକ ମାନଙ୍କୁ ଭେଟିବି ଏବଂ ସେମାନଙ୍କୁ ଏହି ନୂତନ ଜାଗରଣ ଆଡ଼କୁ ଅନୁପ୍ରାଣିତ କରି ଆଣିବି । କାରଣ, ଆଶା କରା ଯାଉଥିଲା ଯେ, ସେହିପରି ଭାବରେ ହିଁ ଶିକ୍ଷାର ସାଧାରଣ କ୍ଷେତ୍ରଟିରେ ଉନ୍ନତି ଘଟାଇବା ସମ୍ଭବ ହେବ । ପତ୍ରଟିର ଉତ୍ତର ଦେଇ ମୁଁ ଲେଖିଥିଲି ଯେ, ମୁଁ ଯାହା କରିବି, ତାହା ନିଷ୍ପତ୍ତି କରିସାରିଛି: ମୁଁ ଗୋଟିଏ ଉଚ୍ଚତର କୃଷକ-ଶିକ୍ଷାନୁଷ୍ଠାନ ଆରମ୍ଭ କରିବି । ସେମାନେ ଉତ୍ତରରେ ମୋତେ ଜଣାଇଲେ ଯେ ଏପରି ଏକ ଅନୁଷ୍ଠାନ ଆରମ୍ଭ କରିବାର କାର୍ଯ୍ୟରେ ସେମାନେ ମୋତେ ଆର୍ଥିକ କ୍ଷେତ୍ରରେ ମଧ୍ୟ ସାହାଯ୍ୟ କରିବେ । ସେହି ଦିବସଟି ମୋ' ନିମନ୍ତେ ପ୍ରକୃତରେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇ ରହିବ, କାରଣ ମୋତେ ସେଦିନ ଏହିପରି ଏକ ଲିଖିତ ଆଶ୍ୱାସନା ପ୍ରାପ୍ତ ହୋଇ ପାରିଥିଲା । ତା'ପରେ ମଧ୍ୟ ଗୋଟିଏ ବର୍ଷ ପୂରା ଅତିବାହିତ ହୋଇ ଯାଇଥିଲା ଏବଂ ମୁଁ ଆଦୌ କୌଣସି ଆର୍ଥିକ ଅନୁଦାନ ଆବଶ୍ୟକ କରିନଥିଲି; କାରଣ ସେତେବେଳେ ମୁଁ ଯାବତୀୟ ପୂର୍ବପ୍ରସ୍ତୁତି କରିବାରେ ହିଁ ବ୍ୟସ୍ତ ରହିଥିଲି । ହଁ, ମୋ' ପାଖରେ ଯେଉଁ ଚାରିଜଣ ଛାତ୍ର ରହିଥିଲେ, ସେମାନଙ୍କୁ କିପରି କେତେଦୂର ସମୁଚିତ ଭାବରେ ଉଦ୍‌ବୋଧିତ କରାଯାଇ ପାରିବ, ତାହାରି ପ୍ରୟୋଗ କରି ଦେଖିବା ନିମନ୍ତେ ମୁଁ ଶ୍ରୀ ବିଅର୍କଡାଲ୍‌ଙ୍କ ଘରେ ରହି ଯାଇଥିଲି ।

ମୋ' କଳ୍ପନାର ନୂତନ ବିଦ୍ୟାଳୟଟିରେ ତ ମୁଁ ମୋଟାମୋଟି ଏହି ବୟସର ଛାତ୍ରମାନଙ୍କୁ ଗ୍ରହଣ କରିବାଲାଗି ସ୍ଥିର କରିଥିଲି । ତେଣୁ ଏମାନଙ୍କ ଜୀବନରେ ଏକ ଜାଗୃତି ଘଟାଇ ପାରିବା ହିଁ ମୋ' ନିମନ୍ତେ ଏକ ପ୍ରମାଣପତ୍ର ପରି ଅବଶ୍ୟ କାର୍ଯ୍ୟ କରିବ । ବରଷଟିଏ ସରିଆସିଲା ଏବଂ ମୋ' ବିଶ୍ୱାସଟା ସତେଅବା କିଞ୍ଚିତ ଦୁର୍ବଳ ହୋଇ ଯାଇଥିବା ପରି ମୋ'ର ଅନୁଭବ ହେଲା । ଭାରି ବିଚିତ୍ର କଥା ଯେ, ମୋ' ଜୀବନରେ ସର୍ବଦା ହିଁ ଠିକ୍ ସେହିଭଳି ପ୍ରକୃତରେ ଘଟିଛି; କୌଣସି କାର୍ଯ୍ୟକୁ ବସ୍ତୁତଃ ଆରମ୍ଭ କରିବା ପୂର୍ବରୁ ସବୁବେଳେ ମୋ'ର ବିଶ୍ୱାସ ସତେଯେପରି ଭାରି ଊଣା ହୋଇ ଯାଉଥିବା ପରି ମନେ ହୋଇଛି । ଏପରିକି, ସାଧାରଣ ସମାବେଶ ମାନଙ୍କରେ କିଛି କହିବି ବୋଲି ଛିଡ଼ା ହେବା ସମୟରେ ମଧ୍ୟ ସେହିଭଳି ଅନୁଭବ କରିଛି; ମୁଁ ଭାରି ବିକଳ ହୋଇ ଈଶ୍ୱରଙ୍କ ପାଖରେ ମୋ' ଭିତରର ଏକ ସଂଶୟକୁ ପ୍ରକଟ କଲାପରି କହିଛି, ଯେତେବେଳେ ସିଏ ମୋତେ କୌଣସି କାମରେ ନିୟୋଜିତ କରୁଛନ୍ତି, ସେଇଟିକୁ ସମ୍ପାଦିତ କରିବାଲାଗି ଆବଶ୍ୟକ ସାମର୍ଥ୍ୟ ମଧ୍ୟ ମୋତେ ସେ ନିଶ୍ଚୟ ଯୋଗାଇଦେବେ ତ ? ମାତ୍ର, ତା'ପରେ ମୁଁ ଏକ ସଙ୍କେତ ବା ସନ୍ଦେଶ ମଧ୍ୟ ପାଇଛି ଯେ, - ନାଇଁ, ସିଏ ମୋତେ କଦାପି ବିଫଳ କରାଇବେ ନାହିଁ ଏବଂ ମୁଁ ଅବଶ୍ୟ ସେହି ଅବଶ୍ୟକ ସାମର୍ଥ୍ୟଟିକୁ ଲାଭ କରିବି । ଏହିଭଳି ଯେ ସବୁସମୟରେ ଘଟୁଥିବା ଉଚିତ, ସେହି ବିଷୟରେ ଯେ ମୁଁ ଆଦୌ ସହମତ ହେବିନାହିଁ, ସେଥିରେ କୌଣସି ସନ୍ଦେହ ନାହିଁ । ଏବଂ, ଏହି ଘଟଣାଟିରେ ମଧ୍ୟ କାହିଁକି ଏକ ବ୍ୟତିକ୍ରମ ନହେବ ? ସେତେବେଳେ ଏହି ଜାତୀୟ ନାନା ଭାବନା ମୋତେ ଭାରି ନିମଗ୍ନ କରି ରଖିଥିଲା ।

ଏଥିପୂର୍ବରୁ ମୁଁ ଆପଣମାନଙ୍କୁ ଯେଉଁ ଘରଟି ବିଷୟରେ କହୁଥିଲି, ଏହାଭିତରେ ସେଇଟି କାହାକୁ ବିକ୍ରୀ ହୋଇ ଯାଇଥିଲା । ବିକ୍ରୀ ହୋଇଗଲା ଓ ପୁଣି ଖାଲି ହେଲା । ତାହାକୁ ବିକ୍ରୀ କରୁଥିବା ବ୍ୟକ୍ତିଙ୍କ ପାଖରେ ମୁଁ ଯାଇ ପହଞ୍ଚିଗଲି ଏବଂ ତାଙ୍କୁ ଆଉ ଆଠଟା ଦିନ ଅପେକ୍ଷା କରିବା ସକାଶେ ନିବେଦନ କରିଥିଲି । ତେବେ ମୁଁ ଇତିମଧ୍ୟରେ କୋପେନ୍‌ହେଗେନ୍ ଯାଇ କିଛି ଅର୍ଥସାହାଯ୍ୟ ପାଇବାର ସମ୍ଭାବନା ବିଷୟରେ ବୁଝି ଆସନ୍ତି । କାରଣ, ସେହି ସାହାଯ୍ୟ ବ୍ୟତୀତ ସ୍ୱୟଂ ଘରଟିକୁ କିଣିପାରିବାର ପ୍ରକୃତରେ କୌଣସି ପ୍ରଶ୍ନ ହିଁ ନଥିଲା । ଗୃହସ୍ୱାମୀ ଅପେକ୍ଷା କରିବାର ପ୍ରତିଶ୍ରୁତି ମଧ୍ୟ ଦେଲେ ଏବଂ ତହିଁ ଆରଦିନ ସକାଳୁ ମୁଁ ଅନୁକୂଳ କରି ବାହାରିଗଲି । ସମ୍ପୂର୍ଣ୍ଣ ରାସ୍ତା ମୁଁ ପାଦରେ ଚାଲିକରି ହିଁ ଯାଇଥିଲି । ରାଜଧାନୀରେ ପହଞ୍ଚି ସିଧା ଜଣେ ବନ୍ଧୁଙ୍କ ପାଖରେ ଯାଇ ପହଞ୍ଚିଥିଲି, ତାଙ୍କରି ଘରେ ରହିଲି, ରାତିରେ ତାଙ୍କରି ସୋଫା ଉପରେ ଶୋଇଲି । ସିଏ ମୋତେ ଅବଶ୍ୟ ସେପରି କିଛି ବୃହତ୍ ସାନ୍ତ୍ୱନା ଦେଇ ପାରିଲେନାହିଁ । କାରଣ ସିଏ ମୋତେ ଉତ୍ତର ଦେଇ କହିଲେ : ତୁମେ କାହାପାଖକୁ ଯିବ କହିଲ ! ଯେଉଁମାନେ ନିଜକୁ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର ଗୋଷ୍ଠୀର

ବୋଲି ଭାବୁଛନ୍ତି, ସେମାନେ ମୋଟେ ଏଭଳି ବ୍ୟକ୍ତି ନୁହନ୍ତି ଯେ ବିଗତ ବର୍ଷ ସେମାନେ ଯାହା ନିଷ୍ପତ୍ତି କରିଥିଲେ, ସେଇଟିକୁ ଏବର୍ଷଯାଏ ମଧ୍ୟ ମନେ ରଖିପାରିବେ । ସେମାନେ ହୁଏତ ଏକାବେଳେକେ ଭିନ୍ନ ଆଉ କ'ଣସବୁ ଭାବିବାକୁ ଆରମ୍ଭ କରି ଦେଇଥିବେ । ତେଣୁ, ସେମାନଙ୍କ ପାଖକୁ ଯାଇ କୌଣସି ଲାଭ ନାହିଁ । ହଁ, ମୁଁ କିନ୍ତୁ ତୁମକୁ ସିଧା ଗ୍ରୁଣ୍ଡ୍‌ଭିଗ୍‌ଙ୍କ ପାଖକୁ ନେଇଯାଇ ପାରିବି । ଆମେ ଉଭୟେ ତାଙ୍କପାଖରେ ଆସି ପହଞ୍ଚିଲୁ । ଆମେ ପହଞ୍ଚିବା ସମୟରେ ସିଏ ଛିଡ଼ା ହୋଇ ପାଇପ୍‌ରେ ଧୂମପାନ କରୁଥିଲେ ଏବଂ ଉହ୍ଲେଇ ଉପରେ ହାତ ରଖି ଉଷୁମ ହେଉଥିଲେ । ଇଏ ଶ୍ରୀଯୁକ୍ତ କଲ୍‌ଡ୍, ଫୁଇନ୍‌ରୁ ଆପଣଙ୍କ ପାଖକୁ ଆସିଛନ୍ତି ବୋଲି କହି ବନ୍ଧୁ ପ୍ରଥମେ ପରିଚୟ କରାଇ ଦେଇଥିଲେ । ଏବଂ, କଥା ଆରମ୍ଭ ହେଉ ହେଉ ମତପାର୍ଥକ୍ୟ ଦେଖା ଦେଇଥିଲା । ମୋର କଳ୍ପିତ ବିଦ୍ୟାଳୟକୁ ଯେଉଁମାନେ ଆସିବେ, ସେମାନଙ୍କର ବୟସ ୧୪, ୧୫ ବା ୧୬ ହୋଇଥିବ ବୋଲି ମୁଁ ସ୍ଥିର କରିଥିଲି । ଠିକ୍ ଧର୍ମୋପନୟନ ପରେ ପରେ ସେମାନେ ଆସିବେ । ଗ୍ରୁଣ୍ଡ୍‌ଭିଗ୍ ଆପତ୍ତି କରି କହିଥିଲେ ଯେ ସେମାନେ ୧୮ ବର୍ଷ ବୟସର ହେବା ପୂର୍ବରୁ ସେମାନଙ୍କୁ ନେଇ ମୋଟେ କିଛି କରି ହେବନାହିଁ । ମୁଁ ଏପରି ଉତ୍ତରଟିଏ ଦେଇଥିବାର ମୋ'ର ମନେ ପଡୁଛି: ସେହି ଅଞ୍ଚଳରେ କୃଷକମାନଙ୍କର ପ୍ରକୃତ ପରିସ୍ଥିତି ବିଷୟରେ ଗ୍ରୁଣ୍ଡ୍‌ଭିଗ୍ ହୁଏତ ଆଦୌ କିଛି ଅନୁମାନ କରି ପାରିବେନାହିଁ; କାରଣ ଅଠରବର୍ଷ ହେଲାବେଳକୁ ସେମାନେ ନିଜର ଭବିଷ୍ୟସଂସାର ନିମନ୍ତେ ନିଜ ପସନ୍ଦର ତରୁଣୀଟିଏ ତଲାଶ କରିବାରେ ସମ୍ଭବତଃ ଲାଗି ଯାଇଥିବେ, ଧୂମପାନ କରୁଥିବେ ଏବଂ ପାଇପ୍ କିମ୍ବା ଘଣ୍ଟାଦୋକାନ ମଧ୍ୟ ଦେଇ ସାରିଥିବେ । ସେତେବେଳେ ସେମାନଙ୍କର ଅନ୍ତର୍ଜାଗୃତି ଘଟାଇବାର ସକଳ ଚେଷ୍ଟା ପ୍ରକୃତରେ ବୃଥା ହିଁ ହେବ । ଏସବୁ ସତ୍ତ୍ୱେ ଜାଗୃତି ସମ୍ଭବ ହେବ ବୋଲି ବିଶପ୍ ତଥାପି ଉତ୍ତରରେ କହିଥିଲେ ଓ ମୁଁ ତଥାପି ରାଜୀ ହୋଇ ପାରିଲିନାହିଁ । ମୋ'ର ଯାହା ଅଭିଜ୍ଞତା ରହିଥିଲା, ସେହି ଅନୁସାରେ ମୋ'ର ମତଟି ହିଁ ଠିକ୍ ବୋଲି ମୁଁ ଦାବୀ କରୁଥିଲି । ନିଜ ଜୀବନରେ ଭୁଲ୍ ବି କରିଥିଲେ ମଧ୍ୟ ମୁଁ ନିଜ ମତରେ ସର୍ବଦା ଅବିଚଳିତ ରହିଆସିଛି । ବାସ୍ତବ କ୍ଷେତ୍ରରେ ପରେ ଆମ ବିଦ୍ୟାଳୟକୁ ଅଠର ବର୍ଷରୁ ଉଭୟ ଅଧିକ ଓ କମ୍ ବୟସର ଛାତ୍ରମାନେ ଆସିଛନ୍ତି ଏବଂ ଏଭଳି ମଧ୍ୟ ପ୍ରମାଣିତ ହୋଇଯାଇଛି ଯେ, ତୁଳନାତ୍ମକ ଭାବରେ ତଉଲି ଦେଖିଲେ, ଅଠର ବର୍ଷରୁ କମ୍‌ମାନଙ୍କ ଅପେକ୍ଷା ୧୮ ଓ ତହିଁରୁ ଅଧିକ ବୟସର ତରୁଣମାନଙ୍କୁ ପ୍ରକୃତରେ କିଞ୍ଚିତ୍ ଅଧିକ ସଫଳତା ସହିତ ପ୍ରଭାବିତ କରାଯାଇ ପାରିଛି । ହଁ, ଗ୍ରୁଣ୍ଡ୍‌ଭିଗ୍ ଓ ମୋ' ଭିତରେ ଉପୁଜିଥିବା ଏହି ମତପାର୍ଥକ୍ୟଟିର ଅବଶ୍ୟ ଏକ ସମାଧାନ ହୋଇ ଯାଇଥିଲା, କାରଣ ସିଏ ମୋ' ମତଟିକୁ ମାନି ନେଇଥିଲେ । ନଚେତ୍ ହୁଏତ ଏହାର କଦାପି କୌଣସି ଅନ୍ତ ହୋଇନଥାନ୍ତା, ମୁଁ କଦାପି ମୋ' ମତକୁ ପ୍ରତ୍ୟାହାର କରିନଥାନ୍ତି । ତା'ପରେ ତାଙ୍କୁ ମୁଁ

ମୋ'ର ଅସଲ କଥାଟି କହିଥିଲି; କହିଲି ଯେ ମୁଁ କିଛି ଅର୍ଥସାହାଯ୍ୟ ଆବଶ୍ୟକ କରୁଛି; ସିଏ ସେଥିପାଇଁ ପ୍ରତିଶ୍ରୁତି ଦେଲେ । ମୋ'ର ଯେଉଁ ବନ୍ଧୁଜଣକ ସେଠାରେ ଉପସ୍ଥିତ ଥିଲେ, ସିଏ ଅବାକ୍ ହୋଇ ପଚାରିଥିଲେ: ବର୍ତ୍ତମାନ ତ ଜମାରେ ଏକ କପର୍ଦ୍ଦକ ବି ନାହିଁ, ତେଣୁ ସାହାଯ୍ୟ କେଉଁଠୁ ଆସିବ ଓ କିଭଳି ଦିଆଯାଇ ପାରିବ । ''କେଉଁଠୁହେଲେ ଆସିବ, ଅବଶ୍ୟ ଆସିବ'' ବୋଲି ଗ୍ରୁଣ୍ଡ୍‌ଭିଗ୍ ଉତ୍ତର ଦେଇଥିଲେ । ତା'ପରେ ମୋତେ ପଚାରିଲେ ମୋ'ର ପ୍ରକୃତରେ କେତେ ପରିମାଣର ଅର୍ଥ ଦରକାର ଥିଲା । ମୋ ପାଖରେ ପାଞ୍ଚଶହ ଅଛି, ଆଉ ଛଅଶହ ଆବଶ୍ୟକ ହେବ ବୋଲି ମୁଁ ତାଙ୍କୁ କହିଲି । । କିନ୍ତୁ ତାହା ମୋତେ ଦାନସ୍ୱରୂପ ମିଳିବା ଉଚିତ, କାରଣ ମୁଁ ତାହାକୁ ପ୍ରକୃତରେ ଶୁଝିଦେଇ ପାରିବି ବୋଲି ମୋ'ର ମୋଟେ ବିଶ୍ୱାସ ହେଉନାହିଁ । ମୋ' ପାଖରେ ମୋଟ ୧୧୦୦ ହୋଇଗଲେ ମୋ' କାମଟି ବି ହୋଇଯିବ । ଗ୍ରୁଣ୍ଡ୍‌ଭିଗ୍ ପୁଣି ପଚାରିଥିଲେ, ଛଅଶହ ଆଉ ପାଞ୍ଚଶହ ମିଶି ଏଗାରଶହ ହେଲା ବୋଲି ମୁଁ ବୁଝିଲି ଯେ, ମାତ୍ର ସେହି ଅର୍ଥକୁ ନେଇ ତୁମେ କ'ଣ କରିପାରିବ ? ଏତେ ଅଳପ ପଇସାରେ କେବେ କିଛି ସମ୍ଭବ ହେଲାଣି ? ମୁଁ ସାଙ୍ଗେ ସାଙ୍ଗେ ଉତ୍ତର ଦେଇଥିଲି: ଆଜ୍ଞା, ଯଦି ଅଳପରେ କାମ ନହେବ, ତେବେ ବହୁତରେ ମଧ୍ୟ କଦାପି ହୋଇ ପାରିବନାହିଁ । ମାତ୍ର, ହାତରେ ଯଦି ଆଦୌ କିଛି ବି ନଥାଏ, ତା' ହେଲେ ମଧ୍ୟ କିଛି ସମ୍ଭବ ହେବନାହିଁ । ମୋ'ର କଥାକୁ ଶୁଣି ଗ୍ରୁଣ୍ଡ୍‌ଭିଗ୍ ପୁଣି ଉତ୍ତର ଦେଲେ: ବର୍ତ୍ତମାନ ତୁମେ ଯାଇ ତୁମ ଅଞ୍ଚଳର ସମର୍ଥ ଲୋକମାନଙ୍କୁ ଏକ ଆବେଦନ ଦ୍ୱାରା ଜଣାଅ ଯେ ତୁମେ ଗୋଟିଏ ନୂତନ ବିଦ୍ୟାଳୟ ଆରମ୍ଭ କରିବାକୁ ଯାଉଛ ଓ ସେମାନେ ସେହି କାର୍ଯ୍ୟପାଇଁ ନିଶ୍ଚୟ ସାହାଯ୍ୟ କରନ୍ତୁ । ଆଗ ସେହି ନିବେଦନପତ୍ରଟିକୁ ମୋ' ପାଖକୁ ଆଣି ଆସିବ । ସେଥିରେ ମୁଁ ସର୍ବପ୍ରଥମେ ସ୍ୱାକ୍ଷର କରିବି; ଦେଖିବା କ'ଣ ହେଉଛି, ମୋ' ନାଆଁଟି ରହିବା ଦ୍ୱାରା କିଛି ଫଳ ଫଳୁଛି କି ନାହିଁ ।

ଏହି ସବୁକିଛି ଘଟଣା ମୋତେ ସତେଅବା ମୋଟେ କାଲି ଘଟିଥିବା ପରି ଲାଗୁଛି । ବିଶପ୍‌ଙ୍କ ଠାରୁ ବିଦା ହୋଇ ଆମେ ବାହାରକୁ ଆସିଲୁ । ସାଙ୍ଗରେ ଯାଇଥିବା ବନ୍ଧୁଜଣକ ମୋତେ କୁଣ୍ଢାଇ ପକାଇ କହିଥିଲେ : ତୁମେ ପ୍ରକୃତରେ ଜଣେ ଅତ୍ୟନ୍ତ ଭାଗ୍ୟବାନ ପୁରୁଷ, - ଏଥର ଆଉ ଚନ୍ତାର କୌଣସି କାରଣ ନାହିଁ, ତୁମର ଅଭିଳାଷ ଅଲବତ୍ ପୂର୍ଣ୍ଣ ହେବ । ଯେତେବେଳେ ଗ୍ରୁଣ୍ଡ୍‌ଭିଗ୍ ସ୍ୱୟଂ ଏଥିରେ ଆଗ୍ରହ ପ୍ରକାଶ କଲେଣି, ତେବେ ସବୁ ଅବଶ୍ୟ ଠିକ୍ ଭାବରେ ହେବ ହିଁ ହେବ । ଆବଶ୍ୟକ ଛଅଶହ ମୁଦ୍ରା ପ୍ରକୃତରେ ସଂଗୃହୀତ ହୋଇଗଲା, ନିଜେ ବିଶପ୍ ପଚାଶ ମୁଦ୍ରା ଦାନ କରିଥିଲେ । ଆଉ କେତେ ବ୍ୟକ୍ତି ମଧ୍ୟ ଶହେ ବା ପଚାଶ ଦେଇଥିଲେ । ଏହିପରି ଭାବରେ ରୁଇସ୍‌ଲିଙ୍ଗଠାରେ ମୋ' କଳ୍ପନାର ବୟସ୍କ-ବିଦ୍ୟାଳୟଟି ଆରମ୍ଭ ହେଲା । ମାତ୍ର, କେବଳ ଜଣେମାତ୍ର ଛାତ୍ର ବିଷୟରେ ମୁଁ ସୁନିଶ୍ଚିତ ଥାଏ । ସିଏ ଠିକ୍ ନଭେମ୍ବର ପହିଲା ଦିନ ଆସି ପହଞ୍ଚି ଯାଇଥିଲା । ଏବଂ, ଅକ୍ଟୋବର ମାସ ସବାଶେଷ ଦିନ

ପର୍ଯ୍ୟନ୍ତ ଅନ୍ୟମାନେ କେହି ଆସିବେ ବୋଲି ସମ୍ପୂର୍ଣ୍ଣ ସଙ୍କେତଟିଏ ପ୍ରକୃତରେ ମିଳିନଥିଲା । ହଁ, ଅମୁକ ଅମୁକ ଆସିବେ ବୋଲି ମୁଁ, ଯା' ତା'ଠାରୁ ଶୁଣିବାକୁ ଅବଶ୍ୟ ପାଇଥିଲି; ମାତ୍ର ସମ୍ଭବତଃ ଲୋକମାନେ ଭାବୁଥିଲେ ଯେ ଏହି ବିଦ୍ୟାଳୟଟି ଏକ ବିଶେଷ ପ୍ରକାରର ହେବାକୁ ଯାଉଛି ଏବଂ ସେଠାରେ ଖର୍ଚ୍ଚ ମଧ୍ୟ ବେଶ୍ ଅଧିକ ଦେବାକୁ ପଡ଼ିବ । ମାସିକ ଖାଇବା ଆଦି ଖର୍ଚ୍ଚ ପ୍ରତ୍ୟେକ ଛାତ୍ର ପାଇଁ ଛଅମୁଦ୍ରା ଲେଖାଏଁ ଧାର୍ଯ୍ୟ ହୋଇଥିଲା । ତାହାରି ଭିତରେ ରହିବାର ଏବଂ ପାଠପଢ଼ାର ଖର୍ଚ୍ଚ । ପିତାମାତାମାନଙ୍କୁ ମୁଁ ଜବାବ ଦେଇଥିଲି ଯେ, ସେମାନଙ୍କର ପିଲାମାନେ ବିଦ୍ୟାଳୟରେ ଅଭୂତପୂର୍ବ ଭାବରେ ବହୁତକିଛି ପାଇବେ;- ସେମାନେ ଏଠାରେ ଏପରି ଜୀବନ୍ତ, କର୍ମଠ ଏବଂ ପୂର୍ଣ୍ଣୋତ୍ସାହ ହୋଇ ରହିବେ, ଯାହାର କି ପ୍ରକୃତରେ କୌଣସି ପୂର୍ବତୁଳନା ହୋଇ ପାରିବନାହିଁ । ତଥାପି ସେମାନେ ଭାବୁଥିଲେ ଯେ ସେମାନଙ୍କୁ ଏହା ଅତ୍ୟନ୍ତ ମହଙ୍ଗା ପଡ଼ିବ । ଏଠାରେ ଶିକ୍ଷାଲାଭ କରି ଆମ ପିଲାଏ କ'ଣସବୁ ହେବେ, ସେମାନେ ଲେଖାପଢ଼ା କିରାନିକାମ ପାଇପାରିବେ, ରାଜକାର୍ଯ୍ୟରେ ସ୍ଥାନ ପାଇବେ, - ଏହିଭଳି ନାନା ପ୍ରଶ୍ନ ମଧ୍ୟ ପଚରା ହେଉଥିଲା । ଆଗରୁ ରହି ଆସିଥିବା ଶିକ୍ଷାନୁଷ୍ଠାନ ମାନଙ୍କୁ ଏହିସବୁ ଆଶା ରଖି ହିଁ ତ ବାପାମାଆମାନେ ନିଜ ପିଲାଙ୍କୁ ପଠାଉଥିଲେ ! ସେହିପରି କୌଣସି ସୁବିଧା ମୋ'ର ଏହି ବିଦ୍ୟାଳୟରୁ ମଧ୍ୟ ମିଳିବ ବୋଲି ସମସ୍ତେ ବିଶ୍ୱାସ କରୁଥିଲେ । ମାତ୍ର ଯାହା ହେଉ, ନଭେମ୍ବର ପହିଲାଦିନ ବିଦ୍ୟାଳୟ ଦଶଜଣ ଛାତ୍ରଙ୍କୁ ନେଇ ଆରମ୍ଭ ହେଲା ଏବଂ ପରେ ସେହି ଶୀତଋତୁରେ ହିଁ ସଂଖ୍ୟା ପନ୍ଦରକୁ ବୃଦ୍ଧି ପାଇଥିଲା । ପ୍ରଥମ ଦଶଜଣଯାକ ଘୋଡ଼ା ଯୋଚା ହୋଇଥିବା ଗାଡ଼ୀମାନଙ୍କରେ ଆସି ପହଞ୍ଚିଥିଲେ ଏବଂ ଅତ୍ୟନ୍ତ ପ୍ରସନ୍ନ ଥିବାର ମନେ ହେଉଥିଲେ । ସେମାନେ ପ୍ରସନ୍ନ ଥିଲେ, କାରଣ ସକଳ ବାଧା ସତ୍ତ୍ୱେ ସେମାନେ ନିଜ ଘରମାନଙ୍କରୁ ଅନୁମତି ପାଇଲେ ଏବଂ ବିଦ୍ୟାଳୟରେ ଆସି ପହଞ୍ଚି ପାରିଥିଲେ । ମୁଁ ବି କେଡ଼େ ଖୁସୀ ହୋଇଗଲି,- ପ୍ରକୃତରେ କହିବାକୁ ଗଲେ ମୋ' ଜୀବନସାରା କେବେହେଲେ ଏତେ ବେଶୀ ଖୁସୀ ଅନୁଭବ କରିନଥିଲି,- ଅବଶ୍ୟ ମୋ' ଜୀବନରେ ମଧ୍ୟ ଖୁସୀ ହେବାର ବହୁତ ଅବସର ପୂର୍ବରୁ ମଧ୍ୟ ମିଳିଥିଲା । ଆମେ ପୁରାତନ କାହାଣୀଗୁଡ଼ିକରୁ ହିଁ ଆମର ଶିକ୍ଷାଦାନ ସୁରୁ କରି ଦେଇଥିଲୁ ।

ବିଶପ୍ ଗ୍ରୁଣ୍ଡଭିଗ୍‌ଙ୍କର ବିଶ୍ୱ-ଇତିହାସରୁ ଏଠୁ ସେଠୁ ଅଂଶଗୁଡ଼ିକୁ ବାଛି ମୁଁ ଛାତ୍ରମାନଙ୍କୁ ପଢ଼ି ଶୁଣାଉଥିଲି । ପ୍ରାଚୀନ, ବର୍ତ୍ତମାନ ଓ ମଧ୍ୟଯୁଗ- ଏହି ତିନିକାଳ ମଧ୍ୟରେ କିପରି ଏକ ସମ୍ବନ୍ଧଗତ ଡ଼ୋର ସର୍ବଦା ଲାଗି ରହିଛି, ସେହି କଥାଟି ଦର୍ଶାଇ ଦେବାକୁ ଚେଷ୍ଟା ମଧ୍ୟ କଲି । ଛାତ୍ରମାନେ ତାହାକୁ ଠିକ୍‌ପ୍ରକାରେ ବୁଝି ପାରିଲେ ବୋଲି ଅବଶ୍ୟ ଆଦୌ ଲାଗିଲାନାହିଁ । କିନ୍ତୁ କାହାଣୀଗୁଡ଼ିକ ବେଳକୁ ସେପରି ହୋଇନଥିଲା । ସେମାନେ ଅତ୍ୟନ୍ତ ସ୍ପଷ୍ଟ ଭାବରେ ସବୁ ବୁଝିପାରିଲେ ଏବଂ ଆମର ଲକ୍ଷ୍ୟଟି ହାସଲ ହୋଇ ପାରିଥିଲା । ବର୍ତ୍ତମାନ

ମଧ୍ୟ ଯଥାର୍ଥ ପ୍ରେରଣାଗୁଡ଼ିକ ସେମାନଙ୍କ ଭିତରେ ଜୀବନ୍ତ ହୋଇ ରହିଛି ବୋଲି ଲକ୍ଷ୍ୟ କରାଯାଇ ପାରିବ । ଶିକ୍ଷାଦାନ ସମୟରେ ମୁଁ କେଉଁ ପ୍ରଣାଳୀଟି ଅନୁସାରେ ଏସବୁ କରୁଥିଲି ବୋଲି ମୋତେ ଯେତେବେଳେ ପ୍ରଶ୍ନ କରାଗଲା, ମୁଁ ସେତେବେଳେ ଉତ୍ତର ଦେଇଥିଲି ଯେ, ଆମର ପ୍ରକୃତରେ ସେପରି କୌଣସି ନିର୍ଦ୍ଦିଷ୍ଟ ପ୍ରଣାଳୀ ନଥିଲା । ଏବଂ, ପୁନଶ୍ଚ, ସମଗ୍ର କାର୍ଯ୍ୟକ୍ରମଟିର ଯୋଜନା ବିଷୟରେ ଯେତେବେଳେ ପଚରା ଯାଇଥିଲା, ସେତେବେଳେ ମଧ୍ୟ ମୁଁ ଉତ୍ତର ଦେଇ କହିଥିଲି ଯେ ଆମର ସେପରି କୌଣସି ଧରାବନ୍ଧା ଯୋଜନା ନଥିଲା । ତେବେ, ଯଦି ନିର୍ଦ୍ଦିଷ୍ଟ କୌଣସି ପଦ୍ଧତି ନାହିଁ କିମ୍ବା ଯୋଜନା ବି ନାହିଁ, ତେବେ ଆମେ ବିଦ୍ୟାଳୟଟିଏ ବା କାହିଁକି ଆରମ୍ଭ କଲୁ ବୋଲି ମଧ୍ୟ ପ୍ରଶ୍ନ କରା ଯାଇଥିଲା । ମୁଁ ଏଇଟିର ବି ଉତ୍ତର ଦେଇ କହିଥିଲି, ''ଯେତେବେଳେ ମୋତେ ଅଠର ବର୍ଷ ବୟସ ହୋଇଥିଲା, ସେତେବେଳେ ମୁଁ ଈଶ୍ୱରଙ୍କୁ ଭଲ ପାଇ ଶିଖିଥିଲି ଏବଂ ଈଶ୍ୱରଙ୍କୁ ଭଲ ପାଉଥିବା ହେତୁ ମୋ' ପ୍ରତିବେଶୀ ଅନ୍ୟ ମନୁଷ୍ୟମାନଙ୍କୁ ମଧ୍ୟ ଭଲ ପାଇଥିଲି । ଏବଂ, ତଦ୍ୱାରା ମୁଁ ଯେଉଁ ଅପରିମିତ ଆନନ୍ଦ ଲାଭ କରିଥିଲି, ସେତେବେଳେ ତାହାରିଦ୍ୱାରା ପ୍ରେରିତ ହୋଇ ହିଁ, ମୋ'ର ପ୍ରତିବେଶୀଟି ମଧ୍ୟ ଯେପରି ଏହିଭଳି ଆନନ୍ଦ ଅନୁଭବ କରିବାକୁ ସମର୍ଥ ହେବ, ସେଇଥିରେ ମୋ'ର ଯଥାସାଧ୍ୟ ସମୟ ଓ ଶକ୍ତି ଦେଇ ପାରିବା ନିମନ୍ତେ ମୁଁ ସେହି ସମୟରୁ ହିଁ ସ୍ଥିର କରି ନେଇଥିଲି । ଏବଂ, ବିଦ୍ୟାଳୟ ପ୍ରକୃତରେ ସେହି କାର୍ଯ୍ୟଟିକୁ କରିବ: ସାଧାରଣ ସବୁ ମନୁଷ୍ୟଙ୍କୁ ଈଶ୍ୱରଙ୍କୁ, ନିଜ ପ୍ରତିବେଶୀଙ୍କୁ ତଥା ନିଜର ପିତୃଭୂମିକୁ ଭଲ ପାଇ ଶିଖାଇବ । ପ୍ରଶ୍ନକର୍ତ୍ତା ମୋ'ର ଉତ୍ତରଟି ଶୁଣିବାପରେ ଅତ୍ୟନ୍ତ ଆହ୍ଲାଦରେ 'ବାସ୍ତବିକ, ବାସ୍ତବିକ, ଏଇଟି ପ୍ରକୃତରେ ଗୋଟିଏ ଅତ୍ୟୁତ୍ତମ ଲକ୍ଷ୍ୟ' ବୋଲି କହି ସମ୍ମତି ଜଣାଇଥିଲେ ।''

ସେହି ଦିନଟିଠାରୁ ଇତିମଧ୍ୟରେ ମୁଁ ଆହୁରି ବହୁତ ଆଗକୁ ମଧ୍ୟ ପହଞ୍ଚି ପାରିଲିଣି: ବର୍ତ୍ତମାନ ତ ଆମେ ଆମ ବିଦ୍ୟାଳୟଟିକୁ ଗୋଟିଏ ଦୁର୍ଗ ପରି ତିଆରି କରି ଦେଲୁଣି । ବିଦ୍ୟାଳୟର ଗୃହ ଏବଂ ସଂଲଗ୍ନ ଭୂମିଟି ମିଶି ଆମକୁ ୨୫୦୦୦ ମୁଦ୍ରା ଖର୍ଚ୍ଚ କରିବାକୁ ପଡ଼ିଛି । ଏବଂ, ଆହୁରି ଅଧିକ ମହତ୍ତ୍ୱପୂର୍ଣ୍ଣ କଥାଟି ହେଉଛି ଯେ, ସମଗ୍ର ଅନୁଷ୍ଠାନଟି ସଂପ୍ରତି ନିଜର ଖର୍ଚ୍ଚକୁ ନିଜେ ତୁଲାଇ ପାରୁଛି । ଚଳିତ ଶୀତଋତୁରେ ଆମ ବିଦ୍ୟାଳୟରେ ସତୁରି ଜଣ ବୟସ୍କ ପୁଅପିଲା ଆସି ଯୋଗ ଦେଇଥିଲେ ଏବଂ ଖରାମାସରେ ୫୦ ଜଣ କୃଷକକନ୍ୟା ବି ଶିକ୍ଷାଲାଭ କରିବାକୁ ଆସିଥିଲେ । ଏବଂ, ଫସଲ ଅମଳ ସମୟର ଛୁଟୀବେଳେ ପଚାଶ ଜଣ ଶିକ୍ଷକ ମଧ୍ୟ ଆସିଥିଲେ । ଏମାନେ ସମସ୍ତେ ଜ୍ଞାନଆହରଣ ନିମନ୍ତେ ଆସିଥିଲେ, ଆତ୍ମଜାଗରଣ ନିମନ୍ତେ ମଧ୍ୟ ଆସିଥିଲେ । ବର୍ତ୍ତମାନ ଏତେସବୁ ବିଷୟ ଆପଣମାନଙ୍କୁ କହିବାପରେ ଶେଷରେ ଏତିକି ନିବେଦନ କରିବାକୁ ଇଚ୍ଛା କରିବି ଯେ, ତଥ୍ୟଜ୍ଞାନ ନାମକ ସେହି ପ୍ରଥମ କ୍ଷେତ୍ରଟିରେ ମୋ'ର କ୍ୱଚିତ୍ କୌଣସି ଦଖଲ ରହିଛି, - ମାତ୍ର ଆତ୍ମଜାଗରଣ

କ୍ଷେତ୍ରରେ ମୁଁ କେବେହେଲେ ଶିକ୍ଷାର୍ଥୀମାନଙ୍କ ପ୍ରତି ମୋ'ର କରଣୀୟରେ କୌଣସି ଅବହେଳା ବା ଅସମର୍ଥତା ପ୍ରଦର୍ଶନ କରିନାହିଁ । ମୁଁ ଆଗ ଅନ୍ତରଟିକୁ ଜାଗୃତ କରିଆଣେ (oplive) ଏବଂ ତା'ପରେ ଯାଇ ପାଠ ବା ତଥ୍ୟଜ୍ଞାନ ରୂପେ ଛାତ୍ରମାନଙ୍କୁ କିଛି ପ୍ରଦାନ କରିବାକୁ ଚେଷ୍ଟା କରେ(oplyse) । ଅଥାବ, ଏପରି ମଧ୍ୟ ଅନ୍ତତଃ ହୋଇଥାଏ ଯେ,ଅନ୍ତର୍ଜାଗୃତି ଘଟିବା ତଥା ଶିକ୍ଷାଲାଭ କରିବା ସେହି ଗୋଟିଏ ସମୟରେ ହିଁ ହୋଇଥାଏ । ଏବଂ, ମୁଁ ଭାବୁଛି ଏହାହିଁ ହେଉଛି ଯଥାର୍ଥ ମାର୍ଗ, - କାରଣ ଯେକୌଣସି ବ୍ୟକ୍ତିର ଜୀବନରେ ଅନ୍ତର୍ଜାଗରଣ ହିଁ ସର୍ବପ୍ରଥମ ଆବଶ୍ୟକତା ହୋଇ ରହିଥାଏ । ଆମ ବିଦ୍ୟାଳୟରେ ପାଠ୍ୟବିଷୟ ଦ୍ୱାରା ଜଣେ ବ୍ୟକ୍ତିକୁ ଶିକ୍ଷିତ କରାଇବା ତୁଳନାରେ ତା'ର ଅନ୍ତର ଭିତରେ ଆବଶ୍ୟକ ଜାଗରଣଟିକୁ ସମ୍ଭବ କରିବା ହିଁ ମୋ' ଲାଗି ଅଧିକ ମହତ୍ତ୍ୱପୂର୍ଣ୍ଣ ହୋଇ ରହିଥାଏ ।

ଅବଶ୍ୟ ଏହା ସତ ଯେ ଆମେ ପାଠ ବି କିଛି କିଛି ପଢ଼ାଉ, - ମାତ୍ର ପ୍ରଥମେ ଅଭୀଷ୍ଟ ଅନ୍ତର୍ଜାଗରଣଟି ପ୍ରଥମେ ଘଟିସାରିଲେ ପ୍ରାପ୍ତ ହେଉଥିବା ପାଠଜ୍ଞାନ ମଧ୍ୟ ଯଥାର୍ଥରେ ଫଳପ୍ରଦ ହୋଇଥାଏ । ଆପଣମାନେ ହୁଏତ ବର୍ତ୍ତମାନ ମୋତେ ପ୍ରଶ୍ନ କରିବେ, ପ୍ରଥମେ ଅନ୍ତର ଭିତରେ ଜାଗୃତି ଘଟାଇ ତା'ପରେ ଯାଇ ଶିକ୍ଷାପ୍ରଦାନ କରିବାର ଏହି ପ୍ରଣାଳୀଟିକୁ ମୁଁ ପ୍ରକୃତରେ କିପରି ଆବିଷ୍କାର କରି ପାରିଲି ଅଥବା ଅନ୍ତର୍ଜାଗରଣ ଏବଂ ଶିକ୍ଷାଦାନ ଯୁଗପଦ୍ ଭାବରେ ଘଟି ପାରିବାର ମାର୍ଗଟିର ବାର୍ତ୍ତାଟି ମୁଁ କିପରି ପାଇଲି । ବା, ଆପଣମାନେ ପଚାରିବେ, ମୁଁ ତ ଆଦୌ କୌଣସି ଦେବଦୂତ ବା prophet ନୁହେଁ ଏବଂ ପ୍ରକୃତରେ ଆଦୌ କୌଣସି ବିଦ୍ୟାଳୟରେ ପ୍ରବେଶ କରି ମଧ୍ୟ ସେହି ପଦ୍ଧତିଟିକୁ ଶିକ୍ଷା କରିନାହିଁ, - ତେବେ ମୁଁ କିଭଳି ଏହାର ରହସ୍ୟଟିକୁ ଲାଭ କରିପାରିଲି, ମୁଁ କିପରି ଜଣେ ଗଣଶିକ୍ଷକ ହୋଇ ପାରିଲି । ଏହାର ଉତ୍ତର ଦେଇ ମୁଁ ଏତିକି କହିବି ଯେ, ମୁଁ ଯେତେବେଳେ ଶିକ୍ଷାଦାନର ଅଭିପ୍ରାୟ ପୋଷଣ କରି ବାହାରିଲି, ସେତେବେଳେ ମୁଁ ଏପରି ସାଧାରଣ ମନୁଷ୍ୟଙ୍କର ମେଳରେ ଆସି ପହଞ୍ଚି ଯାଇଥିଲି, ଯେଉଁମାନେ କି ପ୍ରକୃତରେ ଆଦୌ କୌଣସି ଶିକ୍ଷା ଗ୍ରହଣ କରିବା ସକାଶେ ଯୋଗ୍ୟ ନଥିଲେ । ସେମାନଙ୍କ ଭିତରେ ତେଣୁ ପ୍ରଥମେ ଏକ ଅନ୍ତର୍ଜାଗରଣ ଘଟାଇବାକୁ ହୋଇଥିଲା । ବିଚରା ନିତାନ୍ତ ସରଳ ସାଧାରଣ ମନୁଷ୍ୟମାନେ,- ସେମାନେ ଶିକ୍ଷା ବୋଲି ଆଗରୁ କିଛି ବିଷୟରେ ମଧ୍ୟ ଅବଗତ ନଥିଲେ । ତେଣୁ, ଆଗ ଅନ୍ତର ଭିତରେ ଏକ ଜାଗୃତି ସମ୍ଭବ ନକଲେ, ଆବଶ୍ୟକ କ୍ଷୁଧାଟିକୁ ସୃଷ୍ଟି କରି ନପାରିଲେ ସେମାନଙ୍କୁ କ'ଣ ବା ଶିକ୍ଷା ଦେବା ସମ୍ଭବ ହୋଇଥାଆନ୍ତା ? ହଁ, ରାଜଧାନୀ କୋପେନ୍‌ହେଗେନ୍‌ର ବିଶ୍ୱବିଦ୍ୟାଳୟର ମୁଁ ଯେଉଁ ଛାତ୍ରମାନଙ୍କର ସମ୍ପର୍କରେ ଆସିଛି, ସେହି ମନୁଷ୍ୟମାନଙ୍କୁ ହୁଏତ ପ୍ରଥମେ କୌଣସି ଅନ୍ତର୍ଜାଗୃତି ନଘଟାଇ ଶିକ୍ଷାଦାନ କରିବା ସମ୍ଭବ ହୋଇପାରେ ଏବଂ ସେମାନଙ୍କ କ୍ଷେତ୍ରରେ ମୁଁ ଅନେକ ସମୟରେ ସେହିପରି ହିଁ କରିଛି ।

ଏବଂ ତାହାକୁ ପ୍ରକୃତରେ ଏକ ପ୍ରଣାଳୀ ହିସାବରେ ସହଜତମ ବୋଲି କୁହାଯାଇ ପାରିବ । ମାତ୍ର, ମୁଁ ଗ୍ରାମଅଞ୍ଚଳରେ ଯେଉଁଭଳି ମନୁଷ୍ୟମାନଙ୍କର ସମ୍ପର୍କରେ ଆସିଲି, ସେମାନଙ୍କ ସକାଶେ ଏକ ଅନ୍ୟଭଳି ପଦକ୍ଷେପ ଗ୍ରହଣ କରିବାକୁ ହିଁ ପଡ଼ିଲା । ମୋ'ର ପୂର୍ଣ୍ଣ ବିଶ୍ୱାସ ହେଉଛି ଯେ, ଏହି ଦେଶର ସାଧାରଣ ମନୁଷ୍ୟମାନଙ୍କୁ ଆମେ ଯେତିକି ଅଧିକ ପରିମାଣରେ ଜାଣିବା, ସେତିକି ଅଧିକ ବୁଝିବାକୁ ସମର୍ଥ ହେବା ଯେ, ସେମାନେ ଏହି ରାଜଧାନୀରେ ଥାଆନ୍ତୁ ଅଥବା ଗ୍ରାମାଞ୍ଚଳରେ ଥାଆନ୍ତୁ, ପ୍ରଥମେ ସେମାନଙ୍କ ଭିତରେ ଏକ ଅନ୍ତର୍ଜାଗରଣ ନଘଟାଇ ଆମେ ସେମାନଙ୍କୁ ଆଦୌ କୌଣସି ଶିକ୍ଷା ଦେଇ ପାରିବାନାହିଁ । କିମ୍ବା, ଅନ୍ତର୍ଜାଗରଣ ଏବଂ ଶିକ୍ଷାଦାନ, ଏହି ଉଭୟ କାର୍ଯ୍ୟକୁ ଆମକୁ ଯୁଗପତ୍ ଭାବରେ ହିଁ କରିବାକୁ ପଡ଼ିବ ।''

ଶ୍ରୀ କଲ୍‌ଡ୍ ତାଙ୍କର ବକ୍ତବ୍ୟଟିକୁ ଶେଷ କଲେ । ସେଦିନ ମଙ୍ଗଳବାର, ସେପ୍ଟେମ୍ବର ମାସ ଏଗାର ତାରିଖ । ଶ୍ରୋତାମାନଙ୍କର ସଂଖ୍ୟା ଅନେକ । ଗୋଟିଏ ବିବରଣୀରୁ ଜଣାଯାଏ ଯେ ସେଦିନ ସେହି ଅବସରରେ ଡେନ୍‌ମାର୍କ୍ ଦେଶର ବିଧବା ରାଣୀ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଆପଣାର ଦୀର୍ଘ ବକ୍ତବ୍ୟଟିକୁ ସମ୍ପୂର୍ଣ୍ଣ କରି ଶ୍ରୀଯୁକ୍ତ କଲ୍‌ଡ୍ ବକ୍ତାର ଆସ୍ଥାନଟିରୁ ତଳକୁ ଓହ୍ଲାଇ ଯାଇଥିଲେ । ବିଧବା ରାଣୀ କାରୋଲିନ୍‌ଙ୍କର ଘରୋଇ ସେକ୍ରେଟରୀ ସେତେବେଳେ ତାଙ୍କ ପାଖକୁ ଆସି ତାଙ୍କୁ କହିଥିଲେ :

''ଆଜ୍ଞା, ବିଧବା ରାଣୀମହୋଦୟା ଆପଣଙ୍କୁ ପ୍ରଣାମ ଜଣାଇଛନ୍ତି । ସିଏ ଆପଣଙ୍କ ସହିତ ଟିକିଏ କଥା ହେବାକୁ ଚାହୁଁଛନ୍ତି ଓ ଆପଣଙ୍କର ଭାଷଣ ନିମନ୍ତେ ଆପଣଙ୍କୁ ଧନ୍ୟବାଦ ଦେବାକୁ ଇଚ୍ଛା କରୁଛନ୍ତି ।''

କଲ୍‌ଡ୍ ଶୁଣିଲେ ଓ କେତେ ମୁହୂର୍ତ୍ତ ପାଇଁ ମୋଟେ କିଛି କହିନଥିଲେ ।

''ନାଇଁ, ନାଇଁ,'' - ସିଏ ତା'ପରେ ମୁହଁ ଖୋଲିଲେ, ''ମୁଁ ତାହା କରି ପାରିବିନାହିଁ ।''

କ'ଣ ପାଇଁ କରି ପାରିବେନାହିଁ, କଲ୍‌ଡ୍ ତାହାର କୌଣସି କାରଣ ଦେଇନଥିଲେ ।

ଏଥିରେ ବିଧବା ରାଣୀ ମହୋଦୟାଙ୍କର ମନରେ ନିଶ୍ଚୟ ଦୁଃଖ ହୋଇଥିବ । ଶ୍ରୀଯୁକ୍ତ କଲ୍‌ଡ୍‌ଙ୍କର ଭାଷଣ ଶୁଣି ସେ ଅତ୍ୟନ୍ତ ପ୍ରୀତ ହୋଇ ଯାଇଥିଲେ । ତାଙ୍କ ସ୍କୁଲରେ ମଧ୍ୟ ରାଣୀ କେତେଜଣ ଅନାଥ ପିଲାଙ୍କୁ ନେଇ ଛାଡ଼ିଥିଲେ । ତାଙ୍କର ସେଭଳି ଆଚରଣରେ ଅନେକେ ଅତ୍ୟନ୍ତ ଅପ୍ରସନ୍ନ ହୋଇଥିଲେ ।

ଖରାମାସ ପରେ ସେକ୍ରେଟରୀ ମହାଶୟ କାର୍ଯ୍ୟବଶତଃ ଡାଲୁମ୍ ଯାଇଥିଲେ ।

କାର୍ଯ୍ୟ ସାରି ସେଠୁ ବାହାରୁଛନ୍ତି, ସେତିକି ବେଳେ କଲ୍‌ଲ୍ ତାଙ୍କୁ କହିଲେ :

''ଆପଣ ତ ବହୁତ ସମୟରେ ବିଧବା ରାଣୀମାଆଙ୍କ ସହିତ ଭେଟିବାକୁ ଯାଉଥିବେ !''

''ହଁ, ବହୁତ ସମୟରେ। ଏବଂ, ଆପଣଙ୍କୁ ଅବଶ୍ୟ କହିବି ଯେ, ଆପଣ ସେଥର ତାଙ୍କୁ ଯେପରି ଉତ୍ତର ଦେଇଥିଲେ, ତାହା ତାଙ୍କର ଅନ୍ତରକୁ ଖୁବ୍ ବାଧିଲା ।''

''ସେକଥା ମୁଁ ସ୍ପଷ୍ଟ ବୁଝିପାରୁଛି । ମୁଁ ଯେ ଆଉପ୍ରକାରେ ଉତ୍ତର ଦେଇ ପାରିଲି ନାହିଁ, ସେଥିପାଇଁ ମୁଁ ମଧ୍ୟ ଅତିଶୟ ବ୍ୟଥିତ ହୋଇଥିଲି ।''

''କିନ୍ତୁ ସେଦିନ କେଉଁଠି କ'ଣ ପ୍ରତିବନ୍ଧକ ହେଲା, କହିଲେ ?''

କ୍ରିଷ୍ଟେନ୍ କଲ୍‌ଲ୍ ଉତ୍ତର ଦେଇ କହିଥିଲେ, ''ଗୋଟିଏ କଥା ପାଇଁ ମୁଁ ଜୀବନଯାକ ସଂଗ୍ରାମ କରି ଆସିଛି ଯେ, ଯେକୌଣସି ସ୍ଥିତିରେ ମଧ୍ୟ ମୁଁ ନିଜ ପାଖରେ କେବେହେଲେ ଅସାଧୁ ହେବିନାହିଁ। ଅର୍ଥାତ୍, ଯେତେବେଳେ ଯାହା ଭାବୁଥିବି, ଠିକ୍ ସେହିପରି ଆଚରଣ କରିବି । ତେବେଯାଇ ମୁଁ ନିଜର ଅନ୍ତରାତ୍ମା ପାଖରେ ନିଜର କର୍ତ୍ତବ୍ୟ କରିପାରିବି ଓ ଆଉକାହାରି କୌଣସି କାମରେ ମଧ୍ୟ ଆସିବି । ମାତ୍ର, ସେଦିନ କାହିଁକି ମୋତେ ଏକ ସଂଶୟ ଆଚ୍ଛନ୍ନ କରି ପକାଇଲା, କିଛି ଭୟ ମଧ୍ୟ ଲାଗିଲା । ମୁଁ ଭାବୁଥିଲି, ମୁଁ ସାଧାରଣ କୃଷକଟିଏ ଓ ଜଣେ ପ୍ରଜା ଡେନ୍‌ମାର୍କ୍‌ର ରାଣୀଙ୍କ ପାଖରେ ଠିଆ ହୋଇଥିବି ଓ ତାଙ୍କ ସହିତ କଥା କହୁଥିବି ଏବଂ ତେଣେ ଅନ୍ୟ ଲୋକେ ବସି ସେହି ଦୃଶ୍ୟଟିକୁ କଟମଟ ଆଖିରେ ଦେଖିବାରେ ଲାଗିଥିବେ ଓ କିପରି କ'ଣ ଆଚରଣ କରୁଛି, ତାହା ବିଷୟରେ ବିଚାର କରିବାରେ ଲାଗିଥିବେ, - ମୁଁ ସେଥିରେ କେବେହେଲେ ରାଜୀ ହୋଇ ପାରିନଥାନ୍ତି । - ଆପଣ ଅନୁଗ୍ରହ କରି ତାଙ୍କୁ ମୋ'ର ପ୍ରଣାମ ଦେବେ ଓ ମୋ'ର ଏହି କଥାଟି ମଧ୍ୟ ତାଙ୍କୁ କହିବେ ।''

କେବଳ ଡେନ୍‌ମାର୍କ୍‌ର ନୁହେଁ, ସାରା ପୃଥିବୀର ଶିକ୍ଷାପ୍ରୟୋଗର ଇତିହାସରେ ଦେଢ଼ଶହ ବର୍ଷ ପରେ ମଧ୍ୟ କଲ୍‌ଲ୍ ଏକ ବିସ୍ମୟ ହୋଇ ରହିଛନ୍ତି। ତାଙ୍କ ଜୀବନର ସାନବଡ଼ ବିଭିନ୍ନ ଘଟଣାକୁ ଯିଏ ଯେତେ ଉଖାଡ଼ି ଦେଖିବାକୁ ଇଚ୍ଛା କରିବ, ସିଏ ହୁଏତ ସେତିକି ବିସ୍ମିତ ହୋଇଯିବ। କାହାକୁ ଅନାଇ ବା କାହା ବିଷୟରେ ଜାଣି ବିସ୍ମୟ ଜାତ ହେଉଥିବା ସମୟରେ ସେହି ବ୍ୟକ୍ତିଟି ଆମଠାରୁ ସତେଅବା ବହୁତ ଉଚ୍ଚରେ ଏବଂ ବହୁତ ଦୂରରେ ଦୃଶ୍ୟମାନ ହେବାକୁ ଆରମ୍ଭ କରେ ଏବଂ ଆମଠାରୁ ଘୁଞ୍ଚି ଘୁଞ୍ଚି ଯିବାରେ ଲାଗିଥାଏ। ମାତ୍ର, କଲ୍‌ଲ୍‌ଙ୍କ ବେଳକୁ ତାହାର ଠିକ୍ ବିପରୀତ ଅନୁଭବଟିଏ ହୋଇଥାଏ କାହିଁକି କେଜାଣି ? ତାଙ୍କ

ଜୀବନରେ ପ୍ରାୟ କିଛିହେଲେ ବଡ଼ ବଡ଼ ଘଟଣା ଥିଲାପରି ଲାଗେନାହିଁ। ସବୁ ସାନ ସାନ ଘଟଣା, ସାନ ସାନ ସମ୍ପର୍କ ଏବଂ ସାନ ସାନ ମନ୍ତବ୍ୟ। ତଥାପି ଅତ୍ୟନ୍ତ ଅନନ୍ୟସାଧାରଣ। ମଣିଷଟି ବଡ଼ ସାଧାରଣ, ମାତ୍ର ବଞ୍ଚିବାଟି ଏକାବେଳେକେ ଅନନ୍ୟସାଧାରଣ। ତାଙ୍କର ସମକାଳୀନ ନିକୋଲାଇ ଗ୍ରୁଣ୍ଡ୍ଭିଗ୍ ଯେତିକି ଅସାଧାରଣ, କ୍ରିଷ୍ଟେନ୍ କଲ୍ଡ୍ ସେତିକି ସାଧାରଣ। ଅସାଧାରଣ ବୋଲି ସ୍ୱୀକୃତ ହେବାର ଯାବତୀୟ ସାଧାରଣ ସନ୍ତକମାନ ଗ୍ରୁଣ୍ଡ୍ଭିଗ୍‌ଙ୍କ ଠାରେ ସର୍ବଦା ବାରି ହୋଇ ପଡୁଥିଲା। ସିଏ ରାଜଧାନୀରେ ଥିଲେ, ପାଦ୍ରୀ ଥିଲେ, କବି ଓ ଦ୍ରଷ୍ଟା ମଧ୍ୟ ଥିଲେ। କଲ୍ଡ୍ ଗାଆଁରେ କୃଷକମାନଙ୍କ ଭିତରେ ରହିଥିଲେ, ରାଜଧାନୀକୁ ପାଦରେ ଚାଲି ଚାଲି ଆସୁଥିଲେ। ଆମେ ଗ୍ରୁଣ୍ଡ୍ଭିଗ୍‌କୁ ଧନ୍ୟ ବୋଲି କହିବା, କାରଣ ସିଏ କଲ୍ଡ୍‌କୁ ନିଜର ଜଣେ ପରିପୂରକ ସୋଦରରୂପେ ଚିହ୍ନିନେଇ ପାରିଥିଲେ।

## - ୪ -

ହଁ, ଗୋଟିଏ ବିସ୍ମୟ ବିସ୍ମୟ-ଉଦ୍ରେକକାରୀ ବ୍ୟକ୍ତି ବା ବସ୍ତୁଟିକୁ ସତେଅବା ଦୂରକୁ ଦୂରକୁ ଉଚ୍ଚକୁ ଉଚ୍ଚକୁ ନେଇ ଚାଲି ଯାଉଥାଏ । ଦୂରତା ବଢ଼ି ବଢ଼ି ଯାଉଥାଏ । ଆଉ ଗୋଟିଏ ବିସ୍ମୟ ପାଖକୁ ପାଖକୁ ଲଗାଇ ଆଣୁଥିବା ପରି ଭାରି ମନେ ହୋଇଥାଏ । ବିସ୍ମୟର ଉଦ୍ରେକ କରିଥିବା ବା କରୁଥିବା ସେହି ବସ୍ତୁଟି ବା ବ୍ୟକ୍ତିଜଣକ ଏଇଠି ଆମ ପାଖକୁ କ୍ରମଶଃ କତି ହୋଇ ଆସୁଥାନ୍ତି ବା ଆମେ ଏଠି ଥାଇ ମଧ୍ୟ ସେଇଟିର ବା ତାଙ୍କର କତିରୁ ଆହୁରି କତି ହୋଇଯିବା ପରି ଅନୁଭବ କରୁଥାଉ, ସେକଥା ପ୍ରକୃତରେ କିଏ କୌଣସି ସ୍ୱକ୍ଷ୍ମାବଲୋକନର ସାହାଯ୍ୟ ନେଇ କହିଦେଇ ପାରିବ ? ରାମାୟଣର କାହାଣୀରେ ମର୍ଯ୍ୟାଦାପୁରୁଷ ରାମ ଏକ ବିସ୍ମୟ ଏବଂ ରାମ-ଅନୁଗାମୀ ହନୁମାନ ମଧ୍ୟ ଏକ ବିସ୍ମୟ । ପୌରାଣିକ ଆଖ୍ୟାନର ଔଚିତ୍ୟ ଅନୁସାରେ ଯାହା ହେଉ ବା ହୋଇଥାଉ ପଛକେ, ଦୁଇଟି ମଧ୍ୟରୁ କୌଣସି ଗୋଟିଏ ବିସ୍ମୟକୁ ଆମେ କଦାପି ଅଧିକ ଅଉଲ ବା ଅସଲ ବୋଲି କହି ପାରିବାନାହିଁ । ରାମଚନ୍ଦ୍ର ସ୍ୱମହିମା ବା ସ୍ୱମର୍ଯ୍ୟାଦାର ପ୍ରଦର୍ଶନ କଲାବେଳେ ତାଙ୍କୁ ତ ସ୍ତବସ୍ତୁତି ଦ୍ୱାରା ଆପ୍ୟାୟିତ କରି ଜଗମୋହନ ଉପରେ ବସାଇ ଦେବାକୁ ମନ ହୁଏ । କିନ୍ତୁ ହନୁମାନ ନାମକ ସେହି ଅନ୍ୟ ବିସ୍ମୟଟି ଲଙ୍କାଗଡ଼ର ଉଦ୍ୟାନକୁ ନଷ୍ଟ କରି ନଗରରେ ନିଆଁ ଲଗାଇଦେଇ ଏକ ଅଭବନୀୟ ସାମର୍ଥ୍ୟର ମହିମାରେ ଲମ୍ଫ ଦେଉଥିବା ସମୟରେ ସତେଅବା ଆମର ଆହୁରି ଅଧିକ ନିକଟ ହୋଇ ଆସିଥାଏ ଅଥବା ଆମେ ସେଇଟିର ନିକଟବର୍ତ୍ତୀ ହୋଇଯିବାରେ ଲାଗିଥାଉ । ବିଶପ୍ ନିକୋଲାଇ ଗ୍ରୁଣ୍ଡଭିଗ୍ ନିଜ ଦେଶ ଡେନ୍‌ମାର୍କ୍‌ର ସେହି ନବଜାଗରଣର ପର୍ଯ୍ୟାୟରେ ଜଣେ ଅନ୍ୟତମ ମହାନ୍ ହୋଇ ରହିଥିଲେ, ଏବେ ମଧ୍ୟ ରହିଛନ୍ତି । ବହୁ ବିଚାର ଓ ବହୁ ଦୂରଦୃଷ୍ଟିର ହିସାବଫର୍ଦ୍ଦରେ ସିଏ ଏକାଧିକ ଅର୍ଥରେ ଜଣେ ଜନକର କୃତିତ୍ୱସ୍ଥାନ ଲାଭ କରି ପାରିଛନ୍ତି । ସତେଅବା ଉପରୁ ଜ୍ଞାନର ନବସନ୍ଦେଶ ବହନ କରି ତାହାରିଦ୍ୱାରା ହିଁ ନିଜ ଦେଶର ନବଜନ୍ମ ହୋଇପାରିବ ବୋଲି ସେ ଏକାଧିକ ମାଧ୍ୟମ ସାହାଯ୍ୟରେ ନିଜର ସମକାଳୀନ ଜାଗ୍ରତ ତଥା ଚିନ୍ତାଶୀଳମାନଙ୍କୁ ଆହ୍ୱାନ ଦେଇଛନ୍ତି । ସେତେବେଳେ ଜଣେ ବିଚିତ୍ର ବିବେକଧାରୀ ଯୁବକ ଯେ ନିଜର ଦାରିଦ୍ର୍ୟ ସହିତ ଇଢୁ ଲଢୁ ଭଗବାନ ମନୁଷ୍ୟମାନଙ୍କୁ ଭଲ ପାଆନ୍ତି ବୋଲି ଆକସ୍ମିକ ଭାବରେ ଏକ ଜୀବନ-ଉଦ୍‌ବେଳନକାରୀ ଦୀକ୍ଷାର ସ୍ଫୁଲିଙ୍ଗଟିଏ ଲାଭ କରି ଆଗକୁ ସାକାର ଭାବରେ କିଛି ନିର୍ମାଣ କରି ଦେଖାଇ ଦେବାର କାର୍ଯ୍ୟରେ

ପରିପୂର୍ଣ୍ଣ ବିଶ୍ୱାସର ସହିତ ଅଗ୍ରସର ହେବାରେ ଲାଗିଥିଲେ, ସେତେବେଳେ ବଡ଼ ସହରର ଚିନ୍ତାଶୀଳମାନେ ସେହି ବିଷୟରେ ସମ୍ଭବତଃ ଆଦୌ କିଛିହେଲେ ଆଶଙ୍କା ମଧ୍ୟ କରିନଥିବେ । ଶ୍ରୀଯୁକ୍ତ କଲ୍‌ଲ୍ ସେମାନଙ୍କୁ ନିଶ୍ଚୟ ଭାରି ଅବାକ୍ କରି ଦେଇଥିବେ । ଆଗ ସେମାନଙ୍କର ବହୁ ନାସିକା-କୁଞ୍ଚନର କାରଣ ବି ହୋଇଥିବେ, ମାତ୍ର ପରେ ତାଙ୍କୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିବେ । ଏଥିପାଇଁ ସ୍ୱୟଂ ଗ୍ରୁଣ୍ଡ୍‌ଭିଗ୍‌ଙ୍କୁ ହିଁ ସର୍ବପ୍ରଥମ ଶ୍ରେୟ ଦେବାକୁ ପଡ଼ିବ ।

କଲ୍‌ଲ୍‌ଙ୍କର ଛାତ୍ରମାନେ ହିଁ ତାଙ୍କର ସର୍ବବୃହତ୍ ସମ୍ପଦ । ବହୁ ଛାତ୍ର କଲ୍‌ଲ୍‌ଙ୍କ ସହିତ ଅତିବାହିତ ନିଜ ବିଦ୍ୟାଳୟ-ଜୀବନର ସଂସ୍ମରଣମାନ ଲେଖି ଯାଇଛନ୍ତି ଏବଂ ସେଇଥିରୁ ହିଁ ତାଙ୍କ ବ୍ୟକ୍ତିତ୍ୱ ତଥା ବିକ୍ରମର ଅଭିନବ ବହୁ ଚିତ୍ର ଏକ ଅଦ୍‌ଭୂତ ଉଜ୍ଜ୍ୱଳତାରେ ଉକୁଟି ଉଠି ପାରିଛି । ନିଜର ଜଣେ ସ୍ମରଣୀୟ ଶିକ୍ଷକ ସମ୍ବନ୍ଧରେ ଜଣେ ଛାତ୍ରର ସଂସ୍ମରଣରେ ଅନ୍ତରଙ୍ଗତା ହିଁ ସର୍ବପ୍ରଥମ ସନ୍ତକ ହୋଇ ରହିଥାଏ । ତଥାକଥିତ ଗବେଷଣାରେ ଅଧିକତର କ୍ଷେତ୍ରରେ ବହୁ ଗଭୀର ଚାଷ ହୁଏତ ହୋଇଥାଏ, ମାତ୍ର ଅନ୍ତରଙ୍ଗତା ନଥାଏ । ତେଣୁ, ଗବେଷଣା ମଧ୍ୟରେ ଯାବତୀୟ ସତର୍କତା ସତ୍ତ୍ୱେ କ'ଣ ସବୁ ଭାରି ବଙ୍କା ବଙ୍କା ହୋଇଥାଏ । ସଂସ୍ମରଣଗୁଡ଼ିକ, ଅନ୍ୟ ପକ୍ଷରେ, ଏପରିକି ଯାବତୀୟ ସତର୍କତା ସତ୍ତ୍ୱେ ଅର୍ଥାତ୍ ଅଜାଣତରେ ମଧ୍ୟ ସିଧା ହୋଇଯାଆନ୍ତି, ନଚେତ୍ ସଂସ୍କରଣ ହୋଇ ରହି ପାରନ୍ତିନାହିଁ । ସେହିଭଳି ଗୋଟିଏ ସଂସ୍ମରଣରୁ ହିଁ ଆମେ କଲ୍‌ଲ୍-ଜୀବନର ଏହି ମୂଲ୍ୟାୟନ-ପ୍ରକରଣଟିକୁ ଆରମ୍ଭ କରିବା । ଶ୍ରୀ କଲ୍‌ଲ୍‌ଙ୍କ ଅନୁଷ୍ଠାନରେ ରହି ଜଣେ ଶିକ୍ଷକ ହେବାପାଇଁ ପ୍ରଶିକ୍ଷଣ ଲାଭ କରିବାକୁ ଆସିଥିବା ଶ୍ରୀଯୁକ୍ତ କ୍ଲାଉସ୍ ବେଆର୍ଣ୍ଣେଟ୍‌ସନ୍ ସେହି ଅବଧିଟି ବିଷୟରେ ଏକ ଦୀର୍ଘ ସଂସ୍ମରଣ ଲେଖିଛନ୍ତି । ବସ୍ତୁତଃ ଶିକ୍ଷକ ହେବାପାଇଁ ଟ୍ରେନିଂ ପାଇବାକୁ ସିଏ ଆଉ ଏକ ପ୍ରଶିକ୍ଷଣକେନ୍ଦ୍ରକୁ ଯାଇଥାନ୍ତେ, ମାତ୍ର ନିଜର ଜଣେ ବନ୍ଧୁଙ୍କର ପରାମର୍ଶରେ ସେ କଲ୍‌ଲ୍‌ଙ୍କ ପାଖରେ ହିଁ ସେଥିପାଇଁ ଡାଲ୍‌ବୁଇ (Dalby-ହିନ୍‌ସ୍‌ହଲ୍‌ମ୍) ଆସିଥିଲେ । ସିଏ ପ୍ରକୃତରେ ଜୀବନରେ ଜଣେ ପାଦ୍ରୀ ହେବାପାଇଁ ଇଚ୍ଛା କରିଥିଲେ; ମାତ୍ର, ପାଦ୍ରୀହେବାକୁ ହେଲେ ଆଗ ପାଖ ସହରରେ ଲାଟିନ୍ ଭାଷା ଅଧ୍ୟୟନ କରିବାକୁ ହେବ ଏବଂ ତା'ପରେ କୋପେନହେଗେନ୍‌ରେ ରହି ବିଶ୍ୱବିଦ୍ୟାଳୟରେ ମଧ୍ୟ କେତେବର୍ଷ ଅଧ୍ୟୟନ କରିବାକୁ ପଡ଼ିବ । ବହୁତ ଖର୍ଚ୍ଚ, ତେଣୁ ତାଙ୍କର ମାଆ ଏତେ ଖର୍ଚ୍ଚ ତୁଲାଇ ପାରିବେ କି ନାହିଁ ଭୟ କରିବାରୁ ତାଙ୍କୁ ଏହି ଦ୍ୱିତୀୟ ରାସ୍ତାଟିକୁ ବାଛିବାକୁ ପଡ଼ିଥିଲା । ୧୮୬୦ ମସିହା ନଭେମ୍ବର ମାସର କୌଣସି ଗୋଟିଏ ଦିନ ତାଙ୍କ ବଡ଼ଭାଇ ଘୋଡ଼ାଗାଡ଼ୀରେ ନେଇ ତାଙ୍କୁ ସେଠାରେ ଛାଡ଼ିଦେଇ ଆସିଲେ । ସେଠାରେ ଯାଇ ପହଞ୍ଚିବା ବେଳକୁ ବେଳ ଗଡ଼ି ଆସିଥାଏ । ସ୍ୱୟଂ କଲ୍‌ଲ୍ ହିଁ ବାହାରକୁ ଆସି ଏମାନଙ୍କୁ ଭିତରକୁ ଡାକିନେଲେ । ତନ୍ତବୁଣା ମୋଟା ପରିଚ୍ଛଦ ପିନ୍ଧିଥିଲେ, ମୁଣ୍ଡରେ

ଟିଣତିଆରି ଟୋପି ଓ ଗୋଡ଼ରେ କାଠରେ ତିଆରି ଜୋତା । ଶିକ୍ଷାଦାନର କାର୍ଯ୍ୟକ୍ରମ ବେଶ୍ କେତେଦିନ ହେଲା ବି ଆରମ୍ଭ ହୋଇ ଯାଇଥିଲା । ଶିକ୍ଷାର୍ଥୀମାନେ ଆସି ଯାଇଥାଆନ୍ତି । ତେଣୁ ଆଉ ଗୋଟିଏ ବୋଲି ଖାଲି ଖଟ ନଥିଲା । ନୂଆ ଛାତ୍ରଟି ନିଜର ବାକ୍ସଟି ଧରି କଲ୍‌କ୍ଙ୍କ ପଛେ ପଛେ ଗଲେ । କଲ୍‌କ୍ ଘର ଭିତରକୁ ଯାଇ କୌଣସି ଛାତ୍ର ଏହି ନୂତନ ଛାତ୍ରଟିକୁ ଗୋଟିଏ ରାତିପାଇଁ ପାଖରେ ଶୁଆଇବ କି ନାହିଁ ବୋଲି ସେମାନଙ୍କୁ ପଚାରିଥିଲେ । ନହେଲେ ବାହାରେ କେଉଁଠାରେ କୋଠରୀଟିଏ ଭଡ଼ା ନେବାକୁ ପଡ଼ିଥାନ୍ତା । ଜଣେ ଶିକ୍ଷାର୍ଥୀ ରାଜୀ ହୋଇଗଲେ; ଖଟ ମଧ୍ୟ ବେଶ୍ ବଡ଼ ଓ ଓସାରିଆ ଥିଲା ଏବଂ ତେଣୁ କୌଣସି ଅସୁବିଧା ହେଲାନାହିଁ । ସେହି ଖଟଟି ପାଖକୁ ଲାଗି କରି ପଡ଼ିଥିବା ଗୋଟିଏ ଖଟରେ କଲ୍‌କ୍ ନିଜେ ଶୋଇଥିଲେ ।

ତାଙ୍କର ଭଉଣୀ ଆମ ରହିବା ଓ ଖାଇବାର ସବୁକଥା ବୁଝୁଥିଲେ । ସେଠାରେ ଯେ ସମସ୍ତେ ଅତ୍ୟନ୍ତ ମାମୁଲି ଓ ସାଧାରଣ ଭାବରେ ରହୁଥିଲେ, ଦୈନନ୍ଦିନ ଖାଇବାରୁ ହିଁ ତାହା ସ୍ପଷ୍ଟ ଜଣା ପଡ଼ି ଯାଉଥିଲା । କୃଷକମାନଙ୍କର ଘରେ ଯାହା ଯେତେବେଳେ ଯେଉଁପରି, ଏଠାରେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ସେହିପରି । ଦିବସର ମୁଖ୍ୟ ଆହାରରେ କେବେ ଜାଉ ତ ଆଉ କେବେ ବନ୍ଧାକୋବି । ପାଉଁରୁଟି, ଆଉଟା କ୍ଷୀର ଓ ଚୀଜ୍ । ବେଳେବେଳେ ମେରୀ ମାଉସୀ ମୋତେ ରୋଷେଇଶାଳକୁ ଡାକି ନେଇ କପେ କଫି ମଧ୍ୟ ଦେଉଥିଲେ । ତା' ନହେଲେ ସେହି ଉତ୍ତମ ପାନୀୟଟି ସାଧାରଣ ଭାବରେ କେବେହେଲେ ମିଳୁନଥିଲା ।

ଶ୍ରୀ କଲ୍‌କ୍ଙ୍କର ସ୍ୱାସ୍ଥ୍ୟ ସାଧାରଣତଃ ଭଲ ରହୁନଥିଲା । ବର୍ଷେ ଗ୍ରୀଷ୍ମ କାଳରେ ତାଙ୍କର ଦେହ କ'ଣ ଖରାପ ହୋଇଗଲା ଯେ ସେହି ଦିନଠାରୁ ସେ ଖୁବ୍ ଦୁର୍ବଳ ହୋଇଗଲେ । ପ୍ରାୟ କେବେହେଲେ ଡାକ୍ତରଙ୍କ ପାଖକୁ ଯାଉନଥିଲେ । କହୁଥିଲେ, ଯଦି ଈଶ୍ୱର କାହାକୁ ଅସୁସ୍ଥ କରିଛନ୍ତି, ତେବେ ସେଇ ଇଚ୍ଛା କଲେ ଭଲ ମଧ୍ୟ କରିଦେବେ । ସବୁବେଳେ ଅସୁସ୍ଥତାର ପରବର୍ତ୍ତୀ ଉପସର୍ଗମାନ ଲାଗି ରହିଥିଲା । ତାଙ୍କର ପାଦ ସବୁବେଳେ କାଲୁଆ ହୋଇ ଯାଉଥିଲା ଓ ତେଣୁ ସେ ଦିନମାନ ଏକାଧିକ ଥର ରୋଷେଇଘରକୁ ଯାଇ ସେକି ହେଉଥିଲେ । ବାରମ୍ବାର ମୋଜା ବଦଳାଉଥିଲେ । ସେହି ରୋଷେଇଘରେ ଥିବା ସମୟରେ ନିଜର ଭଉଣୀ ଓ ଅନ୍ୟ ଝିଅମାନଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ସେଠାରୁ ସିଏ ବହୁତ ବହୁତ ସାମଗ୍ରୀ ମନେ ରଖି ଆସୁଥିଲେ, ଯାହାକୁ ନିଜ ଶ୍ରେଣୀ-ଅଧ୍ୟାପନାରେ ବ୍ୟବହାର ବି କରୁଥିଲେ । ଆହୁରି କେତେ କେତେ ଜାଗାରେ ସ୍ତ୍ରୀଲୋକମାନଙ୍କ ଘରୁ କହିଥିବା କଥାକୁ ଶ୍ରେଣୀରେ ଉଦାହରଣ ପରି କାମରେ ଲାଗଉଥିଲେ ।

ରୟ୍‌ଦିଙ୍ଗ୍, ହିନ୍‌ହଲ୍‌ମ୍‌ର ବିଦ୍ୟାଳୟ ଓ ତାଙ୍କ ନିଜର ଏହି ବିଦ୍ୟାଳୟଟି, - ତିନୋଟି ମଧ୍ୟରେ ପ୍ରଧାନତଃ କି ଫରକ ରହିଛି ବୋଲି ଥରେ ଜଣେ ପାଦ୍ରୀ ତାଙ୍କୁ ପ୍ରଶ୍ନ କରିବାରୁ କଲ୍‌ଲ୍ ଉତ୍ତର ଦେଇ କହିଥିଲେ: ଅସଲ ଗୋଟିଏ ଫରକ ହେଉଛି ଯେ, ଦକ୍ଷିଣ ଉଇଲାଣ୍ଡରେ ଡେନ୍‌ମାର୍କ୍ ଓ ଜର୍ମାନୀର ସୀମାରେ ଦୁଇ ଦେଶ ଭିତରେ ଯେଉଁ ସଂଘର୍ଷ ଚାଲିଛି, ରୟ୍‌ଦିଙ୍ଗ୍ ବିଦ୍ୟାଳୟ ସେଠା ପରିବାରମାନଙ୍କୁ ସେହି ସଂଘର୍ଷରେ ଜୟ ଲାଭ କରିବାର ଉପାୟଗୁଡ଼ିକ ବିଷୟରେ ହିଁ ଶିକ୍ଷା ଦେଉଛି; ହିନ୍‌ହଲ୍‌ମ୍ ବିଦ୍ୟାଳୟ ସ୍ୟେଲାଣ୍ଡର କୃଷକମାନେ କିପରି ବଡ଼ ଜମିମାଲିକ ମାନଙ୍କ ସହିତ ସେମାନଙ୍କର ଲାଗିଥିବା ସଂଗ୍ରାମରେ କୁଶଳତା ଅର୍ଜନ କରିପାରିବେ, ତାହାରି ବିଷୟରେ ଉପାୟମାନ ଅନୁସନ୍ଧାନ କରୁଛି ଏବଂ, ଏଠାରେ ମୋ ବିଦ୍ୟାଳୟରେ ଜୀବନ ଓ ମୃତ୍ୟୁ ଭିତରେ ଅବିଚ୍ଛିନ୍ନ ଭାବରେ ଲାଗି ଆସିଥିବା ଯୁଦ୍ଧରେ ଯୁବଶ୍ରେଣୀ କିପରି ଅଧିକ ସମର୍ଥ ହୋଇ ପାରିବେ, ସେହି ଦାୟିତ୍ୱଟିକୁ ହିଁ ଗ୍ରହଣ କରିଛି । ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରି ଆସିଥିବା ଅନ୍ୟମାନେ ଆରମ୍ଭ କରିଥିବା ବିଦ୍ୟାଳୟଗୁଡ଼ିକ ସହିତ ଏଠାରେ ସିଏ ପ୍ରଦାନ କରୁଥିବା ଶିକ୍ଷାର କେଉଁ ମୂଳଫରକ ରହିଛି ବୋଲି ତାଙ୍କୁ ପଚରା ଯିବାରୁ କଲ୍‌ଲ୍ କହିଥିଲେ ଯେ, ଉଚ୍ଚଶିକ୍ଷାପ୍ରାପ୍ତ ସେହି ଅନ୍ୟମାନେ ଶିକ୍ଷାର୍ଥୀମାନଙ୍କୁ ଇତିହାସରେ ବର୍ଣ୍ଣିତ ବଡ଼ ବଡ଼ ଯୁଦ୍ଧ ବିଷୟରେ ଲେକ୍‌ଚର୍ ଦେଉଥିବା ବେଳେ ସିଏ ଏଠାରେ ତାଙ୍କ ସ୍କୁଲରେ କେଉଁଠି ଜଣେ ଚାଷୀଘରର ଘରଣୀଠାରୁ ସଂଗ୍ରହ କରି ଆଣିଥିବା କଥାଗୁଡ଼ିକୁ ଉଲ୍ଲେଖ କରି ଛାତ୍ରମାନଙ୍କ ସହିତ ଯାବତୀୟ ଆଲୋଚନା କରୁଛନ୍ତି ।

ମୁଁ ଖୁବ୍ ଶୀଘ୍ର ଲକ୍ଷ୍ୟ କରି ପାରିଥିଲି ଯେ, ଶ୍ରୀଯୁକ୍ତ କଲ୍‌ଲ୍ ଯାବତୀୟ ଅର୍ଥରେ ଏହି ବିଦ୍ୟାଳୟରେ ବେଗସଂଚାରଣକାରୀ ଆତ୍ମାପରି ହୋଇ ରହିଥିଲେ । ପ୍ରତ୍ୟେକ ଦିନ ସକାଳଓଳି ତାଙ୍କର ଶ୍ରେଣୀ-ପ୍ରବଚନ ହେଉଥିଲା; ବିଶପ୍ ଗ୍ରୁନ୍ଟ୍‌ଭିଗ୍‌ଙ୍କୁ ପୃଷ୍ଠଭୂମିରେ ରଖି ସେ ବିଶ୍ୱ-ଇତିହାସର ନାନା ବିଷୟରେ ଆଲୋଚନା କରୁଥିଲେ, ଏହି ଆଲୋଚନାଗୁଡ଼ିକର ପରିପ୍ରେକ୍ଷୀରେ ସେ ସମଗ୍ର ମନୁଷ୍ୟ-ପରିବାର ତଥା ସମୂହଗୁଡ଼ିକ କିପରି ପରସ୍ପର ସହିତ ସମ୍ବନ୍ଧିତ ରହି କ୍ରମବିବର୍ତ୍ତିତ ହୋଇ ଆସିଛନ୍ତି, ସେହି କଥାଟିକୁ ଦର୍ଶାଇ ଦେଉଥିଲେ । ଏବଂ, ତାହାରି ମାଧ୍ୟମରେ ଅତ୍ୟନ୍ତ ଶକ୍ତିଶାଳୀ ଭାବରେ ଇଙ୍ଗିତ କରି ଦେଉଥିଲେ ଯେ, ଏହି ବିଶ୍ୱ ଏବଂ ବିଶ୍ୱଯାକର ମନୁଷ୍ୟମାନଙ୍କୁ ସୃଷ୍ଟି କରିଥିବା ପରମେଶ୍ୱର ଯୁଗ ଯୁଗ ଧରି ସମସ୍ତଙ୍କୁ - ବ୍ୟକ୍ତି ଓ ଓ ସମୂହ ଉଭୟଙ୍କୁ - ବାଟ ବତାଇ ଆଣିଛନ୍ତି । ଏବେ ମଧ୍ୟ ଈଶ୍ୱର ତାହାହିଁ କରୁଛନ୍ତି । ଏବଂ, ମନୁଷ୍ୟମାନେ ତାଙ୍କ ଆଡ଼କୁ ମୁହଁ ମୋଡ଼ି ନଦେବା ପର୍ଯ୍ୟନ୍ତ ସିଏ ପ୍ରକୃତରେ ତାହାହିଁ ଅବଶ୍ୟ କରୁଥିବେ । ଶ୍ରୀଯୁକ୍ତ କଲ୍‌ଲ୍ ଆପଣାର ସର୍ବମୂଳ ଦୃଷ୍ଟିରେ ଜଣେ ଦାର୍ଶନିକ ଥିଲେ, ଡେନ୍‌ମାର୍କ୍‌ର ପରିଚ୍ଛଦ ତଳେ ରହିଥିବା ଜଣେ ସକ୍ରେଟିସ୍‌ଙ୍କ ପରି ଜୀବନ ଅତିବାହିତ କରୁଥିଲେ । କଥାଟିର ସର୍ବବିଧ ଅର୍ଥରେ ଲୋକଜୀବନ ସହିତ ନିଜକୁ ପୂର୍ଣ୍ଣସଂଶ୍ଳିଷ୍ଟ କରି

ରଖିଥିଲେ । ଏବଂ, ଏକ ସ୍ୱକୀୟ, ନିରାଭରଣ ତଥା ଅକୃତ୍ରିମ ସହଜ ଭାଷାରେ ନିଜର ଭାବନାଗୁଡ଼ିକୁ ସର୍ବଦା ବ୍ୟକ୍ତ କରି ପାରୁଥିଲେ । କହୁଥିବା ଶବ୍ଦଗୁଡ଼ିକର ଶକ୍ତିଦ୍ୱାରା ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲେ ଏବଂ ନିଜର ଛାତ୍ରମାନଙ୍କୁ ଗଭୀର ଭାବରେ ପ୍ରଭାବିତ ମଧ୍ୟ କରୁଥିଲେ । କେବଳ ଶ୍ରେଣୀଗୃହରେ ନୁହେଁ, ବାହାରେ ଯାବତୀୟ କଥୋପକଥନରେ ମଧ୍ୟ ସିଏ ଆମ୍ଭମାନଙ୍କୁ ସାଙ୍ଗରେ ଧରି ଆଗେ ଆଗେ ଚାଲୁଥିବା ପରି ବୋଧ ହେଉଥିଲେ । ଅତି ନିୟମିତ ଭାବରେ ପ୍ରତିଦିନ ସନ୍ଧ୍ୟା ସମୟରେ ମଧ୍ୟ ବିଦ୍ୟାଳୟ-ଗୃହକୁ ଆସି ଗୋଟିଏ ବେଞ୍ଚ୍ ଉପରେ ଚୁପ୍ ହୋଇ ବସି ଯାଉଥିଲେ ଏବଂ ଆଉମାନେ କେହି ଆସି ରୁଣ୍ଡ ହୋଇଗଲେ ବହୁ କଥୋପକଥନ ଆରମ୍ଭ କରି ଦେଉଥିଲେ । ପ୍ରଶ୍ନ ପଚରାଗଲେ ସେ ଉତ୍ତର ପ୍ରଦାନ କରୁଥିଲେ ଓ ସେଥିରେ ନିଜ ଜୀବନର ଅନୁଭବରୁ ମଧ୍ୟ କେତେ କ'ଣ ଆଣି ଆଗରେ ବାଢ଼ି ଦେଉଥିଲେ । ଏବଂ, ତାଙ୍କର ପ୍ରାୟ ସବୁଯାକ ଦୃଷ୍ଟାନ୍ତରେ, ଭଗବାନ ଯେ ମନୁଷ୍ୟମାନଙ୍କୁ ଭଲ ପାଆନ୍ତି, ସେହି କଥାଟି ମୂଳସୂତ୍ର ରୂପେ ଅବଶ୍ୟ ରହିଥିଲା ।

ମଣିଷମାନଙ୍କୁ ଭଲ ପାଉଥିବା ସେହି ଭଗବାନଙ୍କ ଠାରେ ଅବିଚଳିତ ବିଶ୍ୱାସ ରଖିବାରେ କଲ୍‌ଲ୍‌ଙ୍କର ଏହିସବୁ କଥା ଆମ ସମସ୍ତଙ୍କୁ କମ୍ ସାହାଯ୍ୟ କରିନାହିଁ । ସେହି ଦୀର୍ଘ ପ୍ରଚଳିତ ବଦ୍ଧମୂଳ ନିଜର ଭ୍ରାନ୍ତିଟିକୁ ସେ ସବୁବେଳେ ଆମ ମନଭିତରୁ ବାହାର କରିଦେବାକୁ ଚେଷ୍ଟା କରୁଥିଲେ ଯେ ଭଗବାନ କେଉଁଠି ନିଜର ସିଂହାସନ ଉପରେ ଜଣେ କଡ଼ା ପୋଲିସ୍ ଅଫିସର୍‌ଙ୍କ ପରି ଆସୀନ ରହିଛନ୍ତି ଓ ଦୋଷ ଦେଖିବା ମାତ୍ରକେ ହିଁ ଦଣ୍ଡ ଦେବାପାଇଁ ମାଡ଼ି ଆସୁଛନ୍ତି । ବିଚରା ମଣିଷ ଦୁଃସମୟ ଅଥବା ଦୁଃଖରେ ପଡ଼ିଯିବା ସମୟରେ ହିଁ କାତର ହୋଇପଡ଼ି ଈଶ୍ୱରଙ୍କୁ ସେହିଭଳି ଭାବି ପକାଉଛି ଏବଂ, ପାସୋରି ଦେଉଛି ଯେ, ଏହି ଯାବତୀୟ ନୈରାଶ୍ୟ ତଥା ପ୍ରତିକୂଳ ପରିସ୍ଥିତିକୁ ଭଗବାନ ପ୍ରକୃତରେ ମନୁଷ୍ୟମାନଙ୍କର ହୃଦୟକୁ ନିଜ ଆଡ଼କୁ ଟାଣିନେବା ନିମନ୍ତେ ମାଧ୍ୟମ ପରି ବ୍ୟବହାର କରିଥାନ୍ତି । ସତ୍ୟ ପ୍ରତି ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର ଅପରିମିତ ଶ୍ରଦ୍ଧା ରହିଥିଲା । ଏବଂ, ହୃଦୟଗୁଡ଼ିକ ପ୍ରକୃତରେ ଗ୍ରହଣ କରିବାଲାଗି ଉପଯୁକ୍ତ ଭାବରେ ଉଦ୍‌ବୋଧିତ ନହୋଇଥିବା ପର୍ଯ୍ୟନ୍ତ ସିଏ କାହାକୁ କୌଣସି ଗମ୍ଭୀର କଥା କହୁନଥିଲେ । ସିଏ ବହୁତ ସମୟରେ କହୁଥିଲେ : ''ସବୁକିଛି ସେହି ଭିତରୁ ହିଁ ସଚଳ ହୋଇ ଆସିବ ଏବଂ, ଯାହାକିଛିକୁ ତୁମେ ଖାଲି ଉପରେ ଉପରେ ଆଣି ଥୋଇ ଦେଉଥିବ, ତାହା ଅଚିରେ ହିଁ ତୁମକୁ ଛାଡ଼ି ପଳାଇଯିବ ।'' ପୁନଶ୍ଚ, ''ପାଟିକୁ ବନ୍ଦ କରି ରଖିଥା, ନଚେତ୍ ତେଣେ ହୃଦୟ ଥଣ୍ଡା ହୋଇ ଯିବଟି !'' ଏବଂ ''ଭିତରେ ଅଗ୍ନିଟିଏ ପ୍ରଜ୍ୱଳିତ ହେବାକୁ ଆରମ୍ଭ କଲେ ଯାଇ ତୁମେ ଅନ୍ତର୍ସତ୍ତା ବିଷୟରେ ଆଦୌ କିଛି କହିପାରିବ ।'' ଯେତେବେଳେ ନିଜ ଭିତରେ ଅନୁକୂଳ ପ୍ରେରଣାଟିକୁ ଅନୁଭବ

କରୁନଥିଲେ, ସେତେବେଳେ ଶ୍ରେଣୀକୁ ଆସି ଅଧ୍ୟାପନା କରିବାର କାର୍ଯ୍ୟକ୍ରମ ରହିଥିଲେ ମଧ୍ୟ କଲ୍‌ଲ୍ ତଥାପି ଶ୍ରେଣୀକୁ ଆସୁନଥିଲେ। କହୁଥିଲେ, ''ବର୍ତ୍ତମାନ ତ ଅସଲ କଥାଗୁଡ଼ିକୁ ଆଦୌ କହିପାରିବି ବୋଲି ମୋତେ ଲାଗୁନାହିଁ, ତେଣୁ ଆମେ ଉପରବେଳାକୁ ଏହି କ୍ଲାସ୍‌ଟିକୁ ଗଡ଼ାଇଦେବା ।'' ଏତିକି କହି ସିଏ ଏଣୁ ତେଣୁ କିଛି ଗପ କହୁଥିଲେ ଅଥବା ଶ୍ରେଣୀରୁ ବାହାରକୁ ଚାଲି ଯାଉଥିଲେ । ଶ୍ରେଣୀଗୃହରେ ଚଟାଣ ଉପରେ ଦଣ୍ଡାୟମାନ ରହି ହିଁ ସିଏ କ୍ଲାସ୍ ନେଉଥିଲେ ।

ମଧ୍ୟାହ୍ନଭୋଜନ ସମୟରେ ମଧ୍ୟ କଲ୍‌ଲ୍ ନିଜଆଡୁ କେତେ କଥାବାର୍ତ୍ତା ଆରମ୍ଭ କରି ଦେଉଥିଲେ। ଅତିଥି କିମ୍ବା ଛାତ୍ରମାନଙ୍କ ସହିତ। ସେତେବେଳେ ଯଦି ପାଖରେ କୌଣସି ମଣିଷଙ୍କୁ ପାଉନଥିଲେ, ତେବେ ବିଦ୍ୟାଳୟର ପୋଷା ବିରାଡ଼ିଟି ସହିତ ମଧ୍ୟ କଥା ଜମାଇ ଆଣୁଥିଲେ । ବିରାଡ଼ିଟି ନିଜ ଖାଇବାବେଳେ ତାଙ୍କ ପାଖରେ ଆସି ବସୁଥିଲା। ବିଲେଇଟି ଭିତରେ କିପରି କେତେ ନା କେତେ ଅହଙ୍କାର ଭର୍ତ୍ତି ହୋଇ ରହିଛି, ଓ ସେଇଥିଲାଗି ଯେ ସିଏ ଏତେ ପ୍ରକାରେ ଆସି ଗେଲେଇ ହେଉଛି, ସିଏ ତାହାରି ବୟାନ କରୁଥିଲେ । ଦୂରରୁ ସେହିସବୁ କଥାକୁ ଶୁଣି, ଏସବୁ କଥା ଆମ ପାଇଁ ଉଦ୍ଦିଷ୍ଟ କରି କୁହା ଯାଉନାହିଁ ତ ? - ଛାତ୍ରମାନେ ମନେ ମନେ ସେହିପରି ଭାବୁଥିଲେ। ପ୍ରତି ରବିବାର ଦିନ ନିଜ ପସନ୍ଦର ଜଣେ ପାଦ୍ରୀଙ୍କର ଗୀର୍ଜାରେ ପ୍ରଦତ୍ତ ପ୍ରବଚନ ଶୁଣିବାକୁ ଯାଉଥିଲେ, ସାଙ୍ଗରେ ଛାତ୍ରମାନେ ମଧ୍ୟ ଯାଉଥିଲେ। ପ୍ରବଚନ କିପରି ଲାଗିଲା ବୋଲି ଛାତ୍ରମାନଙ୍କୁ ସେ ପ୍ରଶ୍ନ କରିବାରୁ ଛାତ୍ରମାନେ ଭଲ ଲାଗିଲା ବୋଲି କହିଲେ। ''ହଁ, ହଁ, ଭଲ ତ ଲାଗିଲା, କିନ୍ତୁ ସେହି ଅନୁସାରେ ଜୀବନ ବଞ୍ଚିବା ହେଉଛି ଅସଲ କଥା।'' ନିଜର ପ୍ରତିକ୍ରିୟା ବ୍ୟକ୍ତି କରି କଲ୍‌ଲ୍ ଉତ୍ତର ଦେଇଥିଲେ। ସର୍ବପ୍ରଥମ ବ୍ୟକ୍ତିରୂପେ ସେ ସ୍ଥାନୀୟ ସରକାରୀ ଗୀର୍ଜାରୁ ନିଜର ସଦସ୍ୟପଦକୁ ପ୍ରତ୍ୟାହାର କରି ନେଇଥିଲେ। ଦୂର ସହରରେ ଥିବା ବିଶପ ଏକଥା ଶୁଣି ତାଙ୍କ ସହିତ କଥାବାର୍ତ୍ତା କରିବେ ବୋଲି ଡକାଇ ପଠାଇଥିଲେ। ତାଙ୍କ ନିଜର ତ ଘୋଡ଼ା ନଥିଲା କିମ୍ବା ଗାଡ଼ୀ ମଧ୍ୟ ନଥିଲା, ତେଣୁ ସେ ଦୀର୍ଘ ପଥଟିକୁ ପାଦରେ ହିଁ ଚାଲିକରି ଯାଇଥିଲେ। ବିଶପ୍ ତାଙ୍କ ପଚାରିଥିଲେ, ''ଔପଚାରିକ ଭାବରେ ଆପଣ ଯେଉଁ ସମୂହଟିର ସଦସ୍ୟପଦ ତ୍ୟାଗ କରିଛନ୍ତି, ଆପଣ ସେହି ସମାଜରେ ଜଣେ ଶିକ୍ଷକ କିପରି ହୋଇପାରିବେ ?''

କଲ୍‌ଲ୍ ଉତ୍ତର ଦେଲେ, ''କିନ୍ତୁ ମୁଁ ସ୍ଥାନଟିକୁ ତ ତ୍ୟାଗ କରିନାହିଁ !''

ବିଶପ୍ : ''ମାତ୍ର ଆପଣ ସେଠାରେ ଥିବା ପାଦ୍ରୀଙ୍କ ଖାତାରୁ ତ ନାମ ପ୍ରତ୍ୟାହାର କରି ଆଣିଛନ୍ତି !''

''ହଁ, ଆଣିଛି । ମାତ୍ର ମୁଁ ତଥାପି ସେଠାରେ ବାସ କରୁଛି, ସେଠାରେ ଶିକ୍ଷକ ମଧ୍ୟ ହୋଇଛି ।''

''ମାତ୍ର, ତଥାପି ନିଜର ନାଆଁକୁ କାହିଁକି ପ୍ରତ୍ୟାହାର କରିଛନ୍ତି ?''

''ଆଜ୍ଞା, ଆଜି ମୁଁ ମୋ' ନିଜ ଜାଗାଟିରୁ ଏଠାରେ ଆପଣଙ୍କୁ ସାକ୍ଷାତ କରିବା ନିମନ୍ତେ ଦୀର୍ଘ ପଥ ଚାଲି ଚାଲି ଆସିଛି । ମନେ କରନ୍ତୁ,ଏଠାରେ ପହଞ୍ଚି ମୁଁ ପ୍ରଥମେ ଗୋଟିଏ ପଥିକଗୃହକୁ ଗଲି, ସେଠାରେ ଜଳଯୋଗ କଲି ଓ କିଛି ସମୟ ବିଶ୍ରାମ ବି ନେଲି । ସେଠାରେ ପିଇବାକୁ ପାଣି ମାଗି କେତେଥର ପିଇଲି । ତା' ବୋଲି ଆପଣ କ'ଣ ଭାବୁଛନ୍ତି ଯେ, ଆଉଥରେ ଏହି ସହରକୁ ଆସିଲେ ମୁଁ ପୁନର୍ବାର ସେହି ପଥିକଗୃହକୁ ଯିବି ଓ ଏଥର ଯେପରି କଲି, ସେଥର ମଧ୍ୟ ସେହିପରି କରିବାକୁ ବାଧ୍ୟ ହେବି ? ନା, ଇଚ୍ଛା କଲେ ଅନ୍ୟ ଏକ ସେହିପରି ଗୃହକୁ ଯିବାପାଇଁ ମୋ'ର ଅବଶ୍ୟ ସ୍ୱାଧୀନତା ରହିବ ?''

ସାଧାରଣତଃ ପାଦ୍ରୀମାନେ ଓ ପୁରୁଣା ଗୁଳାର ଶିକ୍ଷକମାନେ କଲ୍‌ଲ୍‌ଙ୍କର ବିରୋଧ କରୁଥିଲେ । ଯେଉଁମାନେ ସବୁଠାରୁ ଅଧିକ ଉତ୍କଟ ଭାବରେ ବିରୋଧ କରୁଥିଲେ, ସେମାନେ କୃଷକମାନଙ୍କର ଶିକ୍ଷା ନିମନ୍ତେ ସମାନ୍ତର ଭାବେ ଗୋଟିଏ ଅଲଗା ସମିତି ଗଠନ କରିଥିଲେ ଏବଂ ତାହାରି ମାଧ୍ୟମରେ କୃଷକମାନଙ୍କୁ ଏକଥା ବୁଝାଇ କହିବାଲାଗି ଚେଷ୍ଟା କରୁଥିଲେ ଯେ, ସେମାନଙ୍କୁ କେବଳ ଅଧିକରୁ ଅଧିକ ବ୍ୟାବହାରିକ ଜ୍ଞାନ ଯୋଗାଇ ଦିଆଗଲେ ଏବଂ ସେମାନଙ୍କର ଭୌତିକ ଉନ୍ନତି ହେଲେ ଯାଇ ସେମାନଙ୍କର ସକଳ ଆବଶ୍ୟକତା ମେଣ୍ଟିଯାଇ ପାରିବ । ତେଣୁ ସେମାନଙ୍କର ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କ ପାଖକୁ ଯିବାର ଆଦୌ କୌଣସି ପ୍ରୟୋଜନ ନାହିଁ । କଲ୍‌ଲ୍ ଏଭଳି ଅନ୍ୟକଥାଗୁଡ଼ିକୁ କହିବେ ଯେ ତଦ୍ୱାରା ସେମାନଙ୍କ ଭିତରେ ନାନା ଭିନ୍ନ ସଂଶୟର ହିଁ ସୃଷ୍ଟି ହେବ ଏବଂ ତଦ୍ୱାରା ଗୀର୍ଜା ଓ ବିଦ୍ୟାଳୟ ମଧ୍ୟରେ ବହୁ ବିବାଦ ଜନ୍ମଲାଭ କରିବାର ଆଶଙ୍କା ମଧ୍ୟ ରହିଥିବ । ଉଦାହରଣ ସ୍ୱରୂପ ସେମାନେ କଲ୍‌ଲ୍‌ଙ୍କର ପ୍ରେରଣା ଓ ବିଚାରକୁ ଗ୍ରହଣ କରି ସ୍ଥାପିତ ହୋଇଥିବା ମୁକ୍ତ ବିଦ୍ୟାଳୟଗୁଡ଼ିକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଉଥିଲେ । ସ୍ଥାନୀୟ ଗୀର୍ଜାର ସଦସ୍ୟଖାତାରୁ ମଧ୍ୟ ନାମ ପ୍ରତ୍ୟାହାର କରିନେବାକୁ ଆଉ ଗୋଟିଏ ଦୃଷ୍ଟାନ୍ତ ସ୍ୱରୂପ ମଧ୍ୟ ଦର୍ଶାଇ ଦେଉଥିଲେ । କଲ୍‌ଲ୍ ନୂଆ ଢଙ୍ଗରେ ଚଳାଉଥିବା ସ୍କୁଲକୁ ସବୁପ୍ରକାର ସାହାଯ୍ୟ ଓ ଅନୁଦାନ ବନ୍ଦ କରି ଦିଆଯାଉ ବୋଲି ଏହି ବିରୋଧୀ ସମିତିଟି ତରଫରୁ ଉଭୟ ସରକାର ତଥା ସ୍ଥାନୀୟ ଅଧିକାରୀଙ୍କ ଦପ୍ତରକୁ ଲିଖିତ ଅନୁରୋଧପତ୍ର ପ୍ରେରଣ କରା ଯାଇଥିଲା । ସ୍ଥାନୀୟ ଦପ୍ତରରେ କେବଳ ଜଣେ ସଦସ୍ୟ କଲ୍‌ଲ୍‌ଙ୍କ ପକ୍ଷ ସମର୍ଥନ କରି ଯୁକ୍ତି ବାଢ଼ିଥିଲେ ଏବଂ ସେହି କାରଣରୁ ପ୍ରଦତ୍ତ ଆର୍ଥିକ ଅନୁଦାନକୁ କାଟି ଦିଆଯାଇ ଥିଲା । ଅବଶ୍ୟ ଏହି ନିଷ୍ପତ୍ତିଟି ନିଆ ଯାଉଥିବା ସମୟରେ ଆଉଜଣେ ସଦସ୍ୟ ମଧ୍ୟ ସାହସ କରି ମନ୍ତବ୍ୟଟିଏ ଦେଇଥିଲେ ଯେ, କଲ୍‌ଲ୍ ଆଦୌ ଏପରି ଜଣେ ବ୍ୟକ୍ତି ନୁହନ୍ତି, ଯାହାଙ୍କୁ କି ଉପାସ ରଖି ବଶ କରାଯାଇ ପାରିବ,

କଲ୍‌ଲ୍ (ତାଙ୍କ ମତରେ) ଏପରି ଜଣେ ମିତବ୍ୟୟୀ ମନୁଷ୍ୟ ଥିଲେ, ଯିଏକି ତୁଚ୍ଛା ପଥରର ଗୋଟିଏ ଗାଡ଼ ଭିତରେ ମଧ୍ୟ ବେଶ୍ ଜୀବନଧାରଣ କରି ରହିପାରିବେ ।

କଲ୍‌ଲ୍-ବିରୋଧୀ ବ୍ୟକ୍ତିମାନେ ନିଜର ଶକ୍ତିକୁ ପ୍ରତିପାଦିତ କରିବା ନିମନ୍ତେ ସେହି ଅଞ୍ଚଳରେ ଟକ୍କର ଦେଲାପରି ଗୋଟିଏ ସମାନ୍ତର କୃଷିବିଦ୍ୟାଳୟ ମଧ୍ୟ ଆରମ୍ଭ କରିଦେଲେ । ଏଇଟି ଅଧିକ ସଫଳତା ହାସଲ କରିବ, ଅଧିକ ସମର୍ଥନ ଲାଭ କରି କଲ୍‌ଲ୍‌ଙ୍କର ଲୋକବିଦ୍ୟାଳୟଟି ବନ୍ଦ ହୋଇଯିବାର କାରଣ ହେବ ବୋଲି ସେମାନେ ମନସ୍ଥ କରି ନେଇଥିଲେ । ସେହିଟିକୁ ସରକାରୀ ଉତ୍ସଗୁଡ଼ିକରୁ ବହୁତ ପଇସା ମିଳିଲା ଏବଂ ଏକାଧିକ ବର୍ଷ କାଳ ସ୍ଥାନୀୟ ଶାସନ ତରଫରୁ ମଧ୍ୟ ବହୁତ ସାହାଯ୍ୟ ମିଳିଥିଲା;- କିନ୍ତୁ କୌଣସି ଫଳ ମିଳିନଥିଲା ଓ ପ୍ରତିଯୋଗିତାଟି ବ୍ୟର୍ଥ ହୋଇ ଯାଇଥିଲା । ଅଳ୍ପ କେତେ ବର୍ଷ ପରେ ସେଥିରେ ବ୍ୟୟିତ ହୋଇଥିବା ପ୍ରଚୁର ଅର୍ଥରାଶିକୁ ଆଦାୟ କରିବା ପାଇଁ ବିଦ୍ୟାଳୟଟିକୁ ତାହାର ଅସ୍ଥାବର ଓ ସ୍ଥାବର ସମସ୍ତ ସମ୍ପତ୍ତି ସହିତ ବିକ୍ରୀ କରିଦେବାକୁ ପଡ଼ିଥିଲା । ଏହି ଯାବତୀୟ ବିରୋଧ ସତ୍ତ୍ୱେ କଲ୍‌ଲ୍ ନିଜର ବିଦ୍ୟାଳୟ ଲାଗି ଖୁବ୍ ସୁନ୍ଦର ଗୃହଟିଏ ନିର୍ମାଣ କରି ପାରିଥିଲେ । ଏହି ନୂତନ ଗୃହରେ ହିଁ ସେ ନିଜେ ଦୀର୍ଘକାଳ ସ୍ୱପ୍ନ ଦେଖି ଆସିଥିବା ଅନୁସାରେ ଉଭୟ ପୁଅ ଓ ଝିଅମାନଙ୍କର ବିଦ୍ୟାଳୟଟିକୁ ଏକାବେଳେକେ ଚଳାଇ ମଧ୍ୟ ପାରିଲେ ଏବଂ ପ୍ରତିବର୍ଷ ଅଗଷ୍ଟ ମାସରେ ଉଭୟ ସରକାରୀ ଓ ତାଙ୍କର ମୁକ୍ତ ବିଦ୍ୟାଳୟ ଗୁଡ଼ିକର ଶିକ୍ଷକମାନଙ୍କ ସକାଶେ ପ୍ରଶିକ୍ଷଣର କାର୍ଯ୍ୟକ୍ରମଟିକୁ ମଧ୍ୟ ସୁରୁ କରି ଦେଇଥିଲେ । ମାତ୍ର, ଅନ୍ୟପକ୍ଷରେ ପ୍ରାଥମିକ ସ୍ତରର ମୁକ୍ତ ବିଦ୍ୟାଳୟର କାର୍ଯ୍ୟଟିକୁ ଛାଡ଼ିଦେବାକୁ ପଡ଼ିଲା । ଏଗୁଡ଼ିକ ତ କ୍ରମେ ଲୋକମାନଙ୍କର ଦୃଷ୍ଟିରେ ପଡ଼ିଥିଲା ଏବଂ ବିଭିନ୍ନ ସ୍ଥାନରେ ଏକାଧିକ ସେହିପରି ପ୍ରାଥମିକ ବିଦ୍ୟାଳୟ ସ୍ଥାନୀୟ ଉଦ୍ୟମ ଦ୍ୱାରା ଆରମ୍ଭ ହୋଇ ଯାଇଥିଲା । ପିଲାମାନଙ୍କ ପାଇଁ ଏହି ନୂଆ ପ୍ରକାରର ସ୍କୁଲଶିକ୍ଷାର ପ୍ରୟୋଗରେ କଲ୍‌ଲ୍ ତାହାକୁ ହିଁ ମୂଳ କରି ଧରିଥିଲେ । ସରକାରୀ ସ୍କୁଲମାନେ ପିଲାଙ୍କର ମଥାକୁ ନେଇ ହିଁ ଯାହାକିଛି ଚାଷ କରୁଥିଲେ; କଲ୍‌ଲ୍ ହୃଦୟର ବାଟ ଦେଇ ଅଗ୍ରସର ହୋଇଥିଲେ । ସରକାରୀ ଗୁଳାଟି ଉପରେ ଆଦୌ ନିର୍ଭର କରି ରହିଲେ ନାହିଁ । ପିଲାମାନଙ୍କର ଶିକ୍ଷାରେ ସେମାନଙ୍କର ଅଭିଭାବକ ମାନଙ୍କୁ ମଧ୍ୟ ଦାୟିତ୍ୱସଚେତନ କରିଥିଲେ । କଲ୍‌ଲ୍ କହୁଥିଲେ; ପିଲାମାନେ ଆଦୌ ସରକାରଙ୍କର ସମ୍ପତ୍ତି ନୁହନ୍ତି । ସେମାନେ ସେମାନଙ୍କର ବାପାମାଆଙ୍କ ନିର୍ଦ୍ଦେଶନାରେ ହିଁ ପରିଚାଳିତ ହେବେ । ତେଣୁ, ସେହି ବାପାମାଆମାନେ ହିଁ ପିଲାଙ୍କର ବୌଦ୍ଧିକ ତଥା ଆତ୍ମିକ ଉଭୟ ବିକାଶ ନିମନ୍ତେ ସବାଆଗ ଦାୟୀ ହୋଇ ରହିବେ ।

ଆପଣାର ଆତ୍ମିକ ଜୀବନରେ ଭଳି ଭଳି ଦିଗ୍‌ଦର୍ଶନ ଲାଭ କରିବାକୁ ତାଙ୍କ ପାଖକୁ ବହୁସଂଖ୍ୟକ ବ୍ୟକ୍ତି ଆସୁଥିଲେ ଏବଂ ତାଙ୍କଠାରୁ ଉତ୍ସାହ ତଥା ସାନ୍ତ୍ୱନା ଲାଭ କରି

ପାରୁଥିଲେ । ଥରେ ଲୁଗା ବୁଣି ଜୀବିକାର୍ଜନ କରୁଥିବା ଜଣେ ବୟସ୍କ ବ୍ୟକ୍ତି କଲ୍ଲ୍‌ଙ୍କ ପାଖକୁ ଆସି ଏବେ ମନୁଷ୍ୟମାନଙ୍କର ସ୍ୱଭାବ ନଷ୍ଟ ହୋଇଯାଉଛି ଏବଂ ସେମାନେ ଆଉ ଆପଣାର ସତ୍‌କର୍ତ୍ତବ୍ୟ ଗୁଡ଼ିକୁ ଆଦୌ କରୁନାହାନ୍ତି ବୋଲି ଅଭିଯୋଗ କରି କହିଥିଲେ । ଶ୍ରୀଯୁକ୍ତ କଲ୍ଲ୍ ନୀରବ ରହି ସବୁକଥା ଶୁଣିଥିଲେ ଏବଂ ତା'ପରେ ଉତ୍ତର ଦେଇ ଧୀରେ ଧୀରେ କହିଥିଲେ : ତୁମେ ତ କହୁଛ ଯେ ଏବେ ଚାରିଆଡ଼ୁ ଭଲ ପାଇବା ଓ ସହାନୁଭୂତି ରଖିବା ପ୍ରଭୃତି ଉତ୍ତମ କଥାଗୁଡ଼ିକ କ୍ରମେ ନଷ୍ଟ ହୋଇଯାଉଛି ଓ ମଣିଷମାନେ କେବଳ ନିଜର ସୁଖ ଓ ନିଜ ଆରାମର ହିଁ ଅନ୍ୱେଷଣ କରୁଛନ୍ତି । ଏପରିକି ତୁମ ନିଜର ପତ୍ନୀ ମଧ୍ୟ କ୍ରମେ ସେହିପରି ହୋଇ ଯାଉଛନ୍ତି । ମାତ୍ର ଏଥିରେ ତୁମର ମଧ୍ୟ ଦୋଷ ଅବଶ୍ୟ ରହିଛି । ପ୍ରଶ୍ନକର୍ତ୍ତା ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଥିବା ସମୟରେ କଲ୍ଲ୍ କହିବାକୁ ଆରମ୍ଭ କଲେ : ଯଦି ତୁମର ନିଜ ଘରେ ହିଁ ଭଲପାଇବା ଦ୍ୱାରା ସବୁକିଛି ଚଳୁଥାଆନ୍ତା, ତେବେ ସେହି ଅଞ୍ଚଳଗୋଟାକରେ ମଧ୍ୟ ମୁଖ୍ୟତଃ ଭଲପାଇବା ହିଁ ରାଜତ୍ୱ କରୁଥାଆନ୍ତା । ତେଣୁ ତୁମକୁ ମୁଁ ଗୋଟିଏ ଉତ୍ତମ ପରାମର୍ଶ ଦେଉଛି । ଏବେଠାରୁ ତୁମେ ଯେତେବେଳେ ପ୍ରତିଦିନ ସକାଳେ ବିଛଣାରୁ ଉଠିବ, କିଭଳି କ'ଣସବୁ କଲେ ତୁମେ ନିଜ ପତ୍ନୀର ମନକୁ ଖୁସୀ କରି ପାରିବ, ସେତେବେଳେ ସେହି ବିଷୟରେ ଟିକିଏ ଭାବିବ । ନିଜର ଏହି ନୂଆ ଦିଗଟିକୁ ତୁମେ ଏହିପରି ଭାବରେ ଆରମ୍ଭ କଲେ ପ୍ରକୃତରେ କିପରି ହୁଅନ୍ତା : ଏବେ ଯେତେବେଳେ ମୁଁ ତୁମ ଘରେ ଥରେ ରାତିରେ ରହି ଯାଇଥିଲି, ସକାଳୁ ଉଠି ଦେଖିଲି ଯେ, ତୁମର ପତ୍ନୀ ଦୁଇ ହାତରେ ଦୁଇଟା ବାଲଟି ଧରି କୂଅ ପାଖକୁ ଆସିଲେ । କୂଅଟା ପୂରା ବଗିଚାରେ ଥିଲା, ତେଣୁ ତାଙ୍କୁ ବେଶ୍ ବହୁତ ବାଟ ଯିବାକୁ ହୋଇଥିଲା । ପାଣି କାଢ଼ି ସିଏ ଦୁଇଟିଯାକ ପାତ୍ରକୁ ଭରିଲେ ଓ ପୁଣି ସେତିକିବାଟ ଚାଲି ସେଗୁଡ଼ିକୁ ରୋଷେଇଘର ପର୍ଯ୍ୟନ୍ତ ବୋହି ନେଇଥିଲେ । ଦିନମାନ ଆବଶ୍ୟକ ହେଉଥିବା ସଫା ପାଣି ସକାଶେ ତୁମର ପତ୍ନୀଙ୍କୁ ପ୍ରତ୍ୟହ ଏହି କାର୍ଯ୍ୟ କରିବାକୁ ପଡୁଥିବ, ତେଣୁ ମୋ'ର ପରାମର୍ଶ ହେଲା, କାଲି ତୁମେ ନିଜେ ଆଗ ଉଠି ପଡ଼ିବ, ଚୁପ୍ ହୋଇ ବାଲ୍‌ଟି ଦୁଇଟି ଧରି କୂଅପାଖକୁ ଯିବ, ପାଣି ଭର୍ତ୍ତି କରି ରୋଷେଇଶାଳାକୁ ନେଇ ଆସିବ । ତା'ପରେ ନିଜ ପତ୍ନୀଙ୍କ ପାଖକୁ ଯାଇ ଆଉ କ'ଣ କାମ କରିଦେଇ ପାରିବ ବୋଲି ତାଙ୍କୁ ପଚାରିବ । ଏବଂ, ଦିନରେ ଯଦି ଆଉ କେତେବେଳେ ପତ୍ନୀ ଆଉକିଛି କାମରେ ସାହାଯ୍ୟ କରିବାପାଇଁ ତୁମକୁ ଡାକିବେ, ତେବେ ତୁମର ସମୟ ନାହିଁ ବୋଲି ତୁମେ ମୋଟେ କହିବନାହିଁ, ବରଂ ଏଇଟି ବା ସେଇଟି କରିବାଲାଗି ପ୍ରସ୍ତୁତ ହୋଇଯିବ । ଏହପରି ଭାବରେ ତୁମେ ସ୍ୱୟଂ ଆବିଷ୍କାର କରିପାରିବ ଯେ, ଏହି ଭଲ ପାଇବାଟା ହିଁ ପୃଥିବୀରେ ଆନନ୍ଦ ପାଇବାର ସର୍ବବୃହତ୍ କାରଣ ହୋଇ କାର୍ଯ୍ୟ କରିଥାଏ । ଏହି ଭଲ ପାଇବାର ଗୁଣଟି ଦ୍ୱାରା ପ୍ରେରିତ ହୋଇ ଜଣେ ମନୁଷ୍ୟ ଖୁସୀ ହୋଇ ଅନ୍ୟମାନଙ୍କୁ ଖୁସୀ ଦେଇପାରିବା ନିମନ୍ତେ ନିମିତ୍ତ ହୋଇ ବାହାରେ । ତୁମର ଏହି ଆଚରଣଟି ତୁମର ପତ୍ନୀଙ୍କର ତୁମପ୍ରତି ରହିଥିବା

ମନୋଭାବକୁ ମଧ୍ୟ ବଦଳାଇ ଦେବ । ଏବଂ, ଏହି ସବୁକିଛିର ପ୍ରଭାବ ତୁମର ପ୍ରତିବେଶୀମାନଙ୍କ ଉପରେ ମଧ୍ୟ ଅବଶ୍ୟ ପଡ଼ିବ ।

ବିଦ୍ୟାଳୟରେ ଶାରୀରିକ ଶ୍ରମକୁ ଏକ ଉଚ୍ଚ ସ୍ଥାନ ଦିଆ ଯାଉଥିଲା ଓ କଲ୍‌ଲ୍ ନିଜେ ସେଥିରେ ସମ୍ପୂର୍ଣ୍ଣ ଭାବରେ ଅଂଶଗ୍ରହଣ କରୁଥିଲେ । ସେ ସବୁବେଳେ କହୁଥିଲେ ଯେ ଶରୀରଶ୍ରମକୁ ସମ୍ମାନ ହିଁ ଦେଖାଇବା ଉଚିତ, ଘୃଣା କରିବା ଆଦୌ ଉଚିତ ନୁହେଁ । ସିଏ ଭାବୁଥିଲେ, ଯେଉଁମାନେ ଅଭ୍ୟସ୍ତ ଭାବରେ ବୌଦ୍ଧିକ କାର୍ଯ୍ୟ କରୁଥାନ୍ତି, ଯଦି ସେମାନେ ପ୍ରତିଦିନ ଅନ୍ତତଃ କେତେ ଘଣ୍ଟା ସକାଶେ ମୁକ୍ତ ପବନରେ ନିଜର ହାତଗୁଡ଼ିକୁ ଲଗାଇ କିଛି ଶରୀରଶ୍ରମ କରିବେ, ତେବେ ଆଦୌ କୌଣସି ସନ୍ଦେହ ନାହିଁ ଯେ ସେମାନେ ଅନେକ ଅଧିକ ଦକ୍ଷତା ସହିତ ଭଲ ବୈଜ୍ଞାନିକ, ଭାବୁକ, ଧର୍ମଯାଜକ ଓ ଶିକ୍ଷକ ମଧ୍ୟ ହୋଇପାରିବେ । ଏହି କଥାଟି ପୁରୁଷମାନଙ୍କ ପାଇଁ ଯେତିକି ସତ୍ୟ, ନାରୀମାନଙ୍କ ପାଇଁ ମଧ୍ୟ ଠିକ୍ ସେତିକି ସତ୍ୟ । ସେତେବେଳେ ଗ୍ରୀଷ୍ମଦିନରେ କୃଷକଘରର ଘରଣୀ ଓ କନ୍ୟାମାନେ ନିଜ ଘାସବିଲ ମାନକୁ ଯାଉଥିଲେ ଏବଂ ଗାଈମାନଙ୍କୁ ଦୁହିଁସାରି ବେଶ୍ ବଡ଼ ବଡ଼ ଭାଣ୍ଡମାନଙ୍କରେ ଗୋରସ ଭର୍ତ୍ତି କରି ମୁଣ୍ଡରେ ମୁଣ୍ଡାଇ ଘରକୁ ଆଣୁଥିଲେ । କ୍ଷୀରଭାଣ୍ଡ ମୁଣ୍ଡ ଉପରେ ଟଳଟଳ ନହୋଇ ଥିର ହୋଇ ରହିବ ବୋଲି ମୁଣ୍ଡଉପରେ ଠେକାଟିଏ ମଧ୍ୟ ରଖୁଥିଲେ । ଏବଂ, ଅନେକ ସମୟରେ ବାଟରେ ଚାଲି ଆସୁଥିବା ବେଳେ ଏଣେ ଦୁଇହାତରେ ମୋଜା ବି ବୁଣି ବୁଣି ଆସୁଥିଲେ । ''ଜଣେ ମହିଳା ମୁଣ୍ଡରେ କ୍ଷୀରପାତ୍ର ରଖି ବାଟ ଚାଲୁଥିବା ବେଳେ ମୁଁ ଦେଖି ସବୁବେଳେ ଅତ୍ୟନ୍ତ ଖୁସୀ ହୋଇ ଯାଉଥିଲି । ଆମେ ଯେତିକି ଯେତିକି ଅଧିକ ପରିମାଣରେ ନିଜର ବଳକୁ କାମରେ ଲଗାଇ ପାରିବା, ଆମକୁ ସେତିକି ଅଧିକ ଶକ୍ତି ବରାବର ମିଳି ଯାଉଥିବ; କାରଣ ପୂରା କ୍ଳାନ୍ତ ହୋଇଯିବା ପର୍ଯ୍ୟନ୍ତ କାମ କରିବା, ପୂରା ସନ୍ତୋଷ ମିଳିବାଯାଏ ଖାଦ୍ୟ ଗ୍ରହଣ କରିବା ଏବଂ ସହଜ ତଥା ସ୍ୱାଭାବିକ ଭାବରେ ନିଦରେ ଶୋଇଯିବା, - ଏହି ସବୁକିଛି ଦ୍ୱାରା ସର୍ବଦା ପ୍ରଭୂତ ଉପକାର ହିଁ ହୁଏ'' - ବୋଲି କଲ୍‌ଲ୍ ସମସ୍ତଙ୍କୁ କହୁଥିଲେ ।

ଶ୍ରୀଯୁକ୍ତ ବେଆର୍‌ଣ୍ଡସନ୍ କଲ୍‌ଲ୍‌ଙ୍କ ସମ୍ବନ୍ଧରେ ଆପଣାର ଦୀର୍ଘ ସଂସ୍ମରଣକୁ ଏହିପରି ଭାବରେ ଶେଷ କରିଛନ୍ତି: ''ଡେନ୍‌ମାର୍କର ଅଧିବାସୀମାନଙ୍କ ସକାଶେ କଲ୍‌ଲ୍‌ଙ୍କର କାର୍ଯ୍ୟାବଳୀ କେଉଁ ପ୍ରକାରେ ମହତ୍ତ୍ୱପୂର୍ଣ୍ଣ ହୋଇ ରହିଛି ବୋଲି ଯଦି କେହି ମୋତେ ପଚାରିବେ, ତେବେ ମୁଁ ଏହିପରି ହିଁ ତାହାର ଉତ୍ତର ଦେବି: ବିଶପ୍ ଗ୍ରୁଣ୍ଟୱିଗ୍‌ଙ୍କର କହିଥିବା ଭାଷାରେ କଲ୍‌ଲ୍ ତାଙ୍କ ଦେଶର ଜନଗଣଙ୍କୁ ଶିକ୍ଷାର ଆଲୋକ ଆଣି ଦେବାର କ୍ଷେତ୍ରରେ ସର୍ବୋଚ୍ଚ ସ୍ଥାନରେ ଯାଇ ରହିଛନ୍ତି । ବୟସ୍କ ତରୁଣମାନଙ୍କ ସକାଶେ ଏକ ବିଦ୍ୟାଳୟ ବିଷୟରେ ଗ୍ରୁଣ୍ଟୱିଗ୍ ଯେଉଁ ବିଚାର କରିଥିଲେ, କଲ୍‌ଲ୍‌ଙ୍କର ପ୍ରଚେଷ୍ଟା ଦ୍ୱାରା ହିଁ ସେହି ବିଚାର

ପ୍ରକୃତରେ ସାକାର ହୋଇ ପାରିଛି । ସେହି ବିଦ୍ୟାଳୟଟି ଯେଉଁ ଛାଞ୍ଚର ହେବ ବୋଲି ବିଶପ୍ ପ୍ରଥମେ ଚିନ୍ତା କରିଥିଲେ, ଅବଶ୍ୟ କଲ୍ଲ୍ ସମ୍ପୂର୍ଣ୍ଣ ବିଶ୍ୱସ୍ତ ଭାବରେ ସେହି ଛାଞ୍ଚଟିକୁ ଆଦୌ ଅନୁସରଣ କରିନାହାନ୍ତି । ନିଜର ସ୍ୱତନ୍ତ୍ର ପ୍ରୟୋଗ ଦ୍ୱାରା କଲ୍ଲ୍ ଏପରି ଗୋଟିଏ ମୁକ୍ତ ଓ ସ୍ୱାଧୀନ ତରୁଣ ବିଦ୍ୟାଳୟକୁ ରୂପ ଦେଇ ପାରିଛନ୍ତି, ଯାହାକି ସଂପୃକ୍ତ ସରକାରୀ କର୍ତ୍ତାମାନଙ୍କ ଉପରେ କୌଣସି ପ୍ରକାରେ ନିର୍ଭରଶୀଳ ହୋଇ ରହିନାହିଁ । ଝିଅମାନଙ୍କ ସକାଶେ ମଧ୍ୟ ଏହିଭଳି ବିଦ୍ୟାଳୟଟିଏ ସମ୍ଭବ କରିବାରେ ପୁରୋଗାମୀ ଭଳି କାର୍ଯ୍ୟ କରିଛନ୍ତି । ଏବଂ, ତାଙ୍କ ପରେ ତାଙ୍କ ଠାରୁ ପ୍ରେରଣା ପାଇ ଅନ୍ୟମାନେ ମଧ୍ୟ ସେହିପରି ବିଦ୍ୟାଳୟମାନ ଆରମ୍ଭ କରି ଦେଇଛନ୍ତି । ଆଦୌ କୌଣସି କାଳବିଳମ୍ବ ନକରି ବିଶପ୍ ଗ୍ରୁନ୍ଟଭିଗ୍ କଲ୍ଲ୍ ଗଢ଼ିଥିବା ଛାଞ୍ଚର ସେହି ଗଣବିଦ୍ୟାଳୟ ଗୁଡ଼ିକୁ ସ୍ୱୀକୃତି ଦେଇଥିଲେ ଏବଂ, ସେହି ନୂତନ ଆନ୍ଦୋଳନଟିକୁ ଅଗ୍ରସର କରାଇ ନେବାରେ ଶ୍ରୀଯୁକ୍ତ କଲ୍ଲ୍ ହିଁ ଏକମାତ୍ର ବ୍ୟକ୍ତି ବୋଲି ଉପଲବ୍ଧି କରିଥିଲେ । ୧୮୬୫ ମସିହାରେ ରାଜଧାନୀ କୋପେନ୍‌ହେଗେନ୍‌ରେ ଯେଉଁ ବନ୍ଧୁଗୋଷ୍ଠୀ-ବୈଠକ ଡକା ଯାଇଥିଲା, ସେଠାରେ ଆପଣାର ସୁଦୀର୍ଘ ବକ୍ତବ୍ୟରେ କଲ୍ଲ୍ ନୂଆ ହୋଇ ସ୍ଥାପିତ ସେହି ବିଦ୍ୟାଳୟକୁ 'ଜୀବନ-ବିଦ୍ୟାଳୟ' ବୋଲି ଆଖ୍ୟାୟିତ କରିଥିଲେ । ସେତେବେଳେ ଦେଶଯାକ ପ୍ରଚଳିତ ରହିଥିବା ସ୍କୁଲମାନଙ୍କରେ ତାଙ୍କ ଭାଷାରେ ମୃତ୍ୟୁ ହିଁ ରାଜତ୍ୱ କରୁଥିଲା ଏବଂ ସେହିଗୁଡ଼ିକର ବିକଳ୍ପରୂପେ ହିଁ ସେ ନିଜର ଏହି ଜୀବନ-ବିଦ୍ୟାଳୟକୁ କ୍ରମସାକାର କରି ଆଣିଥିଲେ । ସେଦିନ ସେହି ବୈଠକରେ ଆପଣାର ଉପସଂହାର ଭାଷଣରେ ସେହି କାରଣରୁ ହିଁ ଗ୍ରୁନ୍ଟଭିଗ୍ ଏହି କଥାଗୁଡ଼ିକୁ କହିଥିଲେ :

''ମୁଁ ତ ଅତ୍ୟନ୍ତ ବିସ୍ମିତ ଓ ଏପରିକି ବ୍ୟଥିତ ହୋଇପଡ଼ିଛି ଯେ, ଯେତେବେଳେ ଆମେ ଜୀବନ-ବିଦ୍ୟାଳୟ ବିଷୟରେ ଚର୍ଚ୍ଚା କରୁଛୁ ଏବଂ ତାହାର ଅଗ୍ରଗତି ସମ୍ବନ୍ଧରେ ବିଚାର ମଧ୍ୟ କରୁଛୁ, ସେତେବେଳେ, ଯେଉଁ ବ୍ୟକ୍ତିଟି ସେଥିପାଇଁ ଯାବତୀୟ ଉଦ୍ୟମ କରୁଛନ୍ତି ଏବଂ ବର୍ତ୍ତମାନ ମଧ୍ୟ ଉଦ୍ୟମ କରି ଚାଲିଛନ୍ତି, ସେହି ଉଦ୍ୟମରେ ପ୍ରଭୂତ ଶକ୍ତିର ପରିଚୟ ଦେଇଛନ୍ତି ଏବଂ ବହୁ ପରିମାଣରେ ସଫଳ ମଧ୍ୟ ହୋଇଛନ୍ତି, ଆମେ ତାଙ୍କର ନାମୋଲ୍ଲେଖ କରିବାକୁ ମଧ୍ୟ ଅନେକ ସମୟରେ ପାସୋରି ଦେଉଛୁ । କାରଣ ସେହି ନୂତନ ଉଦ୍ୟମଟିର ମାଧ୍ୟମରେ ଶ୍ରୀଯୁକ୍ତ କଲ୍ଲ୍ ହିଁ ଆମର ଏହି ଉତ୍ତର ଭୂଭାଗରେ ଅସଲ ଆତ୍ମାଟିକୁ ଉଦ୍‌ବୋଧିତ କରି ଆଣିଛନ୍ତି । ଏହି କ୍ଷେତ୍ରରେ ସେଇ ହେଉଛନ୍ତି ସର୍ବାଗ୍ରେ ରହିଥିବା ବ୍ୟକ୍ତି । ଆମେ ସମସ୍ତେ ତାଙ୍କୁ ଅବଶ୍ୟ ସ୍ୱୀକାର କରିବା '' ଏବଂ, ସବାଶେଷରେ, ''ହଁ,ସେଇ ପ୍ରକୃତରେ ଆମ ସମସ୍ତଙ୍କ ଆଗରେ ରହିଥିବା ଅସଲ ବ୍ୟକ୍ତି !''- ସେହି କେତୋଟି ପଦକୁ ଗ୍ରୁନ୍ଟଭିଗ୍ ଅତ୍ୟନ୍ତ ଜୋର୍ ଦେଇ ଉଚ୍ଚାରଣ କରିଥିଲେ । ଏପରି କହି ସିଏ ସତେଯେପରି ଆଉ କେଉଁ ଅନ୍ୟମାନଙ୍କର ହୁଏତ ନିନ୍ଦା ହିଁ କରୁଥିଲେ । ରାଜଧାନୀର ଶିକ୍ଷିତ ମହଲରେ ବିଶପ୍

ଗ୍ରୁଣ୍ଡ୍‌ଭିଗ୍‌ଙ୍କର ବହୁସଂଖ୍ୟକ ବନ୍ଧୁ ରହିଥିଲେ, ବିଶେଷତଃ ପାଦ୍ରୀମାନଙ୍କ ମଧ୍ୟରେ ସେହିଭଳି ଅନେକ ବନ୍ଧୁ ରହିଥିଲେ, ଯେଉଁମାନେ କି ସେମାନଙ୍କର ସେହି ସମ୍ଭ୍ରାନ୍ତ ମେଳରେ ଜଣେ ଗାଆଁକୃଷକର ମୋଟା କୋଟ୍ ପିନ୍ଧିଥିବା ଏହି ବ୍ୟକ୍ତିଟିକୁ ସାମିଲ ହୋଇଥିବାର ଦେଖି ଅସହନୀୟ ବୋଧ କରୁଥିଲେ । ତେଣୁ, ଶ୍ରୀ କଲ୍ଡ୍‌ଙ୍କ ସମ୍ବନ୍ଧରେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର ସେହି ମନ୍ତବ୍ୟଟି ପ୍ରକୃତରେ ଅବିସ୍ମରଣୀୟ ହୋଇ ରହି ଯାଇଥିଲା ।

ପ୍ରତିରୋଧ ତ କେତେ ନା କେତେ ହୋଇଥିଲା, ତଥାପି ଉଦ୍ୟମ ସେଗୁଡ଼ିକୁ ଠେଲି ଅବିରତ ଆଗକୁ ଯିବାରେ ହିଁ ଲାଗିଥିଲା । ରାଜଧାନୀର ପ୍ରତିଷ୍ଠିତମାନେ ନାକ ଟେକିଲେ, ପାଦ୍ରୀମାନେ ବିବ୍ରତ ହୋଇ ପଡ଼ିଲେ, ସରକାରୀ ଶିକ୍ଷାମାହାଲର ପାରମ୍ପରିକ ଆସୀନମାନେ ଆଗରୁ ପଡ଼ି ଆସିଥିବା ଗୁଳାଗୁଡ଼ିକର ପକ୍ଷରେ ରହି କେତେ କେତେ ବାଧା ପହଞ୍ଚାଇଥିଲେ, ଗ୍ରାମାଞ୍ଚଳର ବୃହତ୍ ଜମିମାଲିକମାନେ ଆଗକୁ ପୂରା ଓଲଟପାଲଟ କରି ଦେଲାଭଳି କିଛି ଆସନ୍ନ ହୋଇ ଆସୁଛି କି ବୋଲି ଘ୍ରାଣ କରିପାରି ଶଙ୍କା ପ୍ରକାଶ ମଧ୍ୟ କଲେ । ଅସଲ ଶିକ୍ଷା, ତାହା ଯେତେ ସ୍ଥାନୀୟ ଭାବରେ ନିଜକୁ ଅନୁଭୂତ ଏବଂ ପ୍ରଚାରିତ କରି ଆଣୁଥିଲେ ମଧ୍ୟ ଗୁଳାରେ ଅତ୍ୟନ୍ତ ବିଶ୍ୱସ୍ତ ଭାବରେ ଛନ୍ଦିହୋଇ ରହିଥିବା ମନୁଷ୍ୟମାନଙ୍କର ତାହା ସତେଅବା ଶାନ୍ତିଭଙ୍ଗର ଘୋଷଣା କରି ହାବୁଡ଼ିଯାଏ । ଅସଲ ଶିକ୍ଷା କେଉଁଠାରେ ହେଲେ କଦାପି ଆପଣାକୁ ତଥାକଥିତ କେବଳ ଶିକ୍ଷାର ପରିସୀମା ମଧ୍ୟରେ ନିବୁଜ କରି ରଖି ପାରେନାହିଁ । ଚୁନୌତି ଦିଏ, ନାନା ଅପ୍ରତ୍ୟାଶିତ କ୍ଷେତ୍ରରେ ମଧ୍ୟ ତୀବ୍ର ନାନାବିଧ ଆନ୍ଦୋଳନ ସୃଷ୍ଟି କରେ, ସମଗ୍ର ସମାଜକୁ ଦୋହଲାଇ ଦେଲାପରି ଏକ ସନ୍ଦେଶ ବହନ କରି ଆସିଥାଏ । କ୍ରିଷ୍ଟେନ୍ କଲ୍ଡ୍‌ଙ୍କର ଶିକ୍ଷାପ୍ରୟୋଗ ଏକାଧିକ ଅର୍ଥରେ ସେହି ଆନ୍ଦୋଳନଗୁଡ଼ିକର କାରଣ ହୋଇଥିଲା । ବହୁତ ବହୁତ ଶାନ୍ତିଭଙ୍ଗର ଷଡ଼ଯନ୍ତ୍ର କରୁଥିବା ଭଳି ବୋଧ ହେଉଥିଲା । ଗାଆଁ ଅଞ୍ଚଳରୁ ଜଣେ ଅନାମଧେୟ ଅପରିମାର୍ଜିତ ବ୍ୟକ୍ତି ବାହାରି ଅଭାବନୀୟ ଦୃଢ଼ତାର ସହିତ ଏଡ଼େ ବଡ଼ ବଡ଼ କଥା କହିବ, ଏତେ ଏତେ ପ୍ରୟୋଗମାନ କରି ଦେଖାଇଦେବ, - ସେତେବେଳେ ବହୁତ ପ୍ରତିଷ୍ଠିତ ମହଲରୁ ଏଥିଲାଗି ଘୋର ନାସିକାକୁଞ୍ଚନ ହୋଇଥିବ । ତଥାପି, ସେହି ଅଭିନବ କଥାଟିର ମୁହୂର୍ତ୍ତଟି ଆସି ପହଞ୍ଚି ଯାଇଥିବା ପରି କଲ୍ଡ୍ ହିଁ ଆଗକୁ ଆଗକୁ ବାଟ କାଢ଼ି ଚାଲି ଯାଉଥିଲେ । 'ଈଶ୍ୱର ମୋତେ ସତକୁ ସତ ଭଲ ପାଆନ୍ତି' - ଏହି ଗୋଟିଏ ମନ୍ତ୍ରରୁ ସିଏ କେତେ ବଳ ନପାଇଥିଲେ !

ଜଣେ ଶିକ୍ଷକଙ୍କ ସହିତ କଥୋପକଥନ ସମୟରେ ସିଏ ଥରେ କହିଥିଲେ: ''ସ୍ୱୟଂ ମରଣ ବିରୋଧରେ ହିଁ ମୁଁ ଏହି ସଂଗ୍ରାମଟିକୁ ଆରମ୍ଭ କରିଛି । ଏବଂ ଈଶ୍ୱର ଆମ ସହିତ ରହିଛନ୍ତି, ତେଣୁ ଭୟର ଅନୁଭବ କୌଣସି କାରଣ ନାହିଁ । ପ୍ରକୃତରେ କେବଳ ନିଜକୁ ହିଁ ଭୟ

କରିବା କଥା । 'ମୁଁ କେଉଁଠି ଶାନ୍ତ ହୋଇ ରହିଯିବି ନାହିଁ ତ ?' ଏହି ଭାବନାଟି କାଳେ ଗ୍ରାସ କରି ପକାଇବ, ଖାଲି ସେଇଥି ପାଇଁ କିଞ୍ଚିଦ୍ ଆଶଙ୍କା ହୁଏତ ରହିଥିବ ।''

ଶିକ୍ଷକଙ୍କଣକ ପଚାରିଲେ, ''ତେବେ ଆମେ କ'ଣ ନିଜପାଇଁ ଶାନ୍ତିର କାମନା କରିବାନାହିଁ ?''

''ନାଇଁ, ଯେପର୍ଯ୍ୟନ୍ତ ଡେନ୍‌ମାର୍କ୍‌ର ସମସ୍ତ ମଲା ମାଂସରେ ଜୀବନର ପୁନଃସଞ୍ଚାର ନହୋଇଛି, ସେପର୍ଯ୍ୟନ୍ତ କେବେ ନୁହେଁ !

ମୁଁ ଯେଉଁ ଜୀବନ-ବିଦ୍ୟାଳୟର ପ୍ରୟୋଗ ଆରମ୍ଭ କରିଛି, ତାହାର ନିହିତାର୍ଥଗୁଡ଼ିକ ଏତେ ଗଭୀରକୁ ସ୍ପର୍ଶ କରି ରହିଛି ଯେ, ସେଥିରୁ ସଂଘର୍ଷ ଅବଶ୍ୟ ଉପୁଜିବ । ପ୍ରଥମେ ସେମାନେ ବିଦ୍ରୂପ କରିବେ, ଗାଳି ଦେବେ; ତା'ପରେ କ୍ରୋଧ ମଧ୍ୟ ପ୍ରକାଶ କରିବେ । ତଥାପି ଆମ ଗୋଡ଼କୁ ଖସାଇ ଦେଇ ପାରିବେ ନାହିଁ । କ୍ରମେ ସମସ୍ତେ ଆମ ପଟକୁ ଆସିଯିବେ । ତୁମେ କଦାପି ଖାଲି ନିଜ ବିଷୟରେ ଭାବିବାକୁ ଇଚ୍ଛା କରିବନାହିଁ । ନାଇଁ, ନାଇଁ, ଚମକୁ ଟାଣ କରିବାକୁ ହେବ ଏବଂ ଅଗ୍ରସର ହେବାକୁ ହିଁ ପଡ଼ିବ । ଆମେ ପ୍ରକୃତରେ କ'ଣ ଚାହୁଁଛୁ ?

ଆମେ ସମସ୍ତ ଡେନ୍‌ମାର୍କ୍‌କୁ ବଦଳାଇ ଦେବା ।

ତୁମେ ଭାବୁଛ, ଡେନ୍‌ମାର୍କ୍ ଏହିଭଳି ଶାନ୍ତିରେ ରହିଥିବ ଓ ତଥାପି ବଦଳିଯିବ ? ତେଣୁ, ଭରସା ରଖି ନିଜର କାର୍ଯ୍ୟରେ ଲାଗିଯିବା ଉଚିତ । ମାତ୍ର, ସୁନିଶ୍ଚିତ ହୋଇ ରହିଥିବ ଯେ, ତୁମ ଉପରେ ନଜର ପଡ଼ିଯିବା ମାତ୍ରକେ ହିଁ ପୃଥିବୀ ତୁମ ଆଡ଼କୁ ଆସି ପହଞ୍ଚିଯିବ । ତେଣୁ, ସାହସ ଥିବା ଦରକାର, ଶକ୍ତି ଥିବା ବି ଦରକାର !

ତେଣୁ, ଯେତେଜଣଙ୍କୁ ପାରିବା, ଆମେ ଏହି ମାର୍ଗକୁ ଦୀକ୍ଷିତ କରି ଆଣିବା । ଯେଉଁମାନେ ଏବେ ମଧ୍ୟ ପଛରେ ଅଛନ୍ତି, ସେମାନେ ମଧ୍ୟ ଆସି ପହଞ୍ଚିଯିବେ ।

ଶାନ୍ତି- ସେଥିରୁ ଆମେ ଆଦୌ କିଛିହେଲେ ଆଶା କରିବାନାହିଁ । ଆଶା କଲେ ଆପଣାର ଆତ୍ମାକୁ ହରାଇ ବସିବା । ନାଇଁ,- ଯୁଦ୍ଧ ଅବଶ୍ୟ ହେବ । ଆମକୁ ଉଜାଗର ରହିବାକୁ ପଡ଼ିବ ।''

ଯୁଦ୍ଧ ପ୍ରକୃତରେ ଲାଗିଗଲା ।

ନିଜ ସ୍କୁଲଗୁଡ଼ିକ ନିମନ୍ତେ ସେହି ସଂଗ୍ରାମରେ ସିଏ ଅବିଚଳିତ ଭାବରେ ଛିଡ଼ା ହୋଇ ପାରିଥିଲେ । ସେହି କାଳଟିରେ ଯାହାର ଯାହାକିଛି ଶକ୍ତି ରହିଥିଲା, ପ୍ରାୟ ସମସ୍ତଙ୍କ

ସହିତ ଲଢ଼ିବାକୁ ହୋଇଥିଲା ।

ଯେଉଁମାନଙ୍କ ହାତରେ ଲଗାମ ରହିଥିଲା, ସେମାନେ ସମସ୍ତେ କ୍ରୋଧାନ୍ୱିତ ହୋଇ ଉଠିଲେ । ହଁ, ଶିକ୍ଷା କହିଲେ ଅଧିକ ଜ୍ଞାନକୁ ଅବଶ୍ୟ ବୁଝାଇବ, ସେଥିରେ ଆଦୌ କୌଣସି ଆପଦ ନାହିଁ । ଠିକ୍ ଧାରାରେ ଉଚିତ ପ୍ରକାରର ଶିକ୍ଷା ଅବଶ୍ୟ ଦିଆଯିବ । ମାତ୍ର, ଏଇଟା ତ ତା'ଠାରୁ କେତେ ଅଲଗା !

ବିରୋଧୀମାନେ ବହୁତ ବିଳମ୍ବରେ ଉପଲବ୍ଧି କରିଥିଲେ ଯେ ନୂଆ ପ୍ରୟୋଗ ସହିତ କେତେ ନା କେତେ ପରିଣାମ ନିହିତ ହୋଇ ରହିଛି, ଯାହାର କି କୌଣସି କଳନା କରାଯାଇ ପାରିବନାହିଁ । କଲ୍‌ଲ୍ ଯେ ସେମାନଙ୍କୁ କେତେବେଳେ ଅତିକ୍ରମ କରି ଚାଲିଗଲେ, ସେମାନେ ସେବିଷୟରେ କିଛି ଜାଣି ପାରିଲେ ନାହିଁ । ସାନ ଜଳଧାରଟିଏ ଏକ ବୃହତ୍ ନଦୀରେ ପରିଣତ ହେଲା ବେଳକୁ ଯାଇ ସେମାନେ କିଛି ଅନ୍ଦାଜ କରି ପାରିଲେ ।

ସେମାନେ ଚିନ୍ତା କଲେ, ଯଦି ସେମାନେ ପ୍ରଥମେ 'ବୃହତ୍ ସ୍ୱପ୍ନଚାରୀ' ଗ୍ରୁଣ୍ଡ୍‌ଭିଗ୍‌ଙ୍କର କଥାରେ ରାଜୀ ହୋଇ ଯାଇ ଥାଆନ୍ତେ, ତେବେ ସରୁ୍ୟ(Soroe)ଠାରେ ଗୋଟିଏ ବୟସ୍କ ବିଦ୍ୟାଳୟର ସ୍ଥାପନା ହୋଇ ଯାଇଥାନ୍ତା ଓ ତାହାକୁ ସମ୍ପୂର୍ଣ୍ଣ ଭାବରେ ସରକାରୀ ପରିଚାଳନାରେ ରଖି ସେମାନେ ତାହାର କର୍ତ୍ତା ହୋଇ ରହି ପାରିଥାନ୍ତେ । ତେବେ ଭୟର କୌଣସି କାରଣ ହିଁ ନଥାନ୍ତା । ମାତ୍ର ସେତେବେଳେ ଏମାନେ କାହିଁକି ନାହିଁ ବୋଲି କହିଲେ କେଜାଣି !

ମାତ୍ର ପ୍ରଥମର ସେହି ସାନ ବେମାରିଟି କ୍ରମେ ସଂକ୍ରାମିତ ହୋଇ ସମଗ୍ର ଦେଶର କୃଷକକୁଳକୁ ଏକ ଅଭିନବ ଭବିଷ୍ୟଚିତ୍ର ମଧ୍ୟକୁ ଜାଗ୍ରତ କରି ଆଣି ସାରିଲାଣି । ଅଭୂତପୂର୍ବ ଶକ୍ତିରେ ମାଡ଼ି ମାଡ଼ି ଯିବାରେ ଲାଗିଛି । ଏବଂ ଇତିମଧ୍ୟରେ କ୍ରିଷ୍ଟେନ୍ କଲ୍‌ଲ୍ କୃଷକ ଓ କୃଷିଶ୍ରମୀମାନଙ୍କ ନିମନ୍ତେ ନୂଆ ଧରଣର ବିଦ୍ୟାଳୟଟିଏ ଆରମ୍ଭ କରିଦେଇ ସାରିଲେଣି । ବିଦ୍ୟାଳୟର ଘରଗୁଡ଼ାକ ଗୁହାଳ ପରି ଗନ୍ଧାଉଛି ସିନା, ମାତ୍ର ସେଗୁଡ଼ିକରେ ବୃହତ୍ କଥାମାନ ଉଚ୍ଚାରିତ ହେବାରେ ଲାଗିଛି । ହୁଏତ ତାହା ବହୁତ ବିପଦର କାରଣ ହେବାକୁ ଯାଉଛି । ନାନା ଆଶଙ୍କା ମଧ୍ୟ ଆସୁଛି । କଲ୍‌ଲ୍ ତ କହି ସାରିଲେଣି ଯେ ସିଏ ଡେନ୍‌ମାର୍କ୍ ନାମକ ଏହି ଭୂମିଟିକୁ ଏପାଖରୁ ସେପାଖଯାଏ ଦୋହଲାଇ ଦେବାକୁ ବାହାରିଛନ୍ତି । ଜନଗଣଙ୍କ ମଧ୍ୟରେ ଏକ ନୂତନ ଜୀବନଦୃଷ୍ଟି ସଞ୍ଚାର କରି ଆଣିବେ । ଦେଖିବାପାଇଁ ନୂଆ ଆଖିମାନ ପ୍ରଦାନ କରିବେ । ଶୁଣିବାକୁ ନୂଆ କାନ ଦେବେ ଏବଂ ଜଣେ ନୂଆ ମଣିଷ ହିସାବରେ ଜୀବନ ବଞ୍ଚିବାକୁ ନୂଆ ମାର୍ଗଟିଏ ଯୋଗାଇଦେବେ । ଜନଗଣଙ୍କ ଭିତରେ ଏହିସବୁ କଥା ପ୍ରବେଶ କରି ବହୁ ବିପଜ୍ଜନକତାକୁ ଡାକି ନେଇଆସିବ । ଏବଂ, ଏହି ନୂତନ ଜୀବନଦୃଷ୍ଟି

ତଥା ତଦନୁରୂପ କାର୍ଯ୍ୟଗୁଡ଼ିକ ସକାଶେ ସିଏ ସ୍ୱାଧୀନତା ହିଁ ଆବଶ୍ୟକ ବୋଲି କହିଲେଣି । "ସକଳ ପ୍ରତିବନ୍ଧକ ଦୂର ହେଉ" ବୋଲି ଘୋଷଣା କରି ସାରିଲେଣି । ଅଧିକନ୍ତୁ, ସିଏ ତ କହୁଛନ୍ତି ଯେ ଏହିସବୁ କାର୍ଯ୍ୟକୁ ସମ୍ପନ୍ନ କରିବା ନିମନ୍ତେ ସିଏ ଭଗବାନଙ୍କ ଠାରୁ ହିଁ ନିର୍ଦ୍ଦେଶ ପାଇଛନ୍ତି ! ତାଙ୍କୁ କ'ଣ ପ୍ରକୃତରେ ତାଙ୍କ ମାର୍ଗରେ ଅଗ୍ରସର ହେବାକୁ ଛାଡ଼ି ଦିଆଯିବ ? ମାତ୍ର, ତେବେ କେଉଁଯାଏ ଛାଡ଼ି ଦିଆଯିବ ? ଶ୍ରୀଯୁକ୍ତ କଲ୍ଡ୍‌ଙ୍କୁ କଦାପି କେବଳ ଜଣେ ସ୍ୱପ୍ନବିଳାସୀ ଏବଂ କଳ୍ପନାଚାରୀ ବୋଲି କହି ହେବନାହିଁ । ତାଙ୍କ ମୁହଁର କଥାଗୁଡ଼ିକ ବଡ଼ ତୀକ୍ଷ୍ଣ ଏବଂ ତାଙ୍କର ଯାବତୀୟ କାର୍ଯ୍ୟରେ ବ୍ୟାବହାରିକ କୁଶଳତା ଏବଂ ବୁଦ୍ଧିମତ୍ତା ବି ସର୍ବଦା ପୂର୍ଣ୍ଣମାତ୍ରାରେ ରହିଥାଏ । ଏବଂ ସର୍ବୋପରି, ତାଙ୍କର ଅନୁଗାମୀମାନଙ୍କର ସଂଖ୍ୟା ମଧ୍ୟ ଆଦୌ କମ୍ ନୁହେଁ ।

୧୮୫୫ ଖ୍ରୀଷ୍ଟାବ୍ଦରେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର ବନ୍ଧୁମାନଙ୍କର ପ୍ରଚେଷ୍ଟାରେ ଗୋଟିଏ ଆଇନ୍ ପାସ୍ ହୋଇଗଲା, ଯାହାକି ଜଣେ ବ୍ୟକ୍ତିକୁ ସିଏ ଚାହିଲେ ନିଜର ଗୀର୍ଜାମଣ୍ଡଳ ଭିତରୁ ବାହାରି ଚାଲିଯିବାର ସ୍ୱାଧୀନତା ପ୍ରଦାନ କରିଥିଲା । କଲ୍ଡ୍‌ଙ୍କ ଅଞ୍ଚଳରେ ତାଙ୍କ ନେତୃତ୍ୱରେ ବହୁ ଚାଷୀ ସେପରି କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଆଞ୍ଚଳିକ ସହରଟିର ବିଶପ୍ ସେକଥା ଶୁଣିବାକୁ ପାଇଲେ ଓ କଲ୍ଡ୍‌ଙ୍କ ସହିତ କଥାବାର୍ତ୍ତା କରିବାକୁ ଇଚ୍ଛାପ୍ରକାଶ କଲେ । ଚାରି ମାଇଲ୍ ବାଟ ଚାଲି ଚାଲି ଯାଇ କଲ୍ଡ୍ ବିଶପ୍‌ଙ୍କ ପାଖରେ ପହଞ୍ଚିଥିଲେ । ସେଠାରେ ତାଙ୍କୁ ପ୍ରତୀକ୍ଷାଗୃହରେ ବହୁତ ବେଳ ଅପେକ୍ଷା କରିବାକୁ ପଡ଼ିଥିଲା । ଶେଷକୁ ବିଶପ୍ ଆସିଲେ ଓ ତାଙ୍କ ପାଖକୁ ଯାଇ ସିଧା ପଚାରିଲେ:

"ତୁମେ ନିଜର ଗୀର୍ଜାମଣ୍ଡଳୀଟିକୁ ଛାଡ଼ିବ ଅଥଚ ସେହି ମଣ୍ଡଳରେ ଶିକ୍ଷକ ହୋଇ ରହିବ, - ଏକଥା କିପରି ହେବ ?"

"ଆଜ୍ଞା, ଗୀର୍ଜାକୁ ଛାଡ଼ିଲି ବୋଲି ଯେ ମୁଁ ଏହି ମଣ୍ଡଳର ଲୋକମାନଙ୍କୁ ଛାଡ଼ିଦେଲି, ମୁଁ ଏପରି ଭାବୁନାହିଁ ।"

"ତେବେ କହିଲ, ଏହି ଅଞ୍ଚଳର ଲୋକମାନଙ୍କର କ'ଣ କେଉଁଠି ବାଧା ହୋଇଗଲା ଯେ ସେମାନେ ନିଜ ପାଦ୍ରୀଙ୍କୁ ଛାଡ଼ି ଆଉଜଣେ ଅନ୍ୟ ମଣ୍ଡଳର ପାଦ୍ରୀଙ୍କର ଉପାସନା ଓ ପ୍ରବଚନରେ ଯୋଗ ଦେବାକୁ ଯାଉଛନ୍ତି ? ଏଭଳି କରିବାଦ୍ୱାରା ସେମାନେ ଗୋଟିଏ ଖରାପ ଉଦାହରଣ ହିଁ ଦେଖାଉଛନ୍ତି । ମୁଁ ତୁମକୁ ବି ବାବୁ ପଚାରୁଛି: ତୁମର ଅନ୍ତର ଭିତରେ କେଉଁଠାରେ କ'ଣ ଅସୁବିଧା ହୋଇଗଲା ଯେ ତୁମେ ମଧ୍ୟ ନିଜ ନିର୍ଦ୍ଧାରିତ ପାଦ୍ରୀଙ୍କୁ ଅସ୍ୱୀକାର କରୁଛ ?"

"ଆଜ୍ଞା, ଆପଣ ତ ନିଶ୍ଚୟ ଜାଣିଥିବେ ଯେ, ଜଣେ ଜଣେ ବ୍ୟକ୍ତିଙ୍କର ପ୍ରବଚନ

ସୁରା ପରି ଲାଗେ ଓ ଆଉ ଜଣେ ଜଣେ ବ୍ୟକ୍ତିଙ୍କର ତୁଚ୍ଛା ପାଣିପାରି ।'' - କଲ୍‌ଲ୍ ଉତ୍ତର ଦେଲେ । ବିଶପ୍ ଗମ୍ଭୀର ହୋଇ ଶୁଣୁଥିଲେ ।

କଲ୍‌ଲ୍ କହୁଥାନ୍ତି: ''ମନେ କରନ୍ତୁ, ମୁଁ କିଛି ବାଟ ପାଦରେ ଚାଲିଆସି ଥିବାରୁ କ୍ଲାନ୍ତ ହୋଇ ପଡ଼ିଲି ଓ ତେଣୁ କିଛି ଜଳଖିଆ ଖାଇବି ବୋଲି ଭାବିଲି । ମାତ୍ର, ମୋତେ ତୁଚ୍ଛା ପାଣି ବ୍ୟତୀତ ଆଉ କିଛିହେଲେ ମିଳିଲା ନାହିଁ । ଏବଂ, କେବଳ ଗୋଟିଏ ଥର ପାଇଁ ନୁହେଁ, ବାରବାର ସେହିପରି ହିଁ ହେଲା । ତେବେ, ମୁଁ ଯେ ସେହି ସ୍ଥାନକୁ ଜଳଖିଆ ଖାଇବା ପାଇଁ ଆସିବାକୁ ଆଉ ମନ କରିବିନାହିଁ, ମହାଶୟ ସେହି କଥାଟିକୁ ଅବଶ୍ୟ ବୁଝୁଥିବେ ।''

''ମାତ୍ର ତୁମେ ସେଇଟି ସହିତ ଆମେ ପକାଇଥିବା କଥାଟିର କିପରି ତୁଳନା କରିପାରିବ ?''

କଲ୍‌ଲ୍ କହିଲେ, ''ମୁଁ ତେବେ ଆଉଗୋଟିଏ ଉଦାହରଣ ଦେବି । ମନେ କରନ୍ତୁ, ମୋ' ପାଖରେ ଦୁଇଟି ମୁଦ୍ରା ଅଛି ଓ ମୁଁ ସେଥିରୁ ବିଶପ୍‌ଙ୍କୁ ଗୋଟିଏ ଦେବାକୁ ଆସିଛି, ଦୁଇଟିଯାକ ମୁଦ୍ରାକୁ ମୁଁ ଯେମିତି ଟେବୁଲ ଉପରେ ରଖିଲି, ବିଶପ୍ ସେଗୁଡ଼ିକର ବାଜିବାର ଶବ୍ଦରୁ ହିଁ ତତ୍‌କ୍ଷଣାତ୍ ଜାଣିପାରିଲେ ଯେ ଗୋଟିଏ ମୁଦ୍ରା ହେଉଛି ଭଲ ଓ ଆରଟି ଭଲ ନୁହେଁ । ଯଦି ଦୁଇଟି ମଧ୍ୟରୁ ଗୋଟିଏ ବାଛିନେବାକୁ ହୁଏ, ତେବେ ମହାଶୟ କହନ୍ତୁ, ସିଏ ଠିକ୍ ବାଜୁଥିବା ଭଲ ମୁଦ୍ରାଟିକୁ ହିଁ ନେବେ ନା ଆରଟିକୁ ନେବେ ?''

''ଏବେ ଆପଣ ବୁଝିଲେ ତ ? ତେବେ ମୁଁ ଯାଉଛି, ନମସ୍କାର !'' - କଲ୍‌ଲ୍ ବିଦାୟ ନେଇ ଚାଲି ଆସୁଥିଲେ ।

ବିଶପ ପଛରୁ ଡାକିଲେ ଓ କହିଲେ: ''ମୋର ଗୋଟିଏ ପ୍ରସ୍ତାବ ଅଛି । ମୁଁ ଶୁଣିବାକୁ ପାଇଛି ଯେ ତୁମେ ଓ ଡାଲ୍‌ବୁଇର ଅଧିବାସୀମାନେ ଆଉ ଗୋଟିଏ ଗୀର୍ଜାରେ ଯୋଗ ଦେବାକୁ ଯାଉଛନ୍ତି ଓ ସେଠା ପାଦ୍ରୀଙ୍କର ଧର୍ମପ୍ରବଚନ ଭଲ ହେଉଛି ବୋଲି ଅନୁଭବ କରୁଛନ୍ତି । ତେବେ ଆପଣମାନେ ଅନ୍ୟ ଯାବତୀୟ ବିଧାନର କ୍ଷେତ୍ରରେ ମଧ୍ୟ ସେହି ଅନ୍ୟ ଗୀର୍ଜାଟିକୁ ସ୍ୱୀକାର କରିନିଅନ୍ତୁ । ତେବେ ଆଉ ବିବାଦ କରିବାର ବିଶେଷ ଅବକାଶ ରହିବନାହିଁ । ସବୁ ଗୀର୍ଜା ତ ସମାନ, ତେଣୁ ଯିଏ ଯେଉଁଠାକୁ ଯିବାକୁ ମନ କରିବ, ସିଏ ଅବଶ୍ୟ ସେଠାକୁ ଯିବ । ଆଇନ୍ ମଧ୍ୟ ସେଥିପାଇଁ ଅନୁମତି ନେଇସାରିଲାଣି ।''

କଲ୍‌ଲ୍ କହିଥିଲେ, ''ତେବେ ତ ବିଶପ୍ ମହାଶୟ ମୋ'ଠାରୁ ଅଧିକ ଅବହିତ ଅଛନ୍ତି । ମୁଁ ତ ଏତିକି ଜାଣିଛି ଯେ, ପ୍ରକୃତ ବିଶ୍ୱାସ ଥିବା ଜଣେ ପାଦ୍ରୀ ଯେତେବେଳେ ଯାବତୀୟ ଉପଚାର କରିବେ, ସେତେବେଳେ ମୁଁ ଅବଶ୍ୟ ତାହାକୁ ଯଥାର୍ଥ ବୋଲି ଗ୍ରହଣ

କରିବି; ଏବଂ, ଯେଉଁଠାରେ ପାଦ୍ରୀଙ୍କ ବିଷୟରେ ମୁଁ ସେଭଳି କିଛି ଜାଣିନଥିବି, ସେଠାରେ ମୋ' ମନରେ ଅବଶ୍ୟ ସନ୍ଦେହ ରହିଥିବ।''

ଏହା ଶୁଣି ବିଶପ୍ ଏକ ଧର୍ମଗ୍ରନ୍ଥରୁ ଲାଟିନ୍ ଭାଷାରେ ଲେଖା ହୋଇଥିବା ଏକ ଦୀର୍ଘ ଅଂଶ ପାଠ କରି ଶୁଣାଇଥିଲେ ଓ ତା'ପରେ କହିଲେ : ''ନାଇଁ, ମୁଁ ଭାବୁଛି, ପାଦ୍ରୀଙ୍କର ବିଶ୍ୱାସ ଉପରେ ଆଦୌ କିଛି ନିର୍ଭର କରିବ ନାହିଁ। ଯେକୌଣସି ପାଦ୍ରୀ ହୁଅନ୍ତୁ ପଛକେ, ଉପଚାରଗୁଡ଼ିକର ଏକା ପ୍ରଭାବ ପଡ଼ିବ। ଏକଥା ସେମାନଙ୍କର ବିଶପ୍ କହିଛନ୍ତି ବୋଲି ଆପଣ ଆପଣଙ୍କ ସ୍ଥାନର ଲୋକମାନଙ୍କୁ କହିଦେବେ। ସେମାନଙ୍କୁ ମୋ'ର ଶୁଭକାମନା ବି ଦେବେ।''

''ହଁ, ଆପଣଙ୍କର ଶୁଭକାମନା ଜଣାଇଦେଇ ମୁଁ ସେମାନଙ୍କୁ କହିବି ଯେ, ବିଶପ୍ ମହାଶୟ ଏହିଭଳି ଭାବରେ କଥାଟିକୁ ବୁଝୁଛନ୍ତି।'' - କଲ୍ଡ୍ ଏତିକି କହି ବିଦାୟ ନେଇଥିଲେ।

ଥରେ କୌଣସି ପାଦ୍ରୀଙ୍କର ଝିଅଟିଏ ଆସି କଲ୍ଡ୍‌ଙ୍କୁ କହିଥିଲେ : ଆପଣ ଜଣେ ଭାରି ଅଖାଡୁଆ ମଣିଷ ଆଜ୍ଞା ! ଆପଣ ଉପର ଆଉ ତଳ ମଧ୍ୟରେ କୌଣସି ପାର୍ଥକ୍ୟ କରିବେ ନାହିଁ। ସମସ୍ତେ ସେବକ ହୁଅନ୍ତୁ ବୋଲି କହିବେ। କିନ୍ତୁ ଆପଣ ଅନ୍ତତଃ ଏତିକି କଥା ତ ବୁଝି ପାରନ୍ତେ ଯେ, ସବୁ ମଣିଷ କେବେହେଲେ ଶାରୀରିକ ଶ୍ରମ କରି ପାରିବେନାହିଁ। ଏକଥା ସତ ଯେ ଅଧିକାଂଶ ମଣିଷ ତାହା କରିପାରିବେ ଏବଂ ସେମାନଙ୍କୁ ତାହା କରିବାକୁ ବି ପଡ଼ିବ। ସେକଥା ସମସ୍ତେ ଜାଣିଛନ୍ତି; କିନ୍ତୁ ଆମେ ଯେଉଁମାନେ ଶିକ୍ଷିତ, ଆମକୁ ସେଥିରୁ ନିଶ୍ଚୟ ଛୁଟୀ ମିଳିଯିବା ଉଚିତ। କଲ୍ଡ୍ ଉତ୍ତର ଦେଇ କହିଲେ, ଆପଣଙ୍କର ହାତ ଟିକିଏ ଦେଖାଇଲେ। ଝିଅ ନିଜର ହାତ ଦୁଇଟିକୁ ଆଗକୁ ବଢ଼ାଇଦେଲେ।

''ଏକ, ଦୁଇ, ତିନି, ଚାରି ଆଉ ପାଞ୍ଚ,'' - କଲ୍ଡ୍ ଗୋଟିଏ ହାତର ଆଙ୍ଗୁଠିଗୁଡ଼ିକୁ ଗଣି କହିଥିଲେ, ''ଆପଣଙ୍କ ଡାହାଣ ହାତରେ ପାଞ୍ଚଟି ଆଙ୍ଗୁଠି ରହିଛି ଏବଂ ମୁଁ ଧରିନେଉଛି ଯେ ବାଆଁହାତରେ ମଧ୍ୟ ଠିକ୍ ସେତିକିଟି ଆଙ୍ଗୁଠି ରହିଥିବ। ଯେକୌଣସି ଚାଷୀଝିଅର ହାତରେ ମଧ୍ୟ ଆଦୌ ଅଧିକ ସଂଖ୍ୟାର ଆଙ୍ଗୁଠି ନାହିଁ। ଚାଷୀଝିଅଟି ହାତଦ୍ୱାରା କେତେ କେତେ କଠିନ ପରିଶ୍ରମ କରୁଛି ଏବଂ ତଥାପି ସର୍ବଦା ସତେଜ ଏବଂ ଖୁସୀ ରହିପାରୁଛି। ଆପଣ ମଧ୍ୟ ତା'ଠାରୁ କିଛି ଶିକ୍ଷା କରି ନିଜ ହାତଦ୍ୱାରା କିଛି କାମ କରି ପାରିଲେ ଈଶ୍ୱର ମଧ୍ୟ କେଡ଼େ ଖୁସୀ ହୋଇ ଯାଆନ୍ତେ, କହିଲେ ? ଆଉ ଆପଣ ଯେଉଁ ଶିକ୍ଷିତ ହେବା ବିଷୟରେ କହୁଥିଲେ, ଆମକୁ କାମ କରିବାଦ୍ୱାରା ମଧ୍ୟ କମ୍ ଶିକ୍ଷା ମିଳେନାହିଁ। ପଇସା ବେଶୀ ଖର୍ଚ୍ଚ କଲେ ଯେ ଜଣେ ମଣିଷ ଅଧିକ ଶିକ୍ଷିତ ହୁଏ, ତାହା ହେଉଛି ଏକ ଭୁଲ ଧାରଣା।''

ପାଦ୍ରୀମାନଙ୍କ ସହିତ ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର ସାଧାରଣତଃ ଭଲ ପଟୁନଥିଲା । ସିଏ ଦେଖି ପାରୁଥିଲେ ଯେ ପାଦ୍ରୀମାନେ ସାଧାରଣ ମଣିଷମାନଙ୍କ ପ୍ରତି ଭାରି ନାକ ଟେକୁଥିଲେ, - ନିଜ ଜୀବନରେ ଯେମିତି, ପ୍ରଚାରରେ ମଧ୍ୟ ସେମିତି । ଥରେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କ ଘରେ କୌଣସି କଥାରେ ଆଉଜଣେ ପାଦ୍ରୀଙ୍କ ସହିତ ସେ ଏକମତ ହୋଇ ପାରିନଥିଲେ ଏବଂ ସେଥିରୁ ଏକ କଳହ ମଧ୍ୟ ସୃଷ୍ଟି ହୋଇଥିଲା । ପାଦ୍ରୀ ଜଣକ ଭାବିଥିଲେ ଯେ ଏହିପରି ଝଗଡ଼ା ଦ୍ୱାରା ଶ୍ରୀଯୁକ୍ତ କଲ୍‌ଲ ଓ ପାଦ୍ରୀମାନେ,- ଦୁଇ ପକ୍ଷର ହିଁ କ୍ଷତି ହେଉଛି । କଲ୍‌ଲ୍ ଟିକିଏ ନରମ ହୋଇ ପାରନ୍ତେ ନାହିଁ ? ତାଙ୍କୁ ଟିକିଏ ବୁଝାଇଦେବା ଉଦ୍ଦେଶ୍ୟରେ କଲ୍‌ଲ୍‌ଙ୍କର ଜଣେ ଉତ୍ତମ ବନ୍ଧୁ ଆଉ ଜଣେ ପାଦ୍ରୀଙ୍କୁ ସାଙ୍ଗରେ ଧରି ସିଏ ଡାଲୁମ୍‌ରେ ଆସି ପହଞ୍ଚିଲେ । ସ୍ୱୟଂ କଥା ଆରମ୍ଭ କରି କହିଲେ, ''ଆପଣ କାହିଁକି ଟିକକ କଥାରେ ପାଦ୍ରୀମାନଙ୍କ ଉପରେ ବିଗିଡ଼ି ଯାଉଛନ୍ତି ? ମୋତେ ପ୍ରକୃତ କାରଣଟି କହନ୍ତୁ ତ !'' କଲ୍‌ଲ୍ ଉତ୍ତର ଦେଇଥିଲେ, ''ପାଦ୍ରୀମାନଙ୍କ ବିଷୟରେ ମୋ'ର ବିଶାଶହେ ଅଭିଯୋଗ ଅଛି । ....ସବାବଡ଼ ଅଭିଯୋଗଟି ହେଉଛି ଯେ ସେମାନେ ସାଧାରଣ ଲୋକଙ୍କ ସହିତ ଆଦୌ ମିଶି ପାରନ୍ତିନାହିଁ । ସେମାନେ ବଡ଼ବଡ଼ିଆଙ୍କର ଲାଙ୍ଗୁଳ ହୋଇ ରହିବାକୁ ଇଚ୍ଛା କରୁଥାନ୍ତି । ଗୋଟିଏ ଉଦାହରଣ ଦେବି ? ''ଅମୁକ ପାଦ୍ରୀ ମୋ'ର ଜଣେ ଅତ୍ୟନ୍ତ ଉତ୍ତମ ବନ୍ଧୁ । ମୁଁ ସର୍ବଦା ବହୁତ ଖୁସୀ ହୋଇ ତାଙ୍କର ପ୍ରବଚନ ଶୁଣିବା ଲାଗି ଗୀର୍ଜାକୁ ଯାଏ । ଥରେ ରବିବାର ହୋଇଥାଏ, ଆମ ଘରର ପରିଚାରିକା, ମୋ' ସ୍ତ୍ରୀ ଓ ମୁଁ ଏକାଠି ଗୀର୍ଜାକୁ ଯାଇଥିଲୁ । ପ୍ରବଚନ ସରିବାପରେ ପାଦ୍ରୀ ଆମପାଖକୁ ଆସି ମୋତେ ଓ ମୋ' ସ୍ତ୍ରୀଙ୍କୁ ତାଙ୍କ ଘରକୁ ଯିବାକୁ ଡାକିଲେ, ସେଠାରେ ବସି ଗପସପ ହେବା ବୋଲି ପ୍ରସ୍ତାବ ଦେଲେ । ମୁଁ ଧନ୍ୟବାଦ ଦେଇ କହିଲି, ଆମେ ତ ନିଶ୍ଚୟ ଯିବୁ, କିନ୍ତୁ ଆମ ପରିଚାରିକା ମଧ୍ୟ ସାଙ୍ଗରେ ଯିବ । ଆଜି ଆମେ ତିନିଜଣଯାକ ଉପାସନାକୁ ଆସିଥିଲୁ । ପାଦ୍ରୀଙ୍କୁ ପ୍ରସ୍ତାବଟି ମୋଟେ ଭଲ ଲାଗିଲାନାହିଁ । ଚାକରାଣୀଟା ଆମ ସାଙ୍ଗରେ ଗଲେ ଆଦୌ ଶୋଭା ଦିଶିବନାହିଁ । ତାକୁ ନିଜକୁ ମଧ୍ୟ ଭଲ ଲାଗିବନାହିଁ । ମୁଁ ଥର ଥର କରି ଦୁଇଥର କହିଲି ଯେ, ଝିଅଟି ଭାରି ଭଲ ପିଲା, ଆଚରଣ ଅତ୍ୟନ୍ତ ମାର୍ଜିତ; ସିଏ କେବେ ଖାପ ନଖାଇଲା ଭଳି କିଛି କହି କିମ୍ବା କରି ପକାଇବ ନାହିଁ । ତଥାପି ପାଦ୍ରୀଙ୍କ ମନ ନଇଁଲାନାହିଁ । ତେଣୁ ଆମେ ମଧ୍ୟ 'ତେବେ ଥାଉ' ବୋଲି କହି ତାଙ୍କଠାରୁ ବିଦାୟ ନେଇ ଚାଲି ଆସିଥିଲୁ । '' ଅପର ପକ୍ଷକୁ କଲ୍‌ଲ୍‌ଙ୍କ କଥା ମାନିବାକୁ ପଡ଼ିଲା ।

ଦିନେ କଲ୍‌ଲ୍ ଶ୍ରେଣୀରେ ପିଲାମାନଙ୍କୁ କହିଥିଲେ : '' ବର୍ତ୍ତମାନ ମୋ' ପୁରାତନ ବନ୍ଧୁ ଶ୍ରୀଯୁକ୍ତ-- ପାଦ୍ରୀ ହେଲେଣି । ଏବେ ଆଉ ଏଠାକୁ ତାଙ୍କର ପାଦ ଆଦୌ ପଡ଼ିବନାହିଁ । ସିଏ ମୋତେ ଭୟ କରିବେ । ସିଏ କୁଆଡ଼େ କାହାଠାରୁ ଶୁଣିବାକୁ ପାଇଛନ୍ତି ଯେ ଯେକୌଣସି ପାଦ୍ରୀଙ୍କୁ ପାଖରେ ପାଇଲେ ହିଁ ମୁଁ ତାଙ୍କର ମୁଣ୍ଡକୁ ଛେଚି ଗୁଣ୍ଡା କରିଦିଏ । ମାତ୍ର ସେକଥା

ମୋଟେ ଠିକ୍ ନୁହେଁ। ପାଦ୍ରୀର ପଦ ହେଉଛି ପ୍ରକୃତରେ ଗୋଟିଏ ଅତି ଉଚ୍ଚ ପଦ। ଭଗବାନ କଦାପି ସବୁ ମଣିଷଙ୍କୁ ସେହି ପଦଟି ଆଣି ଦିଅନ୍ତିନାହିଁ। କିନ୍ତୁ, ମୂଳତଃ ସେହି କାରଣରୁ ହିଁ ମୁଁ ସେମାନଙ୍କ ଠାରୁ ଅତିବେଶୀ ଆଶା ମଧ୍ୟ କରିଥାଏ। ସେମାନେ ଯଦି ସତକୁ ସତ ମନୁଷ୍ୟମାନଙ୍କର ଆତ୍ମାର ଶୁଶ୍ରୂଷା କରିବେ, ତେବେ ସେମାନଙ୍କର ଆମମାନଙ୍କୁ ସର୍ବଦା ଦେଲାଭଳି କିଛି ଦେବାର ମଧ୍ୟ ଅବଶ୍ୟ ରହିଥିବ। ସେମାନେ ଏପରି କିଛି ଦେଇ ପାରୁଥିବେ, ଯାହାକି ଆମ ଆତ୍ମାର କ୍ଷୁଧାନିବାରଣ କରିପାରିବ, ଯାହାକି ଆମର ପ୍ରାତ୍ୟହିକ ଜୀବନରେ ଆମର କଲ୍ୟାଣକାରୀ ହେଉଥିବ।

''ମାତ୍ର, ବହୁସଂଖ୍ୟକ ପାଦ୍ରୀଙ୍କଠାରେ ପ୍ରକୃତରେ କିଛିହେଲେ ନଥାଏ। କେତେକଙ୍କ ପାଖରେ ହୁଏତ କିଛି ଥାଏ, ମାତ୍ର ସେମାନେ ଆମକୁ ଟାଉ ଟାଉ ହୋଇ ଏକାବେଳେକେ ଏତେ ଉଚ୍ଚକୁ ଉଡ଼ାଇନେବାକୁ ଇଚ୍ଛା କରୁଥାନ୍ତି ଯେ, ଆମେ ତା ଫଳରେ ଆମର ବାସ୍ତବ ଜୀବନଟିକୁ ପାସୋରି ପକାଉ। କିନ୍ତୁ, ନିରାଟ ସତ୍ୟକଥାଟି ହେଉଛି ଯେ,ରନ୍ଧାଘରେ ଓ ରହିବାଘରେ, ଗାଈଗୁହାଳରେ ଓ କ୍ଷେତରେ, ନିଜର ପତ୍ନୀ, ପିଲା ଏବଂ ପରିଚାରିକା ମାନଙ୍କର ମେଳରେ ହିଁ ଆମକୁ ନିଜ ଜୀବନଟିକୁ ବଞ୍ଚିବାକୁ ହୋଇଥାଏ। ପାଦ୍ରୀମାନେ ସେହି କଥାଟିକୁ ନବୁଝିଲେ ପୁଣି କିପରି ହେବ ? ମୁଁ ସର୍ବଦା ସେହି କଥାଟିକୁ ହିଁ ମୋ' ସମ୍ମୁଖରେ ଧରି ରଖିଥାଏ ଓ ହୁଏତ ସେଇଥିପାଇଁ ପାଦ୍ରୀମାନେ ମୋତେ ଏଡ଼ି ରହିବାପାଇଁ ଚେଷ୍ଟା କରୁଥାନ୍ତି।''

ତେଣୁ କଲ୍‌ଲ୍ ସର୍ବଦା ପାଦ୍ରୀମାନଙ୍କ ପ୍ରତି ଭାରି କଠୋର ହୋଇ ପଡୁଥିଲେ। ପାଦ୍ରୀମାନେ ତ ସବୁକଥାରେ ଈଶ୍ୱରତତ୍ତ୍ୱ ଓ ଗ୍ରନ୍ଥଜ୍ଞାନର ବଖାଣ ଆଣି ଥୋଉଥିଲେ ଏବଂ କଲ୍‌ଲ୍ ସେମାନଙ୍କୁ ପୁନର୍ବାର ଭୂଇଁ ଉପରକୁ ଖସାଇ ଆଣିବାଲାଗି ଚେଷ୍ଟା କରୁଥିଲେ। ''ପାଦ୍ରୀମାନେ ସବୁକଥାକୁ ଖାଲି ଗୋଳିଆମିଶା କରିଦିଅନ୍ତି ଏବଂ ତେଣୁ କେବଳ ଅସ୍ପଷ୍ଟ କରି ରଖିଥାନ୍ତି।'' - ସେ ଥରେ କହିଥିଲେ। ପାଦ୍ରୀମାନଙ୍କର ମେଳ ଅପେକ୍ଷା ସେ ବରଂ ପରିବାରମାନଙ୍କରେ ସମୟ କଟାଇବାକୁ ଅଧିକ ପସନ୍ଦ କରୁଥିଲେ, ସେଠାରେ ପରିବାରର ବଡ଼, ସାନ ଏବଂ ପରିଚାରକ ମାନଙ୍କ ସହିତ କଥା ହୋଇ ଘଣ୍ଟା ଘଣ୍ଟା କଟାଇ ଦେଉଥିଲେ ଏବଂ ତଦ୍ୱାରା ସଂପୃକ୍ତ ସମସ୍ତେ ହିଁ ବହୁତ ଆନନ୍ଦ ଲାଭ କରୁଥିଲେ। ପାଦ୍ରୀମାନଙ୍କ ତୁଳନାରେ ସିଏ ହିଁ ମନୁଷ୍ୟସମୂହର ଅଧିକ ଉପକାର କରୁଥିଲେ।

ଆଉ ଥରକର ଘଟଣା। ଶ୍ରୀଯୁକ୍ତ କଲ୍‌ଲ୍ ପ୍ରାୟ ବର୍ଷେ ହେଲା ତାଙ୍କ ବୟସ୍କ ବିଦ୍ୟାଳୟଟିକୁ ଆରମ୍ଭ କରିଥାନ୍ତି। ଆର୍ଥିକ ବହୁ ଅସୁବିଧା ମଧ୍ୟରେ ଯିବାକୁ ପଡୁଥାଏ। ସିଏ ସିଧା ରାଜଧାନୀରେ ଥିବା ଉଚ୍ଚତମ ଗୀର୍ଜାବିଭାଗୀୟ ମନ୍ତ୍ରୀଙ୍କ ପାଖକୁ ଯିବାକୁ ବିଚାର କଲେ। ଏତେ ଏତେ ବିଦ୍ୟାଳୟ ସାହାଯ୍ୟ ମାଗୁଛନ୍ତି ଓ ପାଉଛନ୍ତି, ସିଏ କାହିଁକି ନପାଇବେ ?

କିନ୍ତୁ ଆଗରୁ କୌଣସି ଦରଖାସ୍ତ ନପଠାଇ ସିଧା ପହଞ୍ଚିବେ ଓ ମୁହେଁ ମୁହେଁ ସବୁ କହିବେ ବୋଲି ଠିକ୍ କଲେ ।

ପୂର୍ବ ସବୁଥର ପରି ସିଏ ଚାଲି ଚାଲି ଯାଇ ରାଜଧାନୀରେ ପହଞ୍ଚିଥିଲେ । ପ୍ରଥମେ ରାତିଟା ଗ୍ରୁନ୍‌ଡ୍ଭିଗ୍‌ଙ୍କ ପାଖରେ ରହିଲେ । ପରଦିନ ମଧ୍ୟାହ୍ନଭୋଜନ ଅନ୍ତେ ବନ୍ଧୁମାନେ ତାଙ୍କୁ କପେ କଫି ସାଙ୍ଗ ହୋଇ ପିଇବାକୁ ଅନୁରୋଧ କରିଥିଲେ । ''ମୁଁ କଫି ପିଏନାହିଁ'' ବୋଲି କହି ସେ ଅସମ୍ମତି ଜଣାଇଲେ । ଇଏ ପୁଣି କି ବିଚିତ୍ର କଥା ! କପେ କଫି ପିଇଦେଲେ କ'ଣ ପ୍ରଣବ ଅଶୁଦ୍ଧି ହୋଇଯିବ ?- ବନ୍ଧୁମାନେ ଭାରି ନାପସନ୍ଦ କରି କହିଥିଲେ । କଲ୍‌ଲ୍ ଅତି ଧୀର ଚିତ୍ତରେ ଶଙ୍କା ସମାଧାନ କରି କହିଥିଲେ, ''ମୁଁ ଯେ କଫି ପିଇବାକୁ ମନା କରୁଛି, ତାହାର କାରଣ ଅଛି । ମୋ' ପାଖରେ କଫି ପିଇବାର ସାମର୍ଥ୍ୟ ନାହିଁ ବୋଲି ମୁଁ କଫି ପିଉନାହିଁ ।'' କେହି ସେ କଥାରେ ମୋଟେ ବିଶ୍ୱାସ କରିନଥିଲେ । ତେଣୁ ସବୁକଥା ବୁଝାଇ ଦେଇ କଲ୍‌ଲ୍ ଜବାବ ଦେଇ କହିଲେ: '' ଯଦି ମୁଁ କଫି ପିଇବି, ତେବେ ସେଠି ଆମ ବିଦ୍ୟାଳୟରେ ମଧ୍ୟ ସମସ୍ତେ କାହିଁକି ସେହି ସୁବିଧାଟିକୁ ନପାଇବେ ? ଏବଂ ସେଥିପାଇଁ ବର୍ଷକୁ ଯେତୋଟି ମୁଦ୍ରା ଖର୍ଚ୍ଚ ହେବ ସେଥିପାଇଁ ମୋର କଦାପି ସାମର୍ଥ୍ୟ ହେବନାହିଁ । '' ସେ କ୍ଷଣେ ରହିଯାଇ ପୁନର୍ବାର କହିଲେ, ''ସେହି ଅଧିକ ପଇସା କେଉଁଠାରୁ ଆସିପାରନ୍ତା, ସେବିଷୟରେ ମଧ୍ୟ ମୋର ବୁଦ୍ଧି ଖୁବ୍ ପାଉଛି । ଏଥିପାଇଁ ମୋତେ କେବଳ ସଚିବାଳୟର ଗୀର୍ଜାବିଭାଗରେ ଯାଇ ପହଞ୍ଚି ଯିବାକୁ ପଡ଼ିବ । ସେଠାରେ ମାନନୀୟ ମନ୍ତ୍ରୀମହାଶୟ କହିବାକୁ ଆରମ୍ଭ କରିଦେବେ: ଆପଣଙ୍କୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ପଇସା ସଙ୍ଗେ ସଙ୍ଗେ ମିଳିଯିବ, କିନ୍ତୁ ଏଥିପାଇଁ ଆପଣ କେବଳ ଏହି ଗୋଟିଏ କଥାରେ ରାଜୀ ହୋଇଯିବେ ଯେ, ଆପଣଙ୍କର ବିଦ୍ୟାଳୟକୁ ମୋ' ବିଭାଗର ବିଶପ୍ ଓ ପାଦ୍ରୀମାନେ ଆସିପାରିବେ ଏବଂ ବିଦ୍ୟାଳୟର ପରିଚାଳନାରେ ଆମ ତରଫରୁ ମଧ୍ୟ କିଛି ଭାଗ ରହିବ । ଆମେ ଆଦୌ ଖୁବ୍‌ବେଶୀ ହସ୍ତକ୍ଷେପ କରିବୁନାହିଁ । ଆପଣ ସେବିଷୟରେ କୌଣସି ଭୟ କରନ୍ତୁନାହିଁ;- କେବଳ କ୍ଷୁଦ୍ର ଆଙ୍ଗୁଠିଟିଏ ପରି କିଞ୍ଚିତ୍ ହସ୍ତକ୍ଷେପ କରାଯାଇ ପାରୁଥିବ । କିନ୍ତୁ,କୌଣସି ବିଶପ୍ କିମ୍ବା ପାଦ୍ରୀ ମୋ' ସ୍କୁଲରେ ହସ୍ତକ୍ଷେପ କରନ୍ତୁ, ଏକଥା ମୁଁ କେବେହେଲେ ଇଚ୍ଛା କରିବିନାହିଁ । ତେଣୁ, ବରଂ କଫି ନପିଇଲେ ମଧ୍ୟ ଚଳିବ ।''

ବନ୍ଧୁମାନେ ବୁଝିଗଲେ । ସତେ ଯେପରି ସେମାନଙ୍କ ଆଖି ଆଗରେ ସେମାନେ ଏକ ନୂଆ ବିବେକର ପୃଥିବୀକୁ ହିଁ ପ୍ରତ୍ୟକ୍ଷ କରୁଥିଲେ । ସେମାନଙ୍କ ସମ୍ମୁଖରେ ହଜାର ହଜାର ସଂଖ୍ୟାର ସରକାରୀ କର୍ମକର୍ତ୍ତା ମାନଙ୍କର ଚିତ୍ର ଭାସି ଯାଉଥିବା ପରି ମନେ ହେଲା, - ଜନଗଣଙ୍କର ବେତନପ୍ରାପ୍ତ ପରିକର ହୋଇ ସେମାନେ କେତେ କୁଆଡ଼େ ଯାଆନ୍ତି ଏବଂ

ଆପଣାର ସମ୍ପୂର୍ଣ୍ଣ ଅନ୍ତଃକରଣରେ କହିବାରେ ଲାଗିଥାନ୍ତି: ସବାଆଗ ତୁମେ ମୋର ସେବା କର, ମୋତେ ଯଥାସମ୍ଭବ ସକଳ ସାମଗ୍ରୀ ଯୋଗାଇଦିଅ । ମୁଁ ଯେପରି ଅଧିକରୁ ଅଧିକ ସମ୍ପନ୍ନ ଓ ଉତ୍ତମରୂପେ ନିଜେ ବଞ୍ଚିପାରିବି, ଆଗ ସେହିସବୁ ବ୍ୟବସ୍ଥା କରିଦିଅ । ତେବେଯାଇ ସିନା ମୁଁ ତୁମର ସେବା କରିପାରିବି ! ତା'ନହେଲେ ମୁଁ ଇଞ୍ଚେ ମଧ୍ୟ ହଲିବିନାହିଁ । ଏବଂ, ଅନ୍ୟ ପକ୍ଷରେ, ସେମାନେ ଭାବୁଥିଲେ, ଶ୍ରୀଯୁକ୍ତ କଲ୍ଲ୍ ତାଙ୍କର କାର୍ଯ୍ୟରେ ଆବଶ୍ୟକ ଯାବତୀୟ ବସ୍ତୁଲାଗି କେବଳ ଭଗବାନଙ୍କ ଉପରେ ହିଁ ଭରସା ଓ ବିଶ୍ୱାସ ରଖିଛନ୍ତି ଏବଂ ତାଙ୍କର ହିଁ ସେବା କରିବାରେ ଲାଗିଛନ୍ତି ।

ତହିଁ ଆରଦିନ କଲ୍ଲ୍ ମନ୍ତ୍ରୀଙ୍କର ପ୍ରତୀକ୍ଷାଗୃହରେ ଯାଇ ପହଞ୍ଚିଗଲେ । ସେଠାରେ ଆଉଜଣେ ପାଦ୍ରୀ ବି ଥିଲେ ଓ ସିଏ କଲ୍ଲ୍‌ଙ୍କୁ ଚିହ୍ନିଥିଲେ । ତଥାପି ତାଙ୍କ ଆଖି ପାଦ୍ରୀଙ୍କ ଉପରେ ପଡ଼ିନଥାଏ । ସିଏ ଅତ୍ୟନ୍ତ ଗମ୍ଭୀର ହୋଇ ଚିନ୍ତା କରୁଥାଆନ୍ତି, ମନ୍ତ୍ରୀ ସେଠାରେ ପହଞ୍ଚିବା ମାତ୍ରକେ ତାଙ୍କ ମୁହଁରୁ ନିୟମ ଅନୁସାରେ 'ମାନ୍ୟବର ମନ୍ତ୍ରୀ' ବୋଲି ସମ୍ବୋଧନପଦଟି ବାହାରିବାରେ କୌଣସି ହେଳା ହୋଇଯିବ ନାହିଁ ତ? - ବୋଲି ସନ୍ଦେହ ପ୍ରକାଶ କରୁଥାନ୍ତି । ମନ୍ତ୍ରୀ ଇତିମଧ୍ୟରେ ଆସିଗଲେ ଏବଂ କୁଶଳଜିଜ୍ଞାସା ବି କଲେ । କଥା ପ୍ରସଙ୍ଗରେ ସିଏ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କ ଦ୍ୱାରା ଅନୁପ୍ରାଣିତ ଗୋଷ୍ଠୀଟି କଥା ପକାଇଲେ ଓ କହିଲେ ଯେ ଏହି ଗୋଷ୍ଠୀର ବ୍ୟକ୍ତିମାନେ ତାଙ୍କୁ ମୋଟେ ଭଲ ଲାଗନ୍ତିନାହିଁ : ''ଉଦାହରଣ ସ୍ୱରୂପ ଦେଖନ୍ତୁ, ସେମାନେ ଡେନ୍‌ମାର୍କ୍ ଓ ଡେନ୍‌ମାର୍କ୍‌ର ଅଧିବାସୀମାନଙ୍କ ବିଷୟରେ ଭାବପ୍ରବଣ ହୋଇ କେତେ ଆଦର୍ଶବାଦୀ କଥାମାନ କହୁଛନ୍ତି, ସତେ ଯେପରି ପୃଥିବୀଟା ଯାକ କେଉଁଠିହେଲେ ଆଉ ଅଧିକ ଉତ୍ତମ ଜନସମୂହ ଆଦୌ ନାହାନ୍ତି ! ମାତ୍ର ଇତିହାସ କହୁଛି ଓ ଆମେ ସମସ୍ତେ ଖୁବ୍ ଭଲ କରି ଜାଣିଛୁ ଯେ ପୃଥିବୀରେ ବଡ଼ିଆ ବଡ଼ିଆ ବହୁତ ଦେଶ ଅଛନ୍ତି ଏବଂ ବଡ଼ିଆ ମନୁଷ୍ୟସମୂହ ମଧ୍ୟ ରହିଛନ୍ତି । ତେଣୁ, ଏଠି ଆମ ଦେଶରେ ଆମେ ନିଜର ଏହି ଭୂମିଟିକୁ ଏକ ମାମୁଲି ଓ କ୍ଷୁଦ୍ର ଭୂମି ବୋଲି ଅବଶ୍ୟ ସ୍ୱୀକାର କରିବା ଓ ତାହାହିଁ ଅଧିକ ଯୁକ୍ତିଯୁକ୍ତ ହେବ ।'' କଥାଟିର ଉତ୍ତର ଦେବାକୁ ଅନୁମତି ନେଇ କଲ୍ଲ୍ କହିଥିଲେ : ମନେ କରନ୍ତୁ ଯେ ଜଣେ ବିଶପ୍‌ଙ୍କର ଜଣେ ପତ୍ନୀ ଅଛନ୍ତି ଏବଂ ବିଶପ୍ ଅତ୍ୟନ୍ତ ଦୃଢ଼ ଭାବରେ ବିଶ୍ୱାସ କରୁଛନ୍ତି ଯେ ତାଙ୍କର ସେହି ପତ୍ନୀ ହେଉଛି ବିଶ୍ୱର ସର୍ବଶ୍ରେଷ୍ଠା ନାରୀ । ମାତ୍ର, ତାହାର ଆଦୌ ଅର୍ଥ ନୁହେଁ ସେ ଅନ୍ୟମାନେ ମଧ୍ୟ ଠିକ୍ ତାହାହିଁ ବିଶ୍ୱାସ କରିବାଲାଗି ବାଧ୍ୟ ହେବେ । ମାତ୍ର, ଉଭୟେ ବିଶପ୍ ଏବଂ ତାଙ୍କର ପତ୍ନୀ ଯେତେବେଳେ ସେହିଭଳି ବିଶ୍ୱାସ କରୁଛନ୍ତି, ସେତେବେଳେ ତାହା ସେମାନଙ୍କ ଲାଗି ଅଧିକ ଆନନ୍ଦର କାରଣ ହେଉନାହିଁ କି ?'' ଏହି କଥାଟିର ଉତ୍ତର ଦେବା ଆଦୌ ସହଜ ନଥିଲା । ମନ୍ତ୍ରୀ ମହୋଦୟ ପ୍ରସଙ୍ଗଟିକୁ

ଆଉ ଆଗକୁ ବଢ଼ାଇବା ପାଇଁ ଇଚ୍ଛା କଲେନାହିଁ ଏବଂ ତେଣୁ ତା'ପରେ ସିଏ ଅନ୍ୟ ପ୍ରସଙ୍ଗ ପକାଇଥିଲେ ।

ଶ୍ରୀଯୁକ୍ତ କଲ୍‌ଲ୍ ମନ୍ତ୍ରୀଙ୍କ ପାଖକୁ ଆସିଥିବାର ଅସଲ ଅଭିପ୍ରାୟଟିକୁ ପ୍ରକାଶ କଲେ । ଜଣେ ମନୁଷ୍ୟ ପ୍ରକୃତରେ ଯାହା, ଅନ୍ୟମାନଙ୍କ ସମ୍ମୁଖରେ, ବଡ଼ ଓ ସାନ ସମସ୍ତଙ୍କ ସମ୍ମୁଖରେ ଆପଣାର ସେହି ପରିଚୟଟିକୁ ହିଁ ଦେଇ ପାରିବା, କଲ୍‌ଲ୍ ଜଣେ ଯଥାର୍ଥ ମଣିଷର ଏହାକୁ ହିଁ ଅସଲ ସନ୍ତକ ବୋଲି ମାନୁଥିଲେ । ଏବଂ, ସେହି ସନ୍ତକ ବା ସଞ୍ଚାଟି ଅନୁସାରେ ଏକ ଦୃଷ୍ଟାନ୍ତ ହୋଇପାରିବାର ପ୍ରକ୍ରିୟାରେ ସିଏ ଲକ୍ଷ ଲକ୍ଷ ମନୁଷ୍ୟଙ୍କର ତୁଳନାରେ ବହୁତ, ବହୁତ ଆଗକୁ ପ୍ରକୃତରେ ଯାଇ ପାରିଥିଲେ । ସତ୍ୟର ମହିମା ହେଉଛି ସବୁ ମଣିଷଙ୍କ ପାଇଁ ଆସ୍ପୃହା କରିବାର ସର୍ବୋଚ୍ଚ ମହିମା, କଲ୍‌ଲ୍ ଅତ୍ୟନ୍ତ ଅବିଚଳିତ ଭାବରେ ସେହି କଥାଟିକୁ ନିରନ୍ତର ନିଜ ଆଗରେ ଉତ୍ତୋଳିତ କରି ରଖିଥିଲେ । ଏବଂ, ସେହି ମହିମା ତଥା ତାହାର ଅତୁଳ ଆହ୍ୱାନକୁ ବହନ କରି ପ୍ରତ୍ୟେକ ବ୍ୟକ୍ତି ଏହି ଜଗତକୁ ଆସିଛି ବୋଲି ମଧ୍ୟ ସେ ସର୍ବଦା ବିଶ୍ୱାସ କରୁଥିଲେ । ଏବଂ, ସେ ଅନ୍ୟମାନଙ୍କ ପାଖରୁ ଯାହାକିଛି ଦାବୀ କରୁଥିଲେ, ନିଜ ଜୀବନର ଯାବତୀୟ କରଣିରେ ମଧ୍ୟ ତାହାକୁ ପ୍ରତିପାଦନ କରୁଥିଲେ । ଅନ୍ୟମାନଙ୍କ ଉପରେ ଅଧିକ ଗୁଡ଼ାଏ ଦାବୀ କରିବା ବିଷୟରେ ତେଣୁ ସେ ସର୍ବଦା ଅତ୍ୟନ୍ତ ସତର୍କ ରହୁଥିଲେ । ତାଙ୍କ ନିମନ୍ତେ ଶିକ୍ଷା ଦେବା ଏବଂ ଜୀବନଟିକୁ ବଞ୍ଚିବା ମଧ୍ୟରେ ଆଦୌ କୌଣସି ବ୍ୟବଧାନ ନଥିଲା । ଏବଂ, ସୁନିଶ୍ଚିତ ଭାବରେ ସେହି କାରଣରୁ ହିଁ ସିଏ ଉଚ୍ଚାରଣ କରୁଥିବା ଯାବତୀୟ କଥାରେ ଏତେ ଶକ୍ତି ନିହିତ ହୋଇ ରହିଥିଲା । ସକଳ ସମୟର ଶିକ୍ଷକମାନଙ୍କ ସକାଶେ କଲ୍‌ଲ୍‌ଙ୍କର ସନ୍ଦେଶ ସବୁଦିନ ଲାଗି ଏକ ଶକ୍ତିମନ୍ତ ଆହ୍ୱାନ ହୋଇ ରହିଥିବ ! ତୁ ନିଜକୁ ବିହନଟିଏ କରି ରଖିଥିବୁ; ତୋ'ର ଉଚ୍ଚ ଆସ୍ଥାନ ଉପରୁ ଅତ୍ୟନ୍ତ ସ୍ୱଭାବପ୍ରେରିତ ଭାବରେ ଓହ୍ଲାଇ ଆସି ପାରୁଥିବୁ ଏବଂ ସତକୁ ସତ ଜଣେ ପରିକର ହୋଇଯିବୁ ! ନିଜେ ଜୀଇଥିଲେ ଓ ଜୀଇ ପାରୁଥିଲେ ହିଁ ତୁମେ ଅନ୍ୟମାନଙ୍କ ଭିତରେ ମଧ୍ୟ ଜୀବନର ପ୍ରେରଣାକୁ ଆଣି ଭରିଦେଇ ପାରିବ । ତୁମ ଭିତରେ ବିଶ୍ୱାସ ରହିଥିଲେ ଯାଇ ତାହା ଅନ୍ୟମାନଙ୍କ ମଧ୍ୟରେ ବିଶ୍ୱାସ ଭରିଦେଇ ପାରିବ । ବିଚାର, ଭାବନା, ଜ୍ଞାନ ଓ ପାଣ୍ଡିତ୍ୟ, - ଏସବୁ ଯେକୌଣସି ଗଛର ଝରାପତର ପରି । ଗଦା ଗଦା କଥା ଜାଣିଥିଲେ ମଧ୍ୟ ତଥାପି ଖାଲି ତାହାକୁ ହିଁ ଆଶ୍ରୟ କରି କଦାପି ଜୀବନଟିଏ ବଞ୍ଚି ହେବନାହିଁ । ମାତ୍ର, ଯଦି ଏପରି ଜଣେ ମଣିଷ ସହିତ ସାକ୍ଷାତ୍‌କାର ହୋଇଯିବ ଯିଏକି ଏକ ଯଥାର୍ଥ ମନୁଷ୍ୟଜୀବନର ନମୁନାଟିଏ ହୋଇ ରହିଥିବ, ତେବେଯାଇ ତାହା ସମ୍ଭବ ହେବ । ସିଏ ତ ସିଧା ଓହ୍ଲାଇ ଆସିବ ଓ ତୁମଠାରେ ଅଗ୍ନିସଂଯୋଗ କରିଦେବ ।

- ୫ -

ଶ୍ରୀଯୁକ୍ତ କଲ୍ଲ୍ ଗାଆଁରେ ଜନ୍ମ ହୋଇଥିଲେ । ନୂଆ ଗଢ଼ଣରେ ଯେତେବେଳେ ପିଲାଙ୍କ ସକାଶେ ବିଦ୍ୟାଳୟ ଆରମ୍ଭ କଲେ, ସେତେବେଳେ ତାହା ଗାଆଁରେ ହିଁ ଆରମ୍ଭ ହୋଇଥିଲା । ଗାଆଁର ଚାଷୀମାନେ ହିଁ ତାଙ୍କୁ ଅଧିକ ଅନ୍ତରଙ୍ଗ ଭାବରେ ବୁଝୁଥିଲେ ଏବଂ ଗ୍ରାମାଞ୍ଚଳରେ ହିଁ ସେ ନିଜକୁ ଆପଣା ପାଇଁ ଉଦ୍ଦିଷ୍ଟ ସର୍ବୋତ୍ତମ ପରିବେଶରେ ରହିଥିବା ପରି ଅନୁଭବ କରୁଥିଲେ । ଗଣବିଦ୍ୟାଳୟର କଳ୍ପନା ମଧ୍ୟରେ ଚାଷୀଘରର ପୁଅଝିଅମାନେ ହିଁ ସବା ଆଗରେ ରହିଥିଲେ । ନିଜ ଦେଶର ଯାବତୀୟ ଭବିଷ୍ୟ-କଳ୍ପନାରେ ସିଏ ସର୍ବଦା ଡେନ୍‌ମାର୍କ୍‌ର କୃଷକମାନଙ୍କୁ ହିଁ କେନ୍ଦ୍ରବିନ୍ଦୁ ରୂପେ ଦେଖୁଥିଲେ । ତାଙ୍କ ନିଜର ମଧ୍ୟ ଏକ କୃଷିକ୍ଷେତ୍ର ଥିଲା । ସେଇଟିର ନିର୍ବାହରେ ସେ ଅନ୍ୟ କେବଳ କୃଷକ ମାନଙ୍କର ତୁଳନାରେ ଆଦୌ କୌଣସି ଗୁଣରେ କମ୍ ନଥିଲେ । ନିଜ କୃଷିପରିକର ମାନଙ୍କୁ ଉତ୍ତମ ବୁଝାମଣା ସହିତ ପରିଚାଳନା କରି ପାରୁଥିଲେ । ତାଙ୍କ ପଡ଼ିଶାରେ ଥିବା ଜଣେ ଚାଷୀ ଥରେ ବଡ଼ ଆଶ୍ଚର୍ଯ୍ୟ ହୋଇ କହି ପକାଇଥିଲେ ଯେ, କଥାବାର୍ତ୍ତା ସମୟରେ କଲ୍ଲ୍ ସର୍ବଦା ବିଦ୍ୟାଳୟ, ନୂଆ ଶିକ୍ଷା ଏବଂ ମଣିଷର ଭିତରେ ଜାଗ୍ରତ ହେବାକୁ ଅପେକ୍ଷା କରି ରହିଥିବା ଆତ୍ମା ବିଷୟରେ କହୁଥିଲେ ଏବଂ ତଥାପି ଜଣେ ଭୂମିଚାଷୀ କୃଷକ ହିସାବରେ ମଧ୍ୟ ଅତ୍ୟନ୍ତ ନିପୁଣ ଏବଂ ନିଖୁଣ ଭାବରେ ନିଜର ସକଳ କାର୍ଯ୍ୟ ସମ୍ପନ୍ନ କରି ପାରୁଥିଲେ । ତାଙ୍କ ପାଖରେ କାମ କରୁଥିବା ମୂଲିଆମାନେ କେବେହେଲେ ତାଙ୍କ କଥାରୁ ବାହାର ହୋଇ ଯାଉନଥିଲେ, ତାଙ୍କ ଜମିରେ ଭଲ ଫସଲ ଫଳୁଥିଲା ଓ ସିଏ ସମସ୍ତଙ୍କ ଠାରୁ ଅଧିକ ଅମଳ କରୁଥିଲେ ।

ଥରେ ତାଙ୍କୁ ଭେଟି ଆସିଥିବା ଜଣେ ବନ୍ଧୁଙ୍କୁ କଲ୍ଲ୍ କହିଥିଲେ: ''ଏଥର ଫସଲ ଭଲ ହୋଇଛି । ଗୋରୁଙ୍କ ପାଇଁ ଦାନା ମଧ୍ୟ ଭାରି ଭଲ ଫଳିଛି । ମୋ ପାଖରେ ତ ଅଳ୍ପ ସଂଖ୍ୟାର ଗାଈ ଥିଲେ, ଏଥର ସେମାନଙ୍କର ସଂଖ୍ୟା ଆହୁରି ଦଶ ବଢ଼ାଇବାକୁ ପଡ଼ିବ । ସମ୍ପତ୍ତି ବଢ଼ିବ, ଧନ୍ଦା ବଢ଼ିବ; ମାତ୍ର ଏହିଭଳି ହେଉ ହେଉ ଯେପରି ପୃଥିବୀଟା ଆସି ଗିଳି ନପକାଏ, ସେହି ବିଷୟରେ କ୍ରମେ ସତର୍କ ରହିବାକୁ ପଡ଼ିବ । ସଂସାର ବଡ଼ ବଳବାନ, ଭାରି ଲୋଭ ଦେଖାଏ, - ଚାଷୀମାନଙ୍କୁ ମଧ୍ୟ କମ୍ ଲୋଭ ଦେଖାଏ ନାହିଁ । ଏହି ସଂସାରରେ ବୋଧହୁଏ ଗୋଟିଏ ନୁହେଁ, ଏକାବେଳେକେ ନଅଟା ମୁଣ୍ଡ; ଏବଂ, ଯଦି ତୁମେ ଯାଇ ସେଥିରୁ ଗୋଟାକୁ ହାଣି ତଳେ ପକାଇଦେବ, ତେବେ ତତ୍‌କ୍ଷଣାତ୍ ତାହା ସ୍ଥାନରେ ଆହୁରି ତିନିଚାରିଟା

ଆସି ପହଞ୍ଚିଯିବ । ତୁମେ ଆଦୌ କିଛି ଜାଣି ପାରିବନାହିଁ । ନିଜପାଇଁ ସଂଗ୍ରହ କରିବା ଓ ଅଧିକରୁ ଅଧିକ ସଂଚୟ କରିବା ନିଶ୍ଚୟ ଗୋଟିଏ ଅପରାଧ, - କିନ୍ତୁ ନିଜକୁ ସୁଖ ଭିତରେ ବୁଡ଼ାଇ ରଖିବା ଓ ବରବାଦ କରିବାରେ ଲାଗିଥିବା, - ଇଏ ମଧ୍ୟ କମ୍ ବଡ଼ ଅପରାଧ ନୁହେଁ । ଏହି ଦ୍ୱିତୀୟଟା ହୁଏତ ଅଧିକ ଅନିଷ୍ଟ କରିଥାଏ । ହଁ, ଏଇଟା ମଣିଷର ଇଚ୍ଛାଶକ୍ତିକୁ ହରଣ କରିନିଏ,- ତାକୁ ଭାରି ଦୁର୍ବଳ ଏବଂ ଭୀରୁ ବି କରିପକାଏ ।

''ଏଥର ପଚାଶ ଦଶକରେ ଲଗାଏତ କେତେ ବର୍ଷ ପାଗ ଭଲ ହେଲା ଏବଂ ଫସଲ ବହୁତ ଫଳିଥିଲା । ଚାଷୀମାନଙ୍କର ଅମାର ଭର୍ତ୍ତି ହୋଇଗଲା ଓ ସେମାନେ ଭଲ ଅର୍ଥ ଉପାର୍ଜନ ବି କରିପାରିଲେ । ମାତ୍ର, ସମ୍ଭବତଃ ସେଇଥିରୁ ହିଁ ସେମାନଙ୍କର ମୁଣ୍ଡ ଭିତରକୁ ସମ୍ଭବତଃ ନୂଆ ହୋଇ ଗୋଟାଏ ପୋକ କାମୁଡ଼ିବାକୁ ଆରମ୍ଭ କଲା; ସେମାନେ ପରସ୍ପର ସହିତ ପ୍ରତିଯୋଗିତା କଲାପରି ବଢ଼ିଆ ଘରସବୁ ତୋଳିଲେ, ବଢ଼ିଆ ବଢ଼ିଆ ପରିଚ୍ଛଦ ପିନ୍ଧିଲେ, ଭୋଜିଭାତ କରି ଧୂଳି ଉଡ଼ାଇଲେ । ଖାଲି ଆନନ୍ଦ ପିଇଲେ, ସୁଖ ଉପରେ ଆହୁରି ସୁଖ କରିବାରେ ସତେଅବା ଆଉ ସବୁକିଛି ହଜାଇଦେଲେ । ମୁଁ ତ ଭଗବାନଙ୍କୁ ଡାକୁଥିଲି ଯେ, ଏସବୁ ଶେଷ ହେଉ ଓ ତେଣୁ ଆବଶ୍ୟକ ହେଲେ କେତେଟା ବର୍ଷ ଫସଲ ମଧ୍ୟ କମ୍ ଫଳୁ । ଅନେକ ମଣିଷ ଏପରି ଦୁର୍ବଳ ହୋଇ ତିଆରି ହୋଇଥାନ୍ତି ଯେ ସେମାନେ ସୁଖକୁ ଆଦୌ ସହି ପାରନ୍ତିନାହିଁ ଓ ତେଣୁ ବାଇଆଙ୍କ ପରି ହୋଇଯାଆନ୍ତି । ଯଦି କୌଣସି ଅଞ୍ଚଳରେ କେବଳ ସୁଖ ହିଁ ଲାଗି ରହୁଥାନ୍ତା, ତେବେ ପ୍ରକୃତରେ ବଡ଼ ବିପଦର କଥା ହୁଅନ୍ତା । ଭଗବାନ ଦୟା କରନ୍ତୁ, ଜୀବନଟା ହିଁ ସବାଆଗ ଦିଶୁ, ସୁଖମାନେ ଜୀବନକୁ ଗିଳି ନପକାନ୍ତୁ !''

''ସୁଖ କହିଲେ ଏହି ସୁଖନିଶାରେ ଭୋଳ ଚାଷୀମାନେ ବୁଝନ୍ତି ଯେ, ଏଥର ଘରେ ବହଳ ଗଦୀ ଥିବା ସୋଫାସବୁ ଆସି ପଡ଼ିବ, ପାଦରେ ପିନ୍ଧି ବୁଲିବାକୁ ବଢ଼ିଆ ଜୋତା ହଳେ ଥିବ ଓ ଧୂଆଁ ପିଇବାର ପାଇପ୍‌ଟା କେତେବେଳେ ହେଲେ ମୁହଁରୁ ଛାଡୁନଥିବ । ଗୋଟାକ ପରେ ଆଉ ଗୋଟାଏ ସାର ଏହିସବୁ ସରଞ୍ଜାମ ଅନାୟାସରେ ମିଳି ଯାଉଥିବ । ତେବେ ତ ଆଖର ଏପରି ବି ହେବ ଯେ ମଣିଷ ସର୍ବଦା ଖାଲି ସେହି ସୋଫା ଉପରେ ଗଡ଼ିବାକୁ ହିଁ ଇଚ୍ଛା କରିବ, ଆଉ ମୋଟେ କାମ କରିବନାହିଁ । ସେତିକିବେଳେ ଗୋଟିଏ ଶକ୍ତ ଆଘାତ ଦେଇ ସେମାନଙ୍କ ନିଦ ଭଙ୍ଗାଇବା ଛଡ଼ା ଆଉ ଅନ୍ୟ ଉପାୟ ନଥିବ !''

ଥରେ ଶ୍ରୀଯୁକ୍ତ କଲ୍‌ଲ୍ ପାଖ ବଜାରରେ ଥିବା ଦରଜୀପାଖକୁ ଯାଇଥିଲେ । ଦରଜୀ କାହାର ବରାଦ ଅନୁସାରେ ଏକ ଦାମିକା ସୁନ୍ଦରିଆ ଚିପାକୋଟ୍ ତିଆରି କରୁଥାଏ । ସେଇଟି କୌଣସି ଚାଷୀଘରର ପୁଅ ବରାଦ ହେଇଛି ବୋଲି କଲ୍‌ଲ୍ ଜାଣିବାକୁ ପାଇଲେ । ତା'ପରେ କହିବାକୁ ଲାଗିଲେ: '' ବିଚରା ଚାଷୀଘରର ପୁଅଟି ! ଏହିଟିକୁ ପିନ୍ଧି ପୁଅଟି ଯେତେବେଳେ ପଦାକୁ ବାହାରିବ, ସେତେବେଳେ ପରିଚ୍ଛଦଟି ଭିତରୁ, ' ସମସ୍ତେ ମୋତେ ଚାହିଁ ଦେଖ, ମୁଁ

କେଡ଼େ ଚହଟ ଚକଚକ ଦିଶୁଛି ! ଏଇଟିକୁ ପିନ୍ଧିଛି ବୋଲି ସିନା ଏହା ସମ୍ଭବ ହୋଇ ପାରୁଛି !' ବୋଲି କହିବାକୁ ମନ କରୁଥିବ । ଏହିଭଳି ଆମପାଖରେ ବହୁତ ପୋଷାକ ରହିଥାଏ, ଯାହାକି ଆମର ଦେହ ଉପରୁ ଏହିପରି କେତେ କ'ଣ ଚିତ୍କାର କରି କହିବାରେ ଲାଗିଥାଏ । ସତେ ଯେପରି ପିନ୍ଧିଥିବା ମଣିଷଟି ରଡ଼ି କରିବାରେ ଲାଗିଥାଏ, 'ମୋତେ ସମସ୍ତେ ଦେଖ, - ଆମର କୋଠାଘର ଅଛି, ଅନ୍ୟମାନଙ୍କର ସେପରି ମୋଟେ ନାହିଁ । ଏହିସବୁ କୋଠାଘରେ ବଡ଼ ଲୋକମାନେ ରହନ୍ତି, ସମ୍ଭ୍ରାନ୍ତ ଲୋକେ ରହନ୍ତି । ମାତ୍ର, ସତ କଥାଟି ହେଉଛି, ସେହି ଘରଗୁଡ଼ିକ ଭିତରେ ପ୍ରବେଶ କରି ହିଁ ତୁମେ କେବଳ କ୍ଷୁଦ୍ରମନା ମଣିଷମାନଙ୍କୁ ହିଁ ଦେଖିବାକୁ ପାଇବ । ମନ କ୍ଷୁଦ୍ର, ଭାବନା ମଧ୍ୟ କ୍ଷୁଦ୍ର । ସେହିମାନେ ହିଁ କେଡ଼େ ଫୁଲେଇ ଦେଖେଇ ହୋଇ ସେଠାରେ ଆତଯାତ ହେଉଥନ୍ତି । କ'ଣ ସବୁ ଖାଇବା, କ'ଣ ପିଇବା, ନିଜକୁ କ'ଣ ସବୁଦ୍ୱାରା ସଜାଇ ରଖିବା ଏବଂ ସମୟଟାକୁ ବୁହାଇ ଦେଉଥିବା !

''ବାବୁ, ତୁମର ଯଦି ମନ ହେଉଛି, ତେବେ ତୁମେ ଅବଶ୍ୟ ରେଶମତିଆରି ପୋଷାକ ପିନ୍ଧିପାରିବ । ମାତ୍ର, ତଥାପି ମନେ ରଖିବ ଯେ ତୁମର ଆତ୍ମା ଅର୍ଥାତ୍ ଅନ୍ତରଟି ମଧ୍ୟ ରେଶମ ପରି ହୋଇଥିବା ଆବଶ୍ୟକ ।'' କଲ୍ଡ୍ ବହୁତ ସମୟରେ କହୁଥିଲେ: ''ସ୍ରୋତ ବିରୁଦ୍ଧରେ ନିଜ ପାଦକୁ ଟାଣ କରି ଛିଡ଼ା ହୋଇ ପାରିବାକୁ ସର୍ବଦା ବହୁତ ଶକ୍ତି ଦରକାର । କାରଣ, ଅଧିକାଂଶ ଲୋକ ସୁଅ ସହିତ କେଡ଼େ ପ୍ରସନ୍ନତା ସହିତ ଖାଲି ଭାସିଯିବାରେ ହିଁ ଲାଗିଥିବେ ।'' କଲ୍ଡ୍ ବସ୍ତୁତଃ ତାଙ୍କ ନିଜ ସମୟର ସୁଅର ଗତିଟିକୁ ବଦଳାଇ ଦେବାକୁ ଆସିଥିଲେ । ଯଦି ତୁ ଚାଷୀ ହେବୁ, ତେବେ ତୋତେ ଯଥାର୍ଥ ଚାଷୀର ଜୀବନକୁ ଗ୍ରହଣ କରିନେବାକୁ ପଡ଼ିବ - ସେ ଅନେକ ସମୟରେ କହୁଥିଲେ । ଅନ୍ୟ କେଡ଼େ ରଥୀମାନେ ହଟିଗଲେ ସିନା, ମାତ୍ର କଲ୍ଡ୍ ଠିଆ ହୋଇ ରହିପାରିଲେ । ନିଜ ଦେଶ ଡେନ୍‌ମାର୍କରେ ଏକ କୃଷକସଂସ୍କୃତିର ପୁରୋଧା ହୋଇଥିଲେ । ଏବଂ, ଅତ୍ୟନ୍ତ ଅବିଶ୍ୱାସ୍ୟ ଭାବରେ ତାହା କରିପାରିଲେ । ସମ୍ପୂର୍ଣ୍ଣ ଅନ୍ତର୍ସନ୍ଦୀପିତ ଜଣେ ବ୍ୟକ୍ତି ହିସାବରେ ସେ ନିରନ୍ତର, ଆଦୌ ନିଜପାଇଁ ନୁହେଁ, ଅନ୍ୟପାଇଁ ହିଁ ବଞ୍ଚୁଥିଲେ । କେତେ କିଏ ବିଦ୍ରୂପ କରି ତାଙ୍କୁ ଜଣେ ବିଚିତ୍ର ବ୍ୟକ୍ତି ବୋଲି ଭାବୁଥିଲେ, - ତାଙ୍କୁ ବଡ଼ ଅମାର୍ଜିତ ଏବଂ ବ୍ୟାବହାରିକ ବୁଦ୍ଧିଶୂନ୍ୟ ବୋଲି କହି ଅପବାଦ ଦେଉଥିଲେ । କିନ୍ତୁ କୌଣସି ଅପବାଦ ବା ବିଦ୍ରୂପ ସେହି ବ୍ୟକ୍ତିଟିକୁ ଆଦୌ ଟଳାଇ ଦେଇ ପାରିନଥିଲା । ସିଏ ସତେଅବା ଇସ୍ପାତରେ ତିଆରି ହୋଇଥିଲେ, ଭଗବାନ ତାଙ୍କୁ ନିଜର ଅଗ୍ନିରେ ପକାଇ ହିଁ ଏଭଳି କଠିନ କରି ତିଆରି କରିଥିଲେ ।

ଜଣେ ପାଦ୍ରୀ ଥରେ ଶ୍ରୀ କଲ୍ଡ୍‌ଙ୍କ ବିଷୟରେ ଆଉଜଣେ ବ୍ୟକ୍ତିଙ୍କ ଆଗରେ କହିଥିଲେ: ''ଜଣେ ଭଦ୍ର ଲୋକର ଯେପରି ହେବା ଉଚିତ, କଲ୍ଡ୍ ମୋଟେ ସେଭଳି ଜଣେ

ମାର୍ଜିତ ବ୍ୟକ୍ତି ନୁହନ୍ତି । ଦେଖୁନାହାନ୍ତି ସିଏ କିଭଳି ବିଚିତ୍ର ପ୍ରକାରର ପୋଷାକ ବ୍ୟବହାର କରୁଛନ୍ତି ! ବାହାରକୁ କିପରି ଦିଶିବା ବା ଆଚରଣ କରିବା ଉଚିତ, ସେ ବିଷୟରେ ତାଙ୍କୁ କିଛିହେଲେ ବି ଜଣାନାହିଁ । ଗୋଟିଏ ଉଦାହରଣ ହେଉଛି, ଶୁଣନ୍ତୁ: ଥରେ ମୋ'ଠାରୁ ସିଏ ଗାଈଟିଏ କିଣିଲେ ଏବଂ ତା'ପରେ ସେ ଗାଈଟିକୁ ନିଜେ ଅଡ଼ାଇ ଅଡ଼ାଇ ଘରଯାଏ ନେଲେ ! ଆପଣ କହିଲେ ଆଜ୍ଞା, ଗୋଟିଏ ବୟସ୍କ-ବିଦ୍ୟାଳୟର ଅଧକ୍ଷ, ଯାହାଙ୍କୁ କି ଦେଶଯାକ ସମସ୍ତେ ଜାଣିଛନ୍ତି, - ସାଙ୍ଗରେ ଗୋଟିଏ ଗାଈ ସହିତ ଚାଲି ଚାଲି ଏତେବାଟ ଯାଇଥିବେ, - କେଡ଼େ ଅସୁନ୍ଦର ଦେଖାଯାଇ ନଥିବ !'' ଏକଥା ଶୁଣି ଅନ୍ୟ ବ୍ୟକ୍ତିଜଣକ ଉତ୍ତର ଦେଇଥିଲେ: ''ଆପଣ ଭୁଲି ଯାଆନ୍ତୁ ନାହିଁ ଯେ ଶ୍ରୀଯୁକ୍ତ କଲ୍ଲ୍ ହେଉଛନ୍ତି ବର୍ତ୍ତମାନ କୃଷକକୁଳର ଯୁବସମାଜର ପୁରୋଧା ଓ ସେନାପତି । ଦେଶର ଯେକୌଣସି କୃଷକ ଯାହା କରିଥାନ୍ତା, କଲ୍ଲ୍ ଠିକ୍ ତାହାହିଁ କରିଛନ୍ତି । କିନ୍ତୁ ଅତ୍ୟନ୍ତ ଦୁଃଖର କଥା, ଅନେକ କୃଷକ ମଧ୍ୟ ଏହି କାର୍ଯ୍ୟଟିକୁ କରିବାକୁ ଅପମାନଜନକ ବୋଲି ଭାବୁଛନ୍ତି ! ଏବଂ;ତେଣୁ, ଜଣେ ଅଗ୍ରଗାମୀ ହିସାବରେ କଲ୍ଲ୍ ନିଜେ ଆଗେ ଆଗେ ଯାଉଛନ୍ତି ଏବଂ ଯଥାର୍ଥ ଶିକ୍ଷିତପଣିଆ କ'ଣ ହେବା ଉଚିତ ତାହାର ଏକ ନୂଆ ବାଟ ଦେଖାଉଛନ୍ତି । କାରଣ, ଜନଗଣଙ୍କୁ ଯଦି ପ୍ରକୃତରେ ଜୀବନ ବିଷୟରେ ଯଥାର୍ଥ କୁଶଳତା ହାସଲ କରିବାକୁ ହୁଏ, ତେବେ ପ୍ରକୃତରେ ଏହିଭଳି ହିଁ ହେବା ଉଚିତ । ତେଣୁ ମୁଁ ଭାବୁଛି, କଲ୍ଲ୍ ଯାହା କରିଛନ୍ତି, ଯଥାର୍ଥ ହି କରିଛନ୍ତି, ଏହି ଦେଶର କୃଷକମାନଙ୍କର ଜଣେ ଯଥାର୍ଥ ପଥପ୍ରଦର୍ଶକ ନେତାରୂପେ କାର୍ଯ୍ୟ କରିଛନ୍ତି । ଯାହା ଅନ୍ୟ ମହାନ୍ ଲୋକମାନେ ମୁହଁରେ କହୁଛନ୍ତି, କଲ୍ଲ୍ କାର୍ଯ୍ୟରେ କରି ଦେଖାଇ ପାରୁଛନ୍ତି । ଯାହା ଏତିକି ପାର୍ଥକ୍ୟ !''

ସହରମାନଙ୍କରେ ଯେଉଁ ନୂତନ ସଂସ୍କୃତି କ୍ରମେ ଦୃଷ୍ଟିଗୋଚର ହୋଇ ଆସୁଥିଲା, ଏକ ସୁସ୍ଥ ଜୀବନ ଓ ଅଭିବୃଦ୍ଧି ଦୃଷ୍ଟିରୁ କଲ୍ଲ୍ ସେଥିରେ ଏକ ବିପଦ ପ୍ରଚ୍ଛନ୍ନ ହୋଇ ରହିଥିବାର ଘ୍ରାଣ କରି ପାରୁଥିଲେ । ଏବଂ, ଯଦି ତାହାହିଁ ଦେଶସାରା ବ୍ୟାପିଯିବାର ସ୍ୱାଧୀନତା ପାଇଯିବ, ତେବେ ନିଶ୍ଚୟ ଏକ ଦୁର୍ଭାଗ୍ୟର ବିଷୟ ହେବ । ''ମଦଟି ମଧୁର ସିନା, ମାତ୍ର ସେଥିରେ ବିଷ ବି ରହିଛି'- କଲ୍ଲ୍ ମନ୍ତବ୍ୟ ଦେଉଥିଲେ । ସିଏ ଅନୁଭବ କରୁଥିଲେ ଯେ, ଉପଭୋଗକୁ ଜୀବନର ଦର୍ଶନ କରି ରଖିଲେ ସେଥିରୁ ବହୁ ଅନିଷ୍ଟ ଜାତ ହେବ । ଯେଉଁ ମନୁଷ୍ୟମାନେ ଜୀବନକୁ କେବଳ ଉପଭୋଗ ହିଁ କରିବାକୁ ଇଚ୍ଛା କରୁଥାନ୍ତି, ସେମାନେ ପ୍ରକୃତରେ ସାମୂହିକ ଜୀବନର ଉଦ୍ୟାନଟିକୁ ଉଜାଡ଼ି ଦେବେ । ଯେତେ ବଢ଼ିଆ ପୋଷାକ ପିନ୍ଧିଥାଆନ୍ତୁ ବା ଯେତେ ସୁନ୍ଦରିଆ କଥାମାନ କହୁଥାନ୍ତୁ ପଛକେ, କେବଳ ଅନିଷ୍ଟକାରୀ ଜନ୍ତୁଙ୍କ ପରି ଆଚରଣ ହିଁ କରିବେ । ମାତ୍ର, ସମସ୍ତେ ତାଙ୍କ ଯଥାର୍ଥ ଭାବରେ ବୁଝୁନଥିଲେ, ସିଏ ଅତିବେଶୀ ଆଗକୁ ଚାଲି ଯାଉଛନ୍ତି ବୋଲି ମତ ଦେଉଥିଲେ ।

ମାତ୍ର, ମଣିଷମାନଙ୍କ ପାଇଁ ଅଧିକ କାମରେ ଲାଗିପାରିବେ ବୋଲି ସିଏ କୁଆଡ଼େ କେତେ ତଳକୁ ଯାଇ ପହଞ୍ଚି ପାରୁଥିଲେ । କୌଣସି କାମକୁ ସିଏ ଏକ ସାନ ଅର୍ଥାତ୍ ଛୋଟ କାମ ବୋଲି ବିଚାର କରୁନଥିଲେ । ଯାହା ବିଦ୍ୟାଳୟରେ ଛାତ୍ର, ଶିକ୍ଷକ ଏବଂ ପରିକର ସମସ୍ତଙ୍କ ପାଇଁ ଯଥେଷ୍ଟ ହେବ,କେବଳ ସେହି ଦ୍ରବ୍ୟମାନ ହିଁ ବିଦ୍ୟାଳୟକୁ ଆସୁଥିଲା । କଲ୍ଲ୍ ସର୍ବଦା ଛୋଟ ବଡ଼ ନାନାବିଧ କାର୍ଯ୍ୟରେ ନିଜକୁ ବ୍ୟସ୍ତ ରଖୁଥିଲେ । କେତେକ କାର୍ଯ୍ୟକୁ ସେ ପ୍ରକୃତରେ ବିଶ୍ରାମ ପାଇବାପାଇଁ କରନ୍ତି ବୋଲି କହୁଥିଲେ । ନିଜ ଦେହକୁ ସୁସ୍ଥ ରଖିବା ପାଇଁ ଯାହାସବୁ କରଣୀୟ, ତାହା କ୍ୱଚିତ୍ କରି ପାରୁଥିଲେ । ଖଟିବା ଅନୁସାରେ ତାଙ୍କର ଦେହ ଯଥେଷ୍ଟ ପରିମାଣର ପୁଷ୍ଟିକର ଖାଦ୍ୟ ମଧ୍ୟ କେବେହେଲେ ପାଉନଥିଲା । ତାଙ୍କର ଶରୀର ସର୍ବଦା କାଲୁଆ ହୋଇ ଯାଉଥିଲା । ପୋଷାକ ତଳେ ପଶମର ପରିଚ୍ଛଦ ପିନ୍ଧୁଥିଲେ, ମୋଜା ମଧ୍ୟ ଦୁଇ ହଳ ପିନ୍ଧିବାକୁ ପଡୁଥିଲା । ଏହିସବୁ ବିଚିତ୍ର ଧାରାରେ ରହିଥିବା ହେତୁ ତାଙ୍କୁ ଅନ୍ୟମାନେ ପରିହାସ ବି କମ୍ କରୁନଥିଲେ । ତାଙ୍କର ରୁଚି ମଧ୍ୟରେ ପରିଷ୍କାର-ପରିଚ୍ଛନ୍ନତା ଲାଗି ସର୍ବଦା ଯଥେଷ୍ଟ ସ୍ଥାନ ରହିଥିଲା ସତ, କିନ୍ତୁ ଯେ କୌଣସି ବାହ୍ୟ ଆଧିକ୍ୟ ଦ୍ୱାରା ଚତୁଷ୍ପାର୍ଶ୍ୱର, ବିଶେଷ କରି କୃଷକର ଜୀବନରୁ ଅଲଗା ବୋଲି ବାରି ହୋଇ ପଡ଼ିବାକୁ ମୋଟେ ଭଲ ପାଉନଥିଲେ । ତାଙ୍କ ବିଦ୍ୟାଳୟରେ ଦରିଦ୍ର ଘରର କୃଷକପିଲା ମଧ୍ୟ କେତେ ସଂଖ୍ୟାରେ ରହିଥିଲେ ଏବଂ ସେମାନେ ଯେପରି ଅନ୍ୟମାନଙ୍କର କୌଣସି ବ୍ୟବହାର ଦ୍ୱାରା ସେହି ବିଷୟରେ ସଚେତନ ନହେବେ ଓ ଆଘାତ ନପାଇବେ, ସେଥିଲାଗି କଲ୍ଲ୍ ସର୍ବଦା ଦୃଷ୍ଟି ରଖିଥିଲେ । ଅବଶ୍ୟ ଗୋଟିଏ ବିଷୟରେ ଏକ ବ୍ୟତିକ୍ରମ ରହିଥିଲା । ଗୀର୍ଜା ଉପାସନାରେ ଯୋଗ ଦେବାକୁ ଗଲାବେଳେ ସିଏ ନିଜର ସର୍ବୋତ୍ତମ ପରିଧାନରେ ବାହାରି ପଡୁଥିଲେ । ପୁନଶ୍ଚ, ତାଙ୍କର ଜୋତାଗୁଡ଼ିକ ପାଲିଶ୍ ହୋଇ ଏପରି ଚକଚକ ଦେଖା ଯାଉଥିଲା ଯେ, ତେଣେ ଅନାଇବା ମାତ୍ରକେ ଦେଖଣାହାରିର ମୁହଁଟି ମଧ୍ୟ ଜୋତା ଭିତରୁ ପ୍ରତିଫଳିତ ହୋଇ ପୂରା ଦେଖା ଯାଉଥିଲା ।

ନିଜ ସମୟର ଯୁବଗୋଷ୍ଠୀକୁ ଜାଗ୍ରତ କରି ଆଣିବା ହିଁ ସତେଅବା କ୍ରିଷ୍ଟେନ୍ କଲ୍ଲଙ୍କର ଜୀବନର ସର୍ବପ୍ରଧାନ ବ୍ରତ ହୋଇ ରହିଥିଲା । ଯୁବଗୋଷ୍ଠୀ ନିଜର ଶକ୍ତିକୁ ଚିହ୍ନୁ, ନିଜର ନିୟତି ସମ୍ବନ୍ଧରେ ସଚେତନ ହେଉ, କଲ୍ଲ୍ ନିରନ୍ତର ତାହାହିଁ ଇଚ୍ଛା କରୁଥିଲେ । ସେମାନେ ସବାଆଗ ନିଜକୁ ଚିହ୍ନିବେ, ପୂର୍ଣ୍ଣ ବିଶ୍ୱାସ ସହିତ ଚିହ୍ନିବେ, ଇହଜଗତରେ ସେମାନେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ସାଧନ କରିବେ ବୋଲି ଯେ ସେମାନେ ଏଠି ଜନ୍ମ ହୋଇଛନ୍ତି, ସେହି କଥାଟି ଉପରେ ସେମାନଙ୍କର ଦୃଢ଼ ବିଶ୍ୱାସ ରହିଥିବ; ଏବଂ, ସର୍ବୋପରି ସ୍ୱୟଂ ପରମେଶ୍ୱର ସେମାନଙ୍କ ଉପରେ ଭରସା ରଖି ସେମାନଙ୍କୁ ଏଠାକୁ ପଠାଇଛନ୍ତି ବୋଲି ସେମାନେ ନିରନ୍ତର ଅନୁଭବ କରୁଥିବେ । ତା'ପରେ ସେମାନେ ନିଜର ଭୂମିଟିକୁ ଚିହ୍ନିବେ, ଭୂମିର ହିଁ ଅଧିକରୁ

ଅଧିକ ନାନାବିଧ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟରେ ଲାଗିପାରିବେ ବୋଲି ତିଆରି ହେବେ ଏବଂ ସେହି ଅନୁସାରେ ଏକ ସମର୍ପିତ ଜୀବନ ବଞ୍ଚିବାରେ ଯୋଗ୍ୟ ହୋଇ ଆସିବେ । ଯୁବଗୋଷ୍ଠୀ ସର୍ବଦା ଏକ ସକାରାତ୍ମକ ଦୃଷ୍ଟିରେ ହିଁ ନିଜର ପରିପାର୍ଶ୍ୱକୁ ତଥା ଅପେକ୍ଷା କରିଥିବା ଭବିଷ୍ୟଟିକୁ ମଧ୍ୟ ଦେଖୁ, କଲ୍‌ଲ୍ ସର୍ବଦା ତାହାହିଁ ଇଚ୍ଛା କରୁଥିଲେ । ଏକ ସନ୍ଦୀପିତ ଯୁବଗୋଷ୍ଠୀର ପରିପ୍ରେକ୍ଷୀ ଉପରେ ହିଁ ସିଏ ଆପଣା ଦେଶ ଲାଗି ଏକ ଉଜ୍ଜ୍ୱଳ ଭବିଷ୍ୟଚିତ୍ର ଅଙ୍କନ କରିବାରେ ଲାଗିଥିଲେ । ସେମାନଙ୍କୁ ଯେପରି କୌଣସି ନୈରାଶ୍ୟ ଗ୍ରାସ ନକରେ, ସେହି ବିଷୟରେ ଅତ୍ୟନ୍ତ ସାବଧାନ ଥିଲେ । ତାଙ୍କର ପୁରୋଗାମୀ ଗଣବିଦ୍ୟାଳୟଟି ଯାବତୀୟ ଅର୍ଥରେ ସେଇଥିପାଇଁ ହିଁ ଉଦ୍ଦିଷ୍ଟ ହୋଇ ରହିଥିଲା । କୌଣସି ପ୍ରସଙ୍ଗରେ ସେ ଥରେ କହିଥିଲେ: ''ଯୁବଗୋଷ୍ଠୀ ଖୁସୀରେ, ସମ୍ମିଳିତ ଭାବରେ କିଛି ନା କିଛି କରୁ । କୌଣସି ପ୍ରତିବନ୍ଧକ ତାହାର ଉତ୍ସାହ ତଥା ଗତିଶୀଳତାକୁ ନଷ୍ଟ କରି ନଦେଉ ! ନିଜ ଭିତରେ ଅବଶ୍ୟ ବହୁ ସାମର୍ଥ୍ୟ ନିହିତ ହୋଇ ରହିଛି ବୋଲି ସେମାନେ ଉପଲବ୍ଧ କରନ୍ତୁ । ସାମର୍ଥ୍ୟର ଆବିଷ୍କାର କରି ଏହିପରି ଅଗ୍ରସର ହେଉ ହେଉ ସେମାନଙ୍କୁ ଜୀବନରେ ଲକ୍ଷ୍ୟ ଭଳି ଲକ୍ଷ୍ୟଟିଏ ଅବଶ୍ୟ ଆସି ମିଳିଯିବ, କୌଣସି ବୃହତ୍ତର ଏବଂ ଶୁଭତରର ଭେଟ ମିଳିଯାଇ ପାରିବ । ତା'ପରେ ଏହି ପ୍ରଥମକାଳୀନ ଅର୍ବାଚୀନତାଗୁଡ଼ିକ ଆପେ ଆପେ ଦୂର ହୋଇଯିବ । ତେଣୁ, ସେମାନଙ୍କର ସାନ ସାନ ଆନନ୍ଦଗୁଡ଼ିକୁ ମଧ୍ୟ ଆମେ ସେମାନଙ୍କ ଠାରୁ ଆଦୌ ଛଡ଼ାଇ ନେଇ ଯିବାନାହିଁ । ସର୍ବଦା ସେମାନଙ୍କ ଆଗରେ କିଛି ନା କିଛି ଅଧିକ ବୃହତ୍ ଆନନ୍ଦ ଆଣି ପହଞ୍ଚାଇବା ନିମନ୍ତେ ଚେଷ୍ଟା କରୁଥିବା । ନଚେତ୍ ସେମାନେ କ୍ରମେ ଶୂନ୍ୟ ହୋଇଯିବେ; ଏବଂ, କୌଣସି ମନୁଷ୍ୟ ନିଜ ଭିତରେ ଶୂନ୍ୟ ହୋଇ ରହୁ, ସେକଥା ଭଗବାନ ମଧ୍ୟ କେବେହେଲେ ଇଚ୍ଛା କରୁନଥିବେ ।''

ଏବଂ, ଏହି ବୃହତ୍ ଆନନ୍ଦ ପାଇଁ ସେମାନଙ୍କୁ ଭାଜନ କରିବାକୁ ଶ୍ରୀ କଲ୍‌ଲ୍ ଆଦ୍ୟରୁ ଶେଷଯାଏ ହିଁ ପ୍ରୟାସ କରିଥିଲେ । ସିଏ ଯୁବଗୋଷ୍ଠୀକୁ ସେହିଭଳି ଏକ ଆନନ୍ଦ ସହିତ ପରିଚିତ କରାଇଦେବେ, ସେମାନଙ୍କର ଆଖିଗୁଡ଼ିକୁ ଖୋଲିଦେବେ ଯେପରିକି ସେମାନେ ଆପେ ହିଁ ଦେଖିବା ନିମନ୍ତେ ସମର୍ଥ ହେବେ । ଆପଣାର ସକଳ ସାମର୍ଥ୍ୟ ଏବଂ ଶକ୍ତି ସହିତ ପରିଚିତ ହୋଇ ପାରିଲେ ହିଁ ଜଣେ ମନୁଷ୍ୟ ନିଜର ଜୀବନକୁ ଭଗବାନଙ୍କର ଏକ ଦାନ ବୋଲି ଅନୁଭବ କରିବ । ଏବଂ, ଭଗବାନଙ୍କର ସେହି ଦାନଟି ସହିତ ଯେ ଆଦୌ କୌଣସି ଖେଳ ଖେଳାଯାଇ ପାରିବନାହିଁ, ସିଏ ତାହା ଉପଲବ୍ଧି ମଧ୍ୟ କରିବ । ତେଣୁ, ଏହିପରି ଭାବରେ ବିଚାର କଲେ ଆମେ ସମସ୍ତେ ଭଗବାନଙ୍କ ପାଖରେ ଦାୟୀ ହୋଇ ହିଁ ଏହି ପୃଥିବୀକୁ ଆସିଛୁ ଏବଂ ସେହି ଜୀବନଟିର ଉତ୍ତରୋତ୍ତର ବିକାଶସାଧନ କରି ତାହାକୁ କାର୍ଯ୍ୟରେ ଲଗାଇବାକୁ ହିଁ ଏକ ଆଜ୍ଞାପତ୍ର ବହନ କରି ବାଟ ଚାଲୁଛୁ । ଏବଂ, କିପରି କେତେ ଅଧିକ

ପ୍ରକୃଷ୍ଟ ଭାବରେ ତାହାକୁ କାର୍ଯ୍ୟରେ ଲଗାଯାଇ ପାରିବ, ତାହା ଦର୍ଶାଇଦେବା ହେଉଛି ସକଳ ଶିକ୍ଷାର ଉଦ୍ଦେଶ୍ୟ । ତେଣୁ, ପ୍ରତ୍ୟେକ ମନୁଷ୍ୟର ଜୀବନରେ ଏକ ଭଗବଦ୍‌ଯୋଜନା ପ୍ରଚ୍ଛନ୍ନ ହୋଇ ରହିଛି, ସେଇଟିକୁ ହିଁ ସବାଆଗ ଭଲ ପାଇ ଶିଖିବାକୁ ହେବ, - ତେବେ ଯାଇ ତାହା ସମୟକ୍ରମେ ତାହାର ଜୀବନକୁ ଆଲୋକିତ କରିଦେଇ ପାରିବ । ଏହାହିଁ ହେଉଛି ରାସ୍ତା, ଯାହାଦ୍ୱାରା କି ଜୀବନରେ ଏକ ପରିପୂର୍ଣ୍ଣତା ସମ୍ଭବ ହେବ । ଯେତେବେଳେ ବୃହତ୍ତର କୌଣସି କିଛିର ସାଧନ ନିମନ୍ତେ ବଞ୍ଚିବା ସମ୍ଭବ ହେବ, ଯେତେବେଳେ ଖାସ୍ ନିଜର ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧି ଗୁଡ଼ିକ ପାଇଁ ବଞ୍ଚିବାକୁ ଆଦୌ ଆଗ୍ରହ ହେବନାହିଁ, ସେତେବେଳେ ତାହାକୁ ହିଁ ଯଥାର୍ଥ ଜୀବନ ବୋଲି କୁହାଯାଇ ପାରିବ ।

ଶ୍ରୀ କଲ୍‌ଡ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟଟି ସର୍ବପ୍ରଥମେ ଏହିପରି ଏକ ଆତ୍ମଜାଗରଣର ବିଦ୍ୟାଳୟ ରୂପେ କାର୍ଯ୍ୟ କରୁଥିଲା । ଆତ୍ମଜାଗରଣ ପରେ ଯାଇ ଦ୍ୱିତୀୟ କାର୍ଯ୍ୟକ୍ରମ ରୂପେ କିଛି ଜ୍ଞାନସାମଗ୍ରୀ ପ୍ରଦାନ କରିବାର ପ୍ରୟାସ କରୁଥିଲା । ତାଙ୍କ ସମ୍ପର୍କରେ ଅନେକ ସମୟରେ ଅଭିଯୋଗ କରାଯାଇଛି ଯେ ସିଏ ପାଠ୍ୟସାମଗ୍ରୀ ଗୁଡ଼ିକର ଅତ୍ୟନ୍ତ ଅବହେଳା କରୁଥିଲେ । ମାତ୍ର, ଏପରି କହିବା ଆଦୌ ଉଚିତ ନୁହେଁ; ତାଙ୍କ ବିଦ୍ୟାଳୟରେ ପ୍ରବୀଣ ତଥା ସୁକୁଶଳ ଶିକ୍ଷକମାନେ ରହିଥିଲେ, ଯେଉଁମାନେ କି ଛାତ୍ରଛାତ୍ରୀମାନଙ୍କୁ ଲିଖନ, ଗଣିତ, ରସାୟନ-ବିଜ୍ଞାନ ଓ ପଦାର୍ଥବିଜ୍ଞାନ ମଧ୍ୟ ଶିକ୍ଷା ଦେଉଥିଲେ । ମାତ୍ର, ଏହି କଥାଟି ଅବଶ୍ୟ ସତ ଯେ, ପାଠ ପଢ଼ିବାକୁ ସେ କେବଳ ତାହାର ଏକ ସମୁଚିତ ମହତ୍ତ୍ୱ ହିଁ ପ୍ରଦାନ କରୁଥିଲେ । ସେଗୁଡ଼ିକୁ ସେ ଆଗଭଳି ବା ଅନ୍ୟମାନଙ୍କ ଭଳି ଆଦୌ ଈଶ୍ୱରପିତୁଳା ପରି ମାନୁନଥିଲେ । ସେଗୁଡ଼ିକୁ ବ୍ୟାବହାରିକ ଗୋଟିଏ ଗୋଟିଏ ଆବଶ୍ୟକତା ପରି ବିଚାର ହିଁ କରୁଥିଲେ । କଲ୍‌ଡ୍ କହୁଥିଲେ, '' ପଠିତ ସାମଗ୍ରୀଗୁଡ଼ିକ ଆମର ନିଶ୍ଚୟ ବହୁତ କାମରେ ଲାଗିବ । ମାତ୍ର ଏସବୁ ହେଉଛି ପଛ, ସବାଆଗ ଜୀବନରେ ଏକ ଜାଗୃତି ଘଟିବା ଅତ୍ୟାବଶ୍ୟକ । ପାଠ ପଢ଼ି ଅର୍ଜନ କରା ଯାଇଥିବା ଏହି ଯାବତୀୟ ତଥ୍ୟଜ୍ଞାନ ଆମର ପ୍ରକୃତରେ କିଭଳି କାର୍ଯ୍ୟରେ ଲାଗିବ, ସେହି ବିଷୟରେ ସବାଆଗ ଉପଯୁକ୍ତ ବିବେକଟିଏ ରହିଥିବା ଉଚିତ । ନହେଲେ ପାଠ ସଂଗ୍ରହ କରି କରି ସେମାନେ ହୁଏତ ଭିତରେ ଅଧିକ ଫମ୍ପା ଓ ଅଧିକ ଦାୟିତ୍ୱହୀନ ହୋଇ ଯାଉଥିବାର ପୂର୍ଣ୍ଣ ଆଶଙ୍କା ମଧ୍ୟ ରହିଥିବ । ଆମର ଏହି ସମାଜରେ ଅହଙ୍କାରୀ ଏବଂ ଦମ୍ଭୀ ମଣିଷ କ'ଣ କମ୍ ସଂଖ୍ୟାରେ ରହିଛନ୍ତି ? ତେଣୁ, ଅଧିକ ପାଠଜ୍ଞାନ ପ୍ରଦାନ ଦ୍ୱାରା ଆମେ ଆଉ ଆମ ତରୁଣମାନଙ୍କୁ ଅଧିକ ଶୋଭାଯୁକ୍ତ କରି ରଖିବାକୁ କୌଣସି ଚେଷ୍ଟା କରିବାନାହିଁ ଏବଂ ତେଣେ ସେମାନଙ୍କର ଥାବା ଏବଂ ନଖଗୁଡ଼ିକୁ କୌଣସି ଶ୍ୱାପଦର ଥାବା ଓ ନଖ ପରି ହୋଇଯିବାକୁ ଦେବାନାହିଁ, ଯାହାଦ୍ୱାରା କି ବଡ଼ ହୋଇ ସେମାନେ ନିଜ ଚାରିପାଖରେ ରହିଥିବା ପୃଥିବୀଯାକର ସମ୍ପଦଗୁଡ଼ାକୁ ନିଜପାଇଁ

ଠୁଳ କରି ରଖିବା ନିମନ୍ତେ ମୋତେ ବିଦାରି ନେବେନାହିଁ । ଜୀବନରୂପୀ ବୃକ୍ଷଟି ଉଦ୍ୟାନର ମଧ୍ୟଭାଗରେ ଠିଆ ହୋଇ ରହିଥିବ ଏବଂ, ସାନ ଶିଶୁ ତଥା ତରୁଣଗୋଷ୍ଠୀ ସବାଆଗ ସେହି ବୃକ୍ଷଟିରୁ ଫଳ ତୋଳି ଖାଇବାର ପୂର୍ଣ୍ଣ ସୁଯୋଗ ଲାଭ କରିବେ, ତା'ପରେ ଯାଇ କ'ଣ ସବୁ ପାଠଜ୍ଞାନ ଲାଭ କରିବାକୁ ଆଗଭର ହେବେ । ପ୍ରଥମେ ଜୀବନବୃକ୍ଷଟିର ଫଳ ଖାଇସାରିବା ପରେ ଯାଇ ସେମାନେ ଅନ୍ୟ ଯେଉଁ ଗଛପାଖକୁ ଯାଇ ଫଳ ଭୋଜନ କରିବେ ପଛକେ, ତାହା ସଂପୃକ୍ତ ସମସ୍ତଙ୍କ ସକାଶେ ହିତକାରକ ହୋଇପାରିବ ।

ଥରେ ତାଙ୍କର ଜଣେ ଶିକ୍ଷାର୍ଥୀ ଆସି କଲ୍‌ଲ୍‌ଙ୍କୁ କହିଥିଲେ : ''ଆପଣ ଶ୍ରେଣୀରେ କହୁଥିବା କଥାଗୁଡ଼ିକୁ ଶୁଣି ମୋତେ କେଡ଼େ ଆନନ୍ଦ ଲାଗୁଛି ସିନା, ମାତ୍ର କିଛିଦିନ ପରେ ସେସବୁ ଆଦୌ ମନେ ରହୁନାହିଁ । ମନ ଭାରି ଖରାପ ହୋଇଯାଉଛି ।'' ଏବଂ, ଉତ୍ତର ମିଳିଲା, ''ଏଥିରେ ମନ ଖରାପ ହେବାର କୌଣସି କାରଣ ନାହିଁ । ଆମେ ଯେତେବେଳେ ମାଟି ତଳେ ନଳା ତିଆରି କରୁଛୁ, ସେତେବେଳେ ଚିହ୍ନସ୍ୱରୂପ ଉପରେ ଖୁଣ୍ଟ ପୋତି ରଖୁଛୁ, ଯେପରିକି ପୁଣି ଖୋଳି ଦେଖିବା ଆବଶ୍ୟକ ହେଲେ, ନଳାଟି କେଉଁଠାରେ ଥିଲା, ତାହା ଜଣାଯାଇ ପାରିବ । ପାଠ ବେଳକୁ ମଧ୍ୟ ଠିକ୍ ସେହିକଥା; ସେଗୁଡ଼ିକୁ ନେଇ ଆମ ମସ୍ତିଷ୍କ ଭିତରେ ପୂରାଇ ଦିଆଯାଇ ଥାଏ । ମାତ୍ର ମୁଁ ତ ଶସ୍ୟବୀଜ ନେଇ ବୁଣି ଦେଇଥାଏ, ସେଥିରେ ଜୀବନ ଥାଏ ଓ ସେଥିରୁ ବଳେ ଅଙ୍କୁର ବାହାରେ । ତେଣୁ କାଠି ପୋତି ରଖିବା ମୋତେ ଆବଶ୍ୟକ ହୁଏନାହିଁ । ଅନ୍ତର ଭିତର ପାଇଁ କୁହା ଯାଉଥିବା ପ୍ରତ୍ୟେକ ଶବ୍ଦ ସିଧା ହୃଦୟକୁ ଚାଲିଯାଏ, ସେହିଠାରେ ସଞ୍ଚିତ ହୋଇ ରହିଥାଏ ଓ ବଢ଼ିବାରେ ଲାଗିଥାଏ । ଯଦି ବଢୁ ନଥିବ, ତେବେ ତାହା ଆଉ କୌଣସି ପ୍ରୟୋଜନରେ ଲାଗିବନାହିଁ । ଏଠାରେ ତୁମକୁ ଯାହାକିଛି ଦିଆଯାଉଛି, ପରେ ଅବଶ୍ୟ ତାହାର ଲାଭ ମିଳିବ । ଯଦି କୌଣସି ଶବ୍ଦର ତୁମ ଜୀବନରେ ପରେ କିଛି ଆବଶ୍ୟକତା ପଡ଼ିବ, ତେବେ ଉଚିତ ମୁହୂର୍ତ୍ତରେ ତାହା ଅବଶ୍ୟ ତୁମପାଖରେ ଆସି ପହଞ୍ଚିଯିବ । ସେହି ଶିକ୍ଷାର୍ଥୀ ବଡ଼ ହୋଇ ଜଣେ ଶିକ୍ଷକ ହୋଇଥିଲେ । ପନ୍ଦରବର୍ଷ ପରେ ସିଏ କହିଛନ୍ତି: ଜୀବନରେ ବହୁ ପ୍ରତିକୂଳତାକୁ ଅତିକ୍ରମ କରି ବିଦ୍ୟାଳୟଟିଏ ଚଳାଇ ରଖିବାରେ କଲ୍‌ଲ୍‌ଙ୍କର ମୁଖନିଃସୃତ କଥାଗୁଡ଼ିକ ମୋତେ ପ୍ରଭୂତ ସାହାଯ୍ୟ କରିଛନ୍ତି । ପଢ଼ିଥିବା ପାଠବସ୍ତୁଗୁଡ଼ିକ ଅପେକ୍ଷା କଲ୍‌ଲ୍‌ଙ୍କର କହିଥିବା କଥାଗୁଡ଼ିକ ହିଁ ମୋ' ଭିତରେ ଜୀବନ ଭରିଦେଇଛି, ବିଶ୍ୱାସ ଜାଗୃତ କରାଇ ଆଣିଛି, ସାହସ ଏବଂ ବଳଦ୍ୱାରା ମୋତେ ଅଧିକରୁ ଅଧିକ ସମର୍ଥ କରାଇଛି । ନୈରାଶ୍ୟ ବେଳେ ଆଶା ଦେଇଛି, - ସତେଅବା ସ୍ୱୟଂ ଭଗବାନଙ୍କଠାରୁ ଆଲୋକ ଆସି ମୋତେ ଉଜ୍ଜୀବିତ କରି ଦେଇଛି ।

ପାଠ ପଢ଼ିବାଦ୍ୱାରା ଜ୍ଞାନର ପରିମାଣକୁ ବୃଦ୍ଧି କରି ଜଣେ ବ୍ୟକ୍ତିକୁ ଯେତିକି ମିଳେ, କଲ୍‌ଲ୍‌ଙ୍କର ଛାତ୍ରମାନେ ତାହା ଅପେକ୍ଷା ଅନେକ ଅଧିକ ଲାଭ କରିବାର ସୌଭାଗ୍ୟ ଲାଭ

କରିଥିଲେ । ପାଠ ବିଷୟରୁ ହିଁ ଯାବତୀୟ ଅଧ୍ୟାପନା ଆରମ୍ଭ ହେଉଥିଲା ସତ, ମାତ୍ର ଅଳ୍ପ କେତେ କ୍ଷଣ ମଧ୍ୟରେ ହିଁ କଲ୍‌ଲ୍ କେତେ ନା କେତେ ଗଭୀରକୁ ଚାଲି ଯାଇ ପାରୁଥିଲେ, ଛାତ୍ରଛାତ୍ରୀ ମାନଙ୍କର ଆତ୍ମାକୁ ସ୍ପର୍ଶ କରୁଥିଲେ । ସେମାନଙ୍କୁ ଏକ ମନୁଷ୍ୟ ଭଳି ମନୁଷ୍ୟର ଜୀବନ ବଞ୍ଚିବାଲାଗି ଉଦ୍‌ବୋଧିତ କରି ଆଣୁଥିଲେ । ଜଣେ ବ୍ୟକ୍ତି ମଧ୍ୟରେ ଯାହାସବୁ ସୁପ୍ତ ଓ ପ୍ରଚ୍ଛନ୍ନ ହୋଇ ରହିଥିଲା, ସେ ସେଗୁଡ଼ିକୁ କ୍ରିୟାଶୀଳ କରାଇ ପାରୁଥିଲେ । ଆତ୍ମପରିଚୟ ଏବଂ ପୂର୍ଣ୍ଣ ଦାୟିତ୍ୱସଚେତନତା ଆଡ଼କୁ ବାଟ ଫିଟାଇ ଦେଉଥିଲେ । ପ୍ରତ୍ୟେକ ମନୁଷ୍ୟ ଭିତରେ ଏକ ଅଗ୍ନି ରହିଥାଏ ଯାହାକୁ କି ଏକ ଆଧ୍ୟାତ୍ମିକ ଜାଗରଣ ଦ୍ୱାରା ପ୍ରଜ୍ୱଳିତ କରା ଯାଇପାରେ । ଅଧିକାଂଶ ଶିକ୍ଷକ ସେହି କାର୍ଯ୍ୟଟିକୁ କରି ପାରନ୍ତି ନାହିଁ । ସେମାନେ ସେମାନଙ୍କର ପ୍ରଦତ୍ତ ପାଠଗୁଡ଼ିକ ଦ୍ୱାରା ଆମକୁ ପୋତି ପକାନ୍ତି, ଆମର ସର୍ବପ୍ରାପ୍ତି ଓ ସର୍ବସିଦ୍ଧି ହୋଇଗଲା ବୋଲି ଆମକୁ ଏକ ମିଛ ସନ୍ତୋଷ ଆଣି ଦେଇଥାନ୍ତି । ସେମାନେ ଆମର ଭୋକ ମାରିଦିଅନ୍ତି । ସମ୍ଭବତଃ ସେହି କାରଣରୁ ହିଁ ଅଧିକାଂଶ ବ୍ୟକ୍ତି ନିଜର ତରୁଣ ବୟସରେ ନିଜର ସେହି ଅସଲ ସମ୍ପଦଟିର ନିଦାରୁଣ ଅବହେଳା କରିଥାନ୍ତି । କ୍ରିଷ୍ଟେନ୍ କଲ୍‌ଲ୍ ସେହି ଅସଲ ଗୁଣଟିକୁ ଆଗ ଚିହ୍ନୁଥିଲେ, ସେ ପ୍ରକୃତରେ ଜଣେ ଅସଲ ଗୁଣିଆ ଥିଲେ । ତାଙ୍କଠାରୁ ଯଥାର୍ଥ ନିର୍ଦ୍ଦେଶନାଟିକୁ ଲାଭ କରି ନିଜର ଅସଲ ଘରଟି ଭିତରେ ପ୍ରବେଶ କରି ହେଉଥିଲା ।

ନିଜ ବିଦ୍ୟାଳୟର ଛାତ୍ରମାନଙ୍କ ଉପରେ ଶ୍ରୀ କଲ୍‌ଲ୍‌ଙ୍କ ଅଟଳ ବିଶ୍ୱାସ ରହିଥିଲା । ବିଦ୍ୟାଳୟରେ ଗୋଟିଏ ଜାଗାରେ କଲମ ଓ ପେନ୍‌ସିଲ୍ ରହୁଥିଲା ଓ ପିଲାମାନେ ନିଜର ପ୍ରୟୋଜନ ଅନୁସାରେ ସେଥିରୁ ସେଗୁଡ଼ିକୁ ନେଇ ପାରୁଥିଲେ । ପଦାର୍ଥଗୁଡ଼ିକର ଦାମ୍ ସେଇଠି ଲେଖାହୋଇ ରହିଥିଲା ଓ ସମସ୍ତେ ନେଉଥିବା ଦ୍ରବ୍ୟଟି ଅନୁସାରେ ପାଖରେ ରଖା ଯାଇଥିବା ବାକ୍ସଟି ଭିତରେ ପଇସା ଗଳାଇଦେଇ ଚାଲି ଯାଉଥିଲେ । ଏହାଦ୍ୱାରା କୌଣସି ପକ୍ଷ ଆଦୌ କୌଣସି ଅସୁବିଧାର ସମ୍ମୁଖୀନ ହେଉନଥିଲେ । ଥରେ ଗୋଟିଏ ଛାତ୍ର ଚଟାଣ ଉପରେ ନେଥାଏ ଛେପ ପକାଇଦେଲା । କଲ୍‌ଲ୍ ସେଠାରେ ଉପସ୍ଥିତ ଥିଲେ, ସେଭଳି କରିବାକୁ ବାରଣ କଲେ । ଛାତ୍ରଟି କହିଲା, ଚଟାଣଟା କ'ଣ ଏଡ଼େ ମୂଲ୍ୟବାନ୍ ଜିନିଷଟାଏ ଯେ ତା' ଉପରେ ଛେପ ବି ପକାଇ ହେବନାହିଁ ? କଲ୍‌ଲ୍ ଆଉ ତା'ପରେ ମୋଟେ କିଛି କହିନଥିଲେ । କେତେବେଳେ ଚୁପ୍ ରହିବାକୁ ହୁଏ, ସେ ସେହି କଥାଟିକୁ ଅତି ଉତ୍ତମରୂପେ ଜାଣିଥିଲେ । ମାତ୍ର ତହିଁ ଆରଦିନ ସିଏ ବିଦ୍ୟାଳୟରେ ପରିଷ୍କାର-ପରିଚ୍ଛନ୍ନତା ବିଷୟରେ ଶ୍ରେଣୀଗୃହରେ ଆଲୋଚନା କରିଥିଲେ । କହିଥିଲେ ଯେ ତାଙ୍କର ନିଜ ଭଉଣୀ ହିଁ ବିଦ୍ୟାଳୟରେ ଯାବତୀୟ ଗୃହବ୍ୟବସ୍ଥାରେ ରହିଛନ୍ତି ଓ କେତେ ଯତ୍ନର ସହିତ ସବୁକିଛିକୁ ନିର୍ମଳ ଓ ସୁନ୍ଦର କରି ରଖିଛନ୍ତି । ତାଙ୍କରି ଅକ୍ଳାନ୍ତ ରକ୍ଷଣାବେକ୍ଷଣ ଫଳରେ ହିଁ ଏଠାରେ

ବିଦ୍ୟାଳୟରେ ସବୁକିଛି ଏପରି ପରିଚ୍ଛନ୍ନ ହୋଇ ରହିପାରୁଛି । ସିଏ କହନ୍ତି ଯେ ଏହି ପରିଷ୍କାର-ପରିଚ୍ଛନ୍ନତା ସର୍ବଦା ଏକ ପ୍ରକୃତ ତଥା ସୁନ୍ଦର ମନୁଷ୍ୟଜୀବନର ଅଂଶ ହିଁ ହୋଇ ରହିବା ଉଚିତ । କଲ୍‌ଲ୍ ନିଜେ ମଧ୍ୟ ସେହିଭଳି ଭାବୁଛନ୍ତି ବୋଲି ମତ ଦେଇଥିଲେ । ପରିଷ୍କାର ଚଟାଣଟି ଆଡ଼କୁ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ସିଏ କହିଥିଲେ ଯେ ସେଇଟି ପଛରେ ମଧ୍ୟ ତାଙ୍କ ଭଉଣୀଙ୍କର ଯତ୍ନ ଅବଶ୍ୟ ରହିଛି । ତେଣୁ, ସେଇଟା ଉପରେ ଛେପ ପକାଇବାଟା ମୋଟେ ଏକ ଉଚିତ କଥା ହେବନାହିଁ ।

ବିଦ୍ୟାଳୟର ଆକାର କ୍ରମଶଃ ବଢ଼ିବାରେ ଲାଗିଥାଏ । ଅଧିକରୁ ଅଧିକ ଛାତ୍ରଛାତ୍ରୀ ଆସି ପହଞ୍ଚୁ ଥାଆନ୍ତି । ଏବଂ, ବେଳେ ବେଳେ ସ୍ଥିତି ଏପରି ହେଲା ଯେ ସ୍ଥାନାଭାବ ହେତୁ ବହୁତଙ୍କୁ ନାହିଁ ବୋଲି କହି ଫେରାଇ ଦେବାକୁ ପଡୁଥିଲା । ବିଦ୍ୟାଳୟଟି ଏବେ କିପରି ଚାଲିଛି ବୋଲି ଥରେ ଜଣେ ବନ୍ଧୁ ତାଙ୍କୁ ପ୍ରଶ୍ନ କରିବାରୁ ଉତ୍ତର ଦେଇ ଶ୍ରୀଯୁକ୍ତ କହିଥିଲେ ଯେ, ବିଦ୍ୟାଳୟ ଅବଶ୍ୟ ଭଲ ଚାଲିଛି ସତ, ମାତ୍ର ତାଙ୍କୁ ଆଉ ଆଗପରି ସେତେ ଭଲ ଲାଗୁନାହିଁ । ଛାତ୍ରମାନଙ୍କର ସଂଖ୍ୟା ଏତେ ଅଧିକ ହୋଇଯିବା ଫଳରେ, ସିଏ ଆଗଭଳି ଯେତେ ନିକଟବର୍ତ୍ତୀ ହୋଇ ସବୁକିଛିର ସମ୍ମୁଖୀନ ହୋଇ ପାରୁଥିଲେ, ଏବେ ଆଉ ସେଭଳି କରି ପାରୁନାହାନ୍ତି । ପ୍ରତ୍ୟେକ ଶିକ୍ଷାର୍ଥୀ ସହିତ ଏତେ ନିକଟକୁ ଆସି ନିଜର କର୍ତ୍ତବ୍ୟ କରି ପାରୁନାହାନ୍ତି । ତଥାପି, ଯଥାସମ୍ଭବ ଅଧିକ ଶକ୍ତି ତଥା ସମୟ ଦେଇ ସେହି କଥାଟିକୁ କରିବାକୁ ଚେଷ୍ଟା କରୁଛନ୍ତି । ପ୍ରତିଦିନ ସନ୍ଧ୍ୟା ସମୟରେ ଯେତେ ଜାଗା ହୋଇ ପାରୁଥିଲା, କଲ୍‌ଲ୍‌ଙ୍କ କୋଠରୀଟିରେ ସେତେଜଣ ଏକାଠି ହେଉଥିଲେ । ସବୁଦିନେ ଅତିଥି ଶ୍ରୋତାମାନେ ମଧ୍ୟ ଆସି ପହଞ୍ଚି ଯାଉଥିଲେ ଏବଂ ଶୁଣିବା ଭଳି କିଛି ନା କିଛି ଅବଶ୍ୟ ମିଳୁଥିଲା । ଏହିଭଳି ଏକ ସନ୍ଧ୍ୟାରେ ଗୋଟିଏ ଚାଷୀଘର ଝିଅ ଛାତି ଉପରେ ନକଲି ସୁନାର କ'ଣ ଗୋଟାଏ ଅଳଙ୍କାର ଲଗାଇ ସେଠାରେ ବସିଥାଏ । ସମସ୍ତେ ତା' ଆଡ଼କୁ କନ କନ ହୋଇ ଅନାଇବାରେ ଲାଗିଥାନ୍ତି । କଲ୍‌ଲ୍ ଏପରି ଏକ ସମାବେଶ ମଧ୍ୟରେ ଆସି ପ୍ରବେଶ କଲା ମାତ୍ରକେ ତାଙ୍କର ଆଖି ମଧ୍ୟ ସେହି ଦୃଶ୍ୟଟି ଉପରେ ପଡ଼ିଗଲା । ନିଜ ସ୍ଥାନଟିରେ ଯାଇ ବସୁ ବସୁ ମୁହଁଟା କଳା ପଡ଼ି ଯାଇଥିଲା । ସେଦିନର ପ୍ରସଙ୍ଗଟି ମଧ୍ୟ ପରୋକ୍ଷ ଭାବରେ ସେହି ଆଡ଼କୁ ଢଳି ଯାଇଥିଲା । ସହରର ବୋକା ଓ ବାଲୁରାମାନେ ଓ ଗ୍ରାମାଞ୍ଚଳର ସେହି ଜାତିର ମଣିଷମାନେ, - ଦୁହିଁଙ୍କ ଭିତରେ କିଛି ପ୍ରଭେଦ ଅଛି କି ନାହିଁ, - ଏହିଭଳି ଗୋଟିଏ ପ୍ରଶ୍ନର ଉତ୍ତର ଦେଇ କଲ୍‌ଲ୍ କହିଥିଲେ : ''ହଁ, ଆମ ଘରପାଖର ବାଲୁରା ଓ ବାଲୁରୀମାନେ ଅନେକ ସମୟରେ ସମ୍ଭବତଃ ଅଧିକ ସହଜରେ ନିଜକୁ ଧରା ପକାଇ ଦେଇଥାନ୍ତି । ତଥାପି, ସେମାନେ ସ୍ୱଭାବତଃ ଭାରି ନିରୀହ ହୋଇ ରହିଥାଆନ୍ତି ଓ ତେଣୁ ସେମାନଙ୍କ ପାଖକୁ ଯାଇ ଆବଶ୍ୟକ ହେଲେ ସେମାନଙ୍କୁ ସାହାଯ୍ୟ କରିବାକୁ ମଧ୍ୟ ଖୁବ୍ ଇଚ୍ଛା ହୋଇଥାଏ ।

ମାତ୍ର, ଅନ୍ୟ ପକ୍ଷରେ, ସହରର ବାଲୁରାମାନଙ୍କ ଆଗରେ ତ ପଦେ କଥା ବି କହି ହୁଏନାହିଁ । ସେମାନେ ବାସ୍ତବ ଜୀବନର ଭୂଇଁଟିକୁ ଛାଡ଼ି ସତେଅବା କେତେ ଉପରେ ଯାଇ ଉଡୁଥାନ୍ତି । ଫେଣ ପରି ଏଡ଼େ ବଡ଼ ବଡ଼ ଦିଶୁଥାଆନ୍ତି । କେଡ଼େ ବାଗରେ କଥାମାନ କହନ୍ତି, - ଶବ୍ଦଗୁଡ଼ିକୁ ନେଇ ଖେଳିବାରେ ଲାଗିଥାନ୍ତି । ଜୀବନଟାକୁ ନେଇ ଖାଲି କମେଡ଼ି କରୁଥାନ୍ତି, ଏକାବେଳେକେ ମରିବାଯାଏ ।'' ଏହି କଥାଗୁଡ଼ିକର ପ୍ରଭାବଟି କେତେ କୁଆଡ଼େ ଯାଇ ପହଞ୍ଚି ପାରିଲା କେଜାଣି, ତାଙ୍କର କଥା ଶେଷ ହେବା ବେଳକୁ ଉକ୍ତ ଝିଅର ଛାତିଉପରୁ ସେହି ଅଳଙ୍କାରଟି ମଧ୍ୟ ଅନ୍ତର୍ହିତ ହୋଇ ସାରିଥିଲା ।

ପ୍ରତ୍ୟହ ସନ୍ଧ୍ୟାରେ ଜଣେ କିମ୍ବା ଏକାଧିକ ଜଣ ଶିକ୍ଷାର୍ଥୀ କଲ୍‌ଲ୍‌ଙ୍କର ପ୍ରକୋଷ୍ଠକୁ ଆସୁଥିଲେ । ନିଜର ନାନା ସମସ୍ୟାକୁ ତାଙ୍କ ଆଗରେ ରଖି ଦେଉଥିଲେ । ନିର୍ଭୟ ଭାବରେ ସେତିକି କରି ପାରିବାଦ୍ୱାରା ମଧ୍ୟ ସେମାନେ କମ୍ ହାଲୁକା ଅନୁଭବ କରୁନଥିଲେ । ନିଜ ଲୋକ ପାଖରେ ନିଜର ସମସ୍ୟାଗୁଡ଼ିକୁ ଅଜାଡ଼ି ଦେଇ ପାରିଲେ ପୃଥିବୀରେ କାହାକୁ ହାଲୁକା ନଲାଗେ । ଏବଂ, ହାଲୁକା ଲାଗିଲେ ବଳ ଆସେ, ଆତ୍ମବିଶ୍ୱାସ ବି ମିଳେ । ପୁନର୍ବାର ନିଜ ଘରଟିକୁ ଫେରିଯିବାକୁ ମନ ହୁଏ । ତାହାହିଁ ଅସଲ ସମାଧାନଟି ଆଡ଼କୁ ରାସ୍ତା ଫିଟାଇଦିଏ । ଧନ୍ୟ ସେହି ଶିକ୍ଷକ, ଯିଏ ଏହିପରି ଏକ ପ୍ରକୃତ ବିମୋଚନ-ପ୍ରକ୍ରିୟାରେ ଏକ ନିମିତ୍ତ ପରି କାମ କରିପାରେ, ଆପଣା ଆଡୁ ଲୋଡ଼ି ଲୋଡ଼ି ଛାତ୍ରମାନେ ଯାହାପାଖରେ ଆସି ପହଞ୍ଚି ପାରନ୍ତି । ଏବଂ -

ଥରେ ଖରାମାସରେ କଲ୍‌ଲ୍‌ଙ୍କୁ ଏଭଳି ଜଣେ ଯୁବକକୁ ସାମନା କରିବାକୁ ପଡ଼ିଥିଲା, ଯାହାକୁ ନେଇ ବାକୀ ସମସ୍ତେ ହାର ମାନି ସାରିଥିଲେ । ସିଏ ପଦେ ପଦେ ସମସ୍ୟା ସୃଷ୍ଟି କରୁଥିଲା; ଯେତେ ଯାହା ପ୍ରତିକାର କରାଗଲେ ମଧ୍ୟ ତାକୁ ସାଙ୍ଗକୁ ଆଣି ହେଲାନାହିଁ । ଏପରିକି ପରମ ଧୈର୍ଯ୍ୟଶୀଳା କଲ୍‌ଲ୍‌ଙ୍କର ଭଉଣୀଙ୍କର ଧୈର୍ଯ୍ୟ ମଧ୍ୟ ତୁଟି ଯାଇଥିଲା । ତାହାକୁ ଆଉ ଆଦୌ ପାରି ହେବନାହିଁ ବୋଲି ସିଏ ନିଷ୍ପତ୍ତି କରିନେଲେ । ଦିନେ ସେ ନିଜ ଭାଇକୁ ଯାଇ କହିଲେ: ''ଆମେ କେତେଦିନ ଆଉ ସେହି ପିଲାଟିକୁ ଏଠାରେ ରଖିଥିବା ? କାହିଁକି ବା ରଖିବା ?''

''ସିଏ ଆମକୁ ଧୈର୍ଯ୍ୟ ରଖିବାକୁ ଶିକ୍ଷା ଦେଇ ପାରିବ ।'' - କଲ୍‌ଲ୍ ଉତ୍ତର ଦେଇଥିଲେ ।

ଥରେ ବିଦ୍ୟାଳୟରେ ହିଁ ଜଣେ ଶିକ୍ଷାର୍ଥୀର ଦେହାନ୍ତ ହୋଇ ଯାଇଥିଲା । ସେଦିନ ସେଠାରେ ଉପସ୍ଥିତ ଥିବା ଜଣକର ବିବରଣୀରୁ ଜଣାଯାଏ ଯେ, ସେଦିନ କଲ୍‌ଲ୍ ମୃତବ୍ୟକ୍ତିର ପାର୍ଶ୍ୱରେ ଛିଡ଼ା ହୋଇ ସମସ୍ତଙ୍କ ଲାଗି କେତେ ପଦ ପ୍ରବଚନ ଦେଇଥିଲେ । '' ସେହି

ପ୍ରବଚନକୁ ଶୁଣି ଆମେ ଅଭିଭୂତ ହୋଇ ଯାଇଥିଲୁ । ସତେ ଯେପରି ମୃତ୍ୟୁ ଆଦୌ କେଉଁଠିହେଲେ ନାହିଁ, ଖାଲି ଜୀବନ ହିଁ ଜୀବନ,- ଅନନ୍ତ ଜୀବନ । ତା'ପରେ, ସିଏ ଆମକୁ ଗୋଟିଏ ଗୀତ ବୋଲିବାକୁ କହିଲେ; ଏତେ ଉଚ୍ଚ ଗଳାରେ ବୋଲିବାକୁ କହିଲେ ଯେପରିକି ମୃତ୍ୟୁ ଲଭିଥିବା ଆମ ବନ୍ଧୁ ମଧ୍ୟ ତାହାକୁ ଶୁଣିପାରିବ । - ମୁଁ ମୋ' ଜୀବନରେ କେବେହେଲେ ଏତେ ଆବେଗପୂର୍ଣ୍ଣ ଓ ଆବଦେନଭରା ଗୀତଟିଏ ଶୁଣିନଥିଲି । ''

ଲିଖିତ ସାମଗ୍ରୀ ହିସାବରେ କଲ୍‌ଲ୍‌ଙ୍କର ବିଶେଷ କିଛି ରଚନା ନାହିଁ । ତୁରସ୍କରୁ ପ୍ରାୟ ସ୍ଥଳରାସ୍ତା ଦେଇ ଡେନମାର୍କ ଫେରିବାର ଯାତ୍ରାନୁଭୂତି, ସାନ ପିଲାମାନଙ୍କୁ ଶିକ୍ଷା ଦେବା ବିଷୟରେ କିଛି କ୍ରମବଦ୍ଧ ବିଚାର ଏବଂ କିଛି ଚିଠିପତ୍ର । କଥାରେ ଯିଏ ଶ୍ରୋତାମାନଙ୍କର କାନ ଭିତର ଦେଇ ଏକାବେଳେକେ ହୃଦୟକୁ ଛୁଇଁ ପାରୁଥିଲେ, ତାଙ୍କୁ ଆମେ ତାଙ୍କର ବିଭିନ୍ନ ଅବସରରେ କହିଥିବା କଥାଗୁଡ଼ିକର ମାଧ୍ୟମରେ ହିଁ ହୁଏତ ଅଧିକ ଅନ୍ତରଙ୍ଗ ଭାବରେ ଜାଣିପାରିବା । ଏକଦା କଲ୍‌ଲ୍ ସତୀର୍ଥ ଆଉଜଣେ ଶିକ୍ଷକଙ୍କୁ କହିଥିଲେ : ନିଜ ସହିତ ତଥା ପରସ୍ପର ସହିତ କମେଡ଼ି ପରି ଅଭିନୟ କରିବାଲାଗି ଆମେ ମନୁଷ୍ୟମାନେ ଅଦ୍ଭବହୁତ ଖୁବ୍ ପ୍ରଲୁବ୍ଧ ହୋଇ ପଡ଼ିଥାଉ । ଆମେ ଗୋଟିଏ କଥା କହୁଥାଉ ଓ କରୁଥାଉ ସିନା, ମାତ୍ର ଭିତରେ ପ୍ରକୃତରେ ଆଉ ଗୋଟିଏ କଥା ହିଁ ଭାବୁଥାଉ । ଏବଂ ଶେଷଯାଏ ସେହି କଥାଟି ଲାଗି ରହିଥାଏ । ଏହି କମେଡ଼ିର ଅଭିନୟଟା ସତେଯେପରି ଆମ ରକ୍ତ ଭିତରେ ମିଶି କରି ରହିଥାଏ । ତଥାକଥିତ ବଡ଼ମାନଙ୍କ ଭିତରେ ସେହି ଖୋଇଟା ସବୁଠାରୁ ଅଧିକ ହାସ୍ୟାସ୍ପଦ ଭାବରେ ରହିଥାଏ । ଜୀବନଟାକୁ ଏହିଭଳି ଭାବରେ ଖୁବ୍ କଟାଇ ନେଇହେବ ବୋଲି ସେମାନେ ଧରି ନେଇଥାନ୍ତି । ଭାରି ଚମତ୍କାର ଭାବରେ ଅଭିନୟ କରୁଥାନ୍ତି ଏବଂ ତାହାକୁ ହିଁ ଶିକ୍ଷିତପଣ ତଥା ସଂସ୍କୃତିସମ୍ପନ୍ନତାର ଅସଲ ଲକ୍ଷଣ ବୋଲି ଗ୍ରହଣ କରା ଯାଉଥାଏ । ପିଲାମାନେ ମଧ୍ୟ ଏହିକଥା ଶିକ୍ଷା କରନ୍ତୁ ବୋଲି ସେମାନେ ଆବଶ୍ୟକ ମନେ କରୁଥାନ୍ତି । ମାତ୍ର, ଆମେ ତଥାକଥିତ ସାଧାରଣ ଓ ସାନମାନେ ମଧ୍ୟ ସେମାନଙ୍କ ଠାରୁ କୌଣସି ପ୍ରକାରେ ଆଦୌ ଊଣା ନୋହୁ । ଆମେ ମଧ୍ୟ ଯେତେବେଳେ ବଡ଼ମାନଙ୍କର ଗହଣ ଭିତରେ ଥାଉ, ସେତେବେଳେ ଆବଶ୍ୟକ ବୋଲି ଭାବି ଆମେ ପେଚଗୁଡ଼ିକୁ କଷି ଅନୁରୂପ ଭାବରେ ପ୍ରସ୍ତୁତ କରି ରଖିଥାଉ ଏବଂ, ଆମେ ପ୍ରକୃତରେ ଯାହା, ତାହାଠାରୁ ଏକାବେଳେକେ ଆଉ ପ୍ରକାରେ ଦିଶିବାକୁ ଆଚରଣ କରୁଥାଉ । କଥାରେ ଯେପରି, ଆଚରଣ ମଧ୍ୟ ସେହିପରି । ସାଧାରଣ ଜଣେ କୃଷକ ମଧ୍ୟ ପାଦ୍ରୀଙ୍କ ଆଗରେ ଛିଡ଼ା ହୋଇଥିଲା ବେଳେ, ତା'ର ଦେହଟା ସିନା ସେଠାରେ ଉପସ୍ଥିତ ଥାଏ, ତା'ର ଅସଲ ମୁଁ'ଟି ମୋଟେ ସେଠାରେ ନଥାଏ । ଜଣେ ମନୁଷ୍ୟକୁ ଆମେ କେବେହେଲେ ଆଉଜଣେ ମନୁଷ୍ୟର କେବଳ ଗୋଟିଏ ଅନୁକରଣ କିମ୍ବା ନକଲ ବୋଲି କହି ପାରିବାନାହିଁ । ସିଏ ପ୍ରକୃତରେ ତାହା, ଯେଉଁପରି ତାକୁ ଜଗଦ୍‌କର୍ତ୍ତା

ତିଆରି କରି ପୃଥିବୀକୁ ପଠାଇଛନ୍ତି । ସିଏ ହେଉଛି ସିଏ ନିଜେ, ଅନନ୍ୟ । ଜୀବନରେ ବିକଶିତ ହୋଇ ଆମେ ସେହି ଅନନ୍ୟ ପରିଚୟଟିର ସ୍ତରରେ ଯାଇ ପହଞ୍ଚି ପାରିବା । ମାତ୍ର, ଅନ୍ୟମାନଙ୍କର ଅନୁକରଣ କରି ଆମେ କଦାପି ସେଥିରେ ସଫଳ ହୋଇ ପାରିବାନାହିଁ ।

କଲ୍‌ଲ୍ ଆହୁରି କହିଲେ, ''ଯଦି କୌଣସି ଏକ ପିଲାକୁ ମୁଁ କ'ଣ ଭଲ ଚିଜଟିଏ ଉପହାର ଦେବି, ସେଥିରେ ପିଲାଟି ଖୁସୀ ହୋଇଯିବ । ତା'ର ସେହି ଖୁସୀ ହେବାଟି ହିଁ ସିଏ ମୋତେ ଧନ୍ୟବାଦ ଦେଲାପରି ହେବନାହିଁ କି ? ଏହିସବୁ କ୍ଷେତ୍ରରେ ପିଲାଟି ଧନ୍ୟବାଦ ବୋଲି କହୁ ବୋଲି ବାପାମାଆମାନେ ତାକୁ କାଳକାଳରୁ ଶିକ୍ଷା ଦେଇ ଆସିଛନ୍ତି । କାହାଠାରୁ କ'ଣ ଜିନିଷଟିଏ ପାଇଲେ କ'ଣ କହନ୍ତି ? ଧନ୍ୟବାଦ ବୋଲି କହନ୍ତି କି ନାହିଁ ?- ଇତ୍ୟାଦି ଇତ୍ୟାଦି । ବରଂ ଆମେ ଅପେକ୍ଷା କରିବା,- ପିଲାଟି ବଡ଼ ହୋଇଯିବ - ତେବେ ତା' ମୁହଁରୁ 'ଧନ୍ୟବାଦ' ଶବ୍ଦଟି ଆପେ ବାହାରି ଆସିବ । ଏବଂ ସେତେବେଳେ ଯାଇ ସେହି କଥାଟିର ପ୍ରକୃତରେ କୌଣସି ମୂଲ୍ୟ ରହିବ । ଭଲ ଆଚରଣ କାହାକୁ କୁହାଯାଏ ଏବଂ କାହାସହିତ କିପରି ବ୍ୟବହାର କରାଯାଏ,- ଯେଉଁ ପିତାମାତାମାନେ ପିଲାମାନଙ୍କୁ ସେହି ବିଷୟରେ ଅନୁକ୍ଷଣ ଲେକ୍‌ଚର ଦେବାରେ ଲାଗିଥାଆନ୍ତି, ସେମାନେ ପିଲାମାନଙ୍କୁ ମୋଟେ ବୁଝିନଥାନ୍ତି । ସେମାନେ ହୁଏତ ଜଣେ ଜଣେ ଭାରି ଭଲ ମଣିଷ ହୋଇପାରନ୍ତି, ମାତ୍ର ସେମାନେ ମୋଟେ ବୁଝି ପାରନ୍ତିନାହିଁ ଯେ ସେଭଳି କରି ସେମାନେ ପିଲାଟି ମଧ୍ୟରେ ଯାହା ପବିତ୍ର ଓ ଯାହା ଜୀବନ୍ତ, ତାହାକୁ ବଡ଼ ନରଖର କରିଦିଅନ୍ତି । ଏବଂ, ପିଲାଭିତରର ସେହି ଗୁଡ଼ିକ ହିଁ ଆପଣାର ଅଭିବୃଦ୍ଧି ସକାଶେ ଆମର ସାହାଯ୍ୟ ପ୍ରାର୍ଥନା କରିବାରେ ଲାଗିଥାନ୍ତି ।''

କୋଡ଼ିଏ ବର୍ଷ ତଳେ କଲ୍‌ଲ୍‌ଙ୍କ ମେଳରେ ତାଙ୍କ ବିଦ୍ୟାଳୟରେ ଦିନଟିଏ ରହିଥିବା ଜଣେ ମହିଳା ନିଜର ସଂସ୍ମରଣରେ ଲେଖିଛନ୍ତି: ସେଦିନ ସେ ଜଣେ ମଣିଷର ସ୍ୱାଧୀନ ଇଚ୍ଛା ବିଷୟରେ କହୁଥିଲେ । ନିଜର ଗୋଟିଏ ସ୍ୱାଧୀନ ଇଚ୍ଛା ଅଛି ଏବଂ ସେହି ମୁତାବକ ହିଁ ସେମାନେ ଯାବତୀୟ କାମ କରୁଛନ୍ତି ବୋଲି ମଣିଷମାନେ କେଡ଼େ ସୁନିଶ୍ଚିତ ଭାବରେ ବିଶ୍ୱାସ କରୁଥାନ୍ତି । ମାତ୍ର ଅଧିକାଂଶ ମନୁଷ୍ୟଙ୍କର ଜୀବନରେ ସ୍ୱାଧୀନ ଇଚ୍ଛା ବୋଲି କିଛି ନଥାଏ । ସେମାନେ ସମସ୍ତେ ଆଉ ଗୋଟିଏ ଇଚ୍ଛା ଅଧୀନରେ ବାନ୍ଧିହୋଇ ରହିଥାନ୍ତି ଏବଂ ତାହାରି ଅନୁସାରେ ନାଚିବାରେ ଲାଗିଥାନ୍ତି । ପରମେଶ୍ୱରଙ୍କର ବିଧାନ ଭିତରକୁ ଆସିଲେ ଯାଇ ସେମାନେ ବନ୍ଧନରୁ ମୁକ୍ତ ହୋଇ ପାରନ୍ତି ଏବଂ ତା'ପରେ ଯାଇ ଯଥାର୍ଥ ଜୀବନଟିଏ ବଞ୍ଚିବାକୁ ସମର୍ଥ ହୁଅନ୍ତି । ସେତେବେଳେ କଲ୍‌ଲ୍ ବେଶ୍ ଅସୁସ୍ଥ ଥାଆନ୍ତି । ତହିଁ ଆରଦିନ ବିଦ୍ୟାଳୟକୁ ଯିବାପାଇଁ ବାହାରିବା ବେଳକୁ ତାଙ୍କୁ ଭାରି ଦୁର୍ବଳ ଲାଗିଥିଲା ଓ ତେଣୁ ସେ ସିଡ଼ି ଉଠି ଉପର ମହଲାକୁ ଯାଇ ପାରିଲେ ନାହିଁ । ଇତିମଧ୍ୟରେ ବାହାରୁ ମଧ୍ୟ ଆହୁରି

କେତେ ଲୋକ ତାଙ୍କ ପ୍ରବଚନ ଶୁଣିବା ନିମନ୍ତେ ଆସି ପହଞ୍ଚି ଯାଇଥିଲେ । ସବୁଯାକ ସ୍ଥାନ ଭରି ଯାଇଥାଏ । କଲ୍‌ଲ୍ ଅତ୍ୟନ୍ତ ସ୍ଥିର ଭାବରେ ଧୈର୍ଯ୍ୟର୍ଗ ସହିତ ଛିଡ଼ା ହୋଇ ରହିଥାନ୍ତି । କହିଲେ, ''ଆଜି ଛାତି ଭିତରଟା ଭାରି ଦରଜ ଲାଗୁଛି । ତେଣୁ, ଟିକିଏ ଅପେକ୍ଷା କରିବାକୁ ପଡ଼ିବ । ପୂରା ତ ଯିବନାହିଁ, କିନ୍ତୁ କିଞ୍ଚିତ୍ ଉପଶମ ଲାଗିବ । ତେବେ ମୁଁ ନିଶ୍ଚୟ କିଛି କହି ଶୁଣାଇ ପାରିବି ।'' ଏହିପରି ସେ କିଛି ସମୟ ଶାନ୍ତ ଭାବରେ ଠିଆ ହୋଇ ରହିଲେ ଓ ତା'ପରେ ''ଟିକିଏ ଭଲ ଲାଗିଲା'' କହି ବକ୍ତବ୍ୟ ଆରମ୍ଭ କଲେ:

''ଏହି ପୃଥିବୀରେ ଆମେ ଜୀବନଟିକୁ କିପରି ବଞ୍ଚୁଥିବା, ଯେପରିକି ସବୁବେଳେ ଖୁସୀ ହିଁ ଲାଗୁଥିବ ! ସର୍ବଦା କର୍ମରତ ହୋଇ ରହିଲେ ଯାଇ ସର୍ବଦା ଖୁସୀ ଲାଗୁଥିବ । ମାତ୍ର ଯିଏ ଅନ୍ୟମାନଙ୍କର ପରିଶ୍ରମ ଉପରେ ନିର୍ଭର କରୁଥିବ ଏବଂ ତାହାକୁ ହିଁ ଭଲ ଆଉ ଆରାମ ବୋଲି ଭାବୁଥିବ, ସିଏ କେବେହେଲେ ଆନନ୍ଦ ପାଇ ପାରିବନାହିଁ । ଏହିପରି ଭାବରେ ଆମକୁ ଏହି ପୃଥିବୀରେ ଦୁଇ ପ୍ରକାରର ବାଟ ଓ ଦୁଇ ପ୍ରକାରର ମନୁଷ୍ୟ ଦେଖିବାକୁ ମିଳିବେ ।'' ତାପରେ ସିଏ କାହାଣୀଟିଏ କହିଥିଲେ: ଦୁଇଜଣ ସ୍ତ୍ରୀଲୋକ ଥିଲେ । ଜଣେ ବଡ଼ ଗରିବ, ଏକୁଟିଆ ଗୋଟିଏ କୁଡ଼ିଆଘରେ ରହୁଥିଲା । ଦିନେ ରାତିରେ ଘରେ କିଛି ଖାଇବାକୁ ନଥାଏ । ବାକୀ ଥିବା ସର୍ବଶେଷ କାଷ୍ଠଖଣ୍ଡଟିକୁ ସିଏ ଉହ୍ନେଇରେ ନେଇ ପକାଇଲା । ପୂରା କାଳୁଆ ଶୀତକାଳର ରାତି । ତା'ପରେ ସିଏ ଆଣ୍ଠୁମାଡ଼ି ବସି ଭଗବାନଙ୍କୁ ପ୍ରାର୍ଥନା କଲା: ''ତୁମେ ତ ଦେଖୁଛ ଠାକୁରେ, ମୋ' ପାଖରେ ଆଉ କିଛିହେଲେ ନାହିଁ । ସବା ଶେଷଖଣ୍ଡ ରୁଟିଟି ମଧ୍ୟ ଖିଆ ସରିଛି ଓ ଶେଷ ଖଣ୍ଡ ଜାଳେଣିଟି ମଧ୍ୟ ଚୂଲୀରେ ପଡ଼ି ସାରିଲାଣି । ପାଖରେ ଆଉଜଣେ ନାହିଁ ଯେ କିଏ ଯାଇ କିଛି ଆଣି ଦେଇଯିବ । ତୁମେ ସାହା ନହେଲେ ଆଉ ମୋ' ଜୀବନ କେବେହେଲେ ରହିବନାହିଁ । କିନ୍ତୁ, ତୁମେ ହିଁ ତ ମୋତେ କହିଛ ଯେ, ମୁଁ ମାଗିଲେ ଅବଶ୍ୟ ମିଳିବ । ତେଣୁ, ଆଜି ମାଗୁଛି, ତୁ ମୋ' ପାଇଁ ରୁଟି ଦେ, ଜାଳେଣି ମଧ୍ୟ ଦେ' ।'' ସେହି ଜଙ୍ଗଲରେ ଖଣ୍ଡେ ଦୂରରେ ଆଉଜଣକର ବି ଘର ଥିଲା । ସେଠି ଗୃହସ୍ୱାମୀର ଭାର୍ଯ୍ୟାଟି ଏକୁଟିଆଟି ବସିଥିଲା । ଭଗବାନ ତାକୁ କେଡ଼େ ସୁନ୍ଦର ସେହି ଘରଟିକୁ ଘରଣୀ କରି ଆଣିଛନ୍ତି । ସବୁକିଛି ଆରାମ, ସବୁକିଛି ଆନନ୍ଦଦାୟକ । ହଠାତ୍, ତା' ମନଭିତରେ ଗୋଟିଏ ଚିନ୍ତା ଆସି ପଶିଗଲା : ଏହି ଜାଡ଼ରାତିରେ ଡୋରଥି(ଆର ସ୍ତ୍ରୀଲୋକଟିର ନାଆଁ) ହୁଏତ କେତେ କଷ୍ଟ ପାଉଥିବ !

ସ୍ୱାମୀ ଆସିବାଯାଏ ସିଏ ଆଉ ଅପେକ୍ଷା କରି ପାରିଲାନାହିଁ । ମନେ ମନେ ଅନୁମାନ କରିପାରିଲା ଯେ ତା'ପାଖରେ ଖାଇବାକୁ କିଛି ନଥିବ, ନିଆଁ ପାଇଁ ଜାଳେଣି ମଧ୍ୟ ନଥିବ । ସିଏ ସେଠାକୁ ଯିବ ବୋଲି ବାହାରିଲା । ତା'ର ସ୍ୱାମୀ ଜଙ୍ଗଲରୁ ସେହି ସମୟରେ ଫେରିଲେ ଏବଂ ସ୍ତ୍ରୀ'ର କଥା ଶୁଣି କହିଲେ, କାଲି ସକାଳେ ଗଲେ କ'ଣ

ହେବନାହିଁ ? ଏଡ଼େ ଶୀତରେ କାହିଁକି ଘରୁ ବାହାରିବ ? କିନ୍ତୁ ସ୍ତ୍ରୀ'ର ମନ ତଥାପି ବୁଝିଲାନାହିଁ । ସ୍ୱାମୀ ହାତରେ ଅନେକ ଆବଶ୍ୟକ ସାମଗ୍ରୀ ପଠାଇ ଦେଇଥିଲା । ସତେ ଯେପରି ଜଣେ ଦେବଦୂତ ଆସି ତାକୁ କ'ଣ କରିବାକୁ ହେବ, ତାହା କହି ଯାଇଥିଲା । ସିଏ କେବଳ ନିମିତ୍ତଟିଏ ପରି କାର୍ଯ୍ୟ କଲା ।

୧୮୬୮-୬୯ ଶୀତକାଳ ବେଳକୁ କଲ୍‌ଲ୍ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ ଏବଂ କ୍ୱଚିତ୍ ସିଡ଼ିକୁ ଚଢ଼ି ଉପର ମହଲାରେ ଥିବା ଶ୍ରେଣୀପ୍ରକୋଷ୍ଠକୁ ଯାଇ ପାରୁଥିଲେ । ବେଳେ ବେଳେ ସନ୍ଧ୍ୟା ସମୟରେ ଛାତ୍ରମାନଙ୍କ ସହିତ ଘଡ଼ିଏ ଏକାଠି ଯାଇ ବସୁଥିଲେ । ଆଲୁଅ ଜଳୁ ନଥିଲା ଓ ଛାତ୍ରମାନେ ଅଧିକ ମୁକ୍ତ ଭାବରେ ପ୍ରଶ୍ନମାନ ପଚାରି ପାରୁଥିଲେ । କଲ୍‌ଲ୍ ବେଳେ ବେଳେ ପ୍ରଶ୍ନଗୁଡ଼ିକର ଅତ୍ୟନ୍ତ ସଂକ୍ଷେପରେ ଉତ୍ତର ଦେଉଥିଲେ, ମାତ୍ର ସେଗୁଡ଼ିକରେ କେବେ କୌଣସି ଅସ୍ପଷ୍ଟତା ରହୁ ନଥିଲା । ତଥାପି ବେଳେ ବେଳେ ଏପରି ଗୋଟିଏ ଗୋଟିଏ ପ୍ରଶ୍ନ ବି ଆସି ହାବୁଡ଼ି ଯାଉଥିଲା, ଯାହାର ଉତ୍ତର ଦେବାକୁ ହୁଏତ ପୂରା ଘଣ୍ଟାଏ ଲାଗି ଯାଉଥିଲା । ତାଙ୍କ ଭିତରେ କିଭଳି ଏବଂ କେଉଁଠାରୁ ଜ୍ଞାନ-ସମାଧାନର ଏଡ଼େ ବଡ଼ ଏକ ଗନ୍ତାଘର ମହଜୁଦ ହୋଇ ରହିଥିଲା କେଜାଣି ? ଥରେ ଶ୍ରୀ ପିଟର୍ ଲାର୍ସନ୍ ସ୍କ୍ରେପେନ୍‌ବର୍ଗ୍ ତାଙ୍କୁ ସଂଖୋଜିବାକୁ ବିଦ୍ୟାଳୟରେ ଆସି ପହଞ୍ଚିଲେ । କଲ୍‌ଲ୍ ତାଙ୍କ ସହିତ ଭେଟ ହେବ ବୋଲି ଏଡ଼େ ଖୁସୀ ହୋଇ ଯାଇଥିଲେ ଯେ, ସ୍କ୍ରେପେନ୍‌ବର୍ଗ୍ ଅମୁକ ଦିନ ଆସୁଛନ୍ତି ବୋଲି ସେ ନିଜର ଛାତ୍ରମାନଙ୍କ ଆଗରେ ବାରମ୍ବାର କହୁଥିଲେ । ଅତ୍ୟନ୍ତ ଖୁସୀ ହୋଇ ତାହା କହୁଥିଲେ । ସେ ଆସି ପହଞ୍ଚିବା ପରେ ଦିନେ ଉଭୟେ ଖରା ବେଳେ କ୍ଲାସ୍‌ରେ ଯାଇ ପହଞ୍ଚିଲେ । ଅତିଥି ଆସନ ଗ୍ରହଣ କରିବାପରେ କଲ୍‌ଲ୍ ପରମ କୃତଜ୍ଞତା ପ୍ରକାଶ କରି କହିଥିଲେ ଯେ, ଏଇ ପିଟର୍ ଲାର୍ସନ୍ ହିଁ ତାଙ୍କୁ ତାଙ୍କ ଜୀବନରେ ସବୁଠାରୁ ବଡ଼ ଶିକ୍ଷାଟି ଦେଇଛନ୍ତି । ହଁ, ପ୍ରକୃତରେ ସର୍ବୋତ୍ତମ ଶିକ୍ଷାଟି ଦେଇଛନ୍ତି । ଭଗବାନ ମନୁଷ୍ୟ ମାତ୍ରକେ ଆମ ସମସ୍ତଙ୍କୁ ଭଲ ପାଆନ୍ତି ବୋଲି କହିଛନ୍ତି । ଏହି କଥାଟି କହୁଥିବା ସମୟରେ ସିଏ କେଡ଼େ ଅନ୍ୟପ୍ରକାର ଦେଖା ଯାଉଥାନ୍ତି । ଅତ୍ୟନ୍ତ ନମ୍ର ଭାବରେ କଥା କହୁଥାନ୍ତି; ସତେ ଯେପରି ନିଜର ସର୍ବୋଚ୍ଚ ସମ୍ମାନାସ୍ପଦ ଶିକ୍ଷକଙ୍କର ପାର୍ଶ୍ୱରେ ଛିଡ଼ା ହୋଇଥିବା ଜଣେ ଚିରକୃତଜ୍ଞ ଛାତ୍ରପରି ସବୁ କହୁଥାଆନ୍ତି ।

ଆଖର ଦିନେ ଏପରି ହେଲା ଯେ, ସେ ଆଜି ଆଉ ଶ୍ରେଣୀକୁ ଆସି ପାରିବେନାହିଁ ଓ ଛାତ୍ରମାନଙ୍କୁ କିଛି କହି ପାରିବେନାହିଁ ବୋଲି କଲ୍‌ଲ୍ ଖବର ପଠାଇଥିଲେ । ଥରେ ସ୍ୱୟଂ ଆସି ବି ସେହି କଥାଟିକୁ କହି ଯାଇଥିଲେ । ଆସି ଗୋଟିଏ ବେଞ୍ଚ୍ ଉପରେ ବସିଗଲେ ଏବଂ କହିଲେ ଯେ, ତାଙ୍କର ଅବଶ୍ୟ କିଛି କହିବା ଉଚିତ ବୋଲି ସେ ଅନୁଭବ କରୁଛନ୍ତି ସତ,

ମାତ୍ର ଏତେ ଅସୁସ୍ଥ ଅଛନ୍ତି ଯେ, ପ୍ରକୃତରେ ମୋଟେ କିଛି କହି ପାରିବେନାହିଁ । ତଥାପି ଛାତ୍ରମାନଙ୍କ ମେଳରେ ଗୋଟିଏ ଘଣ୍ଟା ବସି ରହିଥିଲେ । ଯଦି ତଥାପି କାହାର କିଛି ପଚାରିବାର ଅଛି, ତେବେ ସିଏ ପଚାରୁ ଓ ମୁଁ ଉତ୍ତରରେ କିଛି କହିବାକୁ ଚେଷ୍ଟା କରିବି ବୋଲି କହିଥିଲେ । ହୁଏତ ଜଣେ ପ୍ରଶ୍ନଟିଏ ପଚାରୁଥିଲା । ସମସ୍ତେ ବସିଥାଆନ୍ତି ଏବଂ କଲ୍ଲ୍ ଉତ୍ତର ଦେବାକୁ ଠିଆ ହେଉଥିଲେ । ଛିଡ଼ା ହୋଇଯିବା ମାତ୍ରକେ ତାଙ୍କର ଆଖି ଉଜ୍ଜ୍ୱଳ ହୋଇ ଉଠୁଥିଲା, ମୁଖମଣ୍ଡଳ ସପ୍ରତିଭ ହୋଇ ଉଠୁଥିଲା ଏବଂ ଉତ୍ତର ଦେବାର ଛଳରେ ପୂରା ଶ୍ରେଣୀଘଣ୍ଟାଟିଏ ଚାଲି ଯାଉଥିଲା । ତାଙ୍କର କଥା ସରିବା ବେଳକୁ ପୂର୍ବାହ୍ନଟି ଅତିବାହିତ ହୋଇ ଯାଇଥିଲା ।

ଧରାବନ୍ଧା କୌଣସି ନିୟମ ରହୁନଥିଲା । ଯେତେବେଳେ ନିଜକୁ ଅଜାଡ଼ି ଦେବାପାଇଁ ଶିକ୍ଷକର ଆଗ୍ରହରେ କୌଣସି ସୀମା ନଥାଏ ଓ ଛାତ୍ରମାନଙ୍କର ଗ୍ରହଣ କରିବାର ଖୁସୀ ଓ ସ୍ପୃହାରେ ମଧ୍ୟ ଆଗରୁ କୌଣସି ଗାର ପଡ଼ିନଥାଏ, ସେତେବେଳେ କାହାକୁ ଆଦୌ କୌଣସି ନିୟମରେ ବାନ୍ଧି ହୁଏନାହିଁ । ଗୋଟିଏ ବିଷୟରେ ଆରମ୍ଭ ହୋଇଥାଏ ସତ, ମାତ୍ର ଆଦୌ ବଣା ନହୋଇ ପ୍ରସଙ୍ଗଟି ହୁଏତ କାହିଁ କେତେ ଆଡ଼କୁ ଚାଲିଯାଏ । ଅବା, ଗୋଟିଏ ବିଷୟରେ କହିବା ଆରମ୍ଭ ହୋଇଥାଏ ଏବଂ ହଠାତ୍ ମଝିରେ ଆଉ ଗୋଟାଏ ପ୍ରସଙ୍ଗ ବା ବିଷୟ ଆସି ସମଗ୍ର ଭାବନାୟତନଟିକୁ ଅଧିକାର କରିନିଏ ଏବଂ ତା'ପରେ ସବୁକିଛି ବଦଳିଯାଏ । ପଛକୁ ଅନାଇ ଆରମ୍ଭ କରିଥିବା ଥାନଟି ମୋଟେ ଦୃଷ୍ଟିଗୋଚର ହୁଏନାହିଁ । ଶ୍ରୀଯୁକ୍ତ କଲ୍ଲ୍‌ଙ୍କର ବେଳକୁ ବହୁତ ସମୟରେ ସେହିକଥା ହେଉଥିଲା । ଥରେ ଥରେ ସେ କହିବା ମଝିରେ ହଠାତ୍ ବନ୍ଦ ହୋଇ ଯାଉଥିଲେ ଓ ପ୍ରାୟ ଏକ ଗମ୍ଭୀର ମୁଖମୁଦ୍ରାରେ "ଏହି ବିଷୟରେ ଆମେ ଆଉ ଦିନେ ଚର୍ଚ୍ଚା କରିବା । ଆଉ ଗୋଟାଏ ଭାବନା ଆସି ମୋ ଭିତରେ ବାଟ ଓଗାଳି ବସିଲାଣି, ଆଗ ସେଇଟାକୁ ହିଁ ପକାଇବା" ବୋଲି ଘୋଷଣା କରୁଥିଲେ । ଶ୍ରୋତାବର୍ଗ ସମସ୍ତେ ବି ବଡ଼ ସହଜରେ ରାଜୀ ହୋଇ ଯାଉଥିଲେ । କହିବା ସମୟରେ କଲ୍ଲ୍ ଯାହାସବୁ କହୁଥିଲେ, ଅଧିକାଂଶତଃ ନିଜ ଭିତରୁ, ନିଜ ଅନୁଭବ ତଥା ମନନଦ୍ୱାରା ଉପଲବ୍ଧ ମନ୍ଥନ ଉପରେ ନିର୍ଭର କରି କହୁଥିଲେ । ବହିର ଉଦାହରଣ ଖୁବ୍ କମ୍ ଦେଉଥିଲେ । ଖାଲି ବହି ଅଧ୍ୟୟନ ଦ୍ୱାରା ଯେ ପ୍ରଜ୍ଞାନାମକ ସେହି ଅସଲ ସାମର୍ଥ୍ୟଟି ଆପେ ଆପେ ହାସଲ ହୋଇଯାଏ, ସେକଥାକୁ ସେ ସ୍ୱୀକାର କରୁନଥିଲେ । ଅଧ୍ୟୟନ ସହିତ ଆଉ କ'ଣ ଗୋଟିଏ ଏକାଠି ମିଶିଲେ ଯାଇ ଜଣେ ମଣିଷ ନିଜ ଭିତରୁ ପାକଳ ହୋଇ ଆସେ ଏବଂ ପ୍ରଜ୍ଞାର ଅଧିକାର ଲାଭ କରେ । ପ୍ରଜ୍ଞାବାନ୍ ବ୍ୟକ୍ତି ସର୍ବପ୍ରଥମେ ନିଜର ସେହି ଉପାଦାନଟି ଉପରେ ଆସ୍ଥା ରଖିଥାଏ । ସେଇଟି ସବାମୂଳରେ ଥାଏ, ଅଧ୍ୟୟନ ଏକ ସହଯୋଗୀ ଉପାଦାନରୂପେ ତାହାକୁ ପରିପୁଷ୍ଟ କରୁଥାଏ ।

ଅସୁସ୍ଥତା ବଢ଼ିବା ସଙ୍ଗେ ସଙ୍ଗେ କ୍ରମେ ଦୀପ୍ତି ନିଭି ଆସୁଥିଲା । ବିଦ୍ୟାଳୟରେ କିଛି କହିସାରିବା ପରେ କଲ୍‌ଲ୍ ଅତ୍ୟନ୍ତ କ୍ଲାନ୍ତ ହୋଇ ଯାଉଥିଲେ । କ୍ଲାନ୍ତ ହୋଇ ଚଉକୀଟି ଉପରେ ବସିପଡ଼ିବା ମାତ୍ରକେ ମୁଣ୍ଡଟି ଛାତି ଉପରକୁ ଝୁଲି ପଡୁଥିଲା । ମୁଖ ଶୀର୍ଣ୍ଣ ଦେଖା ଯାଉଥିଲା - ଆଖି ଅତ୍ୟନ୍ତ ଜ୍ୟୋତିହୀନ ବୋଧ ହେଉଥିଲା । ଏଥର ସବାଆଗ ବିଶ୍ରାମ ହିଁ ଦରକାର । ଆଗରୁ କିଛି କହିବାକୁ ବାହାରିବା ସମୟରେ ସେ ଯେତିକି ଦୃଢ଼ ଏବଂ ଜୀବନ୍ତ ଦେଖା ଯାଉଥିଲେ, ଏବେ କ୍ରମେ ସେତିକି ନିଷ୍ପ୍ରଭ ହୋଇ ଆସିଲେ । କ୍ରମେ ଶ୍ରେଣୀଗୃହର ଅଧାପନା ମଧ୍ୟ ବନ୍ଦ ହୋଇ ଆସିଲା । ହୁଏତ ବେଳେବେଳେ କତିପୟ ଅଥବା କେତେଜଣ ଅତିଥି ଆସି ତାଙ୍କୁ ଘେରି କରି ବସୁଥିଲେ ଏବଂ ଆପଣା ମନକୁ ହିଁ କୌଣସି ଏକ ବିଷୟରେ କଥାବାର୍ତ୍ତା ବା ଆଲୋଚନାଟିଏ ଆରମ୍ଭ କରି ଦେଉଥିଲେ । ଆଲୋଚନା ଭିତରେ ହୁଏତ ଏକାଧିକ ମତ ପ୍ରକାଶ ପାଉଥିଲା ଏବଂ କଥା ମୋଟେ ଛିଡୁନଥିଲା । ହୁଏତ କଲ୍‌ଲ୍ ସେତିକିବେଳେ ଆଉ ନୀରବ ହୋଇ ରହି ପାରୁନଥିଲେ ଓ ସତେଅବା ନିଜ ଭିତରୁ ତାଙ୍କୁ କିଏ ଠେଲି ବାହାର କରିଦେଲା ପରି ସମସ୍ତଙ୍କ ସହିତ ବିତର୍କଟିରେ ସାମିଲ୍ ହୋଇ ଯାଉଥିଲେ । ନିଜର ଅସୁସ୍ଥତାର କଥା ଅନ୍ତତଃ ସେହି ସମୟଟି ନିମନ୍ତେ ପାସୋରି ହୋଇ ଯାଉଥିଲା । ଉପସ୍ଥିତ ସମସ୍ତେ ମଧ୍ୟ ଅତ୍ୟନ୍ତ ଉଜ୍ଜୀବିତ ଅନୁଭବ କରୁଥିଲେ ।

ଅନ୍ୟମାନଙ୍କୁ ପ୍ରତ୍ୟୟ ଦେଇ କଲ୍‌ଲ୍ କହୁଥିଲେ: ଜଗତର ସମ୍ମୁଖୀନ ହେଲାବେଳେ ନିଜ ଭିତରେ ରହିଥିବା ଶକ୍ତିକୁ ପୂର୍ଣ୍ଣ ମାତ୍ରାରେ କାମରେ ଲଗାଇବା ବିଷୟରେ ଆମ ଭିତରେ ଆଦୌ କୌଣସି ଭୟ ରହିବା ଉଚିତ ନୁହେଁ - ସେହି ଶକ୍ତି ଅନ୍ତର ଭିତରର ଶକ୍ତି ହୋଇଥାଉ ଅଥବା ଦେହର ଶକ୍ତି ବି ହୋଇଥାଉ ପଛକେ । ସେହି ଶକ୍ତି ଯେତେବେଳେ ଆମ ଭିତରେ ରହିଛି, ତାହାର ଅବଶ୍ୟ ବ୍ୟବହାର ହୋଇପାରିବା ଉଚିତ । ବ୍ୟବହାର ନକରି ତାହାକୁ ଖାଲି ସଞ୍ଚି ରଖୁଥିବା, - ତାହା ହେଉଛି ଏକ ନିର୍ବୋଧତା ଓ ତାହାଦ୍ୱାରା ଅନିଷ୍ଟ ହିଁ ହୋଇଥାଏ । କାରଣ, କାମରେ ନଲାଗି ପାରିଲେ ତାହା ଆମକୁ ଛାଡ଼ି ଚାଲି ମଧ୍ୟ ଯାଇପାରେ । ଏବଂ, ଭଗବାନଙ୍କର ମଧ୍ୟ ତାହାହିଁ ଇଚ୍ଛା ଯେ, ଆମେ ସବୁବେଳେ ପ୍ରସ୍ତୁତ ହୋଇ ରହିଥିବା, ଯଥାର୍ଥ ଭାବରେ ସଂବେଦନ ହୋଇ ରହିଥିବା, କାମରେ ଲାଗିବାପାଇଁ ସମ୍ମତ ହୋଇ ରହିଥିବା । ମୁହୂର୍ତ୍ତଟି ଆସିବ ଏବଂ ଆମେ ପ୍ରସ୍ତୁତ ନାହୁଁ ବୋଲି ଆମ ପାଖରୁ ଲେଉଟି ଚାଲିଯିବ, ଏପରି କଦାପି ହେବା ଉଚିତ ନୁହେଁ । କାରଣ, ଉପଯୁକ୍ତ ମୁହୂର୍ତ୍ତଟି ଥରେ ଅତିକ୍ରାନ୍ତ ହୋଇଗଲେ ସମ୍ଭବତଃ ଆଉ କେବେହେଲେ ଫେରି ଆସେ ନାହିଁ ।

ହଁ, ଶବ୍ଦଗୁଡ଼ିକ ମଧ୍ୟ ତଥାନୁରୂପ ମୁହୂର୍ତ୍ତରେ ଆସି ପହଞ୍ଚିଥାଏ । ଜଣେ ସମର୍ପିତ ବ୍ୟକ୍ତିର ଜୀବନରେ ସଚରାଚର ତାହାହିଁ ସର୍ବଦା ଘଟେ । ସିଏ କେବେହେଲେ ଶବ୍ଦଗୁଡ଼ିକୁ

ଖୋଜି ଯାଏନାହିଁ । ଉପଯୁକ୍ତ ଶବ୍ଦଗୁଡ଼ିକୁ ପାଇବାଲାଗି କଦାପି ମଥାବୁଦ୍ଧିର କର୍ଷଣ କରିବାକୁ ପଡ଼େନାହିଁ । ଜଣେ ଶିକ୍ଷକର ଜୀବନରେ ମଧ୍ୟ ତାହାହିଁ ଘଟେ । ଯଥାର୍ଥ ଭାବରେ ଉଜ୍ଜୀବିତ ହୋଇ ରହିଥିଲେ ଆବାହନ କରିବା ମାତ୍ରକେ ଆବଶ୍ୟକ ଶବ୍ଦଗୁଡ଼ିକ ଆପେ ଆପେ ଆସି ଧରା ଦିଅନ୍ତି । ଛାତ୍ରମାନଙ୍କ ସହିତ ସମୁଚିତ ହୃଦୟସୂତ୍ରଟି ଲାଗି ରହିଥିଲେ ଶ୍ରେଣୀକୁ ଯିବା ମାତ୍ରକେ ଶିକ୍ଷକ ପ୍ରାୟ ଏକ ନିର୍ଦ୍ଧାରିତ ନିୟମ ଅନୁସାରେ ଆପେ ଆପେ ପ୍ରସ୍ତୁତ ଓ ସମ୍ମତ ହୋଇଯାଏ; କେବଳ ଅନିଚ୍ଛୁକମାନେ ହିଁ ଅସୁବିଧାରେ ପଡ଼ନ୍ତି । ମଥାକୁ ନେଇ ବହୁତ କସରତ କରନ୍ତି, ତଥାପି ଡୋରଟିକୁ ଲଗାଇ ପାରନ୍ତିନାହିଁ । ଆଗ ଡୋରଟି ଲାଗେ, ଆଗ ନିଜ ଭିତରେ ସମ୍ମତ ରହିବାକୁ ପଡ଼େ - ସମ୍ମତ ହେବା ଏବଂ ସମର୍ପିତ ହୋଇ ରହିବା ଭିତରେ ଆଦୌ କୌଣସି ପାର୍ଥକ୍ୟ ପ୍ରକୃତରେ ନଥାଏ । ଯଥାର୍ଥ ଶିକ୍ଷକଟିଏ ଶିକ୍ଷକଟିଏ ବ୍ୟତୀତ ଆଉ ମୋଟେ କିଛି ହୋଇପାରିବ ନାହିଁ ବୋଲି ମୂଳରୁ ହିଁ ଜାଣିଥାଏ । ତେଣୁ, ଆଗ ଶିକ୍ଷକଟିଏ ହୋଇ ତା'ପରେ ଆଉ ସବୁକିଛି ବି ହୋଇପାରେ । ଶ୍ରୀଯୁକ୍ତ କଲ୍‌ଲ୍ ନିଜ ଭିତରୁ ହିଁ ନିଜ ବିଷୟରେ ସେହି ସତକଥାଟିକୁ ଜାଣିଥିଲେ । ନିଜ ପାଖରେ ସେ ଆଦ୍ୟରୁ ପାସ୍ କରି ସାରିଥିଲେ; ତେଣୁ କେତେ କିଏ ଉପରୁ କର୍ତ୍ତା ହୋଇ ଆସି ତାଙ୍କୁ କେତେ କେତେ ଥର ଫେଲ୍ କରାଇ ଦେଇଥିଲେ ମଧ୍ୟ ସିଏ ଶିକ୍ଷକ ହିଁ ହେଲେ । ତାହାରି ମାଧ୍ୟମରେ ସବୁକିଛି ହିଁ ହୋଇପାରିଲେ ।

- ୬ -

ଶ୍ରୀଯୁକ୍ତ କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କର ଯୁବାବେଳର କଥା । ସେତେବେଳେ ସିଏ ଶିକ୍ଷଣ-ପ୍ରଶିକ୍ଷଣ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ସେତେବେଳକୁ ତାଙ୍କୁ ଅଠର ବର୍ଷ ବୟସ ହୋଇଥାଏ । ଜୀବନରେ ସିଏ କ'ଣ ହେବେ ଓ ନହେବେ, ସେହି ବିଷୟରେ ତାଙ୍କ ଭିତରେ ଭାବନାଗୁଡ଼ିକ ଦାନା ବାନ୍ଧି ଆସୁଥାଆନ୍ତି । ସେହି ସମୟରେ ପାଖ ସହରର ଗୋଟିଏ ସତର ବର୍ଷ ଝିଅ ସହିତ ତାଙ୍କର ପରିଚୟ ହୋଇଥିଲା । ଏକ ଆକର୍ଷଣରୁ ପରିଚୟ ଏବଂ ପରିଚୟରୁ ପ୍ରଣୟ । ଝିଅଟିର ନାମ ଏଲ୍‌ସ (Else) । ତାଙ୍କର ମାଆ ଧାତ୍ରୀ କାମ କରୁଥିଲେ । ଝିଅଟି ଦେଖିବାକୁ ବଡ଼ ସୁନ୍ଦର; ସମସ୍ତେ କହୁଥିଲେ ଯେ ତା'ଭଳି ସୁନ୍ଦରୀ ଝିଅଟିଏ ସେହି ଅଞ୍ଚଳ ଗୋଟାକରେ ଆଉ କେହି ନଥିଲେ । ଭାରି ସଚଳ, ଚଞ୍ଚଳ ଏବଂ ବୁଦ୍ଧିମତୀ । ଯୁବକ କଲ୍‌ଲ୍ ସାଧାରଣ ତାଙ୍କ ସମବୟସୀଙ୍କ ମେଳରେ ସବୁବେଳେ ଟିକିଏ ଗେଡ଼ା ଦେଖା ଯାଉଥିଲେ । ତଥାପି ସର୍ବଦା ପ୍ରାୟ ଏକ ଅସାଧାରଣ ପ୍ରାଣଶକ୍ତି ଦ୍ୱାରା ପୂର୍ଣ୍ଣ ହୋଇ ରହିଥିଲେ । ତାଙ୍କର ସୁନ୍ଦର ନୀଳ ଆଖି ଦୁଇଟି ସବୁବେଳେ ପ୍ରାଣବନ୍ତତାରେ ଝଟକି ଉଠୁଥିବା ପରି ମନେ ହେଉଥିଲା । ସାଙ୍ଗମାନଙ୍କର ମେଳରେ ସଫା ବାରିହୋଇ ଯାଉଥିଲେ । ସମସ୍ତଙ୍କର ମେଳରେ ସେ ରହିଥିଲେ, ତଥାପି ନଥିବା ପରି ଲାଗୁଥିଲେ । ସାଙ୍ଗମାନଙ୍କ ଗହଣରେ ବେଶ୍ ପ୍ରଭାବଶାଳୀ ଥିଲେ ଏବଂ ସାଙ୍ଗମାନେ ମଧ୍ୟ ତାଙ୍କୁ ସକଳ ଅବସରରେ ସେହିଭଳି ସ୍ୱୀକାର କରୁଥିଲେ ।

ଏଲ୍‌ସ ଓ କ୍ରିଷ୍ଟେନ୍ କଲ୍‌ଲ୍ ପରସ୍ପରକୁ ଭଲ ପାଇଲେ, ଅବସର ପାଇବା ମାତ୍ରକେ ପରସ୍ପରକୁ ଭେଟୁଥିଲେ । ହଁ, ପ୍ରଶିକ୍ଷଣ ବିଦ୍ୟାଳୟରେ ରାତିରେ ଅନ୍ୟମାନେ ଶୋଇସାରିବା ପରେ କଲ୍‌ଲ୍ ଝରକାବାଟେ ବାହାରକୁ ଚାଲି ଆସୁଥିଲେ, ଏବଂ ପ୍ରାୟ ଅଧ କୋଶ ବାଟ ଚାଲି ଚାଲି ଯାଇ ଏଲ୍‌ସକୁ ଭେଟୁଥିଲେ । ପ୍ରାୟ ଅଧଘଣ୍ଟା ଯାଏ ଉଭୟେ ଅସରନ୍ତି ଗପରେ ନିମଜ୍ଜିତ ହୋଇ ଯାଉଥିଲେ । ହଁ, ଏଲ୍‌ସ୍ ତାଙ୍କ ଘରେ ଝରକା ସେପାଖରେ ଆସି ଛିଡ଼ା ହେଉଥିଲେ । ଏପାଖରୁ ଘର ଭିତରକୁ ଯିବାରେ ଅଥବା ସେପାଖରୁ ଝରକା ଡେଇଁ ବାହାରକୁ ଆସିବାର କୌଣସି ପ୍ରଶ୍ନ ହିଁ ନଥିଲା । ତଥାପି ଯିବା ଚାଲିଥିଲା, କଥାବାର୍ତ୍ତାରୁ ବି କେତେ ଆନନ୍ଦ ମିଳୁଥିଲା । ଏବଂ, କଲ୍‌ଲ୍ ଏଲ୍‌ସ ପାଖକୁ ସପ୍ତାହରେ ଦୁଇଥର ଚିଠି ବି ଲେଖୁଥିଲେ,

ପ୍ରତ୍ୟେକ ଥର ତାଡ଼ାଏ ଲେଖାଁ କାଗଜ ଲେଖି ପକାଉଥିଲେ । ମଝିରେ ଥରେ ଛୁଟୀ ପଡ଼ିଲା ଏବଂ ସେ ଏଲ୍‌ସକୁ ନିଜ ବାପାମାଆଙ୍କ ପାଖକୁ ତାଙ୍କ ଘରକୁ ନେଇ ଯାଇଥିଲେ । ବୁଢ଼ା ବାପାମାଆଙ୍କର ମଧ୍ୟ ଝିଅଟିକୁ ଦେଖି ଆନନ୍ଦର ସୀମା ରହିଲା ନାହିଁ । କଲ୍‌ଲ୍ କେତେ କେତେ ସ୍ୱରରେ ବାଦ୍ୟଯନ୍ତ୍ର ବଜାଇଲେ ଏବଂ ଏଲ୍‌ସ ଓ ତାଙ୍କ ନିଜର ଭଉଣୀ ଏକାଠି କେଡ଼େ ଖୁସୀ ହୋଇ ନୃତ୍ୟ କରୁଥିଲେ ।

ବିଦ୍ୟାଳୟରେ ପ୍ରଶିକ୍ଷଣର କାଳଟି ସରି ଆସୁଥିଏ, ଏଲ୍‌ସଙ୍କ ମନରେ ସନ୍ଦେହ ପଶିବାକୁ ଆରମ୍ଭ କଲା । ଶ୍ରୀଯୁକ୍ତ ସ୍କ୍ରେପେନ୍‌ବର୍ଗଙ୍କର ଭାଷଣଗୁଡ଼ିକୁ ଶୁଣିବାପାରେ କଲ୍‌ଲ୍‌ଙ୍କର ଭିତରଟା ଯେପରି କ୍ରମେ ଆଉ କ'ଣଭଳି ହୋଇ ଯାଉଥିଲା ଏବଂ ସିଏ ସତେଅବା ବଦଳି ବଦଳି ଯାଉଥିଲେ । କଲ୍‌ଲ୍‌ଙ୍କ ସମ୍ବନ୍ଧରେ ଏଲ୍‌ସ ଏଣିକି ନାନାବିଧ ବିଚିତ୍ର କଥା ଶୁଣିବାକୁ ପାଇଲେ । କଲ୍‌ଲ୍ ବାଇବେଲ୍‌ର କାହାଣୀଗୁଡ଼ିକୁ ବାରମ୍ବାର ରଟି ହେଉଥିଲେ ଏବଂ ସେହି ଗ୍ରନ୍ଥର ବାକ୍ୟଗୁଡ଼ିକୁ ନିଜ ସାଙ୍ଗମାନଙ୍କୁ ଆବୃତ୍ତି କରି ଶୁଣାଉଥିଲେ । ହଁ; ଏଲ୍‌ସ ଏକଥା ମଧ୍ୟ ଶୁଣିବାକୁ ପାଇଲେ ଯେ, ଇସ୍ରାଏଲ୍‌ର ପ୍ରଫେଟ୍‌ମାନେ କିପରି ପାଦରେ ଚାଲି ଚାଲି ସେକାଳର ଲୋକମାନଙ୍କୁ ଈଶ୍ୱରଙ୍କର ବାର୍ତ୍ତା ପ୍ରଚାର କରୁଥିଲେ, ତାହାକୁ ନିଜେ ଅନୁଭବ କରିବାକୁ କଲ୍‌ଲ୍ ସ୍ୱୟଂ ଥରେ ଚାଲି ଚାଲି ଦୀର୍ଘ କେତେଦିନର ପଥ ଅତିକ୍ରମ କରି ଘରଯାଏ ଯାଇଥିଲେ । ବାଟରେ ସାନ ପିଲାମାନେ ତାଙ୍କର ବିଚିତ୍ର ବେଶ ଦେଖି କୁଆଡ଼େ ଟେକା ମଧ୍ୟ ପକାଇଥିଲେ । ଏଲ୍‌ସ ନିଜର ମନକୁ ଆଦୌ ବୁଝାଇ ପାରିଲେନାହିଁ । ନିଶ୍ଚୟ କଲ୍‌ଲ୍‌ଙ୍କର ମଥାରେ ଆଉ କ'ଣସବୁ ଆସି ପ୍ରବେଶ କଲାଣି । ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଜଣେ ପ୍ରତିଭାବାନ୍ ଛାତ୍ରରୂପେ ଏହାପରେ କଲ୍‌ଲ୍‌ଙ୍କ ଗୋଟିଏ ବହୁତ ଭଲ ଶିକ୍ଷକସ୍ଥାନଟିଏ ନିଶ୍ଚୟ ମିଳିବ ବୋଲି ଏଲ୍‌ସ କେତେ ସ୍ୱପ୍ନ ଦେଖିଥିଲେ, ସେହି ସ୍ୱପ୍ନ ଏଥର ବୃଥା ହୋଇଯିବା ବିଷୟରେ ତାଙ୍କ ମନକୁ ପାପ ବି ଛୁଇଁଲା ।

ଏଲ୍‌ସ ନିଷ୍ପତ୍ତି କଲେ; ଏଥର କଲ୍‌ଲ୍‌ଙ୍କ ସହିତ ସିଧା କଥାବାର୍ତ୍ତା କରି ସବୁ ସନ୍ଦେହରୁ ମୁକ୍ତ ହେବାକୁ ପଡ଼ିବ । ଦିନେ ରାତିରେ ଗୋଟିଏ ବିଲରେ ଘେରା ବୁଲି ବୁଲି କଥୋପକଥନରେ ସେମାନେ ପ୍ରାୟ ରାତିଟାଯାକ କଟାଇ ଦେଇଥିଲେ । ଏଲ୍‌ସ କାକୁତି ମିନତି କରି କହୁଥିଲେ ଯେ କଲ୍‌ଲ୍ ଏଣିକି ତାଙ୍କର ଏହି ଯାବତୀୟ ବିଚିତ୍ର ବୁଦ୍ଧିକୁ ପରିତ୍ୟାଗ କରନ୍ତୁ; ପୂର୍ବରୁ ଯେପରି ଥିଲେ, ପୁନର୍ବାର ସେହି ଜୀବନକୁ ଫେରି ଆସନ୍ତୁ । କହୁଥିଲେ, ''ଏସବୁ ନଛାଡ଼ିଲେ ମୁଁ ତୁମ ସହିତ କିପରି ରହିପାରିବି; ବର୍ତ୍ତମାନ ତୁମେ ଯେପରି ହୋଇଯାଇଛ, ମୁଁ ତ କଦାପି ସେହିଭଳି ହୋଇ ପାରିବିନାହିଁ । ଦୁହେଁ ବହୁ ସମୟ ପର୍ଯ୍ୟନ୍ତ ବହୁତ କାନ୍ଦିଲେ ଏବଂ ତା'ପରେ ପରସ୍ପରଠାରୁ ବିଦାୟ ନେଲେ । ଏହାପରେ ଦୁହିଁଙ୍କ ଭିତରେ ଆଉ କେବେହେଲେ କୌଣସି

ସାକ୍ଷାତ ହୋଇନଥିଲା । ତଥାପି କେହି କାହାରି ମନରୁ ଆଦୌ ପୋଛି ହୋଇ ଚାଲି ଯାଇନଥିଲେ । ବିଷାଦପୂର୍ଣ୍ଣ ଭାବରେ କଲ୍ଡ୍ ବାରବାର ଏଲ୍ସଙ୍କ କଥା ଭାବିଛନ୍ତି, କେତେ କେତେ ସନ୍ଧ୍ୟାରେ ଏଲ୍ସଙ୍କର ଗାଆଁଆଡ଼କୁ ଦୁଃଖିତ ଚିତ୍ତରେ ଅନାଇ ରହିଛନ୍ତି; ଏଲ୍ସ ମଧ୍ୟ ବହୁଦିନ ପର୍ଯ୍ୟନ୍ତ ନିଜ ଯୌବନର ସେହି ପ୍ରଥମ ଖୁସୀପୂର୍ଣ୍ଣ ଦିନଗୁଡ଼ିକୁ ଆଦୌ ଭୁଲି ପାରିନାହାନ୍ତି । ଏଲ୍ସ ମଧ୍ୟ ପରବର୍ତ୍ତୀ ନୈରାଶ୍ୟମୟ ଦିନଗୁଡ଼ିକରେ କଲ୍ଡ୍ଙ୍କ ଠାରୁ ଚିଠିଖଣ୍ଡେ ଆସି ପହଞ୍ଚିଲେ ସେତିକି ମଧ୍ୟ କେତେ ସାନ୍ତ୍ୱନାର କଥା ହେବ ବୋଲି ଆଶା କରି ବସିଛନ୍ତି । କେତେ ଥର ତାଙ୍କର ପୁରୁଣା ଚିଠିଗୁଡ଼ିକୁ ଖୁବ୍ ଖେଳାଇ କରି ଦେଖିଛନ୍ତି । ଜୀବନରେ ସେ କେବେହେଲେ ଏଡ଼େ ବଡ଼ ଆଘାତ ପାଇନାହାନ୍ତି ବୋଲି କଲ୍ଡ୍ ପରବର୍ତ୍ତୀ କାଳରେ ରୋମନ୍ଥନ କଲାପରି କେତେଥର କହିଛନ୍ତି । ନିଜର ଛାତ୍ରଛାତ୍ରୀମାନଙ୍କ ଆଗରେ ମଧ୍ୟ କହିଛନ୍ତି । ଯାହା ଯେପରି ଘଟିଲା, କଲ୍ଡ୍ ତାହାକୁ ଈଶ୍ୱରଙ୍କର ଇଚ୍ଛା ବୋଲି ଗ୍ରହଣ କରି ନେଇଥିଲେ । କହୁଥିଲେ, ଈଶ୍ୱର ଯାହାଠାରୁ ଯେପରି ପ୍ରତ୍ୟାଶା ରଖିଥାଆନ୍ତି, ସେ ତାକୁ ସେହିପରି ଭାବରେ ଆଗକୁ ବାଟ କଢ଼ାଇ ନେଇଯାଆନ୍ତି । କେତେ ଥାନରୁ ବାହାର କରିନିଅନ୍ତି ଓ ପୁଣି ଆହୁରି କେତେ ଥାନରେ ନେଇ ହାବୁଡ଼େଇ ଦିଅନ୍ତି ।

+ + +

ସେହି ଘଟଣାର ବହୁ ବର୍ଷ, ବହୁ ବର୍ଷ ପରେ । ଆପଣା ଜୀବନର ଇପ୍ସିତ ଥଳଟିକୁ ପାଇବା ନିମନ୍ତେ ଶ୍ରୀ କଲ୍ଡ୍ଙ୍କୁ ବହୁତ ପ୍ରକାରେ ସଂଗ୍ରାମ କରିବାକୁ ହେଲା । ଏଥର ଭେଳା ନିଶ୍ଚୟ ବୁଡ଼ିଲା ବୋଲି ପ୍ରାୟ ମାନି ନେବାବେଳକୁ ଭେଳାଟି ପୁନର୍ବାର ଚାଲିବାକୁ ଆରମ୍ଭ କଲାଣି ବୋଲି ପ୍ରତୀତ ହେବାକୁ ଲାଗିଲା । ତାଙ୍କ ଜୀବନରେ ଏହିଭଳି ଏକାଧିକ ଅବସର ଆସିଥିବ । ଶେଷକୁ ଥଳଟିଏ ମିଳିଲା, ଗୋଡ଼ ଠାକିଗଲା ପରି ଲାଗିଲା । ରୁଇସ୍ଲିଙ୍ଗର ଦୁଃସାହସିକତାପୂର୍ଣ୍ଣ ପ୍ରୟୋଗଟି ଆଖର ନିଜର ମୂଳଟିକୁ ଦମ୍ଭ କରି ଠିଆ ହୋଇ ପାରିଲା । ଭବିଷ୍ୟତର ନୂତନ ଆହ୍ୱାନଗୁଡ଼ିକୁ ଆଘ୍ରାଣ କରି ସେତେବେଳେ ଡେନ୍ମାର୍କ୍ରେ ଯେଉଁମାନେ ଶିକ୍ଷା ବିଷୟରେ ଚିନ୍ତା କରୁଥିଲେ, କଲ୍ଡ୍ ଯେ ସେମାନଙ୍କ ପାଇଁ ଆସ୍ଥା ଦେଲାପରି ବହୁତ ଆଗକୁ ବାଟ ପରିଷ୍କାର କରି ନେଇଛନ୍ତି, ସେମାନେ ପ୍ରାୟ କୃତଜ୍ଞ ହୋଇ ସେହି ବିଷୟରେ ନିଶ୍ଚିତ ହେଲେ । ସଂଘର୍ଷ ସମୟରେ ପ୍ରକୃତରେ ନିଃଶ୍ୱାସ ମାରିବାକୁ ବେଳ ନଥିଲା । ନିଜ ବିଷୟରେ ଭାବିବାକୁ ହିଁ ଗୋଟିଏ ଦଣ୍ଡ ସମୟ ବି ମିଳୁନଥିଲା । ଜଣେ ସମର୍ପିତ ବ୍ରତଚାରୀ ବ୍ୟକ୍ତିର ଜୀବନରେ ସଚରାଚର ତାହାହିଁ ଘଟିଥାଏ ।

ଥରେ କଲ୍ଡ୍ଙ୍କର ଜଣେ ଘନିଷ୍ଠ ବନ୍ଧୁ ତାଙ୍କୁ ଭେଟିବା ନିମନ୍ତେ ବିଦ୍ୟାଳୟକୁ ଆସିଥାନ୍ତି । କଲ୍ଡ୍ ପରିହାସ କରି କହିଲେ, ''ତୁମେ ଖୁବ୍ ଭାବୁଥିବ ଯେ ତୁମେ ସତକୁ

ସତ ନିଜର ପତ୍ନୀଙ୍କୁ ଖୁବ୍ ଭଲ ପାଉଛ ! ମାତ୍ର ସେକଥା ମୋତେ ସତ ନୁହେଁ । ତୁମେ ପ୍ରକୃତରେ ନିଜକୁ ହିଁ ଭଲ ପାଉଛ । ତୁମେ ଜଣକୁ ବିବାହ କରିଛ, ତାଙ୍କୁ ନିଜର ସମ୍ପତ୍ତି ବୋଲି ଭାବୁଛ - ତେଣୁ, ତୁମର ଏହି ଭଲ ପାଇବା ହେଉଛି ମୂଳତଃ ନିଜକୁ ହିଁ ଭଲ ପାଇବା । ନିଜ ପତ୍ନୀ ମାଧ୍ୟମରେ ନିଜକୁ ଭଲ ପାଇବା ।'' ବନ୍ଧୁ ଉତ୍ତର ଦେଇ କହିଥିଲେ, ''ମଣିଷ ଯେପରି ଖାଲି ନିଜକୁ ଭଲ ପାଇବା ଭିତରେ ପୋତିହୋଇ ନପଡ଼ିବ, ସେଇଥିଲାଗି ହିଁ ଏହି ପ୍ରତିକାର ସ୍ୱରୂପ ବିବାହ ଓ ବୈବାହିକ ଜୀବନର ଅବତାରଣା କରାଯାଇଛି । ମୋ'ର ପତ୍ନୀ ଅଛନ୍ତି, ପିଲାମାନେ ଅଛନ୍ତି, ଏକ ଘରସଂସାର ମଧ୍ୟ ରହିଛି - ତେଣୁ ସ୍ୱାର୍ଥପର ଭାବରେ କେବଳ ନିଜ ବିଷୟରେ ଭାବିବାପାଇଁ ମୋତେ ଆଉ କୌଣସି ଫୁରସତ ମିଳୁନାହିଁ ।'' ସେକଥାକୁ ସ୍ୱୀକାର ନକରିବାକୁ କଲ୍‌ଲ୍‌ଙ୍କ ପାଖରେ ଆଉ ବାଟ ନଥିଲା । ସିଏ ତଥାପି କହିଲେ, ''ମାତ୍ର, ସେଇଟା ମଧ୍ୟ ନିଜକୁ ଭଲ ପାଉଥିବାର ଗୋଟିଏ ଅନ୍ୟତମ ନମୁନା । ବାହାରକୁ ଯେତେ ଅନ୍ୟପ୍ରକାର ଦିଶୁଥିଲେ ମଧ୍ୟ ତାହା ପ୍ରକୃତରେ କେଡ଼େ ଚତୁରତା ସହିତ ନିଜର ପତ୍ନୀ ଏବଂ ପିଲାମାନଙ୍କ ଆଡ଼କୁ ବ୍ୟାପ୍ତ ହୋଇ ରହିଥାଏ ଓ ତେଣୁ ତୁଚ୍ଛା ନିଜକୁ ଭଲ ପାଇବା ବୋଲି ମନେ ହୁଏନାହିଁ । ମୋ' ପରିବାରର ସମୃଦ୍ଧି ହେଉଛି ମୋ' ନିଜର ବି ସମୃଦ୍ଧି;- କାରଣ ସେମାନେ ହେଉଛନ୍ତି ସକଳ ଅର୍ଥରେ ମୋ' ଜୀବନର ଗୋଟିଏ ଅଂଶ, ତେଣୁ, ପ୍ରତିକାର ବୋଲି ତୁମେ ଯାହାକୁ କହୁଛ, ତାହା ପ୍ରକୃତରେ ଆଦୌ ଖୁବ୍‌ବେଶୀ କାମ ଦେଇ ପାରେନାହିଁ ।''

ଯାହାହେଉ, କଲ୍‌ଲ୍ ଅନ୍ତତଃ ସେତିକି ତ ସ୍ୱୀକାର କଲେ ! ଶ୍ରୀଯୁକ୍ତ କଲ୍‌ଲ୍ ମଧ୍ୟ ସଂସାର ଭିତରେ ପ୍ରବେଶ କରନ୍ତୁ ବୋଲି ବନ୍ଧୁ ଗମ୍ଭୀର ଭାବରେ ଚିନ୍ତା କରୁଥିଲେ । ଆଖର ଦିନେ ସିଏ ସେହି ପ୍ରସ୍ତାବ ମଧ୍ୟ ତାଙ୍କୁ ଦେଇଥିଲେ । କଲ୍‌ଲ୍ ଠୋ କରି ନାହିଁ ବୋଲି କହିଲେ ! ''ନାଇଁ, ମୁଁ ମୋତେ ବିବାହ ଭିତରେ ପଶିବିନାହିଁ । ଜୀବନଟା ଖୁବ୍ ବିରକ୍ତିକର ଲାଗିଲେ - ହୁଏତ ସେକଥା ଚିନ୍ତା କରିବି । ଯେଉଁମାନଙ୍କ ପାଖରେ ସମ୍ବଳ ରହିଛି, ସେମାନେ ବିବାହ କରନ୍ତି । ମୁଁ ପାରିବିନାହିଁ ।''

ବିବାହକୁ ଶ୍ରୀ କଲ୍‌ଲ୍ ଏକଦା ଗୋଟିଏ ବିଳାସ ବୋଲି ଭାବୁଥିଲେ । କିନ୍ତୁ କିଛିଦିନ ପରେ ଶୁଣାଗଲା ଯେ ତାଙ୍କର ବିବାହ ଠିକ୍ ହୋଇ ଯାଇଛି । ''କ'ଣ ଜୀବନଟା ପ୍ରକୃତରେ ବିରକ୍ତିକର ଲାଗିଲା କି ?'' - ବନ୍ଧୁ ଆସି ତାଙ୍କୁ ପଚାରିଥିଲେ । ଦିନେ ଏପରି ଗୋଟିଏ କଥା କହିଥିଲେ ବୋଲି କଲ୍‌ଲ୍‌ଙ୍କର ଆଉ ମନେ ନଥିଲା । ସେ ଉତ୍ତର ଦେଲେ, '' ମୁଁ ସେପରି କହିଥିବି ଯଦି, ତେବେ ଭୁଲ କହିଥିବି । ମୋ'ର କହିବା ଉଚିତ ଥିଲା, ଯେତେବେଳେ ଭଗବାନଙ୍କର ଇଚ୍ଛା ହେବ !''

କଲ୍ଲ୍‌ଙ୍କର ଭାବୀ ପତ୍ନୀ ଏକ କୃଷକପରିବାରର କନ୍ୟା ଥିଲେ । ପୂରା ନାଆଁ ଆନ କିଅର୍ଷ୍ଟିନ୍ ୟାକବସନ୍ । ସେ ୧୮୬୪ ମସିହା ଖରାମାସରେ ଡାଲୁମ୍‌ଠାରେ କଲ୍ଲ୍‌ଙ୍କର କନ୍ୟା-ବିଦ୍ୟାଳୟର କାର୍ଯ୍ୟକ୍ରମରେ ଆସି ଯୋଗ ଦେ୍ଇଥିଲେ । ବୟସ କୋଡ଼ିଏ ବର୍ଷ । ବିଦ୍ୟାଳୟର ଅନ୍ୟ ଶିକ୍ଷାର୍ଥିନୀ ମାନଙ୍କ ପରି ଆନ ଅଧକ୍ଷ କଲ୍ଲ୍‌ଙ୍କ ପ୍ରତି କୌଣସି ଭୟାଶଙ୍କ ଭାବ ପୋଷଣ କରୁନଥିଲେ । ଅନ୍ୟମାନେ ଅଧକ୍ଷଙ୍କ ଆଡ଼କୁ ସିଧା ଅନାଉ ନଥିଲେ । ଶ୍ରେଣୀରେ ତାଙ୍କୁ ଜବାବ ଦେବା ତ ଆହୁରି ଦୂରର କଥା । ଆନ ସେମାନଙ୍କ ମଧ୍ୟରେ ସର୍ବଦା ବ୍ୟତିକ୍ରମ ହୋଇ ରହିଥିଲେ । ତାଙ୍କର ନିଜର ମଧ୍ୟ ଏକ ବିଚାର ଥିଲା, ସ୍ୱତନ୍ତ୍ର ବିବେକ ମଧ୍ୟ ରହିଥିଲା । ତେଣୁ ମେଳ ଭିତରୁ ଅତ୍ୟନ୍ତ ସ୍ୱତନ୍ତ୍ର ବୋଲି ଜଣାପଡ଼ି ଯାଉଥିଲେ । ସମ୍ଭବତଃ ତାହାହିଁ କଲ୍ଲ୍‌ଙ୍କ ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରିଥିଲା । ନିଜ ଭଉଣୀଙ୍କ ଆଗରେ କଲ୍ଲ୍ ଅନେକ ସମୟରେ ତାଙ୍କର ଖୁବ୍ ପ୍ରଶଂସା କରି କହୁଥିଲେ । ଏବଂ, ତାଙ୍କରି ଅନୁମାନ ମଧ୍ୟ ସତ ହେଲା । ବିଦ୍ୟାଳୟର ଚାରିମାସିଆ କାର୍ଯ୍ୟକ୍ରମଟି ସମ୍ପୂର୍ଣ୍ଣ ହେବା ପରେ ପ୍ରମାଣ ମିଳି ବି ଯାଇଥିଲା ଯେ ଆନ ହିଁ ସେଠାକାର ଶିକ୍ଷାକୁ ସବୁଠାରୁ ଅଧିକ ଆଗ୍ରହର ସହିତ ଗ୍ରହଣ କରି ପାରିଛନ୍ତି । କଲ୍ଲ୍ ପ୍ରକୃତରେ ତାଙ୍କ ପାଇଁ ଏକ ନୂତନ ପୃଥିବୀକୁ ଉନ୍ମୋଚିତ କରି ଦେଇଥିଲେ । ଏହି ବିଦ୍ୟାଳୟଟିକୁ ଏବେ ଛାଡ଼ିବାକୁ ପଡ଼ିବ ବୋଲି ସିଏ କଳ୍ପନା କରି ପାରୁନଥିଲେ । ତେଣୁ ପ୍ରକୃତରେ ରହିଗଲେ ଏବଂ କଲ୍ଲ୍‌ଙ୍କର ଭଉଣୀଙ୍କୁ ଗୃହବ୍ୟବସ୍ଥାର ନାନାବିଧ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ଏହିଭଳି ଦୁଇଟି ବର୍ଷ ଅତିବାହିତ ହୋଇ ଯାଇଥିଲା ।

ଇତ୍ୟବସରରେ କଲ୍ଲ୍‌ଙ୍କର ଭଉଣୀ ମେରିଙ୍କର ମଧ୍ୟ ବିବାହ ସମ୍ବନ୍ଧ ସ୍ଥିର ହୋଇ ଯାଇଥିଲା । ତାଙ୍କର ସେହି ଭାବୀ ସ୍ୱାମୀ ଏକଦା କଲ୍ଲ୍‌ଙ୍କ ବିଦ୍ୟାଳୟକୁ ଶିକ୍ଷାର୍ଥୀ ଭାବରେ ଆସିଥିଲେ । ଭଉଣୀଙ୍କ ପରେ ଏଡ଼େ ବଡ଼ ଗୃହସଂସାରକୁ କିଏ ପ୍ରକୃତରେ ସମ୍ଭାଳିବ ? ସମ୍ଭବତଃ ସେହି କାରଣରୁ କଲ୍ଲ୍ ନିଜେ ବିବାହ କରିବା ବିଷୟରେ ଅଧିକ ଗମ୍ଭୀର ଭାବରେ ଚିନ୍ତା କରିବାକୁ ଆରମ୍ଭ କଲେ । ତଥାପି ନିଜକୁ ସେଥିପାଇଁ ପୂରା ରାଜୀ କରାଇ ପାରୁନଥିଲେ । କଥିତ ଅଛି ଯେ, ଦିନେ ସିଏ ନିଜ କୋଠାରୀଟି ଭିତରେ ମୁଣ୍ଡଟିକୁ ତଳକୁ ପୋତିଦେଇ ମନକୁ ମନ ଏହିପରି କହି ହେଉଥିଲେ: ମୋ' ଭଉଣୀ ବିବାହ କରିବାକୁ ସ୍ଥିର କଲା - ଏକଥା ତ ବେଶ୍ ବୁଝି ହେଉଛି; କିନ୍ତୁ ମୋ'ପରି ଗୋଟିଏ ପ୍ରାୟବୃଦ୍ଧ ବ୍ୟକ୍ତି ମଧ୍ୟ ବିବାହ କରିବାକୁ ବାହାରିଲାଣି, କାରଣ ସିଏ ଜଣକୁ ବିବାହ କରିବ ବୋଲି ପ୍ରକୃତରେ ଇଚ୍ଛା କରୁଛି, - ପ୍ରକୃତରେ ଭାରି ବିଚିତ୍ର ମନେ ହେଉଛି ।

୧୮୬୬ ମସିହା ଅଗଷ୍ଟ ଆଠ ତାରିଖ ଦିନ ସେହି ବିବାହ ସମ୍ପନ୍ନ ହୋଇଗଲା । ସେହି ବୈବାହିକ ଜୀବନ ମାତ୍ର ଚାରିଟି ବର୍ଷ ଲାଗି ସମ୍ଭବ ହୋଇଥିଲା । ମାତ୍ର ସେହି କେତୋଟି

ବର୍ଷକୁ ହିଁ ଏକାଧିକ ଅର୍ଥରେ ତାଙ୍କ ଜୀବନର ସବୁଠାରୁ ଅଧିକ ସୁଖମୟ କେତୋଟି ବର୍ଷ ବୋଲି କୁହାଯାଇ ପାରିବ । ପତ୍ନୀ ତାଙ୍କୁ ଦୁଇଟି କନ୍ୟାର ବାପା ହେବାର ସୌଭାଗ୍ୟ ଆଣି ଦେଇଥିଲେ । ବହୁଦିନ ସନ୍ଧ୍ୟାରେ କଲ୍‌ଲ୍ ଦୁହିଁଙ୍କ ମଧ୍ୟରୁ କାହାକୁ କାଖକରି ସିଧା ଶ୍ରେଣୀପ୍ରକୋଷ୍ଠରେ ଆସି ପହଞ୍ଚି ଯାଉଥିଲେ । ପିଲାଟିକୁ ସେହିପରି କାଖରେ ଧରି ହିଁ ସିଏ ଶ୍ରେଣୀଗୃହରେ ଏମୁଣ୍ଡରୁ ସେମୁଣ୍ଡଯାଏ ବୁଲୁଥିଲେ ଓ ଛାତ୍ରମାନଙ୍କର ପ୍ରଶ୍ନଗୁଡ଼ିକର ଉତ୍ତର ଦେଉଥିଲେ । ନିଜର ସେହି ଗୃହସ୍ଥଜୀବନରେ ସେ ପରିପୂର୍ଣ୍ଣ ସମ୍ମତି ସହିତ କିପରି ଯେ ନିଜକୁ ଗୁଛି କରି ରଖିଥିଲେ, ସେହି କଥାଟି ଶ୍ରେଣୀଗୃହରେ ତାଙ୍କର ନାନା କଥାରୁ ପ୍ରତିପାଦିତ ହୋଇ ଯାଉଥିଲା । ସେଠାରେ ସେ ନିଜ ପ୍ରବଚନ ଓ ଆଲୋଚନାରେ କେତେବେଳେ ଯେ ନିଜର ଗୃହଟିର ପ୍ରସଙ୍ଗ ଆଣି ଭରି ଦେଉଥିଲେ, ତାହା ସେ ସ୍ୱୟଂ ଜାଣି ପାରୁନଥିଲେ । ଶ୍ରେଣୀଆଲୋଚନାର ଉଦାହରଣ ସ୍ୱରୂପ ଘରୁ ଘଟଣାମାନ ସଢେଅବା ଅତ୍ୟନ୍ତ ସହଜ ନିଃସଙ୍କୋଚତା ସହିତ ଦୁହିଁ ଆଣୁଥିଲେ; ନିଜ ସ୍ତ୍ରୀ ଓ ପିଲାମାନଙ୍କ ସହିତ ଘଟିଥିବା ସତ୍ୟ ଘଟଣାଗୁଡ଼ିକର ନଜିର ଦେଉଥିଲେ । ସେମାନେ ଘରେ କହିଥିବା କଥାଗୁଡ଼ିକୁ ଉଦ୍ଧୃତିରୂପେ ବ୍ୟବହାର କରୁଥିଲେ ଏବଂ ସେଗୁଡ଼ିକରୁ କେତେ କେତେ ଗଭୀର ସତ୍ୟ ଆହରଣ କରି ପାରୁଥିଲେ ।

ଏହିଭଳି ଏକ ଶ୍ରେଣୀ ଆଲୋଚନାରେ କଲ୍‌ଲ୍ ଥରେ କହିଥିଲେ: ''ଜୀବନରେ ମୋ'ର ଯେତେ ଇଚ୍ଛା ରହିଥିଲା, ସବୁଯାକର ପୂରଣ ହୋଇଗଲା । ଆଉ କିଛିହେଲେ ଅପୂରଣ ରହିଲାନାହିଁ । ଜୀବନରେ ଯାହା ହେବି ବୋଲି ମୁଁ ଏକଦା ସ୍ୱପ୍ନ ଦେଖିଥିଲି, ତାହା ହୋଇପାରିଲି; ତା' ସହିତ ମନୋମତ ପତ୍ନୀଟିଏ ପାଇଲି ଏବଂ ଦୁଇଟି କୁନି କୁନି ଝିଅ ବି ।'' ଥରେ ସନ୍ଧ୍ୟା ସମୟରେ ତାଙ୍କର ଜଣେ ବନ୍ଧୁ ତାଙ୍କୁ ଭେଟିବାକୁ ଯେତେବେଳେ ଆସି ପହଞ୍ଚିଲେ, ସେତେବେଳେ କଲ୍‌ଲ୍ ନିଜର ବାହାରଘରେ ବସିଥିଲେ ଓ ଗୋଟିଏ ଝିଅକୁ ମୃଦୁ ମୃଦୁ ହଲାଇବାରେ ଲାଗିଥିଲେ । ଅବଶ୍ୟ ଝିଅଟି ସେତେବେଳକୁ ଶୋଇ ପଡ଼ିଥିଲା । ଦୃଶ୍ୟଟିକୁ ଦେଖି ବନ୍ଧୁ ମନ୍ତବ୍ୟ କରି କହିଥିଲେ, ଛୁଆ ଶୁଆଇବା ଗୋଟିଏ ବଡ଼ ବିରକ୍ତିକର କାମ । କିନ୍ତୁ କଲ୍‌ଲ୍ ଉତ୍ତର ଦେଲେ, ଯଦି ତୁମେ ବାପା ହୋଇଥାନ୍ତ, ତେବେ ଏକଥା କେବେହେଲେ କହିନଥାନ୍ତ । ବନ୍ଧୁ ପୁଣି କହିଲେ, ''ଛୁଆ ତ ଶୋଇ ପଡ଼ିଲାଣି, ତୁମେ ତଥାପି ତାକୁ ହଲାଉଛ ପୁଣି କାହିଁକି ?'' କଲ୍‌ଲ୍ ଉତ୍ତରରେ କହିଲେ: ନାଇଁ, ନାଇଁ, କଥାଟି ଆଦୌ ସେପରି ନୁହେଁ । ଯଦି ମୁଁ ହଲାଇବା ବନ୍ଦ କରିଦିଅନ୍ତି ଓ ଛୁଆଟିର ନିଦ ଭାଙ୍ଗିଯାଆନ୍ତା, ତେବେ ତାକୁ ବଡ଼ ଏକୁଟିଆ ଲାଗନ୍ତା, ସମ୍ଭବତଃ ସିଏ ଡରି ବି ଯାଆନ୍ତା । ମାତ୍ର, ତା' ନିଦ ଭାଙ୍ଗିଯିବା ବେଳକୁ ଯଦି ମୁଁ ତାକୁ ଏହିପରି ଧୀରେ ଧୀରେ ହଲାଇବାରେ ଲାଗିଥାଆନ୍ତି, ତେବେ ତା' ପାଖରେ କିଏ ଜଣେ ଅଛି ବୋଲି

ସିଏ ନିଶ୍ଚୟ ଅନୁଭବ କରନ୍ତା । ବିବାହ ପୂର୍ବରୁ ମୁଁ ଏକଥା ବିଷୟରେ କେବଳ ଭାବିଥିଲି ସିନା, ବର୍ତ୍ତମାନ ଯାଇ ଅନୁଭବରୁ ଜାଣିଲି ।

ଶ୍ରୀଯୁକ୍ତ କଲ୍‌ଲ୍ ପୁଣି କହିଥିଲେ, ''ଯଦି କୌଣସି କାରଣରୁ ମୋ' ସ୍ତ୍ରୀ'ଙ୍କ ମନରେ ଦୁଃଖ ହୋଇଥିବ, ତେବେ ମୁଁ ତାଙ୍କୁ ଯାଇ ଅବଶ୍ୟ କହିବି ଯେ, ତାଙ୍କର ଆଦୌ ଏପରି ଦୁଃଖୀ ହୋଇ ପଡ଼ିବା ଉଚିତ ନୁହେଁ । ବରଂ ନିଜର ଭାବନାକୁ ଚାରିଆଡ଼କୁ ଖେଳାଇଦେବା ଉଚିତ ଏବଂ ଜାଣିବା ଉଚିତ ଯେ ସବୁଠାରେ ଆମକୁ କେବଳ ଈଶ୍ୱରଙ୍କର ଭଲ ପାଇବା ହିଁ ଘେରିକରି ରହିଛି । ମାତ୍ର, ଯଦି ଗୋଟିଏ ସାନ ପିଲା କୌଣସି କାରଣରୁ ଦୁଃଖୀ ହୋଇ ପଡ଼ିଥାଏ, ତେବେ କ'ଣ ତାକୁ ମୁଁ କୌଣସି ଦର୍ଶନର କଥା କହି ବୁଝାଇବି ? ବରଂ କହିବି: ଆ', ମୋ' ପାଖକୁ ଆ', ତୋତେ ଗୋଟିଏ ବଢ଼ିଆ ଗପ କହିବି ଆ !''

ପାରିବାରିକ ଜୀବନରେ ପ୍ରବେଶ କରିବା ପରେ କଲ୍‌ଲ୍‌ଙ୍କ ଜୀବନ ଉପରେ ତାହାର ଯେଉଁ ପ୍ରଭାବ ପଡ଼ିଥିଲା, ତା'ଫଳରେ ସିଏ ବହୁତ ପରିମାଣରେ କୋମଳ ହୋଇ ଯାଇଥିଲେ । ପତ୍ନୀ ଓ ପିଲା ଦୁଇଟିଙ୍କ ଠାରୁ ତାଙ୍କୁ ଯେଉଁ ସାନ୍ନିଧ୍ୟ ମିଳିଲା, ତାହା ତାଙ୍କୁ କ୍ରମଶଃ ଅଧିକ ନମନୀୟ କରି ଆଣିଥିଲା । ଶ୍ରେଣୀଗୃହର କାର୍ଯ୍ୟରେ ମଧ୍ୟ ସେହି ପରିବର୍ତ୍ତନ ସ୍ପଷ୍ଟ ଭାବରେ ଅନୁଭୂତ ହୋଇ ପାରୁଥିଲା । ଜୀବନର ସେହି ଶେଷ କେତୋଟି ବର୍ଷରେ ସମ୍ଭବତଃ ସେହି କାରଣରୁ ହିଁ କଲ୍‌ଲ୍ ସଂପୃକ୍ତ ସଭିଙ୍କୁ ଅଧିକ ନିକଟବର୍ତ୍ତୀ ହୋଇ ଆସିଥିବା ପରି ଲାଗୁଥିଲେ ଏବଂ ତାହା ବିଦ୍ୟାଳୟରେ ଏକ ଅଭୂତପୂର୍ବ ଖୁସୀ ଓ ସହଜତାର କାରଣ ହୋଇଥିଲା । ଇଏ ହେଉଛି ଏକ ବିଚିତ୍ର ସଂକ୍ରମଣର କାହାଣୀ । କେତେକ ମନୁଷ୍ୟ ଅଛନ୍ତି, ଯେଉଁମାନେ କି ସଂସାରରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ଆପଣାର ତଥାକଥିତ ନିଜ ଘରଟି ଭିତରକୁ ହିଁ ସଂକୁଚିତ ହୋଇ ଆସନ୍ତି । ଗୋଟିଏ ସୂତ୍ରକୁ ଐକାନ୍ତିକ ଭାବରେ ଅନୁଭବ କାରିବେ ବୋଲି ସେମାନେ ସତେଅବା ଆଉ ସବୁଯାକ ସୂତ୍ରକୁ ଛିଡ଼ାଇ ଆଣିବାର ଆବଶ୍ୟକତା ଅନୁଭବ କରିଥାନ୍ତି । ସଂସାର କହିଲେ ପରିବାରକୁ ହିଁ ବୁଝନ୍ତି । ସତେଅବା ଗୋଟିଏ ଖୁଣ୍ଟରେ ବନ୍ଧାହୋଇ ରହିବାକୁ ହିଁ ବାସ୍ତବ ଜୀବନର କାମ୍ୟତମ ବାଟ ବୋଲି ଗ୍ରହଣ କରି ନିଅନ୍ତି ।

ଏବଂ ଜଣେ ଶିକ୍ଷକ ଯଦି ସେହିପରି ଗୋଟିଏ ଫାଶରେ ଯାଇ ପଡ଼ିଯାଏ, ତେବେ ତାହା ପ୍ରକୃତରେ ଅତ୍ୟନ୍ତ ଦୁର୍ଭାଗ୍ୟଜନକ ହୋଇଥାଏ । ଅସଲ ଶିକ୍ଷକ ନିଜର ତଥାକଥିତ ପରିବାରକୁ ସମ୍ପୂର୍ଣ୍ଣ ସଂସାରର ଆୟତନଟି ମଧ୍ୟକୁ ସଂପ୍ରସାରିତ କରି ପାରିବାର କଳା ଜାଣିଥାଏ । ଅସଲ ଭଲ ପାଇବା ଭିତରେ, ଆପଣାର ବୋଲି ଅନୁଭବ କରିବା ଭିତରେ ଏହି ସହଜ ସଂପ୍ରସାରଣର କୁହୁକଟି ମଧ୍ୟ ସର୍ବଦା ସବାଆଗରେ ରହିଥାଏ । କ୍ରିଷ୍ଟେନ୍

କଲ୍‌କ୍ ଜୀବନରେ କେତେ ପ୍ରତିକୂଳତା ମଧ୍ୟଦେଇ ଗତି କରିଥିବେ ଓ ତାହା ତାଙ୍କୁ ମୁଖ୍ୟତଃ ଭାରି କଠୋର ହୋଇ ଶିଖାଇଥିବ । ପୃଥିବୀରେ ଅନେକ ମଣିଷ ସାଧାରଣତଃ ଏହିଭଳି କିଛିରୁ ହୁଏତ କଠୋର ହେବାର ଦୀକ୍ଷାଟିଏ ପାଇଥାନ୍ତି । କଠୋର ହେବାକୁ ହିଁ ସର୍ବାଗ୍ର ପ୍ରକାରର ଶୃଙ୍ଖଳା ବୋଲି ମାନିଥାଆନ୍ତି । ଏହି ବର୍ଗର ବ୍ୟକ୍ତିମାନଙ୍କୁ ବେଳେ ବେଳେ ଆଦର୍ଶବାଦୀ ବୋଲି ବି କୁହା ଯାଇଥାଏ । କୌଣସି ଆଦର୍ଶ ପାଇଁ ଜୀବନଟିଏ ବଞ୍ଚିବା ପଛରେ ଏକ ସହଜତା ରହିଥିଲେ ଯାଇ ଜଣେ ମନୁଷ୍ୟ ନିଜ ଜୀବନରେ ନିଜ ଆଦର୍ଶର ପୂର୍ଣ୍ଣ ମହିମାଟିକୁ ଉପଲବ୍ଧି କରିଥାଏ । ପ୍ରତିକୂଳ ପରିସ୍ଥିତି ସହିତ ଲଢୁ ଲଢୁ ଅନେକ ମନୁଷ୍ୟ ଭାରି କଠୋର ହୋଇ ଯାଆନ୍ତି । ସେମାନେ ସେହି କଠୋର ହେବାର ମାୟାରେ ପଡ଼ିଯାଇ ସଂସାରକୁ ସତେଅବା ଏକ ଶତ୍ରୁଦୁର୍ଗ ପରି ଦେଖନ୍ତି । ଶିକ୍ଷାରେ ଏହି ଦୃଷ୍ଟିଟି ଆଦୌ ବେଶୀ କାମ ଦେଇ ପାରେନାହିଁ । ତେଣୁ ଖୁବ୍ ଭଲ ହେଲା, ଜୀବନର ଶେଷ ଚରଣରେ କ୍ରିଷ୍ଟେନ୍ କଲ୍‌କ୍ ବିବାହ କଲେ; ଆହୁରି ଭଲ ହେଲା, ନିଜର ବିଦ୍ୟାଳୟରୂପୀ ପରିବାରଟି ସହିତ ନିଜର ବ୍ୟକ୍ତିଗତ ପରିବାରକୁ ଯୋଡ଼ି ପାରିଲେ, ହୁଏତ ଆଗ ଅପେକ୍ଷା ଅଧିକ ନମନୀୟ ହେଲେ । ନମନୀୟ ହେଲେ ଯାଇ ଜଣେ ଶିକ୍ଷକ ତା'ର ଶିକ୍ଷାର୍ଥୀମାନଙ୍କୁ ଅଧିକ ନିପୁଣ ଭାବରେ ବୁଝିପାରେ ଏବଂ ତେଣୁ ଅଧିକ ନିପୁଣ ଭାବରେ ସେମାନଙ୍କୁ ସାହାଯ୍ୟ ମଧ୍ୟ କରେ । ଭଗବାନଙ୍କ ପ୍ରେମରେ ବାଉଳା ହୋଇ ଭଗବାନଙ୍କ ପ୍ରେମଲାଗି ଯଥାର୍ଥ ଭାଜନ ହେବାପାଇଁ ଯୁଗେ ଯୁଗେ ଅନେକ ମଣିଷ ସଂସାର ତ୍ୟାଗ କରିଛନ୍ତି । ଭଗବାନ୍ ମଣିଷକୁ, ସବୁ ମଣିଷଙ୍କୁ ଯେ ଭଲ ପାଆନ୍ତି, ଏହି କଥାଟି ହିଁ କଲ୍‌କ୍‌ଙ୍କ ଜୀବନର ଆଦ୍ୟ ସୋପାନରେ ଏକ କ୍ରିୟାଶୀଳ ମନ୍ତ୍ରରୂପେ କାର୍ଯ୍ୟ କରିଥିଲା । ସେହି ମନ୍ତ୍ର ହିଁ ସମ୍ଭବତଃ ତାଙ୍କୁ ଜୀବନର ଏକ ବିଶେଷ ମୁହୂର୍ତ୍ତରେ ପାରିବାରିକ ଜୀବନ ଭିତରକୁ ନେଇ ଆସି ପାରିଲା । ଆଦୌ କେଉଁଠିହେଲେ କୌଣସି ଫରକ ଘଟିନଥିଲା ।

- ୭ -

କଲ୍ଡ୍‌ଙ୍କର ଜଣେ ଘନିଷ୍ଠ ବନ୍ଧୁ ନିଜର ସଂସ୍ମରଣରେ ଲେଖିଛନ୍ତି : ୧୮୫୮ ବା ୧୮୫୯ ମସିହା ଗୋଟିଏ ଖରାମାସରେ ମୁଁ ରେଲଗାଡ଼ୀରେ ବସି କୌଣସି ସ୍ଥାନକୁ ଯାଉଥିଲି । ଗୋଟିଏ ତୃତୀୟ ଶ୍ରେଣୀର ଲମ୍ବା ଡବା, ଏପାଖରୁ ନିଜର ବସିବା ସ୍ଥାନରୁ ଆଖି ପକାଇଲେ ସେମୁଣ୍ଡ ପର୍ଯ୍ୟନ୍ତ ସବୁ ଦେଖାଯାଉଛି । ସେଦିନ ଡବାରେ ବହୁତ ଯାତ୍ରୀ ଥାଆନ୍ତି । କିଛି ରାସ୍ତା ଗଲାପରେ ମୁଁ ଡବାଟିର ମଧ୍ୟଭାଗରେ ଜଣେ ବ୍ୟକ୍ତିଙ୍କୁ ଦେଖିବାକୁ ପାଇଲି । ସିଏ କ'ଣ ସବୁ କହୁଥାଅନ୍ତି ଓ ପାଖରେ ଥିବା ଯାତ୍ରୀମାନେ ଅତ୍ୟନ୍ତ ଆଗ୍ରହର ସହିତ ଶୁଣୁଥାନ୍ତି । ଶୁଣିବାର ଆଗ୍ରହରେ କେତେଜଣ ବି ହାମୁଡ଼େଇ ପଡ଼ିଥାନ୍ତି । ଏହି ବ୍ୟକ୍ତି କିଏ ହୋଇଥିବେ ବୋଲି ଭାବି ମୁଁ କିଛିଦୂର ଆଗକୁ ଯାଇ ଦେଖିଲି, ଜଣେ ପାତଳା ସାନ ମଣିଷଟିଏ, ଧୂସର ବର୍ଣ୍ଣର ସାଦାସିଧା ପୋଷାକ ପିନ୍ଧିଛନ୍ତି, ମୁଣ୍ଡଟି କିଞ୍ଚିତ୍ ତଳକୁ ନଇଁଆସିଛି । ତାଙ୍କର କଥାଗୁଡ଼ିକ ମଧ୍ୟ ମୋ' କାନରେ ଆସି ବାଜିବାକୁ ଲାଗିଲା,- କଣ୍ଠସ୍ୱର ଭାରି ତୀକ୍ଷ୍ଣ ଓ ଭାରି ସ୍ପଷ୍ଟ, ଶବ୍ଦଗୁଡ଼ିକ ଏକ ଅସାଧାରଣ ନିଶ୍ଚୟତାବୋଧ ସହିତ ମୁହଁରୁ ବାହାରି ଆସୁଥାଆନ୍ତି । ସିଏ କହୁଥିଲେ, ''ବର୍ତ୍ତମାନ ମୁଁ ଆପଣମାନଙ୍କୁ ଗୋଟିଏ ଚାଷୀପିଲା ବିଷୟରେ କହିବି; ସିଏ ଆମଘରେ ରହି ମୋତେ କୃଷିରେ ସାହାଯ୍ୟ କରୁଛି; ମାତ୍ର ବିଶ୍ୱବିଦ୍ୟାଳୟରେ ପଢ଼ିବା ଲାଗି ଆବଶ୍ୟକ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇ ସାରିଲାଣି । ଆଉ ଅଳ୍ପ କେତେ ମାସ ପରେ କୋପେନ୍‌ହେଗେନ୍ ଯିବ, ସେହିଠାରେ ପଢ଼ିବ । ସେଥିପାଇଁ ଅବଶ୍ୟ ହାତରେ ପଇସା ନାହିଁ, ମାତ୍ର ଭଗବାନ ନିଶ୍ଚୟ କିଛି ଉପାୟ ବାହାର କରିଦେବେ ।'' ତାଙ୍କର ସେହି କଥାଗୁଡ଼ିକ ମୋ' ଉପରେ ମଧ୍ୟ ଗଭୀର ପ୍ରଭାବ ପକାଇଥିଲା । ସେ ପ୍ରକୃତରେ କିଏ ଜାଣି ନଥିଲେ ମଧ୍ୟ ମୁଁ ଗାଡ଼ୀରୁ ଓହ୍ଲାଇବା ସମୟରେ ତାଙ୍କ ପାଖକୁ ଯାଇ ଜଣାଇଥିଲି ଯେ ମୁଁ ମଧ୍ୟ ସେହି ପିଲାଟିକୁ କିଛି ପରିମାଣରେ ସାହାଯ୍ୟ କରିପାରିବି ଏବଂ ତେଣୁ ପିଲାଟି ରାଜଧାନୀକୁ ଆସିଲେ ମୋ' ସହିତ ସାକ୍ଷାତ କରିବ । ମୁଁ ତାଙ୍କୁ ମୋ'ର ଘରଠିକଣା ଦେଇ ଯାଇଥିଲି । ବର୍ଷକ ପରେ ଯାଇ ସେହି ଯୁବକଟି ରାଜଧାନୀକୁ ଆସିଥିଲା ଓ ମୋତେ ମଧ୍ୟ ଭେଟିବାକୁ ଯାଇଥିଲା । ସେହି ବ୍ୟକ୍ତିଜଣକ ଯେ କ୍ରିଷ୍ଟେନ୍ କଲ୍ଡ୍, ସେହି କଥାଟି ମୁଁ ପ୍ରଥମେ ତାହାରିଠାରୁ ଜାଣିଲି । ଆହୁରି ଜାଣିଥିଲି ଯେ, ଶ୍ରୀ କଲ୍ଡ୍ ଫୁଇନ୍ ଦ୍ୱୀପର ଡାଲ୍‌ବୁଇଠାରେ ଗୋଟିଏ ଲୋକବିଦ୍ୟାଳୟ ଚଳାଉଛନ୍ତି ।

ପରେ କଲ୍ଡ୍‌ଙ୍କ ସହିତ ମୋ'ର ଅନେକ ସମୟରେ ଭେଟ ହୋଇଛି । ତାଙ୍କର ବିଦ୍ୟାଳୟକୁ ମଧ୍ୟ ବହୁବାର ଆସିଛି । ପ୍ରଥମେ ପ୍ରଥମେ ସିଏ କେବଳ ଜଣେ ମାମୁଲି ମଣିଷ ବୋଲି ଅବଶ୍ୟ ମୋତେ ଲାଗୁଥିଲା; କିନ୍ତୁ ଯହୁଁ ଯହୁଁ ତାଙ୍କର ବ୍ୟକ୍ତିତ୍ୱର ଅଧିକ ପରିଚୟ ପାଇଲି, କ୍ରମେ ମୋ'ର ଅହଙ୍କାର ଭାଙ୍ଗି ଯାଇଥିଲା ଏବଂ ଶେଷକୁ, ମୁଁ ନିଜେ ଯେତେବେଳେ ଗୋଟିଏ ଲୋକବିଦ୍ୟାଳୟ ଆରମ୍ଭ କଲି, ସେତେବେଳେ ଶ୍ରୀଯୁକ୍ତ କଲ୍ଡ୍ ହିଁ ମୋ' ଆଗରେ ଆଦର୍ଶ ହୋଇ ରହିଥିଲେ । ଡାଲୁମ୍‌ଠାରେ ମୁଁ ତାଙ୍କ ଲୋକବିଦ୍ୟାଳୟରେ ବିଦ୍ୟାର୍ଥୀରୂପେ ଯୋଗ ଦେଇଥିଲି, ସେହିଠାରେ ହିଁ ସ୍ଥିର କରିଥିଲି ଯେ, ମୁଁ ଆଗରୁ ଯେପରି ଭାବିଥିଲି, ସେହି ଅନୁସାରେ ଜଣେ ପାଦ୍ରୀ ନହୋଇ ସ୍ୟେଲାଣ୍ଡର ଭାଲ୍ଲୁକିଲଠାରେ ଗୋଟିଏ ଲୋକବିଦ୍ୟାଳୟ ଆରମ୍ଭ କରିବି ।

ଆଉଥରେ ବିଶ୍ୱବିଦ୍ୟାଳୟର ଦୁଇଜଣ ଛାତ୍ର ମଧ୍ୟ କଲ୍ଡ୍‌ଙ୍କ ବିଦ୍ୟାଳୟକୁ ଦେଖିବାକୁ ଆସିଥିଲେ । ସେମାନେ ସେଠାରେ ତିନିଦିନ ରହିଲେ, ସବୁ କାର୍ଯ୍ୟକ୍ରମରେ ଭାଗ ନେଲେ ଓ ଶ୍ରେଣୀକୁ ଯାଇ ମଧ୍ୟ ତାଙ୍କର ପ୍ରବଚନଗୁଡ଼ିକୁ ଶୁଣିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ନିଜର ଅନୁଭବ ବିଷୟରେ ଏହିଭଳି ଲେଖିଥିଲେ । ସିଏ ଶ୍ରୀ କଲ୍ଡ୍‌ଙ୍କୁ ଗୋଟିଏ ଅର୍ଥରେ ଜଣେ ସକ୍ରେଟିସ୍ ବୋଲି ବର୍ଣ୍ଣନା କରିଥିଲେ : ସେହି ଯୁଗର ସକ୍ରେଟିସ୍‌ଙ୍କ ପରି ସିଏ ମଝିରେ ଚଉକୀରେ ବସନ୍ତି ଏବଂ ତାଙ୍କ ଚାରିପାଖରେ ଦେଶର ଦୂରଦୂରାନ୍ତରୁ ଆସିଥିବା କୃଷକଯୁବକମାନେ ତାଙ୍କୁ ଘେରିକରି ବସନ୍ତି । ଏବଂ, ପ୍ରାୟ ଦିନତମାମ ସିଏ କହୁଥାନ୍ତି ଓ ସମସ୍ତେ ଶୁଣୁଥାନ୍ତି । ଶ୍ରୋତାମାନଙ୍କର ହୃଦୟ ମଧ୍ୟରେ ସେହିସବୁ କଥାରୁ କ'ଣ ଯାଇ ପ୍ରବେଶ କରେ କେଜାଣି, ସେମାନେ ନିଜ ଭିତରେ ଏକ ଜାଗରଣ ଅନୁଭବ କରନ୍ତି । ତାଙ୍କ ପାଖରେ ଅନୁଭୂତି ଏବଂ କାହାଣୀର ଅସରନ୍ତି ଭଣ୍ଡାର ରହିଥାଏ । ସେଠାରେ ସିଏ ସାନ ପିଲାଙ୍କ ପାଇଁ ମଧ୍ୟ ମୁକ୍ତ ପ୍ରାଥମିକ ବିଦ୍ୟାଳୟମାନ ଆରମ୍ଭ କରିଛନ୍ତି ଯେଉଁଠାରେ କି ନିଜର ପୁରାତନ ଛାତ୍ରମାନଙ୍କୁ ଆଣି ଶିକ୍ଷକରୂପେ ବସାଇଛନ୍ତି । ପିଲାମାନେ ହିଁ ଘରୁ କିଛି ଆଣନ୍ତି ଓ ଶିକ୍ଷକମାନେ ସେଇଥିରେ ଚଳନ୍ତି । ସରକାରୀ ଅର୍ଥ ଆଣିବାକୁ ପଡ଼େନାହିଁ କିମ୍ବା ସରକାରୀ ସର୍ତ୍ତ ମଧ୍ୟ ମାନିବାକୁ ପଡ଼େନାହିଁ । ଲୋକବିଦ୍ୟାଳୟର ଯାବତୀୟ ଶିକ୍ଷାରେ ମୂଳ କଥାଟି ହେଉଛି ଯେ, ତୁମେ ଯାହା ଶିକ୍ଷା କରିବ, ତାହାକୁ ବାସ୍ତବ ଜୀବନରେ କାମରେ ମଧ୍ୟ ଲଗାଇବ । ହୃଦୟମାନେ ଅଧିକରୁ ଅଧିକ ପୂର୍ଣ୍ଣସମ୍ମତ ଭାବରେ ଆତ୍ମଜାଗରଣ ଆଡ଼କୁ ମୁହାଁଇ ହୋଇଯିବାରେ ଲାଗିଥିବେ ।

ସେତିକିବେଳେ ଥରେ କଲ୍ଡ୍ ସେତେବେଳେ ସମାଜକୁ ସଂକ୍ରମିତ କରିବାକୁ ଆରମ୍ଭ କରିଥିବା ମନୁଷ୍ୟ ଭିତରର ଏକ ପ୍ରବୃତ୍ତି ବିଷୟରେ ସତର୍କ କରିଦେଇ କହିଥିଲେ : ବର୍ତ୍ତମାନ ଆମେ ସତେଅବା ଅତ୍ୟନ୍ତ ଅବାଞ୍ଛିତ ଏକ ବାଟରେ ମାଡ଼ି ଯାଇ ବୁଦ୍ଧି ବା ମସ୍ତିଷ୍କଟାକୁ

ଏକ ଦେବତାପିତୁଳା ପରି ଯାଇ ଯାବୁଡ଼ି ଧରୁଛୁ । ବହୁତ ଲୋକ ଏବେ କହୁଛନ୍ତି ଯେ ମସ୍ତିଷ୍କଟା ପ୍ରବୀଣ ଏବଂ ବିଚକ୍ଷଣ ହୋଇଗଲେ ଜୀବନରେ ସବୁ ସିଦ୍ଧି ସମ୍ଭବ ହୋଇଯିବ । ଯଦି ମଥାଟା ପ୍ରବୀଣ ନହେବ, ତେବେ କିଛି ସମ୍ଭବ ହେବନାହିଁ । ଏହିପରି ଭାବରେ ସମସ୍ତେ ହୃଦୟକୁ ପାସୋରି ଦେବାକୁ ବସିଲେଣି । ମାତ୍ର, ଏହି ହୃଦୟ ହିଁ ଅସଲ । ଡେନ୍‌ମାର୍କ୍‌ର ଜଣେ ସାଧାରଣ ମନୁଷ୍ୟର ପ୍ରାୟ କେବେହେଲେ ବଡ଼ ମଥାଟାଏ ନଥିଲା । ଏବଂ, ଏହି ମଥାଅଂଶର ଯେତିକି ଟିକିଏ ଆମର ରହିଛି ବୋଲି ଆମେ କହୁଛୁ, ଆମେ ତାହାକୁ ଜର୍ମାନ୍‌ମାନଙ୍କ ପାଖରୁ ଉଧାର କରି ଆଣିଛୁ । ମାତ୍ର, ଆମଠାରେ କାଳ କାଳରୁ ଗୋଟିଏ ହୃଦୟ ରହିଆସିଛି ଏବଂ ଆମେ ସମସ୍ତେ ସେହି ହୃଦୟର ହିଁ ଅନୁଶୀଳନ କରିବା । ଏବଂ, ଆଉଜଣେ ବ୍ୟକ୍ତିଙ୍କର ସ୍ମୃତି ବିବରଣୀରୁ:

ପ୍ରକୃତରେ କେଉଁ ବ୍ୟକ୍ତିମାନଙ୍କୁ ବିଶପ୍ ଗ୍ରୁନ୍‌ଡ୍ଭିଗ୍‌ଙ୍କର ସଚ୍ଚା ଅନୁଗାମୀ କୁହାଯାଇ ପାରିବ ବୋଲି ଏକଦା ଶ୍ରୀ କଲ୍ଲ୍‌ଙ୍କୁ ପ୍ରଶ୍ନ କରା ଯାଇଥିଲା । କଲ୍ଲ୍ ଉତ୍ତର ଦେଇ କହିଥିଲେ: "ପ୍ରକୃତ ଗ୍ରୁନ୍‌ଡ୍ଭିଗ୍-ଅନୁଗାମୀ ସେଇ, ଯିଏ ଆବିଷ୍କାର କରିଛି ଯେ ମନୁଷ୍ୟର ଗୋଟିଏ ହୃଦୟ ରହିଛି । କେତେକ ଲୋକ ଭାବିଥାନ୍ତି ଯେ କରୁଣାଭାବ ଦେଖାଇବାରୁ ହିଁ ଏକ ହୃଦୟ ଥିବାର ପ୍ରମାଣ ମିଳିଥାଏ । ଉଦାହରଣ ସ୍ୱରୂପ, ତୁମ ଗୋଡ଼ ତୁମ ବାଟରେ ଯାଉ ଯାଉ ଗୋଟିଏ ଗେଣ୍ଡା ଉପରେ ପଡ଼ିଗଲା ଓ ଗେଣ୍ଡାଟି ଦଳି ହୋଇଗଲା । ତୁମେ କରୁଣା ପ୍ରକାଶ କରି ଆହା ବୋଲି କହିଲ । ଏଇଟା ପ୍ରକୃତରେ ଅତି ମାମୁଲି ଘଟଣା, ଚାରିଆଡ଼େ ହିଁ ଦେଖିବାକୁ ମିଳିବ । ମାତ୍ର, ଜଣେ ମାଆ ଯେତେବେଳେ ନିଜର ରୋଗରେ ପଡ଼ିଥିବା ପିଲାଟି ପାଇଁ ଉଜାଗର ହୋଇ ରହେ ଓ ଶେଷକୁ ନିଜେ ମଧ୍ୟ ହୁଏତ ଅସୁସ୍ଥ ହୋଇଯାଏ,- ସେତେବେଳେ ବହୁତ ଲୋକ ସୁନିଶ୍ଚିତ ଭାବରେ ତାହାକୁ ଏକ ବିଶାଳ ହୃଦୟ ଥିବାର ପ୍ରମାଣ ବୋଲି କହିବେ । ଏହି କଥାରେ ମୋଟେ କୌଣସି ଭୁଲ ନାହିଁ ସତ, ମାତ୍ର ଏଇଟିକୁ ମଧ୍ୟ ଆମ ମନୁଷ୍ୟମାନଙ୍କ ସକାଶେ ଭାରି ଅଳପ ବୋଲି କହିବାକୁ ହେବ । ଇତର ପ୍ରାଣୀମାନେ ସଚରାଚର ସେହି ଆଚରଣ ବି କରିଥାନ୍ତି । ମାଆ କୁକୁଡ଼ାଟିଏ ତା' ଚିଆଁଗୁଡ଼ିକ ସକାଶେ ପ୍ରକୃତରେ କେତେ କ'ଣ ନକରେ ! କୁକୁରମାଆ ବି ତା ଛୁଆମାନଙ୍କ ପାଇଁ କେତେ ଉତ୍ସର୍ଗୀକୃତ ହୋଇ ରହିନଥାଏ ! ନାଇଁ, ଅସଲ କଥାଟି ହେଉଛି, ପ୍ରତ୍ୟେକ ମନୁଷ୍ୟର ଅନ୍ତର ଭିତରେ, ଏକ ଗଭୀରତମ ପ୍ରଦେଶରେ ଗୋଟିଏ ଏପରି ଅତୁଳନୀୟ ବିଶେଷ ସ୍ଥାନ ରହିଥାଏ, ଯାହାକୁ କି ତାହାର ପବିତ୍ରତମ ମନ୍ଦିରଟିଏ ବୋଲି କୁହାଯାଇ ପାରିବ ଏବଂ, ଯଦି ଉର୍ଦ୍ଧ୍ୱରୁ ଆଶୀର୍ବାଦ ଏବଂ କରୁଣା ଉପଲବ୍ଧ ନହୁଏ, ତେବେ ସେହି ସ୍ଥାନଟି ଚିରକାଳ ଅନ୍ଧାର ଭିତରେ ଶୀତଜର୍ଜର ହୋଇ ରହିଥାଏ - ତେବେ ସେଠାରେ ଆଦୌ କୌଣସି ସୂର୍ଯ୍ୟର ରଶ୍ମି ପଡ଼ି ପାରେନାହିଁ; କୌଣସି ବସନ୍ତର ବି ପ୍ରବେଶ ଘଟେନାହିଁ । ସେହି ସ୍ଥାନଟି ହିଁ

ଆମଲାଗି ସର୍ବୋତ୍ତମ ଉନ୍ମୀଳନ ଏବଂ ସର୍ବୋତ୍ତମ ବିମୋଚନକୁ ଗର୍ଭରେ ଧରି ରଖିଥାଏ । ଈଶ୍ୱର ଏବଂ ଆମ ଭିତରେ ପଡ଼ିଥିବା ସେତୁଟି ଠିକ୍ ସେହି ସ୍ଥାନରେ ହିଁ ରହିଥାଏ ।

''ପ୍ରକୃତରେ ଆତ୍ମାର ସେହି ଜାଗରଣ ନିମନ୍ତେ ହିଁ ଆମର ସୃଷ୍ଟି ହୋଇଛି । ଗୋଟିଏ ତୃଷାର୍ତ୍ତ ହରିଣୀ ଯେପରି ଜଳର ଅନ୍ୱେଷଣରେ ଧାଇଁ ବୁଲୁଥାଏ, ଆମର ହୃଦୟ ମଧ୍ୟ ସେହି ଜାଗରଣ ଲାଗି ବ୍ୟାକୁଳ ହୋଇ ଡାକିବାରେ ଲାଗିଥାଏ । ଏବଂ, ଯଦି ଆମେ ଏହି ଭଗବତ୍‌ସ୍ପର୍ଶ ଠାରୁ ଦୂରକୁ ଚାଲିଯାଉ, ତେବେ ଅନ୍ୟ ଆହୁରି କେତେ କେତେ ଅପସ୍ପର୍ଶ ଓ ତଦନୁରୂପ ପ୍ରେରଣା ଆମ ଭିତରେ ପଶି ଆମର ସେହି ଅନ୍ତରତମ ସ୍ଥାନଟିକୁ ଅଧିକାର କରିନିଏ, ଆମର ସକଳ ଅନ୍ତର୍ବଳ ଏବଂ ଜୀବନଧର୍ମକୁ ହରଣ କରି ନେଇଥାଏ । ହଁ, ସେଥିରୁ ମଧ୍ୟ ଗୋଟିଏ ପ୍ରକାରର ଆଲୋକ ବାହାରୁଥାଏ ସତ, - ତାହା ଆଲୋକିତ କରୁଥାଏ, କିନ୍ତୁ ଉଷ୍ମତା ପ୍ରଦାନ କରି ପାରେନାହିଁ । ମନେ ରଖ, ସେହି ସ୍ଥାନଟି କଦାପି ଖାଲି ରହି ପାରେନାହିଁ । ଅସଲ ସମ୍ପଦଟି ଆସିବା ସମ୍ଭବ ନହେଲେ ଆଉକିଛି ଅବଶ୍ୟ ଆସେ ଓ ଆମକୁ ଗିଳି ପକାଏ ।

''ହୃଦୟନାମକ ଏହି ସ୍ଥାନଟିକୁ ଖାଲି କରିଦେବାକୁ ମନୁଷ୍ୟ କାଳେ କାଳେ କେତେ ଚେଷ୍ଟା କରିଆସିଛି ! କିଏ ଗୁଡ଼ାଏ ଆଇନ୍ କରି ଥୋଇଦେଇଛି, କିଏ ନୀତିବାଦୀ ହୋଇ ବାହାରିଛି, କିଏ ପ୍ରକୃତି ଭିତରେ ଯାଇ ଅନୁସନ୍ଧାନରତ ରହୁଛି ଓ ମନୁଷ୍ୟର ସତ୍ ଏବଂ ଅସତ୍‌ପ୍ରକୃତିକୁ ଖୋଳି ତାଡ଼ି କେତେ କ'ଣ ବାହାର କରୁଛି । ମାତ୍ର ତଦ୍ୱାରା କିଛି ଫଳ ଫଳୁନାହିଁ, କାରଣ ଏହି ସବୁକିଛି ଈଶ୍ୱରଙ୍କର ଇଚ୍ଛା ବିରୁଦ୍ଧରେ ହିଁ ଯିବାର ଆଗ୍ରହ ଦେଖାଉଛି । ଦୁଃଖ ହିଁ ସାର ହେଉଛି ଏବଂ ସଂଶୟ ଆଚ୍ଛନ୍ନ କରି ରହୁଛି । ରାତ୍ରିର ଯାବତୀୟ ଶକ୍ତି ହିଁ ମନୁଷ୍ୟ ଉପରେ ସବାର ହୋଇ ରହିଛନ୍ତି । ହୃଦୟଟା ଗୋଟିଏ ଡାବଲ ପରି କେବଳ ଅସୁସ୍ଥ ଏବଂ ବିସ୍ୱାଦଯୁକ୍ତ ଗୁଡ଼ାଏ ଜଳରେ ହିଁ ଭର୍ତ୍ତି ହୋଇ ରହିଯାଉଛି । ତେଣୁ, ଆମେ ଯଦି ତାହା ବଦଳରେ ତାହାକୁ ତଟକା ପାଣିଦ୍ୱାରା ଭରି ରଖିବାକୁ ଚାହିବା, ତେବେ ଆମକୁ କ'ଣ କରିବାକୁ ହେବ ? ସେଥିରେ ଜମିଥିବା ମଇଳା ପାଣିଗୁଡ଼ିକୁ ବାହାର କରିଦେବା ଏବଂ ତଟକା ପାଣି ଭରିବାର ଆଉ ନଳଟିକୁ ଖୋଲିଦେବା । ମନୁଷ୍ୟର ହୃଦୟ ଭିତରେ ଈଶଶକ୍ତି ସେହିଭଳି କାର୍ଯ୍ୟଟିକୁ ହିଁ କରିଥାଏ । ପରିଷ୍କାର ଜଳକୁ ଆସିବାକୁ ଦେଇ ଅପରିଷ୍କାର ଜଳକୁ ବାହାର କରିଦିଏ । ଅନ୍ତରାତ୍ମାର ଜାଗରଣସ୍ପର୍ଶ ଲାଭ କରିଥିବା ଆଉଜଣେ ବ୍ୟକ୍ତିର ମୁହଁର କଥାଗୁଡ଼ିକ ସେତିକିବେଳେ ହିଁ ଖୁବ୍ କାମରେ ଆସେ । ତେବେ ଆଉ ରାହା ନପାଇ ମନ୍ଦ ଆପେ ଆପେ ଅପସରି ଯିବ ।''

କଲ୍‌ଲ୍ ପୁନଶ୍ଚ କହିଲେ, ''ଏଠାକୁ ଏହି ବିଦ୍ୟାଳୟକୁ ଆସୁଥିବା ତରୁଣମାନଙ୍କୁ ଥରେ ଲକ୍ଷ୍ୟ କରି ଦେଖ । ସେମାନେ ଏଠାରେ ଆସି ପହଞ୍ଚିବା ସମୟରେ ମୁଁ ସେମାନଙ୍କ

ମୁଖମଣ୍ଡଳ ଉପରେ କିଛି ମାଂସ ହିଁ ଦେଖିବାକୁ ପାଏ ଏବଂ ନିତାନ୍ତ ସାଧାରଣ ଧରଣର କିଛିଦ୍ ଜୀବନର ଏକ ଇଙ୍ଗିତ ହୁଏତ ଦୃଷ୍ଟିଗୋଚର ହେଉଥାଏ । ଏଠାରେ ଘଣ୍ଟାଟିଏ ଶ୍ରେଣୀରେ ବସି କିଛି ଶୁଣିବାପରେ ସେମାନଙ୍କର ମୁହଁ ଆଲୋକିତ ହେବାକୁ ଆରମ୍ଭ କରେ । ଆଖିର ଚାହାଣି ନୂଆ ନୂଆ ଲାଗେ । ନିଜ ମୁଣ୍ଡଟା ମଧ୍ୟ ସେମାନଙ୍କୁ ଗଣ୍ଠି ଫିଟି ଯାଉଥିବା ପରି ଲାଗେ, ହାଲୁକା ଲାଗିଆସେ । ଏପରିକି ସେମାନେ ବାହାରେ ମଧ୍ୟ ଯାଆ ଆସ କରୁଥିବା ସମୟରେ ମୁଁ ତାହା ଲକ୍ଷ୍ୟ କରୁଥାଏ । ଏପରି ଦେଖି ମୁଁ କେତେ ଖୁସୀ ହୋଇଯାଏ, କାରଣ ସେମାନଙ୍କ ଉପରେ ମୁଁ ସେହି ଈଶଶକ୍ତିର ଫଳନଟିକୁ ହିଁ ଦେଖିବାକୁ ପାଏ । ମାତ୍ର, ସେଇଟି ମୋଟେ ସେତିକିରେ ଅଟକି ରହି ଯାଏନାହିଁ । ଅଧିକ ଗଭୀରକୁ ଯାଇ ତାହା ସେମାନଙ୍କର ହୃଦୟକୁ ମଧ୍ୟ ସ୍ପର୍ଶ କରେ । ଏକ ଅଧ୍ୟାତ୍ମ ଜୀବନ ଅର୍ଥାତ୍ ପ୍ରୀତିଦ୍ୱାରା ପ୍ରେରିତ ଜୀବନ ବଞ୍ଚିବା ସକାଶେ ଆସ୍ପୃହାଟି ଜନ୍ମଲାଭ କରେ । ମୋ'ର ଖୁସୀ ଦ୍ୱିଗୁଣିତ ହୋଇଯାଏ ।''

ସମସାମୟିକ ଭାବରେ ତତ୍କାଳୀନ ଆହ୍ୱାନଗୁଡ଼ିକରୁ ପ୍ରେରଣା ନେଇ ଡେନ୍‌ମାର୍କ୍‌ରେ ଆଉ କେତୋଟି ଲୋକବିଦ୍ୟାଳୟର ମଧ୍ୟ ସ୍ଥାପନା ହୋଇ ଯାଇଥିଲା । ଗୋଟିଏ ବିଦ୍ୟାଳୟ ଡେନିଶ୍ ଜାତୀୟତାବାଦକୁ ମୂଳ କରି ଧରିଥିଲା ତ ଆଉଗୋଟିଏ ଭୂସ୍ୱାମୀମାନଙ୍କ ସହିତ କୃଷକମାନଙ୍କର ସଂଘର୍ଷ ଓ ତାହାରି ମାଧ୍ୟମରେ ସମାଜର ଏକ ନବଗଠନକୁ ସର୍ବପ୍ରଧାନ ଲକ୍ଷ୍ୟ ରୂପେ ଗ୍ରହଣ କରିଥିଲା । ଶ୍ରୀଯୁକ୍ତ କଲ୍‌ଲ୍ ସେହି ଲକ୍ଷ୍ୟଗୁଡ଼ିକୁ ଅବଶ୍ୟ ସ୍ୱୀକାର କରୁଥିଲେ ଓ ସେଗୁଡ଼ିକର ମଧ୍ୟ ପ୍ରାସଙ୍ଗିକତା ରହିଛି ବୋଲି କହୁଥିଲେ । ମାତ୍ର ତାଙ୍କର ନିଜ ବିଦ୍ୟାଳୟଟିକୁ ସିଏ ଅନ୍ୟ ଏକ ମହତ୍ତ୍ୱବିନ୍ଦୁକୁ ଚକ୍ଷୁ ସମକ୍ଷରେ ରଖି ଗଢ଼ି ଆଣିଥିଲେ । ''ମୋ'ର ଏହି ବିଦ୍ୟାଳୟରେ 'ମୃତ୍ୟୁ' ହି ଅସଲ ଶତ୍ରୁ । ମୃତ୍ୟୁର ଅମୁକ ବା ଅମୁକ ଅପକ୍ରିୟା ବିରୁଦ୍ଧରେ ନୁହେଁ, ସିଧା ମୃତ୍ୟୁ ବିରୁଦ୍ଧରେ । ଜର୍ମାନ୍ ବା ଶୋଷଣକାରୀ ଭୂମାଲିକ ମାନଙ୍କ ଅପେକ୍ଷା ଏହି ଶତ୍ରୁଟି ଆମର ଅଧିକ ନିକଟବର୍ତ୍ତୀ ହୋଇ ରହିଛି ଓ ଆମକୁ କାବୁ କରିନେଇଛି । ତାହା ଆମ ହୃଦୟ ଭିତରେ ହିଁ ରହିଛି, ଆମ ଭିତରେ ବିକାଶ ଲାଗି ଅପେକ୍ଷା କରିଥିବା ଜୀବନକୁ ସମ୍ପୂର୍ଣ୍ଣ ଭାବରେ ଶେଷ କରିଦେବାକୁ ଷଡ଼ଯନ୍ତ୍ର କରୁଛି । ତେଣୁ, ଏଠି ଯେଉଁ ସଂଗ୍ରାମଟି ବିଷୟରେ ଶିକ୍ଷା ଦିଆଯିବ, ସେହି ସଂଗ୍ରାମ ଜୀବନଯାକ ଲାଗି ରହିବ । ଅନ୍ୟ ଯାବତୀୟ ସଂଗ୍ରାମ ହେଉଛନ୍ତି ସାମୟିକ, - ପାଣି ଉପରର ତରଙ୍ଗପରି, - ଉଠୁଥିବେ ଓ ପୁଣି ମିଳାଇ ଯାଉଥିବେ । ତେଣୁ, ଜୀବନଯାକର ସେହି ଅନ୍ୟ ସଂଗ୍ରାମଟି ନିମନ୍ତେ ସଶକ୍ତ କରି ତିଆରି କରିବା ହେଉଛି ଆମ ଏହି ବିଦ୍ୟାଳୟର ଅସଲ ଲକ୍ଷ୍ୟ ।....ଆମେ କିପରି ସଫଳ ଭାବରେ ଜୀବନ ତମାମ ଲଢ଼ି ପାରିବା, ଯେପରି ମରଣ ତାହାର କୌଣସି ଅନିଷ୍ଟ କରି ପାରିବାନାହିଁ, ଜନଗଣଙ୍କୁ ସେହି ଶିକ୍ଷାଟି ପ୍ରଦାନ କରିବା ହେଉଛି ଆମ ବିଦ୍ୟାଳୟର ମୂଳ ଉଦ୍ଦେଶ୍ୟ ।''

ତା'ପରେ କଲ୍ଲ୍ ସବୁଠାରୁ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ କଥାଟିକୁ କହିଥିଲେ : ଆମ ପିଲାମାନଙ୍କୁ ଯଦି ଆମେ କେବଳ ଜର୍ମାନ୍‌ମାନଙ୍କ ଅଥବା କେବଳ ବୃହଦ୍ ଭୂମାଲିକଙ୍କ ବିରୁଦ୍ଧରେ ଲଢ଼ିବାକୁ ଶିକ୍ଷା ଦେବା, ତେବେ ତାହାକୁ ନିଶ୍ଚୟ ଜନଗଣ ଏବଂ ଜନ୍ମଭୂମି ପାଇଁ କେବଳ ଏକ ଅତ୍ୟନ୍ତ ସହାୟତା ହିଁ କୁହାଯିବ । ଯଦି ଜୀବନଟିକୁ ବଞ୍ଚିବା ନିମନ୍ତେ ଆମପାଖରେ ବୃହତ୍ତର ଓ ଉଚ୍ଚତର ହୋଇ କିଛି ନଥିବ, ତେବେ ସେହି ଶିକ୍ଷା ଆମକୁ ପ୍ରକୃତରେ କେତେଦୂର ଯାଏ ନେଇପାରିବ ?... ଏବଂ, ଏହି 'ଉଚ୍ଚତର'ଟି ହିଁ ଆମ ତରୁଣମାନଙ୍କୁ ଶିକ୍ଷା ଦେଉଥିବା ବିଦ୍ୟାଳୟରେ ମୁଖ୍ୟତମ ପ୍ରସଙ୍ଗ ହୋଇ ଅବଶ୍ୟ ରହିବ । ପ୍ରଧାନତଃ ନିଜର ବଳ ଉପରେ ନିର୍ଭର କରି ଜୀବନ ବଞ୍ଚିବାକୁ ଏବେ ଜନଗଣଙ୍କର ସତେଅବା ଆଦୌ ଭରସା ପାଉନାହିଁ - ଆମର ସର୍ବୋତ୍ତମ ମୁହୂର୍ତ୍ତଗୁଡ଼ିକରେ ମଧ୍ୟ ଆମେ ତାହାକୁ ଅନୁଭବ କରି ପାରୁନାହୁଁ । ସତେ ଯେପରି ଆମେ ଉଧାର କରି ନିଜର ଜୀବନଟିକୁ ବଞ୍ଚୁଛୁ । ମାତ୍ର, ଏପରି ହେଲେ ଆମେ ତଳକୁ ତଳକୁ ଯିବାରେ ଲାଗିଥିବୁ, ଅଧିକରୁ ଅଧିକ ଅସହାୟ ଅନୁଭବ କରୁଥିବୁ; - ଏକ ଉଚ୍ଚତର ଶକ୍ତି ଆସି ଆମକୁ ସାହାଯ୍ୟ ନକରୁଥିବା ପର୍ଯ୍ୟନ୍ତ ଏଭଳି ହେବ ହିଁ ହେବ । ନାଇଁ, ନାଇଁ, ବର୍ତ୍ତମାନ ସମୟ ଆସିଛି, ଯେତେବେଳେ ଏକ ଅଧିକ ଶକ୍ତିଶାଳୀ ଉତ୍ସରୁ ଆମକୁ ସେହି ବଳଟିର ଅନୁସନ୍ଧାନ କରିବାକୁ ହେବ, ଅସଲ ଉତ୍ସଟିରେ ଯାଇ ପହଞ୍ଚିବାକୁ ହେବ । ତେବେ ଯାଇ ହେବ ।

''ସବୁଠାରୁ ବଡ଼ ଶକ୍ତି ହେଉଛି ଭଲ ପାଇବାର ଶକ୍ତି ଏବଂ ସେହି ଶକ୍ତି ହିଁ ଆମକୁ ଯାବତୀୟ ଦୁର୍ଦ୍ଦଶା ଭିତରୁ ରକ୍ଷା କରି ଆଗକୁ ନେଇଯିବ । ସେହି ଶକ୍ତି ବଳରେ ହିଁ ଆମେ ପୃଥିବୀଲାଗି ପ୍ରତିଶ୍ରୁତ ସେହି ଆଦର୍ଶ ସମୟଟିର ଉତ୍ତରାଧିକାରକୁ ଲାଭ କରି ପାରିବା । ଏକଥା ରାଜନୀତି ଦ୍ୱାରା ହେବନାହିଁ, - ସେହି ରାଜନୀତି ଜାତୀୟ ସ୍ୱାର୍ଥ ବିଷୟରେ ଯେଡ଼େ ବଡ଼ପାଟିରେ ଯାହାକିଛି କହୁଥାଉ ପଛକେ, ତାହାଦ୍ୱାରା କଦାପି ହେବନାହିଁ । ବିଜ୍ଞାନ ଦ୍ୱାରା ମଧ୍ୟ ହେବନାହିଁ, ସଂସ୍କୃତି କିମ୍ବା କଳା ଦ୍ୱାରା ସମ୍ଭବ ହେବନାହିଁ; ଏହି ସବୁକିଛିକୁ ଆମେ ହୁଏତ ଗୋଟିଏ ବୃକ୍ଷର ପତ୍ର କିମ୍ବା ଫୁଲ ବୋଲି କହିପାରିବା, କିନ୍ତୁ ସମ୍ପୂର୍ଣ୍ଣ ଗଛଟି ବୋଲି କେବେହେଲେ କହିବାନାହିଁ । ମୂଳ ବୃକ୍ଷଟି ବିନା ଏହି ପତ୍ର ଓ ଫୁଲରେ ଜୀବନ କୁଆଡୁ ଆସିବ, ତେଣୁ ଅଚିରେ ଶୁଖିଯିବ ଓ ନଷ୍ଟ ହୋଇଯିବ ।''

କ୍ରିଷ୍ଟେନ୍ କଲ୍ଲ୍ ତାଙ୍କ ଜୀବନର ଅସଲ ନିର୍ଦ୍ଦେଶନାଟିକୁ ସର୍ବଦା ନିଜ ଭିତରୁ ହିଁ ପାଉଥିଲେ । ନିଜ ଭିତରର ସତକୁ ସତ କେତେ ନିକଟବର୍ତ୍ତୀ ହୋଇପାରିଲେ ଯେ ଜଣେ ତାହାର ଉପଯୁକ୍ତ ହୋଇପାରିବ, କେବଳ ଅନୁଭବୀ ହିଁ ସେହି କଥାଟିର ସାକ୍ଷ୍ୟ ଦେଇ ପାରିବ । କଲ୍ଲ୍‌ଙ୍କର ଅସଲ ବଳ ତାଙ୍କ ଭିତରେ ରହିଥିଲା, ଏବଂ ସେହି କାରଣରୁ ହିଁ ସିଏ ଏତେ ପ୍ରତ୍ୟୟର ସହିତ ନିଜକୁ ନିଜର ମାର୍ଗଟି ପାଇଁ ସମର୍ପିତ କରି ରଖି ପାରିଥିଲେ ।

ଭିତରୁ ନିର୍ଦ୍ଦେଶନା ମିଳିବନାହିଁ ବୋଲି କେବେହେଲେ ମଧ୍ୟ ତାଙ୍କୁ କୌଣସି ସନ୍ଦେହ ବଶୀ କରି ଦେଉନଥିଲା । ତାଙ୍କ ବିଷୟରେ ଜଣେ ପାଦ୍ରୀ ଏକଦା କହିଥିବା କଥାଟି ଅନୁସାରେ, ''ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କ କଥାରେ ସର୍ବଦା ଏପରି କିଛି ବ୍ୟକ୍ତ ହୋଇ ପାରୁଥିଲା, ଯାହାଦ୍ୱାରା ଶୁଣୁଥିବା ସମସ୍ତେ ଅନୁଭବ କରୁଥିଲେ ଯେ ତାଙ୍କ ଭିତରେ ସତେ ଯେପରି କୌଣସି ଏକ ଶକ୍ତି ଜୀବନ୍ତ ହୋଇ ରହିଛି ଓ ତାଙ୍କୁ ଶବ୍ଦଗୁଡ଼ିକୁ ଯୋଗାଇ ଦେଉଛି ! ମୋଟେ ସନ୍ଦେହ ହେଉନଥିଲା ଯେ, ଏକ ଅଦୃଶ୍ୟ ଶକ୍ତି ହିଁ ସେହି ସମୟରେ ଆମ ଏବଂ ତାଙ୍କ ଉପରେ ବିଦ୍ୟମାନ ରହିଛି ଏବଂ ଉଭୟ ପକ୍ଷକୁ ପରିଚାଳିତ କରିନେଉଛି ।'' ଶ୍ରୀ କଲ୍‌ଲ୍ ସ୍ୱୟଂ ଥରେ କହିଥିଲେ ଯେ, ଯେତେବେଳେ ସେ ଗଣବିଦ୍ୟାଳୟର କାର୍ଯ୍ୟଟିରେ ହାତ ଦେଲେ, ସେତେବେଳେ ବାଧା ପରେ ବାଧାମାନେ ଆସି ପାହାଡ଼ ପରି ଠିଆ ହୋଇଗଲେ ଏବଂ ତଥାପି ସେଗୁଡ଼ିକୁ ଅତିକ୍ରମ କରିବା ଲାଗି ଈଶ୍ୱରଙ୍କ ଠାରୁ ସମାନୁପାତରେ ସାହସ ତଥା ବଳ ମଧ୍ୟ ପ୍ରାପ୍ତ ହେବାରେ ଆଦୌ କୌଣସି ବ୍ୟତିକ୍ରମ ହୋଇନଥିଲା । ବାଧାଗୁଡ଼ିକ ତାଙ୍କୁ କେବେହେଲେ ପରାହତ କରି ଦେଇନଥିଲେ, ବରଂ ତାଙ୍କୁ ବଳ ଆଣି ଦେଇଥିଲେ, ଏଗୁଡ଼ିକୁ ଅତିକ୍ରମ କରିବାକୁ ହେବ ବୋଲି ସିଏ ପ୍ରକୃତରେ ଅଧିକ ଖୁସୀ ହୋଇ ଯାଇଥିଲେ । ସେହି ଈଶ୍ୱରଙ୍କର ଅସରନ୍ତି ଭଲ ପାଇବା ହିଁ ତାଙ୍କୁ ସକଳ ପରିସ୍ଥିତିରେ ଉପଯୁକ୍ତ ଭାବରେ ସମର୍ଥ କରାଇ ନେଉଥିଲା ।

ଗୋଟିଏ ପ୍ରସଙ୍ଗରେ କଲ୍‌ଲ୍ ଥରେ କହିଥିଲେ: '' ପରମ ବିଧାତାଙ୍କର ବିଧାନ ବିଷୟରେ ଆମେ ପ୍ରକୃତରେ କେତେ କମ୍ ବୁଝୁ ! ଆମେ ତାଙ୍କର ବ୍ୟବସ୍ଥାଟିକୁ ଏତେ ଉଚ୍ଚ ଓ ଏତେ ଗଭୀର ବୋଲି ଭାବୁ ଯେ, ତେଣେ କୌଣସି କଳନା କରିବାକୁ ବି ସାହସ କରୁନାହୁଁ ।....ଆମର ସ୍ୱଭାବଟା ମଧ୍ୟ ଏପରି ହୋଇ ରହିଥାଏ ଯେ ଆମ ହୃଦୟଟା ଅଧିକତର ପରିମାଣରେ ଏହି ଦୈହିକ ଜୀବନ ସହିତ ଛାନ୍ଦି ହୋଇ ରହିଥାଏ । ଯେଉଁମାନେ କ୍ଷୁଧାରୁ କଷ୍ଟ ପାଆନ୍ତି ଓ ଆପଣାକୁ ଦାରୁଣ ଶୀତରୁ ରକ୍ଷା କରି ପାରନ୍ତିନାହିଁ, ସେମାନଙ୍କର କଥାକୁ ଚିନ୍ତା କରି ଆମେ ବ୍ୟଥିତ ହୋଇପଡୁ । କିନ୍ତୁ ଯାବତୀୟ ଦୁଃଖର ମୂଳ କାରଣକୁ ଆମେ ହୁଏତ ଆଦୌ ଜାଣି ନଥାଉ । ମନୁଷ୍ୟର ହୃଦୟଟି ପ୍ରକୃତରେ ତା' ଅନ୍ତରାତ୍ମାର ସକଳ ପ୍ରୟୋଜନ ସହିତ ଯୋଡ଼ିହୋଇ ରହିଥାଏ ଏବଂ ପୃଥିବୀପୃଷ୍ଠରେ ଯାବତୀୟ କ୍ଷୁଧା ତଥା ଅଭାବର ତାହାହିଁ ଜନନୀ ଭଳି କାର୍ଯ୍ୟକରେ । ଏବଂ, ଆମେ ମନୁଷ୍ୟମାନେ କ୍ୱଚିତ୍ ବୁଝିବାକୁ ସମର୍ଥ ହେଉ ଯେ, ଆମର ଅସଲ କ୍ଷୁଧା ହେଉଛି ପ୍ରକୃତରେ ସେହି ପରମେଶ୍ୱରଙ୍କ ଲାଗି କ୍ଷୁଧା; ସେହି ସୂର୍ଯ୍ୟରୂପୀ ଆଲୋକଉତ୍ସଟି ଲାଗି କ୍ଷୁଧା, ଯାହାକି ଆହାର ଏବଂ ପାନୀୟଦ୍ୱାରା ଆଦୌ ତୃପ୍ତ ହୋଇ ଯାଏନାହିଁ, ଯାହା କି ଏକ ଚିରନ୍ତନ ଜୀବନର କାମନା କରି ରହିଥାଏ ।

''ଠିକ୍ ସେହି କ୍ଷେତ୍ରରେ ହିଁ ଜାଗରଣର ଏକ ଆବଶ୍ୟକତା ରହିଥାଏ । ସେହି ଜାଗରଣ ଯେ ଆମର କ୍ଷୁଦ୍ର ଅନୁଭୂତିଗୁଡ଼ିକୁ ମାରିଦିଏ, ତାହା ଆଦୌ ନୁହେଁ, ମାତ୍ର ତାହା ଆମକୁ ଆହୁରି ଅଧିକ ଏବଂ ବୃହତ୍ ମଧ୍ୟକୁ ଉତ୍ତୋଳିତ କରିନିଏ; ଏବଂ ତାହାରି ଫଳରେ ହିଁ ଆମେ ଅସଲ ଅଭାବଟିକୁ ଉପଲବ୍ଧି କରିପାରୁ ଏବଂ ତାହାର ପରିପୂର୍ତ୍ତି ନିମନ୍ତେ ଈଶଶକ୍ତିକୁ କାର୍ଯ୍ୟ କରିବାକୁ ଦେବାରେ ସମ୍ମତି ପ୍ରଦାନ କରୁ । ଆମ ନିଜ ଦାରିଦ୍ର୍ୟ ଉପରେ ନାନା ପ୍ରକାରେ ତାଲି ପକାଇ ନୁହେଁ, ମାତ୍ର ଏକ ନୂତନ ଜୀବନ ନିମନ୍ତେ ଆମକୁ ଶକ୍ତିମାନ୍ କରିବା ଲାଗି ବାଟ ଛାଡ଼ିଦେଉ । ତାହାରିଦ୍ୱାରା ହିଁ ନୂତନ ମନୁଷ୍ୟଟିଏ ତଥା ନୂତନ ସମାଜଟିଏ ସମ୍ଭବ ହୋଇଥାଏ । କିନ୍ତୁ ଏହି ଜୀବନ ଆଦୌ ଗୋଟିଏ ବା ଦୁଇଟା ବର୍ଷରେ ସମ୍ଭବ ହୋଇ ଯାଏନାହିଁ, ଏଥିପାଇଁ ଅନନ୍ତ ଧୈର୍ଯ୍ୟର ପ୍ରୟୋଜନ ରହିଥାଏ । ଗୋଟିଏ ସାନ ସୋରିଷଦାନାକୁ ଗୋଟିଏ ଗଛରେ ପରିଣତ ହେବା ନିମନ୍ତେ ଅବଶ୍ୟ ସମୟ ଲାଗିଥାଏ ।

ଅନେକ ମନୁଷ୍ୟ ରହିଥାନ୍ତି ଯାହାଙ୍କ ଭିତରେ ଈଶଶକ୍ତି କାର୍ଯ୍ୟ କରି ପାରିବାଲାଗି କୌଣସି ଆଶା ନଥାଏ, ସେମାନେ ସତେଅବା ଟାଣୁଆ ଓ ଶୁଖିଲା ମଟାଳ ମାଟି ପରି ହୋଇ ରହିଥାନ୍ତି । ସେମାନଙ୍କର ହୃଦୟରେ ସନ୍ଦେହ ଭରି ରହିଥାଏ । ନିଜ ଅନ୍ତରାତ୍ମା ଉପରେ ମଧ୍ୟ ବିଶ୍ୱାସ ନଥାଏ । ଏବଂ, ସତ କହିବାକୁ ଗଲେ, କେବଳ ଅନ୍ତରାତ୍ମା ହିଁ ଏହି କ୍ଷେତ୍ରରେ ଯାହାକିଛି ସହାୟତା କରିଥାଏ । ଅବଶ୍ୟ ଅନ୍ତରାତ୍ମାକୁ ହଜାରଟା ବାଟ ଜଣାଥାଏ ଓ ସିଏ ଗୋଟିଏ ପରେ ଆଉ ଗୋଟାଏକୁ ପରୀକ୍ଷା କରି ଦେଖୁଥାଏ । ଏମିତି ହେଉ ହେଉ ଅସଲ ମୁହୂର୍ତ୍ତଟି ଆସି ପହଞ୍ଚିଯାଏ, ଟାଣ ମାଟି ତଥାପି ଫାଟେ, ବାଟଟିଏ ମିଳିଯାଏ ଓ ମଞ୍ଜିଟି ଅଙ୍କୁର ହୋଇ ବାହାରିଆସେ ।

''ଆହୁରି କେତେକ ହୃଦୟ ବାଲି ପରି ହୋଇ ରହିଥାଏ । ତା' ଉପରେ ଖରା ପଡ଼େ, ବର୍ଷା ବି ପଡ଼େ; ମାତ୍ର ସେଇଟା ଖାଲି ଧସ୍‌କି ଯିବାରେ ଲାଗିଥାଏ । ସେଭଳି ହୃଦୟକୁ ନେଇ ମଧ୍ୟ ଅନ୍ତରାତ୍ମା ନିଜର କାର୍ଯ୍ୟ କରିବାରେ ଲାଗିଥାଏ, ଅଳପ ଅଳପ କରି ଗଢ଼ି ଆଣୁଥାଏ । ଆହୁରି କେତେ ମାଟି ଟେଳା ଧରି ଯାଇଥାନ୍ତି; କପଟ, ମିଥ୍ୟା, ଘୃଣା ଓ ଦ୍ୱେଷ ଆଦି ନାନା ଆବର୍ଜନାକୁ ସାଇତି ରଖିଥାଆନ୍ତି - ବହୁ କାମନାଦ୍ୱାରା ଛାଉଣି ବାନ୍ଧି ରହିଥାନ୍ତି । ଅନ୍ତରାତ୍ମା ତା' ଭିତରେ ମଧ୍ୟ ପ୍ରବେଶ କରେ ଓ ମଇଳା ପଚା ପାଣିଗୁଡ଼ାକୁ ବାହାର କରିଦିଏ । ସେହି ମାଟି ଉପରେ ମଧ୍ୟ ସୂର୍ଯ୍ୟର ରଶ୍ମି ଆସି ପଡ଼େ ଓ ତାହା ଫଳ ଫଳାଇବାର ଯୋଗ୍ୟ ହୋଇଥାଏ । ଅନ୍ତରାତ୍ମା ସର୍ବଦା ଅତ୍ୟନ୍ତ ଧୈର୍ଯ୍ୟଶୀଳ ଏବଂ, ଆମେ ସମସ୍ତେ ଯେଉଁ ଆନନ୍ଦମୟ ସମ୍ଭାବନାଟି ଲାଗି ଏହି ପୃଥିବୀରେ ଜନ୍ମଗ୍ରହଣ କରିଛୁ, ତାହାରି ବିକାଶ ନଘଟାଇବା ପର୍ଯ୍ୟନ୍ତ ସିଏ ଆମକୁ ଆଦୌ ପରିତ୍ୟାଗ କରେନାହିଁ । ମାତ୍ର, ଆମକୁ ସେଥିଲାଗି ପୂର୍ଣ୍ଣ ସମ୍ମତି ମଧ୍ୟ ଦେବାକୁ ପଡ଼ିବ, ଆମକୁ ତାହାର ସହକର୍ମୀ ହେବାକୁ ପଡ଼ିବ ।

ତା'ନହେଲେ ମୋଟେ କିଛି ସମ୍ଭବ ହେବନାହିଁ। କାରଣ, ଅନ୍ତରାତ୍ମା କେବେହେଲେ ଜବରଦସ୍ତି ଆଦୌ କିଛି କରି ପାରିବନାହିଁ । ଅର୍ଥାତ୍ ଆମ ଉପରେ ହିଁ ଅଧିକ ଦାୟିତ୍ୱ; ଆମେ ତାକୁ ଚିହ୍ନିବା, ତାକୁ ନିଜର ସମ୍ମତି ଦେବା, ଆଦୌ ବିରୋଧ କରିବାନାହିଁ;- ତାହାରି ଡାକକୁ ଅବଶ୍ୟ ଶୁଣିବା । ତେବେ ଯାଇ ସିଏ ତା' କାମଟିକୁ କରିବ ।''

ଶ୍ରେଣୀଗୃହର ଗୋଟିଏ ଭାଷଣରେ ଏକଦା କଲ୍‌ଲ୍ କହିଥିଲେ: ''ଅନ୍ୟମାନଙ୍କୁ ମଧ୍ୟ ଭଲ ପାଇବା ଦେଇ ନପାରିଲେ ଜଣେ ପ୍ରକୃତ ଧର୍ମସ୍ଥ ବ୍ୟକ୍ତି କେବେହେଲେ ଅବିଚ୍ଛିନ୍ନ ଭାବରେ ଈଶ୍ୱରଙ୍କର ଭଲ ପାଇବା ଲାଭ କରି ପାରିବନାହିଁ । ତୁମେ କହିବ, ତୁମେ ନ୍ୟାୟରେ ରହିଛ ଏବଂ ସୀମା ଭିତରେ ଚଳୁଛ । ମାତ୍ର, ଭଲ ପାଇବାରେ ଜୀବନ ବଞ୍ଚିବାକୁ ଇଚ୍ଛା କରୁଥିଲେ ସେତିକି କଦାପି ଯଥେଷ୍ଟ ହେବାନାହିଁ । ସେତିକିଠାରୁ ଆହୁରି ଆଗକୁ ଯିବାକୁ ପଡ଼ିବ । ଏବଂ, ଅନ୍ୟମାନେ ମଧ୍ୟ ଏହା ବଦଳରେ ଠିକ୍ ସେହିପରି କରନ୍ତୁ ବୋଲି କୌଣସି ପ୍ରତ୍ୟାଶା ନରଖି ହିଁ ତାହା କରିବାକୁ ହେବ । କେବଳ ନିଜର ନ୍ୟାୟ ଓ ଅଧିକାରଗୁଡ଼ିକୁ ଜଗୁଥିଲେ ଏହି ପୃଥିବୀରେ ଦ୍ୱନ୍ଦ୍ୱ ଓ କଳହ ଲାଗି ରହିଥିବ । ନିଜ ଅଧିକାର ଉପରେ କମ୍ ଜିଦ୍ ଧରି ବସିଲେ ଯାଇ ପୃଥିବୀକୁ ଶାନ୍ତି ଆସିବ ଏବଂ ଏସବୁ ଆମେ ମସ୍ତିଷ୍କ ଭିତରେ ଭାବି ପାରୁଥିବା କେବଳ କୌଣସି କଥା ନୁହେଁ । ଏହାହେଉଛି ନିଜର ହୃଦୟକୁ ପ୍ରାଣବନ୍ତ କରି ରଖିବାର ଏକ ଆହ୍ୱାନ । ହୃଦୟ ନିର୍ମଳ ଏବଂ ଟାଣ ହୋଇ ପାରିଲେ ମସ୍ତିଷ୍କକୁ ଯଥାର୍ଥ ଭାବନା ମଧ୍ୟ ବଳେ ଆସିବ । ତେଣୁ ଭଲ ପାଇବା ବୃଦ୍ଧି ପାଉଥିବ, ତୁଚ୍ଛା ଆତ୍ମପ୍ରୀତି ଛିଣ୍ଡି ଛିଣ୍ଡି ଯାଉଥିବ ଓ ଶେଷକୁ ଅନ୍ତର୍ହିତ ହୋଇଯିବ । ମାନବୀୟ ସକଳ ବିକାଶସାଧନ ନିମନ୍ତେ ଏହାହିଁ ହେଉଛି ଅସଲ ଲକ୍ଷ୍ୟ । ଏହାରି ଦ୍ୱାରା ହିଁ ଈଶ୍ୱର ଆମର ପାଖେ ପାଖେ ରହିଥିବେ ଓ ଆମକୁ ସାହାଯ୍ୟ କରୁଥିବେ । ଆମେ ମନୁଷ୍ୟ ମାତ୍ରକେ ପ୍ରତ୍ୟେକେ ପୃଥିବୀରେ ଭୂମିଷ୍ଠ ହେବା ମାତ୍ରକେ ଏକ ସାନ ସମାଜରେ ପିତା ଓ ମାତା ଆମକୁ ତତ୍‌କ୍ଷଣାତ୍ ନିଜର କରିନିଅନ୍ତି; ସେମାନେ ଆମର ଶୁଶ୍ରୂଷା କରନ୍ତି, ସାନରୁ ବଡ଼ କରିନିଅନ୍ତି । ସେହି ସମାଜଟିକୁ ଆମେ ଘର ବୋଲି କହୁ । ସେହିଠାରୁ ହିଁ ଅତି ସାନ ସ୍ତରରୁ ହିଁ ଭଲ ପାଇବା ବିକଶିତ ହେବାକୁ ଆରମ୍ଭ କରିଥାଏ । ମାତ୍ର, ଆମେ ବଡ଼ ହୋଇ ଯାଉଥିବା ସଙ୍ଗେ ସଙ୍ଗେ ସେହି ଭଲ ପାଇବାଟି ଅଧିକରୁ ଅଧିକ ବୃହତ୍ତର ସମାଜ ଭିତରକୁ ସଂପ୍ରସାରିତ ହୋଇ ଯାଉଥାଏ । ତଥାପି, ଏହି ଘରୁ ହିଁ ଏହାର ସର୍ବପ୍ରଥମ ଅଙ୍କୁରଟି ସମ୍ଭବ ହୋଇ ଆସିଥାଏ । ଜୀବନଟି ଏକ ଯଥାର୍ଥ ଜୀବନରେ ପରିଣତ ହେବାକୁ ହେଲେ ସେଥିରେ କୌଣସି ବକ୍ରତା ଓ ଦୂରତା ଆସି ପଶିଗଲେ ମୋଟେ କାମ ଚଳେନାହିଁ ।

''ଭଲ ପାଇବାର ଏହି ଗୁଣଟି ଯେତିକି ବୃଦ୍ଧି ପାଇବାରେ ଲାଗିଥାଏ ଓ ସ୍ୱାର୍ଥପ୍ରଣୋଦିତ ଭାବରେ ଖାଲି ନିଜକୁ ଭଲ ପାଇବା ଅପସରି ଯାଏ, ଆମର ଆନନ୍ଦ

ମଧ୍ୟ ଠିକ୍ ସେହି ଅନୁପାତରେ ବୃଦ୍ଧି ଲାଭ କରିଥାଏ; କାରଣ ଏହି ଭଲ ପାଇବା ହେଉଛି ଯାବତୀୟ ସମ୍ବନ୍ଧ ସ୍ଥାପନର କ୍ଷେତ୍ରରେ ଏକ ସୂର୍ଯ୍ୟ ସଦୃଶ, ସକଳ ମୁକ୍ତିଲାଭର ଶିଖର ଏବଂ ମୁକୁଟ ସଦୃଶ । ଭଲ ପାଇବା ଅର୍ଥାତ୍ ଭଗବାନଙ୍କୁ ଉତ୍ସରୂପେ ଗ୍ରହଣ କରି ଜୀବନ ବଞ୍ଚିବା । ଯେଉଁ ମନୁଷ୍ୟ ଯେତେ ଟିକିଏ ହେଲେ ମଧ୍ୟ ଏକଥା ଜାଣିଛି, ସିଏ ଅବଶ୍ୟ ବୁଝିବ ଯେ ସ୍ୱାର୍ଥପର ଭାବରେ କେବଳ ନିଜକୁ ହିଁ ଭଲ ପାଇବା ପ୍ରକୃତରେ ଏହା ସମ୍ମୁଖରେ ଆଦୌ କିଛି ନୁହେଁ । ବିଚରା ଯେଉଁମାନଙ୍କୁ ଏହି ନିଜସର୍ବସ୍ୱ ପ୍ରେମଟା ହିଁ ମାଡ଼ି ବସିଛି, ସେମାନଙ୍କର ଜୀବନରେ ଆତ୍ମଭାବ ବା ଆନନ୍ଦର ଆଦୌ କୌଣସି ସ୍ଥାନ ନାହିଁ ।''

ଛାତ୍ରଛାତ୍ରୀମାନେ କଲ୍‌ଲ୍‌ଙ୍କର କ୍ଲାସ୍‌କୁ ଆସିବେ କି ନାହିଁ, ତାହା ସମ୍ପୂର୍ଣ୍ଣ ଭାବରେ ସେହିମାନଙ୍କର ଇଚ୍ଛାଧୀନ ଥିଲା । ଆଦୌ କିଛି ବାଧ୍ୟତାମୂଳକ ନଥିଲା । ମନ ହେଲେ ସେମାନେ ଆସିବେ, ନହେଲେ ନଆସିବେ, ଏହାହିଁ ଚଳୁଥିଲା । ନୂଆ ନୂଆ ବିଦ୍ୟାଳୟରେ ଆସି ପହଞ୍ଚିବାର କେତେଦିନ ପର୍ଯ୍ୟନ୍ତ କେତେଜଣ ଏହାକୁ ଗୋଟିଏ ବିଶେଷ ସ୍ୱାଧୀନତା ବୋଲି ମନେ କରୁଥିଲେ । କଲ୍‌ଲ୍ କ୍ଲାସ୍ ନେଉଥିବା ସମୟରେ ସେମାନେ ବାହାରେ ବୁଲୁଥିଲେ ଅଥବା କୌଣସି ଜାଗାରେ ସାଙ୍ଗ ହୋଇ ବସି ଗପ ବି କରୁଥିଲେ । ମାତ୍ର ସେହି ଅଭ୍ୟାସଟି ମୋଟେ ବେଶୀଦିନ ସେଭଳି ରହୁନଥିଲା । ସେମାନେ କ୍ରମେ ବଳେ ବଳେ କ୍ଲାସ୍‌ରେ ଆସି ଯୋଗ ଦେଉଥିଲେ ।

କଲ୍‌ଲ୍‌ଙ୍କୁ ମଣିଷ ସର୍ବଦା ଭଲ ଲାଗୁଥିଲେ । କେତେ ମଣିଷଙ୍କର କେତେ ଭଳି ଦୁଃଖ । ବହୁତଙ୍କର ଜୀବନରେ ସମ୍ଭବତଃ ଏଭଳି ଗୋଟିଏ ଘଟଣା ଘଟୁଥିଲା, ଯାହାଫଳରେ ସେମାନେ ବିଶ୍ୱାସ ହରାଇ ବସୁଥିଲେ; ନିଜ ଉପରୁ ଏବଂ ଅନ୍ୟ ମନୁଷ୍ୟମାନଙ୍କ ଉପରୁ ସକଳ ବିଶ୍ୱାସ ହରାଇ ପକାଉଥିଲେ । ପୃଥିବୀରେ ମନ୍ଦଟା ହିଁ ସର୍ବେଶ୍ୱର ବୋଲି ସେମାନଙ୍କୁ ଏକ ସଂଶୟ ଗ୍ରାସ କରି ପକାଉଥିଲା । ଏବଂ,ଏହି ମୂଳଭୂତ ବିଶ୍ୱାସଟି ନଥିଲେ ଜଣେ ଈଶ୍ୱରଙ୍କ ଉପରେ ମଧ୍ୟ କିପରି ବିଶ୍ୱାସ ରଖିପାରିବ ? ସେହିଭଳି ବହୁ ବିପନ୍ନ ମନୁଷ୍ୟ କଲ୍‌ଲ୍‌ଙ୍କ ପାଖରେ ଆସି ପହଞ୍ଚୁଥିଲେ । କଲ୍‌ଲ୍ ବିପନ୍ନମାନଙ୍କର ବିଶ୍ୱାସଟିକୁ ଫେରାଇ ଆଣୁଥିଲେ । ତତ୍କାଳୀନ ବହୁ ଶିକ୍ଷକ ଅଭିଭାବକ ମାନଙ୍କର ତାଡ଼ନାରେ ମଧ୍ୟ ବିରକ୍ତ ହୋଇ ଯାଉଥିଲେ । ସେମାନେ ବି ପରାମର୍ଶ ପାଇଁ କଲ୍‌ଲ୍‌ଙ୍କ ପାଖରେ ଆସି ପହଞ୍ଚୁଥିଲେ । ଶ୍ରେଣୀର ଅଧ୍ୟାପନା ବାହାରେ କଲ୍‌ଲ୍‌ଙ୍କର ଅଧିକାଂଶ ସମୟ ସେହିମାନଙ୍କ ସହିତ ହିଁ କଟୁଥିଲା । କାହାର ଗଣ୍ଠିଗୁଡ଼ାକୁ ଫିଟାଇ ତାକୁ ହାଲୁକା କରି ଦେବାଦ୍ୱାରା ସେ ନିଜେ ମଧ୍ୟ କମ୍ ହାଲୁକା ଅନୁଭବ କରୁନଥିବେ ।

- ୮ -

ବିଶପ୍ ନିକୋଲାଇ ଗ୍ରୁଣ୍ଡ୍‌ଭିଗ୍ ଏପରି ଏକ ଗଣବିଦ୍ୟାଳୟ ଦେଶରେ ସ୍ଥାପିତ ହେଉ ବୋଲି ସ୍ୱପ୍ନ ଦେଖୁଥିଲେ, ଯେଉଁଠାରେ ଉଚ୍ଚତର ଶିକ୍ଷାସ୍ଥାନଗୁଡ଼ିକ ପରି ଗ୍ରୀକ୍ କିମ୍ବା ରୋମାନ୍ ଗ୍ରନ୍ଥଗୁଡ଼ିକର ଅଧ୍ୟୟନ ହେଉନଥିବ, ମାତ୍ର ଯେଉଁଠାରେ ନିଜ ଦେଶର ମନୁଷ୍ୟମାନଙ୍କ ବିଷୟରେ ଏକ ଅତ୍ୟନ୍ତ ଅନ୍ତରଙ୍ଗ ପରିଚୟ ମିଳିଯିବ। ସେଠାରେ କେତେମାସ ରହି ଜଣେ ଛାତ୍ର ନିଜର ଦେଶକୁ ଭଲ ପାଇବ, ନିଜର ଭାଷାକୁ ଭଲ ପାଇବ ଏବଂ ନିଜକୁ ଜଣେ ଦାୟିତ୍ୱସଚେତନ ମନୁଷ୍ୟ ହିସାବରେ ଗଢ଼ିନେବା ନିମନ୍ତେ ପ୍ରେରଣା ପାଇ ପାରିବ। ସେଠାରେ ତୁଚ୍ଛା ଜ୍ଞାନ ହିସାବରେ ଆଦୌ କିଛି ଭରି ଦିଆ ଯିବନାହିଁ, କିନ୍ତୁ ସଂପୃକ୍ତ ଛାତ୍ରଟିକୁ ନୂତନ ଜୀବନରେ ଭରିଦେବ ଏବଂ ସିଏ ସଂକଳ୍ପବଦ୍ଧ ଭାବରେ ଭବିଷ୍ୟ ନିମନ୍ତେ ରାସ୍ତାଟିଏ ତିଆରି କରିନେଇ ପାରିବ। ଯାହାକିଛି ମଣିଷର ଉତ୍ସାହକୁ ମାରିଦେଉଛି, ତାହାକୁ କାଢ଼ି ଫିଙ୍ଗିଦେବାକୁ ପଡ଼ିବ। ତରୁଣମାନଙ୍କୁ ଜଣେ ଜଣେ ସଚେତନ ନାଗରିକରୂପେ ତିଆରି କରିବାକୁ ହେଲେ ଯାହାକିଛି ଆବଶ୍ୟକ, ଏହି କଳ୍ପିତ ବିଦ୍ୟାଳୟ ଗୁଡ଼ିକରେ ସେମାନେ ତାହା ପାଇ ପାରୁଥିବେ।

୧୮୫୦ ମସିହାରୁ ହିଁ ଏହି ଦିଗରେ ପ୍ରୟୋଗମାନ ଆରମ୍ଭ ହୋଇଗଲା। ଏହିପରି ଏକ ପ୍ରୟୋଗ କ୍ରିଷ୍ଟେନ୍ କଲ୍‌ଲ୍ ଆରମ୍ଭ କଲେ; କଲ୍‌ଲ୍, ଯିଏକି ନୂଆ କରି ରାସ୍ତାଟିଏ ତିଆରି କରିବାକୁ କୌଣସି ଭୟ କରୁନଥିଲେ। କଲ୍‌ଲ୍ ଜଣେ ଶିକ୍ଷକର ପ୍ରଶିକ୍ଷଣ ନେଇ ସାରିଥିଲେ ଓ ଦେଶର ନାନା ଆତ୍ମୁ ବନ୍ଧୁମାନଙ୍କର ସହାୟତା ଓ ସହଯୋଗରେ ରୁଇସ୍‌ଲିଙ୍ଗଠାରେ ନିଜର ବିଦ୍ୟାଳୟଟିଏ ଆରମ୍ଭ କଲେ। ମୋଟେ ପାଞ୍ଚମାସ ଲାଗି ଶିକ୍ଷାଦାନ ହେଉଥିଲା ଏବଂ ଖର୍ଚ୍ଚରୂପେ ଛାତ୍ରମାନଙ୍କୁ ଖୁବ୍ ବେଶୀ ଅର୍ଥ ଦେବାକୁ ମଧ୍ୟ ପଡୁନଥିଲା। ତେଣୁ, ଦରିଦ୍ରରୁ ଦରିଦ୍ରତମ ଘରୁ ମଧ୍ୟ ଛାତ୍ରମାନେ ଆସି ସେହି ବିଦ୍ୟାଳୟରେ ଯୋଗ ଦେଇ ପାରିଲେ। ଗ୍ରୁଣ୍ଡ୍‌ଭିଗ୍ ତ କଳ୍ପନା କରିଥିଲେ ଯେ ପୂରାଦେଶରେ ଗୋଟିଏ ମାତ୍ର ବୃହତ୍ ଆକାରର ଏହି ବିଦ୍ୟାଳୟ ରହିବ। ଉଭୟ ଶିଶୁ ଓ ବଡ଼ମାନଙ୍କ ସକାଶେ କଲ୍‌ଲ୍ ପ୍ରାଥମିକ ବିଦ୍ୟାଳୟମାନ ବି ଆରମ୍ଭ କରି ଦେଇଥିଲେ ଏବଂ କେତେ ବର୍ଷପରେ ଖରାମାସରେ ଝିଅମାନଙ୍କ ପାଇଁ ମଧ୍ୟ ଅନୁରୂପ ବ୍ୟବସ୍ଥା କରାଗଲା। ହଁ, ବଡ଼ଦିନ ବେଳକୁ ଯେଉଁ ଫସଲଅମଳ ଛୁଟୀ ହେଉଥିଲା, ସେତେବେଳେ ପ୍ରାଥମିକ ନୂତନ ବିଦ୍ୟାଳୟଗୁଡ଼ିକର ଶିକ୍ଷକମାନଙ୍କ ନିମନ୍ତେ ସ୍ୱତନ୍ତ୍ର ପ୍ରଶିକ୍ଷଣର ଏକ କାର୍ଯ୍ୟକ୍ରମ ଚାଲିଲା। ଏହି ଯାବତୀୟ କାର୍ଯ୍ୟ ପାଇଁ ନିର୍ଭର କରି

ପାରିବାଭଳି କୌଣସି ସରକାରୀ ସାହାଯ୍ୟ ମିଳିବ ବୋଲି ମଧ୍ୟ କଲ୍‌ଲ୍ ବିଶେଷ ଆଶା ପୋଷଣ କରିନଥିଲେ । ସ୍ଥାନୀୟ ସ୍ୱାୟତ୍ତଶାସନର ସଂସ୍ଥାଗୁଡ଼ିକ ମଧ୍ୟ ତାଙ୍କୁ କୌଣସି ସାହାଯ୍ୟ ଦେବା ବିଷୟରେ ଚିନ୍ତା କରିନଥିଲେ; ସେମାନେ କେବଳ ଗୋଟିଏ ବିଦ୍ୟାଳୟକୁ ଅର୍ଥଦାନ କରୁଥିଲେ, ସେଇଟିକୁ କଲ୍‌ଲ୍‌ଙ୍କର ସକଳ କାର୍ଯ୍ୟକ୍ରମର ବିରୋଧୀରୂପେ ହିଁ ଛିଡ଼ା କରା ଯାଇଥିଲା । ଏବଂ, ସେଇଟି ସ୍ୱୟଂ ତିଷ୍ଠି ପାରିଲାନାହିଁ, କଲ୍‌ଲ୍ ଆଗକୁ ଆଗକୁ ଯିବାରେ ଲାଗିଥିଲେ ।

ଛାତ୍ରମାନେ ପଠିତ ବିଷୟଗୁଡ଼ିକୁ କେତେଦୂର ଗ୍ରହଣ କରିପାରିଲେ ବା ନପାରିଲେ, ସେଥିଲାଗି ସେମାନଙ୍କୁ କୌଣସି ପରୀକ୍ଷାରେ ବସିବାକୁ ପଡୁନଥିଲା । ମୂଳ ଉଦ୍ଦେଶ୍ୟ ଥିଲା ଯେ, ସେମାନଙ୍କର ଅନ୍ତର ଭିତରେ ଏପରି ଏକ ଜାଗରଣ ସମ୍ଭବ ହୋଇ ପାରିଥିବ, ଯାହାକି ସେମାନଙ୍କୁ ଉଚିତ ସମୟରେ ବାଟଟିଏ ସ୍ଥିର କରାଇ ନେବାକୁ ଉଦ୍‌ବୁଦ୍ଧ କରିବ ଓ ତା'ପରେ ସେମାନେ ଆବଶ୍ୟକ ଜ୍ଞାନବସ୍ତୁଗୁଡ଼ିକୁ ଆପେ ସଂଗ୍ରହ କରିନେଇ ପାରିବେ । କଲ୍‌ଲ୍‌ଙ୍କ ବିଦ୍ୟାଳୟରେ କୌଣସି ଆଡ଼ମ୍ବର ନଥିଲା; ପ୍ରସିଦ୍ଧ ବ୍ୟକ୍ତିମାନଙ୍କୁ ଅତିଥିରୂପେ ଡାକି ସେଠାରେ କୌଣସି ଉଦ୍‌ଘାଟନ ଉତ୍ସବ ହେଉନଥିଲା । ସାଧାରଣ ଆଖିକୁ ପ୍ରଭାବିତ କଲାଭଳି ସେହିଭଳି ଯାବତୀୟ ଅନୁଷ୍ଠାନ କଲ୍‌ଲ୍‌ଙ୍କର ସର୍ବଦା ଇଚ୍ଛାବିରୋଧୀ ମଧ୍ୟ ଥିଲା । ସିଏ ଭାବୁଥିଲେ, ଯଦି କେହି ତାଙ୍କ ବିଦ୍ୟାଳୟ ବିଷୟରେ ପ୍ରକୃତରେ କିଛି ଜାଣିବାକୁ ଇଚ୍ଛା କରୁଥିବେ, ତେବେ ସିଏ ସ୍କୁଲକୁ ନିଜେ ଆସିବେ, ନିଜ ଆଖିରେ ସବୁ ଦେଖିବେ; ଇଚ୍ଛା ଥିଲେ ଅବାଧରେ ବହୁତ ଦିନ ମଧ୍ୟ ରହିପାରିବେ । ମାତ୍ର, ସବୁଠାରୁ ଭଲ ହେବ, ଯଦି ସିଏ ବିଦ୍ୟାଳୟରେ ଜଣେ ଛାତ୍ରରୂପେ ଯୋଗ ଦେଇ ପାରିବେ । ତେବେ ଯାଇ କଲ୍‌ଲ୍ ନାମକ ସେହି ବିଚିତ୍ର ବ୍ୟକ୍ତିଙ୍କର ଏକ ସମ୍ପୂର୍ଣ୍ଣ ପରିଚୟ ପାଇପାରିବେ ।

ଡାଲୁମ୍ ବିଦ୍ୟାଳୟରେ କଲ୍‌ଲ୍‌ଙ୍କର ସଂସ୍ପର୍ଶରେ ଆସିଥିବା ଆଉଜଣେ ଲେଖିଛନ୍ତି : ଶ୍ରୀଯୁକ୍ତ କଲ୍‌ଲ୍ ଯାହାକିଛି କହନ୍ତି, ତାହାର ଠିକ୍ କଲମ୍ବସ୍‌ଙ୍କର ଅଣ୍ଡା ପରି ପ୍ରଭାବ ପଡ଼ିଥାଏ; ଶୁଣିବା ସମୟରେ ଲାଗେ ଯେ ସିଏ ଆଦୌ କୌଣସି ଗମ୍ଭୀର କଥା କହୁନାହାନ୍ତି । ବାକ୍ୟଗୁଡ଼ିକ ଭାରି ସିଧା, ସରଳ ଏବଂ ଶୁଣିବା ସଙ୍ଗେ ସଙ୍ଗେ ଆଖି ଆଗରେ ଅନୁରୂପ ଚିତ୍ରଗୁଡ଼ିକ ଅତ୍ୟନ୍ତ ସ୍ୱାଭାବିକ ଭାବରେ ଉକୁଟି ଉଠୁଥାଏ । ମନେ ହେଉଥାଏ, ସିଏ ସତେଅବା ଗପଟିଏ କହି ଶୁଣାଉଛନ୍ତି ଏବଂ ଯେକୌଣସି ବ୍ୟକ୍ତି ମଧ୍ୟ କିଞ୍ଚିତ୍ ଚେଷ୍ଟା କଲେ, ପ୍ରାୟ ସେହି କଥାଗୁଡ଼ିକୁ ନିଶ୍ଚୟ କହିପାରିବ । ମାତ୍ର, ସେହି କଥାଗୁଡ଼ିକରେ ସତେଅବା ପର ଲାଗିବାକୁ ଆରମ୍ଭ କରେ, ଶ୍ରୋତାମାନଙ୍କର ଅନ୍ତର୍ଚିତ୍ତରେ ଏକ ଅଭିନବ ସକ୍ରିୟତାରେ ଦାନା ବାନ୍ଧି ବାନ୍ଧି ଆସୁଥାଏ । ତା'ପରେ ସେଗୁଡ଼ିକ ଆଉ ଆଦୌ ମାତ୍ର କେତୋଟି ଭାବନା ବୋଲି ମନେ ହୁଏନାହିଁ, ଆଖି ଆଗରେ ସତେ ଯେପରି ସାକାର ହୋଇ ଦୃଷ୍ଟିଗୋଚର ହୋଇଯାଏ, ସକଳ

ଅନ୍ତଃକରଣକୁ କେତେ ନା କେତେ ଉର୍ଦ୍ଧ୍ୱକୁ ବହନ କରି ନେଇଯାଏ ଓ ନିଜ ଭିତରେ କେତେ କ'ଣ ଗୀତ ଗାଇ ଉଠିଲାପରି ଲାଗେ ଏବଂ ନିଜ ଭିତରେ ଏପରି ଏକ ବୃହତ୍ ଶୁଭଶକ୍ତି ତାକୁ ଅଧିକାର କରିନିଏ ଯେ, ଆଉ ସେଥିରୁ ନିଜକୁ ବଞ୍ଚିତ କରିବାକୁ ମୋଟେ ମନ ହୁଏନାହିଁ। ଏକ ଅଭୂତପୂର୍ବ ବିମୋଚନ ଓ ଶକ୍ତିମତ୍ତାର ଅନୁଭବ ହେବାକୁ ଆରମ୍ଭ କରେ। ପ୍ରକୃତରେ କହିବାକୁ ଗଲେ, ଶ୍ରୀଯୁକ୍ତ କଲ୍ଡ୍‌ଙ୍କୁ ଆଦୌ ବର୍ଣ୍ଣନା କରି କହି ହେବନାହିଁ। ତେଣୁ ସ୍ୱୟଂ ସେଠାରେ ଉପସ୍ଥିତ ରହି ତାଙ୍କର ବାକ୍ୟଗୁଡ଼ିକ ଶୁଣିବାକୁ ପଡ଼େ। ସିଏ ସ୍ୱୟଂ ଯାହା, ସେ କହୁଥିବା ଶବ୍ଦଗୁଡ଼ିକ ମଧ୍ୟ ଠିକ୍ ତାହାହିଁ। ତା' ନହେଲେ ଡେନ୍‌ମାର୍କ୍‌ର ଜଣେ ଚାଷୀ ଏବଂ ତାଙ୍କ ମଧ୍ୟରେ ଆଦୌ କୌଣସି ଫରକ ରହିଥିବାର ଲାଗେନାହିଁ।

ତାଙ୍କ ବିଦ୍ୟାଳୟଟିକୁ ଦେଖିବାକୁ ଓ ତାଙ୍କୁ ଭେଟିବାକୁ ଆସିଥିବା ସୁଇଡେନ୍‌ର ଏକ ସମ୍ବାଦପତ୍ରର ଜଣେ ପ୍ରତିନିଧି ମଧ୍ୟ ନିଜର ଅନୁଭବ ବିଷୟରେ ଏହିଭଳି ବର୍ଣ୍ଣନାଟିଏ ରଖି ଯାଇଛନ୍ତି: ଆମକୁ ଗୋଟିଏ ଘରେ ନେଇ ବସାଇ ଦିଆଗଲା ଓ ଆମେ ପ୍ରାୟ ଏକଘଣ୍ଟା ଅପେକ୍ଷା କରିବା ପରେ ଶ୍ରୀଯୁକ୍ତ କଲ୍ଡ୍ ଆସି ପହଞ୍ଚିଥିଲେ। କଲ୍ଡ୍‌ଙ୍କର ସବୁକିଛି ନିତାନ୍ତ ମୌଳିକ ଏବଂ ଅସାଧାରଣ ବୋଲି ମୁଁ ଆଗରୁ ଶୁଣିଥିଲି ସତ, ମାତ୍ର ସିଏ ପ୍ରକୃତରେ ଜଣେ କିଭଳି ମନୁଷ୍ୟ ହୋଇଥିବେ, ମୋ'ର ସେ ବିଷୟରେ କୌଣସି ସ୍ପଷ୍ଟ ଧାରଣା ନଥିଲା। ମୋ' ସମ୍ମୁଖରେ ଜଣେ ମଧ୍ୟବୟସର ବ୍ୟକ୍ତି ଆସି ଦଣ୍ଡାୟମାନ ହୋଇଗଲେ, ପୂରା ବାରିହୋଇ ପଡୁଥିବା ଚେହେରାଟିଏ। ଦେହରେ ମୋଟା ତନ୍ତବୁଣା କପଡ଼ା ଓ ମୁଣ୍ଡରେ ଟୋପି। ସିଏ ନୀରବ ଅଥଚ ସୁନିଶ୍ଚିତ ଚାହାଣିରେ ମୋ' ଆଡ଼କୁ ଅନାଇଲେ ଏବଂ ମୁଁ ନିଜର ପରିଚୟ ଦେଇ ଆସିଥିବାର ଉଦ୍ଦେଶ୍ୟ ବ୍ୟକ୍ତ କରିବାରୁ କଲ୍ଡ୍ ଈଷତ୍ ହସଟିଏ ହସି ମୋ' ସହିତ କରମର୍ଦ୍ଦନ କରିଥିଲେ। ତା'ପରେ ଦୁହେଁ ଆସନ ଗ୍ରହଣ କଲୁ ଓ କାଳବିଳମ୍ବ ନକରି ଅଭିପ୍ରେତ କଥୋପକଥନଟିକୁ ଆରମ୍ଭ କରି ଦେଇଥିଲୁ। ସିଏ ଯାହାସବୁ ସେଦିନ କହିଥିଲେ, ସେଥିରୁ ପରିଷ୍କାର ଜଣାଗଲା ଯେ, ସେଇ ହେଉଛନ୍ତି ତାଙ୍କ ଦେଶର ସର୍ବପ୍ରଥମ ବ୍ୟକ୍ତି ଯିଏକି ଦୃଢ଼ତାର ସହିତ ଘୋଷଣା କରିଥିଲେ ଯେ, ଲୋକଶିକ୍ଷଣ ଲାଗି ଉଦ୍ଦିଷ୍ଟ ଏହି ବିଦ୍ୟାଳୟ ଗୁଡ଼ିକରେ ତଥାକଥିତ ତଥ୍ୟଜ୍ଞାନର ବିତରଣ ଆଦୌ ପ୍ରଧାନ ଉଦ୍ଦେଶ୍ୟ ହୋଇ ରହିବନାହିଁ। ଛାତ୍ରମାନଙ୍କର ଅନ୍ତର ଭିତରେ ଏକ ଜାଗରଣ ସମ୍ଭବ କରିବା ଓ ଲୋକଜୀବନ ସହିତ ଏକାତ୍ମତା ଘଟାଇବା ହିଁ ମୁଖ୍ୟ ଅଭୀଷ୍ଟ ହୋଇ ରହିବ। ଏହି କଥାଟି ମୁଖ୍ୟତଃ ମୁକ୍ତ ପ୍ରବଚନ ଦ୍ୱାରା ହିଁ କରାଯିବ, ଯେପରିକି ତାହା ଶ୍ରୋତାମାନଙ୍କର ହୃଦୟକୁ ସ୍ପର୍ଶ କରିବ। ତଦ୍‌ବ୍ୟତୀତ କିଛି ଇତିହାସ ଏବଂ କାହାଣୀ ମଧ୍ୟ କୁହାଯିବ। ''ଯାହାକିଛି ଘଟିବ, ସବୁ ଭିତରୁ ହିଁ ଘଟିବ''- ଏହାହିଁ ତାଙ୍କର ସର୍ବମୂଳ ସୂତ୍ର ହୋଇ ରହିଥିଲା। ତା'ପରେ ମାତୃଭାଷା, କିଛି ଲିଖନ ଓ ଗଣିତ, ତା'ପରେ ଯାଇ କିଛି ବିଜ୍ଞାନ। ପ୍ରାୟ ସବୁକିଛି ପ୍ରଶିକ୍ଷଣ ଅବସର

ସମୟର ଏକତ୍ର କଥାବାର୍ତ୍ତାରୁ ହିଁ ହୋଇଥାଏ । କଲ୍‌ଲ୍ ଓ ତାଙ୍କର ସହକର୍ମୀମାନେ (ଅଧିକାଂଶ ହେଉଛନ୍ତି ତାଙ୍କରି ପୁରୁଣା ଛାତ୍ର) ସବୁ ସମୟରେ ଶିକ୍ଷାର୍ଥୀମାନଙ୍କର ମେଳରେ ହିଁ ରହିଥାନ୍ତି, କଥାବାର୍ତ୍ତା ଲାଗି ରହିଥାଏ ଏବଂ ଏକ ସକ୍ରିୟ ପ୍ରଭାବ ମଧ୍ୟ ପଡ଼ି ପାରୁଥାଏ । ହଁ, ଶେଷରେ ଏପରି ଏକ ମନ୍ତବ୍ୟ ଦିଆଯାଇଛି ଯେ, କୌଣସି କାର୍ଯ୍ୟାନ୍ତରରେ ଶ୍ରୀ କଲ୍‌ଲ୍ ଯେତେବେଳେ ବିଦ୍ୟାଳୟରେ ଉପସ୍ଥିତ ରହୁନଥିଲେ, ସେତେବେଳେ ଅବଶ୍ୟ ସବୁ ଅନ୍ୟଭଳି ହୋଇ ଯାଉଥିଲା ଏବଂ ସିଏ ଯେ ବର୍ତ୍ତମାନ ନାହାନ୍ତି, ତାହା ତତ୍‌କ୍ଷଣାତ୍ ଧରା ପଡ଼ି ଯାଉଥିଲା ।

ଯେତେବେଳେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ପ୍ରଥମେ ହିଁ ଲୋକବିଦ୍ୟାଳୟର ଚିନ୍ତା ଆରମ୍ଭ କଲେ, ସେତେବେଳେ ସିଏ କଳ୍ପନା କରୁଥିଲେ ଯେ ତାହା ଏକ ବୃହତ୍ ବିଦ୍ୟାଳୟ ହେବ, ଯେଉଁଠାରେ କି ପରୀକ୍ଷା ରହିବନାହିଁ କିମ୍ବା ପାରମ୍ପରିକ ଆଉକିଛି ବାହ୍ୟ ଚାପ ମଧ୍ୟ ରହିବନାହିଁ । ସେଠାରୁ ଯେଉଁ ଯୁବକମାନେ ପ୍ରଶିକ୍ଷିତ ହୋଇ ବାହାରିବେ, ସେମାନେ ମାତୃଭାଷା, ଇତିହାସ ଓ ସାହିତ୍ୟ ପ୍ରଭୃତି ମୁଖ୍ୟ ବିଷୟର ଅଧ୍ୟୟନ କରିବେ ଏବଂ ଅଧ୍ୟୟନ ପରେ ଡେନ୍‌ମାର୍କ୍‌ର ଲୋକଜୀବନ-କ୍ଷେତ୍ରରେ ନେତୃତ୍ୱ ଦେଇ ପାରିଲାଭଳି ଭୂମିକା ଅର୍ଜନ କରିବେ । ସେଠାରେ କୃଷି ମଧ୍ୟ ଏକ ଆନୁଷଙ୍ଗିକ ପାଠ୍ୟ ହୋଇ ରହିବ ଓ ପାଠ୍ୟକ୍ରମ ଦୁଇବର୍ଷ ନିମନ୍ତେ ତିଆରି ହେବ । ଶ୍ରୀଯୁକ୍ତ କଲ୍‌ଲ୍ ଆପଣାର ପ୍ରୟୋଗରେ ଏଥିରେ ବହୁତ କିଛି ବଦଳାଇ ଦେଇଥିଲେ । ଶିକ୍ଷାର୍ଥୀମାନେ ମୋଟେ ପାଞ୍ଚମାସ ପାଇଁ ଆସିବେ, ସେମାନଙ୍କୁ ଆଦୌ ଏତେଗୁଡ଼ାଏ ବିଷୟ ପଢ଼ିବାକୁ ପଡ଼ିବନାହିଁ । ପଦ୍ଧତି ହିସାବରେ ଭାଷଣ ଓ କଥୋପକଥନ ହିଁ ମୁଖ୍ୟ ହୋଇ ରହିବ । ଅନ୍ତର୍ଜାଗରଣ ହିଁ ମୁଖ୍ୟ ଲକ୍ଷ୍ୟ ହେବ । ପରମେଶ୍ୱର ତାଙ୍କଦ୍ୱାରା ସୃଷ୍ଟ ମନୁଷ୍ୟମାନଙ୍କୁ କେତେ ଭଲ ଯେ ପାଆନ୍ତି,- ଏହି ବିଶ୍ୱାସଟିର ସଂକ୍ରମଣ ଉପରେ ସବୁଠାରୁ ଅଧିକ ଗୁରୁତ୍ୱ ଦିଆଯିବ । ଏବଂ, ଯୁଗପତ୍ ଭାବରେ, ନିଜ ଦେଶ ଡେନ୍‌ମାର୍କ୍‌ର ଉଜ୍ଜ୍ୱଳ ଭବିଷ୍ୟ ବିଷୟରେ ମଧ୍ୟ ଏକ ଅବିଚଳ ବିଶ୍ୱାସ ଅବଶ୍ୟ ରହିଥିବ ।

ଶ୍ରେଣୀଗୃହରେ କଲ୍‌ଲ୍‌ଙ୍କର ଭାଷଣ-କାର୍ଯ୍ୟକ୍ରମ ରହିଥିବା ସମୟରେ ବାହାରୁ ମଧ୍ୟ କେତେ କେତେ ବ୍ୟକ୍ତି ସେଥିରେ ସାମିଲ୍ ହେବାକୁ ଆସୁଥିଲେ । ଅତିଥିମାନେ ଏହାକୁ ନିଜ ଜୀବନର ଏକ ବିଶେଷ ଅବସର ପରି ଅନୁଭବ କରୁଥିଲେ । ଦିନେ ଦିନେ ବିଦ୍ୟାଳୟର ମଧ୍ୟାହ୍ନଭୋଜନ ସମୟରେ ଏହି ବହିରାଗତଙ୍କ ସଂଖ୍ୟା ଶହେ ବି ହୋଇ ଯାଉଥିଲା । ଖାଲି ଉପରେ ଉପରେ ଭାସୁଥିଲା ଭଳି ଯୋଉମାନେ କଥା କହୁଥିଲେ ଅଥବା କେବଳ ବାହ୍ୟ ଭଦ୍ରତା ଦେଖାଇବାରେ ଆଚରଣରେ ମନଇଚ୍ଛା ଲମ୍ଫି ଯାଉଥିଲେ, କଲ୍‌ଲ୍ ସେମାନଙ୍କୁ ଯଥାସମ୍ଭବ ଏଡ଼ି କରି ରହୁଥିଲେ । ସହରର ଲୋକଙ୍କ ପ୍ରତି ମଧ୍ୟ ତାଙ୍କର ସବୁବେଳେ ସଂଶୟ ରହିଥିଲା । ମାତ୍ର, ସହରରୁ ବି କ'ଣ କମ୍ ଲୋକ ଆସୁଥିଲେ ! ତାଙ୍କର କଥାକୁ ଶୁଣିବାପାଇଁ ଯେତେ ନୁହେଁ, ଖାଲି ତାଙ୍କୁ ଦେଖିବାକୁ ମଧ୍ୟ ଆସୁଥିଲେ । ମାତ୍ର, ସତକୁ

ସତ ଜଣେ ବ୍ୟକ୍ତି ହୃଦୟର ସହିତ ତାଙ୍କ କଥାକୁ ଶୁଣୁଛି ବୋଲି ଅନୁଭବ ହେବା ମାତ୍ରକେ ଶ୍ରୀଯୁକ୍ତ କଲ୍‌ଲ୍ ଉଷ୍ଣ ହୋଇ ଉଠୁଥିଲେ ଏବଂ ତାଙ୍କର ସମସ୍ତ କୁଣ୍ଠା ଓ ସଂଶୟ ଅନ୍ତର୍ହିତ ହୋଇ ଯାଉଥିଲା । ତାଙ୍କର ନୀଳ ରଙ୍ଗର ଆଖିଦିଓଟି ଉଜ୍ଜ୍ୱଳ ହୋଇ ଉଠୁଥିଲା । ଶ୍ରୋତାମାନଙ୍କର ସକଳ କାର୍ପଣ୍ୟ ଏବଂ ସଂଶୟକୁ ମଧ୍ୟ ସିଏ ମୁହୂର୍ତ୍ତକ ମଧ୍ୟରେ ଭାଙ୍ଗିଦେଇ ପାରୁଥିଲେ । ତାଙ୍କର ଆଚରଣମୁଦ୍ରାରେ ଦମ୍ଭ ଅଥବା କର୍ତ୍ତୃତ୍ୱର ହୁଏତ ଏତେଟିକିଏ ସଙ୍କେତ ମଧ୍ୟ ନଥିଲା, - କାହାରି କାହାରି ମତରେ ତାଙ୍କର ଚେହେରାଟି ଉପରେ ସତେଅବା ପ୍ରାୟ ଏକ ନାରୀସୁଲଭ ସଂବେଦନଶୀଳତା ହିଁ ଅଧିକ ମାତ୍ରାରେ ପ୍ରତିଫଳିତ ହେଉଥିଲା;- ମାତ୍ର ତାଙ୍କର ଉପସ୍ଥିତି ତଥା ମୁଖନିଃସୃତ କଥା ସର୍ବତ୍ର ସଂପୃକ୍ତ ସମସ୍ତଙ୍କୁ ଅସାଧାରଣ ଭାବରେ ପ୍ରଭାବିତ କରି ପାରୁଥିଲା । ସାଧାରଣ ମଞ୍ଚରେ ଠିଆ ହେବା ମାତ୍ରକେ ସିଏ ଅଜାଣତରେ ମଧ୍ୟ ଭାରି ସଙ୍କୋଚ ଅନୁଭବ କରୁଥିଲେ ।

କଲ୍‌ଲ୍ ଆପଣାର ସମୁଦାୟ ଜୀବନକାଳରେ ମିଥ୍ୟା, କପଟ ଏବଂ ମୃତ୍ୟୁ-ପ୍ରବୃତ୍ତି ବିରୁଦ୍ଧରେ ଲଢ଼େଇ କରି ଆସିଥିଲେ । ନିଜର ଶିକ୍ଷାଦାନ ମାଧ୍ୟମରେ ଶିକ୍ଷାର୍ଥୀମାନଙ୍କୁ ସିଏ ସର୍ବଦା ଏକ ବଳିଷ୍ଠ ଜୀବନଦୃଷ୍ଟି ଯୋଗାଇ ଦେବାକୁ ହିଁ ଉଦ୍ୟମ କରୁଥିଲେ, - ଏପରି ଏକ ଦୃଷ୍ଟି, ଯାହାକୁ ସମ୍ମୁଖରେ ରଖି ଜୀବନଟିଏ ବଞ୍ଚିହେବ, ଯାହା ଆମର ଦୈନନ୍ଦିନ ସାଧାରଣ ଜୀବନକୁ ମଧ୍ୟ ଅର୍ଥପୂର୍ଣ୍ଣ କରି ଦେଇପାରିବ । ତାଙ୍କର ବକ୍ତବ୍ୟଗୁଡ଼ିକ କେବେହେଲେ ମିଶନାରୀମାନଙ୍କର ଲମ୍ବା ପ୍ରବଚନ ସଦୃଶ ବିରକ୍ତିକର ହେଉନଥିଲା ଏବଂ ତାହାକୁ ଶୁଣିବା ମାତ୍ରକେ କ'ଣ ଅତ୍ୟନ୍ତ ନୂତନ ଅଥଚ ଅତିଆବଶ୍ୟକ ସତ୍ୟଟିଏ ବିଜୁଳି ପରି ଶରୀର ଭିତରକୁ ସଞ୍ଚରିତ ହୋଇ ଯାଉଥିଲା । ସିଏ ସର୍ବଦା ଏହି କଥାଟିକୁ ସତେଅବା ସବାଆଗ କହିବାକୁ ଇଚ୍ଛା କରୁଥିଲେ ଯେ, ଜଣେ ଜଣେ ମନୁଷ୍ୟ ହିସାବରେ ଆମେ ପ୍ରତ୍ୟେକେ ସର୍ବପ୍ରଥମେ ଜଣେ ମନୁଷ୍ୟ ଭଳି ହିଁ ଜୀବନଟିଏ ବଞ୍ଚିବା ନିମନ୍ତେ ଆଗ୍ରହୀ ହେବା ଏବଂ, ଭଲ ପାଇବାର ଯେ ଆମ ଜୀବନରେ କେଡ଼େ ବଡ଼ ଭୂମିକାଟିଏ ରହିଛି, ତାହାକୁ ଅନୁଭବ କରିବା । ସର୍ବପ୍ରଥମେ ଏତିକି ସମ୍ଭବ ହେଲେ ଯାଇ ତା'ପରେ ହୁଏତ ଈଶ୍ୱରୀୟ ଆଉ ସବୁକିଛି ଆଡ଼କୁ ଆମର ବାଟଟି ପ୍ରସାରିତ ହୋଇଯାଇ ପାରିବ । ମଣିଷଟିଏ କହିଲେ ଯେ ଖାଲି ତା'ର ମନ୍ଦଗୁଡ଼ାକୁ ବୁଝାଇବ, ସେକଥା ଆଦୌ ନୁହେଁ; ମଣିଷମାନେ ଅନେକ ସମୟରେ ନିଜକୁ ଯେପରି ଗୋଟାସୁଦ୍ଧା ଭଲ ବୋଲି ଭ୍ରମ କରିଥାନ୍ତି, ସେମାନେ ପ୍ରକୃତରେ ତାହା ମଧ୍ୟ ନୁହନ୍ତି । ତେଣୁ, କଲ୍‌ଲ୍ ସମସ୍ତଙ୍କୁ କହୁଥିଲେ, ଯଦି ଆମେ କେତେବେଳେ କାହା ଭିତରେ ମନୁଷ୍ୟପଣର ମାତ୍ର କଣାଟିଏ ବି ଦେଖିବା, ଆମେ ତାହାକୁ ଅବଶ୍ୟ ମହତ୍ତ୍ୱ ପ୍ରଦାନ କରିବା ଏବଂ, ଚାରିଆଡ଼ ଅନ୍ଧାର ଘୋଟି ରହିଥିବା ପରି ଲାଗୁଥିବା ସମୟରେ ସେହି ଆଲୋକକଣାଟିକୁ ହିଁ ତଥାପି ସ୍ୱୀକାର କରି ପାରୁଥିବା । କଲ୍‌ଲ୍ ସେହି

ଦୃଷ୍ଟିଟିକୁ ହିଁ ଭଲ ପାଇବାର ଦୃଷ୍ଟି ବୋଲି କହୁଥିଲେ । ଅର୍ଥାତ୍, ପ୍ରତ୍ୟେକ ମନୁଷ୍ୟ ଭିତରେ ଆମକୁ ଯାହା ଆଲୋକକଣା ପରି ଦେଖାଯାଉଛି, ସେଇଟି ହେଉଛି ତା' ଭିତରେ ରହିଥିବା ଭଲ ପାଇବାର ଅଂଶଟି; ଏବଂ, ସେହିପରି, ଆମ ଭିତରର ଯେଉଁ ଆଖିଟି ଆଉଜଣେ ମନୁଷ୍ୟ ଭିତରେ ଅଲୋକକଣାଟିଏ ଦେଖି ପାରୁଛି, ଆମେ ସେଇଟିକୁ ଆମ ଭିତରେ ମଧ୍ୟ ସେହି ଭଲ ପାଉଥିବାର ଉପାଦାନଟି ବୋଲି ବୁଝିବା । ସବୁ ଗୁଣରେ ଏବଂ କେବଳ ଭଲଦ୍ୱାରା ପରିପୂର୍ଣ୍ଣ ହୋଇ ରହିଥିବା ମନୁଷ୍ୟମାନଙ୍କ ମେଳରେ ହିଁ ଜୀବନ ଅତିବାହିତ କରାଯାଇ ପାରିବ ବୋଲି ଅପେକ୍ଷା କରି ରହିଲେ ତାହା ନିର୍ବୋଧତା ହିଁ ହେବ । ମାତ୍ର, ଏହିପରି ଗୋଟିଏ ଆଲୋକକଣା ଅର୍ଥାତ୍ ଗୋଟିଏ ଗୋଟିଏ ଭଲର ଆବିଷ୍କାର କରୁ କରୁ ଆମେ ହୁଏତ ପରସ୍ପରକୁ ମୂଳତଃ ସେହି ଆଲୋକର ହିଁ ପରିଚୟରେ ଦେଖିବା ପାଇଁ କ୍ରମେ ସମର୍ଥ ହୋଇ ଆସିବା । ଜଣେ ମନୁଷ୍ୟ ଆଉଜଣେ ମନୁଷ୍ୟର ପାଖରେ ରହିଛି ବୋଲି ଅନୁଭବ କରି ଜାଣିବା ।

ଏହିପରି ଭାବରେ ମନୁଷ୍ୟକୁ ମନୁଷ୍ୟର ନିକଟବର୍ତ୍ତୀ କରାଇ ଆଣି ଶ୍ରୀଯୁକ୍ତ କଲ୍‌ଲ୍ ଏପରି ଏକ ସହଜୀବନର ଚିତ୍ର ଦେଖି ପାରୁଥିଲେ, ଯେଉଁଠାରେ କି ଜଣେ ଆଉଜଣକ ସହିତ ସମ୍ବନ୍ଧିତ ହୋଇ ରହିଥିବା ପରି ମଧ୍ୟ କ୍ରମେ ଅନୁଭବ କରିବାକୁ ଆରମ୍ଭ କରିବ । ସେଇଥିରୁ ଏକ ଦାୟିତ୍ୱବୋଧ ଜନ୍ମଲାଭ କରିବ, ଯାହାକି ଆଦୌ କିଛିହେଲେ ଲଦି ଦେଉନଥିବ, ମାତ୍ର ନିଜର ସର୍ବୋତ୍ତମ ଇଚ୍ଛା ତଥା ବଳଗୁଡ଼ିକ ସହିତ ଲଢ଼ି ଲଢ଼ି ଆଗକୁ ଯିବାପାଇଁ ଉଦ୍‌ବୁଦ୍ଧ କରିଆଣିବ । ଗୋଟିଏ ଉଦାହରଣ ଦେଇ କଲ୍‌ଲ୍ କହୁଥିଲେ ଯେ, ଯେତେବେଳେ ଆମେ ଘାସ କାଟିବା ନିମନ୍ତେ କ୍ଷେତକୁ ଯାଉ, ଆମେ ସବୁବେଳେ ତଳେ ପଡ଼ି ଯାଇଥିବା ଘାସଗଛ ଗୁଡ଼ିକରେ ହିଁ ଆମର କାର୍ଯ୍ୟଟିକୁ ଆରମ୍ଭ କରୁ । ଠିକ୍ ସେହିପରି, ଯେଉଁମାନେ ସମାଜରେ ସବାତଳେ ପଡ଼ି ରହିଛନ୍ତି, ସେହିମାନଙ୍କ ନିମନ୍ତେ ହିଁ ଆମର ବିଶେଷ ସଂବେଦନା ରହିଥିବା ଉଚିତ । କାରଣ, ଆମେ ସମସ୍ତେ ଏକାଠି ଏହି ସମାଜଟିକୁ ସମ୍ଭବ କରିଛୁ ଏବଂ ତେଣୁ ସମାଜପ୍ରତି ଆମର ରହିଥିବା ଆମ ଦାୟିତ୍ୱଟିକୁ ଆମେ ଅବଶ୍ୟ ବହନ କରିବା । ଏବଂ, ବଡ଼ ହୁଅନ୍ତୁ ଅଥବା ସାନ ହୁଅନ୍ତୁ, ନିଜେ ପ୍ରତିବଦଳରେ କିଛି ଦେଇକରି ହିଁ ଆମେ କାହାଠାରୁ କିଛି ନେବାକୁ ମନ କରିବା । ଏଇଟି ହେଉଛି ଜୀବନର ଗୋଟିଏ ଅସଲ ନିୟମ ଏବଂ ପ୍ରତ୍ୟେକ ବ୍ୟକ୍ତି ତାହାକୁ ଅବଶ୍ୟ ମନେ ରଖିବ, ସେହି ଅନୁସାରେ ବଞ୍ଚିବାକୁ ଚେଷ୍ଟା ମଧ୍ୟ କରିବ । ଶ୍ରୀ କଲ୍‌ଲ୍‌ଙ୍କର ବିଚାରଗୁଡ଼ିକ କୌଣସି ଅଧ୍ୟୟନ-ପ୍ରକୋଷ୍ଠରୁ ଆଦୌ ସାଉଁଟା ହୋଇ ଆସୁନଥିଲା; କ୍ଷେତରୁ ବାଳୁଙ୍ଗା ବାଛିବା ସମୟରେ ବା ସେହିପରି ଆଉକିଛି କାର୍ଯ୍ୟରେ ମଗ୍ନ ହୋଇ ରହିଥିବା ସମୟରେ ହିଁ ସିଏ ସେଗୁଡ଼ିକୁ ଠାବ କରି ଆଣୁଥିଲେ ।

ଶ୍ରୀଯୁକ୍ତ କ୍ରିଷ୍ଟେନ୍ କଲ୍‌ଲ୍ ତାଙ୍କ ସମୟର ଏତେ ଏତେ ସାଧାରଣ ମଣିଷଙ୍କୁ ଏକ ନୂତନ ଜୀବନଧର୍ମୀ ଆସ୍ପୃହା ଆଡ଼କୁ ପ୍ରକୃତରେ କିପରି ସଚଳ କରିଦେଇ ପାରିଲେ ?

ସାଧାରଣ ମଣିଷମାନେ ତ ଅତ୍ୟନ୍ତ ଅଭ୍ୟସ୍ତ ଭାବରେ ଏକ କାନରେ ଯାହାସବୁକୁ ଶୁଣନ୍ତି, ତାହାକୁ ଆର କାନରେ ବାହାର କରି ଦେଇଥାନ୍ତି । ତା'ର ସବାବଡ଼ କାରଣଟି ହେଉଛି ଯେ ସିଏ ସାନ ଓ ବଡ଼ ପ୍ରତ୍ୟେକ ସତ୍ୟକୁ ଏକ ନୂତନ ପରିଚ୍ଛେଦରେ ଉପସ୍ଥାପିତ କରି ପାରୁଥିଲେ । ଏପରିକି, ବିଶପ୍ ଗ୍ରୁନ୍ଟଭିଗ୍‌ଙ୍କ ଦ୍ୱାରା ଲିଖିତ 'ପୃଥିବୀ ଇତିହାସ'ରୁ ମଧ୍ୟ ଶ୍ରୀଯୁକ୍ତ କଲ୍ଡ୍‌ଙ୍କୁ ସାଧାରଣ ଜନସମୂହଙ୍କ ସକାଶେ ସାମଗ୍ରୀ ମିଳି ଯାଇଥିଲା । ପୃଥିବୀରେ ଅତୀତରେ ଯେଉଁସବୁ ଘଟଣା ଘଟିଯାଇଛି, ସାଧାରଣ ମନୁଷ୍ୟମାନେ ସେଗୁଡ଼ିକ ବିଷୟରେ ଅବଗତ ରହିବେ ବୋଲି ସେ ହୃଦୟଙ୍ଗମ କରିଥିଲେ । ସଂସାରରେ ବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତିର ଗୃହରେ ଆଲୋକଟିକୁ ଅବଶ୍ୟ ପ୍ରଜ୍ୱଳିତ କରି ଦିଆଯାଉ । ମନୁଷ୍ୟଜୀବନର ଇତିହାସରେ ପ୍ରକୃତରେ ଯେ ପୃଷ୍ଠଭୂମିରୂପେ ବୃହତ୍ ଝରକାଟିଏ ରହିଛି, ସବୁ ମଣିଷ ସେହି କଥାଟିକୁ ଜାଣନ୍ତୁ । ଏହି ମୂଳ ପ୍ରଭେଦଟି ଉପରେ ମହତ୍ତ୍ୱଦେଇ ହିଁ କଲ୍ଡ୍ ତାଙ୍କ ବିଦ୍ୟାଳୟଟିକୁ ଆରମ୍ଭ କରିଥିଲେ । ଅନ୍ୟମାନେ ତଥ୍ୟ ପରେ ତଥ୍ୟ ଆଣି ଗଦା କରି ଦେଉଥିଲେ, କଲ୍ଡ୍ ସବାଆଗ ସଂପୃକ୍ତ ଛାତ୍ରମାନଙ୍କର ହୃଦୟଟିକୁ ଗତିଶୀଳ କରାଇବାକୁ ଚେଷ୍ଟା କରୁଥିଲେ । ଏବଂ, ଗତିଶୀଳ କରାଇବାର ସେହି କାର୍ଯ୍ୟଟିକୁ ସେ ଏପରି ଅନନ୍ୟସାଧାରଣ ଭାବରେ କରାଉଥିଲେ, ଯାହାଦ୍ୱାରା କି ଏକ ବହୁଦୀର୍ଘ କାଳରୁ ପ୍ରତ୍ୟେକ ମନୁଷ୍ୟ ଏହି ପୃଥିବୀଟିକୁ ଉତ୍ତରାଧିକାର ରୂପେ ସତତ ବହନ କରି ଆସିଛି ବୋଲି ଅତ୍ୟନ୍ତ କ୍ରିୟାଶୀଳ ଭାବରେ ଅନୁଭବ ହୋଇ ପାରୁଥିଲା । ଏକ ଅଙ୍ଗୀକାରବଦ୍ଧତାର ଅନୁଭବ ହୋଇ ପାରୁଥିଲା ।

ଏକ ସୁଦୂର ଗ୍ରାମାଞ୍ଚଳରେ ନିଜକୁ କଷଟି ପଥରରେ ପକାଇ କ୍ରମପରିଚିତ କରି ଆଣୁଥିବା ଏହି ବିଚିତ୍ର ବ୍ୟକ୍ତିଟି ସମ୍ବନ୍ଧରେ ଗ୍ରୁନ୍ଟଭିଗ୍‌ଙ୍କ ଆଗରେ କାନକୁହାମାନେ ନାନା କଥା ଯାଇ କହୁଥିଲେ । କଲ୍ଡ୍ ନିଜ ବିଦ୍ୟାଳୟରେ ଯାହାସବୁ କରୁଛନ୍ତି ଓ ଯାହାସବୁ କହୁଛନ୍ତି, ସେଥିରୁ ସିଏ ମୋଟେ ଜଣେ ଠିକ୍ ଖ୍ରୀଷ୍ଟିଆନ୍ ନୁହନ୍ତି ବୋଲି ପ୍ରମାଣିତ ହୋଇ ଯାଉଛି, ଏପରି ମନ୍ତବ୍ୟଟିଏ ମଧ୍ୟ ସେଯାଏ ଯାଇ ପହଞ୍ଚି ଯାଉଥିଲା । ସ୍ୱୟଂ ବିଶପ୍ ମଧ୍ୟ ହୁଏତ ସେସବୁରେ ହୁଏତ କିଛି ସତ୍ୟ ତଥାପି ଥାଇପାରେ ବୋଲି ସଂଶୟ କରିବାକୁ ଆରମ୍ଭ କରି ଦେଇଥିବେ । ଏହି କଥାଟିକୁ ତାଙ୍କର ଜଣେ ଘନିଷ୍ଠ ସହକର୍ମୀ ଏବଂ ଅନୁରକ୍ତ ମଧ୍ୟ ବୁଝି ପାରୁଥିଲେ, ଯିଏକି ଘଟଣାକ୍ରମେ ଶ୍ରୀଯୁକ୍ତ କଲ୍ଡ୍‌ଙ୍କ ବିଦ୍ୟାଳୟରେ ଯାଇ କିଛି କାଳ ରହିଥିଲେ ଓ ଯାବତୀୟ କାର୍ଯ୍ୟକ୍ରମ ସହିତ ଅନ୍ତରଙ୍ଗ ଭାବରେ ପରିଚିତ ହୋଇ ପାରିଥିଲେ । ସିଏ ଏକ ଦୀର୍ଘ ପତ୍ରରେ ପ୍ରକୃତ ସ୍ଥିତିଗୁଡ଼ିକୁ ବର୍ଣ୍ଣନା କରି ଗ୍ରୁନ୍ଟଭିଗ୍‌ଙ୍କୁ ଲେଖି ଜଣାଇ ଦେଇଥିଲେ । ସେହି ପତ୍ରଟିକୁ ସେଠି ବିଶପ୍‌ଙ୍କର ଗହଣରେ ରହୁଥିବା ଅନ୍ୟ ବ୍ୟକ୍ତିମାନେ ମଧ୍ୟ ପାଠ କଲେ । ଏହାରି ପରିଣାମ ସ୍ୱରୂପ ହିଁ ବନ୍ଧୁମାନଙ୍କର ଏକ ଗୋଷ୍ଠୀରେ ୧୮୬୬ ମସିହା ସେପ୍ଟେମ୍ବର ଏଗାର ତାରିଖ ଦିନ ଶ୍ରୀ କଲ୍ଡ୍ ତାଙ୍କର ଶିକ୍ଷାକାର୍ଯ୍ୟ ସମ୍ବନ୍ଧରେ ବିସ୍ତୃତ

ଭାବରେ ସବୁ କହନ୍ତୁ ବୋଲି ବିଶପ୍‌ଙ୍କ ପକ୍ଷରୁ ଆମନ୍ତ୍ରଣ କରାଗଲା । ସେହି ପ୍ରଖ୍ୟାତ ଅବସରଟିରେ କଲ୍ଲ୍ ସେଠାରେ ଉପସ୍ଥିତ ସମସ୍ତଙ୍କ ଆଗରେ ନିଜ ଅନ୍ତରର ସକଳ କଥାକୁ ଅଜାଡ଼ି ଦେଇଥିଲେ । କଥିତ ଅଛି, କଥାଗୁଡ଼ିକୁ ଶୁଣୁ ଶୁଣୁ ଶ୍ରୀ ଗ୍ରୁଣ୍ଡ୍‌ଭିଗ୍ କେତେବେଳେ ଅତି ଦୁଃଖରେ କାନ୍ଦି ପକାଉଥାନ୍ତି ତ ଆଉ କେତେବେଳେ ତାଙ୍କ ଆଖିରୁ ଆନନ୍ଦାଶ୍ରୁ ମଧ୍ୟ ଉଛୁଳି ପଡୁଥାଏ । ଡେନ୍‌ମାର୍କ୍‌ର ଲୋକବିଦ୍ୟାଳୟର ଇତିହାସରେ ତାହା ଏକ ସ୍ମରଣୀୟ ଦିବସ ହୋଇ ରହିଯାଇଛି ।

ଶ୍ରୀ କଲ୍ଲ୍‌ଙ୍କ ବିଦ୍ୟାଳୟକୁ କେବଳ ଯେ ସମ୍ପନ୍ନ ଘରର ସନ୍ତାନମାନେ ଆସୁଥିଲେ ତାହା ନୁହେଁ, ନିତାନ୍ତ ଦରିଦ୍ର ଚାଷୀଘର ମାନଙ୍କରୁ ମଧ୍ୟ ଆସୁଥିଲେ । କାହାକୁ ଜଣକୁ ହେଲେ ତା' ଆର୍ଥିକ ସ୍ଥିତିର କାରଣରୁ କେବେ ଫେରାଇ ଦିଆ ଯାଉନଥିଲା । କେତେ କିଏ ଆସି ପହଞ୍ଚି ଯାଉଥିଲେ; ଅନେକ ବାପାମାଆ ନିଜର ଦୁଷ୍ଟ ସନ୍ତାନମାନଙ୍କୁ ମଧ୍ୟ ସେହି ବିଦ୍ୟାଳୟକୁ ପଠାଇଦେଲେ ସଂଶୋଧନ ହୋଇଯିବ ବୋଲି ବିଶ୍ୱାସ କରୁଥିଲେ । କେଉଁମାନଙ୍କର ଅନ୍ତର୍ଗତ ଅସୁବିଧାମାନ ରହିଥିଲା ଓ ତାହା ବିଶେଷ ମାନସିକ ଶୁଶ୍ରୂଷା ଆବଶ୍ୟକ କରୁଥିଲା । ଆଉ କେଉଁମାନଙ୍କ ମଥା ପିଲାଦିନରୁ ହିଁ ଅବିକଶିତ ଅବସ୍ଥାରେ ରହି ଯାଇଥିଲା । କଲ୍ଲ୍‌ଙ୍କ ଦ୍ୱାର ଏହି ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଥିଲା, ସମସ୍ତଙ୍କ ସକାଶେ ତାଙ୍କର ସମୟ ରହିଥିଲା । ପ୍ରତ୍ୟହ ପ୍ରାୟ କୋଡ଼ିଏଜଣ ବହିରାଗତ ସେଠାରେ ଭୋଜନ କରୁଥିଲେ ଏବଂ ସମସ୍ତଙ୍କୁ ମିଶାଇ ଦୁଇଶହ ବ୍ୟକ୍ତିଙ୍କ ସକାଶେ ଖାଦ୍ୟ ରନ୍ଧା ହେଉଥିଲା । ନିଜ ଜୀବନର ସର୍ବଶେଷ ବର୍ଷଟି ଶ୍ରୀ କଲ୍ଲ୍‌ଙ୍କୁ ଅନେକ ସମୟରେ ସେମାନଙ୍କୁ ଅଖିଆ ଫେରାଇ ଦେବାକୁ ପଡୁଥିଲା ବୋଲି ଶୁଣାଯାଏ । ଅତ୍ୟନ୍ତ ଦୁଃଖର ସହିତ ତାହା କରା ଯାଉଥିଲା, କାରଣ ସମସ୍ତେ ବସିବା ପାଇଁ ଯଥେଷ୍ଟ ସ୍ଥାନ ନଥିଲା । ଏହି ଦୃଷ୍ଟିରୁ କଲ୍ଲ୍ ଆହୁରି ବେଶୀ ଜାଗା ଥିବା ଅଟ୍ଟାଳିକାଟିଏ ତିଆରି କରାଇବେ ବୋଲି ମନସ୍ଥ ମଧ୍ୟ କରିଥିଲେ । ମାତ୍ର, ମୃତ୍ୟୁ ତାହା କରାଇ ଦେଲାନାହିଁ । ନାନା କାର୍ଯ୍ୟ, ନାନା ଦାୟିତ୍ୱ ଓ ନାନା ସଂଘର୍ଷ ଶ୍ରୀ କଲ୍ଲ୍‌ଙ୍କ ଠାରୁ ନିରନ୍ତର କେତେ କ'ଣ ଦାବୀ କରୁଥିଲା ସିନା, ମାତ୍ର ନିଜ ଭିତରେ ଏକ ସଦାନିର୍ଭରଯୋଗ୍ୟ ପୋତାଶ୍ରୟ ମଧ୍ୟରେ ସୁରକ୍ଷିତ ହୋଇ ରହିଥିବାରୁ ସିଏ ଶାନ୍ତ ଅଥଚ ସ୍ଥିରସଂକଳ୍ପ ଭାବରେ ସବୁକିଛି ତୁଲାଇ ପାରୁଥିଲେ । ଜଣେ ତାଙ୍କୁ ଆମେରିକାର ଆବ୍ରାହମ୍ ଲିନ୍‌କଲ୍‌ନ୍‌ଙ୍କ ସହିତ ତୁଳନା କରିଛନ୍ତି: ଆଦୌ କୌଣସି କଥାରେ ବିଚଳିତ ନୁହନ୍ତି, ନିଜର ପଥଟିକୁ ସର୍ବଦା ଅତ୍ୟନ୍ତ ସ୍ପଷ୍ଟ ଭାବରେ ଦେଖି ପାରୁଥାନ୍ତି, ମୋହମୁକ୍ତ ଭାବରେ ଯେକୌଣସି ସ୍ଥିତି ଉପରେ ଦୃଷ୍ଟିପାତ କରି ପାରନ୍ତି ଏବଂ ଛଳନାଶୂନ୍ୟ ଭାବରେ ନିଜର ଭାବଟିକୁ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ନିଜର ବାଟଟିକୁ ଚାଲି ମଧ୍ୟ ପାରନ୍ତି । ସର୍ବୋପରି ଅଳପ କଥାରେ

ଏବଂ ଆବଶ୍ୟକ ପଡ଼ିଲେ ସାଧାରଣ ଉଦାହରଣ ଗୁଡ଼ିକ ସାହାଯ୍ୟରେ ନିଜର କଥାଟିକୁ କହି ସମସ୍ତଙ୍କର ହୃଦ୍‌ବୋଧ କରାଇଦେଇ ପାରନ୍ତି ।

ଯାବତୀୟ ପ୍ରବଚନ ଏବଂ କଥୋପକଥନରେ ଶ୍ରୀଯୁକ୍ତ କଲ୍ଲ୍ ସବୁବେଳେ ସେଇ ଗୋଟିଏ କଥାକୁ ହିଁ ଫେରି ଆସୁଥିଲେ: ଆମ ଜୀବନର ଯାବତୀୟ ସମ୍ବନ୍ଧକ୍ଷେତ୍ରରେ ଭଲ ପାଇବା ହିଁ ଆମର ସର୍ବମୂଳ ଉଦ୍‌ପ୍ରେରକ ହୋଇ ରହିଥିବା ଉଚିତ । ଜୀବନରେ ଆମେ ଯେଉଁ ଅନ୍ୟ ମନୁଷ୍ୟଙ୍କର ସମ୍ପର୍କରେ ଆସୁଛୁ ବା ସେମାନଙ୍କ ସହିତ ଏକତ୍ର ବାସ କରୁଛୁ, ସେମାନଙ୍କ ପ୍ରତି ଆମେ କୋମଳ ହେବା, - ସେମାନଙ୍କୁ ସମଗ୍ର ଭାବରେ ବୁଝିବା । ଅର୍ଥାତ୍, ଜଣେ ତୁଚ୍ଛା ନୀତିବାଦୀ ହୋଇ ସେମାନଙ୍କୁ ଆଦୌ ଫିଙ୍ଗି ଦେବନାହିଁ । ନୀତିବାଦୀ ସବୁକିଛିକୁ ଅତ୍ୟନ୍ତ ବିମୁଖତା ସହିତ ଦେଖୁଥାଏ; ତେଣୁ ଏହି ପୃଥିବୀରେ ରହିଥିବାର ଅସଲ ଆନନ୍ଦଟିକୁ ଆଦୌ ଲାଭ କରି ପାରେନାହିଁ । ସଂବେଦନଶୀଳ ହୋଇ ଦେଖିବା ହେଉଛି ଯଥାର୍ଥ ଦେଖିବା, - ଆମ ଜୀବନରେ ତାହାହିଁ ସର୍ବଦା ଅଶେଷ ଆନନ୍ଦର କାରଣ ହୋଇ ରହିଥାଏ । ଶ୍ରୀଯୁକ୍ତ କଲ୍ଲ୍ ଏକ କଥୋପକଥନରେ ଏକଦା କହିଥିଲେ, "ଆମେ ଅନ୍ୟମାନଙ୍କ ଭିତରେ ରହିଥିବା ଭଲଗୁଡ଼ିକୁ ହିଁ ଦେଖି ମନ୍ଦ ବା ଦୋଷଗୁଡ଼ିକୁ କ୍ଷମା ଦେଇ ପାରନ୍ତେ ନାହିଁ ? କେଉଁ କାରଣରୁ ଯେ ଜଣେ ବ୍ୟକ୍ତି ମନ୍ଦ ଏବଂ ଦୋଷ ଭିତରେ ବାନ୍ଧିହୋଇ ପଡ଼ିଛି, ଆମେ ଅଧିକାଂଶ ସମୟରେ ସେହି ବିଷୟରେ ପ୍ରକୃତରେ କେତେ ଅଳପ ଜାଣିଥାଉ ! ତାହା କରିପାରିଲେ ଆମେ ପ୍ରକୃତରେ ନିଜକୁ ଏବଂ ଅନ୍ୟ ପକ୍ଷଟିକୁ କେତେ କେତେ ବିରକ୍ତି ଓ ଉତ୍ତେଜନାରୁ ରକ୍ଷା କରି ନପାରନ୍ତେ ! ତଦ୍ୱାରା ସ୍ଥିତିରେ ଏକ ଯଥାର୍ଥ ପରିବର୍ତ୍ତନର ସମ୍ଭାବନା ମଧ୍ୟ ଅବଶ୍ୟ ରହି ପାରୁଥାନ୍ତା ।" କଲ୍ଲ୍ ସବୁବେଳେ କହୁଥିଲେ ଯେ, ବିଶେଷ କରି ଶିକ୍ଷକ ଏବଂ ଅଧ୍ୟାପକମାନଙ୍କର ଏହି କଥାଟିକୁ ସବୁବେଳେ ମନେ ରଖିଥିବା ଉଚିତ ।

କଲ୍ଲ୍ ବାହାରକୁ ସ୍ୱଭାବତଃ ଶୀତଳ ଦେଖା ଯାଉଥିଲେ । ସେ ଆଦୌ ସେହି ଅନ୍ୟ କାଟର ଶିକ୍ଷକମାନଙ୍କ ପରି ନଥିଲେ, ଯେଉଁମାନେ ନିଜର ଛାତ୍ରମାନଙ୍କୁ ସତେଅବା ବେକରେ ଲଟକାଇ ରଖିଥାନ୍ତି । ମାତ୍ର, ତାଙ୍କ ହୃଦୟ ସର୍ବଦା ଭଲ ପାଇବାଦ୍ୱାରା ପୂର୍ଣ୍ଣ ହୋଇ ରହିଥିଲା, - ମନୁଷ୍ୟମାନଙ୍କୁ ଭଲ ପାଇବା ଦ୍ୱାରା । ସେ ସବୁବେଳେ ସେମାନଙ୍କୁ ସାହାଯ୍ୟ କରିବାଲାଗି ତତ୍ପର ହୋଇ ରହିଥିଲେ । ଏବଂ, ତାଙ୍କ ମୁଖରୁ ନିଃସୃତ ଶବ୍ଦଗୁଡ଼ିକରେ ହିଁ ସେହି ସାହାଯ୍ୟ କରିବାର ଅମିତ ଶକ୍ତି ପୂର୍ଣ୍ଣ ହୋଇ ରହିଥିଲା । କଥାରେ କେତେବେଳେ ହେଲେ କୌଣସି ଛଳନା ନଥିଲା । ସିଏ ଯେତେବେଳେ ଯାହା କହିବା ଉଚିତ ବୋଲି ମନେ କରୁଥିଲେ, ସମ୍ପୂର୍ଣ୍ଣ ଅବକ୍ର ଭାବରେ ତାହାହିଁ କରି ପାରୁଥିଲେ । ଅସଲ ଭଲ ପାଇବା ଓ ଅସଲ ସତ୍ୟ, ଏହି ଦୁଇଟି ଭିତରେ କ'ଣ ପ୍ରକୃତରେ କୌଣସି ପ୍ରଭେଦ ରହିଥାଏ କି ? ଦୈନନ୍ଦିନ ସାଧାରଣ ଜୀବନର ସମସ୍ୟାଗୁଡ଼ିକରେ ହେଉ ଅଥବା ଆଦର୍ଶଗୁଡ଼ିକରେ ହେଉ,

ସକଳ କ୍ଷେତ୍ରରେ ହିଁ ମନୁଷ୍ୟମାନଙ୍କୁ ସାହାଯ୍ୟ କରିବା, ଏକ ସମାଧାନ ଦର୍ଶାଇଦେଇ ପାରିବା ଏବଂ ଅଡୁଆଗୁଡ଼ିକୁ ସଜାଡ଼ି ଦେଇ ସଂପୃକ୍ତ ସମସ୍ତଙ୍କୁ ହାଲୁକା ହୋଇଯିବାରେ ସହାୟ ହେବା, ସମ୍ଭବତଃ ତାହାକୁ ହିଁ ତାଙ୍କର ସବୁଠାରୁ ବଡ଼ ଗୁଣ ତଥା ବଡ଼ ସାମର୍ଥ୍ୟ ବୋଲି କୁହାଯାଇ ପାରିବ । ଏବଂ, ସିଏ ଯାହାକୁ ଯାହାକିଛି ଯେତେବେଳେ କହୁଥାଆନ୍ତୁ ପଛକେ, ତାହା ଭିତରେ, ଭଗବାନ ଯେ ମନୁଷ୍ୟମାନଙ୍କୁ ପ୍ରକୃତରେ ଭଲ ପାଆନ୍ତି ଓ ତେଣୁ ସେମାନଙ୍କୁ ସନ୍ତପ୍ତ ଓ ଦୁର୍ବଳ ଦେଖିବାକୁ ଆଦୌ ଇଚ୍ଛା କରନ୍ତିନାହିଁ, ସେହି ଅସଲ ଉପାଦାନଟି ସର୍ବପ୍ରଧାନ ହୋଇ ହିଁ ରହିଥିଲା । ସମ୍ଭବତଃ ତାହାରି ବଳରେ ହିଁ ଶ୍ରୀଯୁକ୍ତ କଲ୍‌ଲ୍ ନିଜର ଛାତ୍ରଛାତ୍ରୀମାନଙ୍କୁ ଯାହାକିଛି କହୁଥିଲେ, ତାହା ସେମାନଙ୍କ ମଧ୍ୟରେ ସର୍ବଦା ଆତ୍ମବିଶ୍ୱାସ ଆଣି ଦେଉଥିଲା; ଏପରି ଏକ ଅଭୟର ଭାବ ଜନ୍ମାଇ ପାରୁଥିଲା, ଯାହାଦ୍ୱାରା କି ସେମାନେ ନିଜ ଭିତରେ ପ୍ରଚ୍ଛନ୍ନ ହୋଇ ରହିଥିବା ଶକ୍ତିର ପରିଚୟ ପାଉଥିଲେ ଏବଂ ସର୍ବୋପରି ଏହି ପୃଥିବୀକୁ, ସେମାନଙ୍କର ନିଜ ଚତୁଃପାର୍ଶ୍ୱର ପୃଥିବୀଟିକୁ ଆଉ ଏକ ଶତ୍ରୁଦୁର୍ଗ ବୋଲି ଭାବିବାର କୌଣସି ଆବଶ୍ୟକତା ଅନୁଭବ କରୁନଥିଲେ । ନିଜ ଜୀବନରେ, ସେହି ଜୀବନଟି ଆତଯାତ ହେଉଥିବା ଏହି ପୃଥିବୀର ଏକ ତାତ୍ପର୍ଯ୍ୟ ଅବଶ୍ୟ ରହିଛି ବୋଲି ପ୍ରତ୍ୟୟଟି ସହିତ ଜୀବନକୁ ଜାଣିବା, ଆବିଷ୍କାର କରିବା ଏବଂ ଜୀବନଟିଏ ବଞ୍ଚିବା, - ଯାବତୀୟ ବିଦ୍ୟାଳୟରୁ ଜଣେ ମନୁଷ୍ୟରୂପୀ ଶିକ୍ଷାର୍ଥୀ ସଚରାଚର ଏହି ଅସଲ ସମ୍ପଦଟିକୁ ହିଁ ଲାଭ କରିଥାଏ । ଏବଂ, ଯେଉଁ ଶିକ୍ଷକ ନିର୍ଭରଯୋଗ୍ୟ ସାଙ୍ଗଟିଏ ପରି ଶିକ୍ଷାର୍ଥୀମାନଙ୍କୁ ସତକୁ ସତ ସେହି ପ୍ରତ୍ୟୟଟି ଆଡ଼କୁ ଅଗ୍ରସର କରାଇ ନେଇଯିବାରେ ସମର୍ଥ ହୁଏ, ତାକୁ କଦାପି ପାରମ୍ପରିକ ଅର୍ଥରେ କେବଳ ଶିକ୍ଷକଟିଏ ବୋଲି କୁହାଯାଇ ପାରିବନାହିଁ । ବିଦ୍ୟାଳୟରେ ଶ୍ରେଣୀଗୃହରେ ପାଠପଢ଼ାଟା ତା'ପାଇଁ କେବଳ ଏକ ବାହ୍ୟ ଗୌଣକାର୍ଯ୍ୟ ହୋଇ ରହିଥାଏ । ଅସଲ ଡୋରଟି ଆହୁରି କେଉଁ ଅନ୍ତର୍ଗତ ଆଦାନପ୍ରଦାନର କ୍ଷେତ୍ରରେ ଯାଇ ଲାଗି ରହିଥାଏ । ଜଣେ ଶିକ୍ଷକ, ପୃଥିବୀର ଯେକୌଣସି ଶିକ୍ଷକ ପ୍ରକୃତରେ ଅତ୍ୟନ୍ତ ଭାଗ୍ୟବାନ ଯେ ସିଏ ଆପଣାର ସତ୍ୟାନୁରାଗଟି ଅନୁସାରେ ଯେଉଁ ସ୍ତରଟିକୁ ବାଛିନିଏ, ଅସଲ ଡ଼ୋରଟି ତାକୁ ଅତ୍ୟନ୍ତ ସ୍ୱାଭାବିକ ଭାବରେ ସେହି ଅଭିପ୍ରେତ ସ୍ତରକୁ ହିଁ ନେଇଯାଏ । କ୍ରିଷ୍ଟେନ୍ କଲ୍‌ଲ୍ ଯାବତୀୟ ଅର୍ଥରେ ପ୍ରକୃତରେ ଜଣେ ଭାଗ୍ୟବାନ ଶିକ୍ଷକ ଥିଲେ ।

ଆପଣାର କର୍ମଟି ଭିତରେ ଶ୍ରୀଯୁକ୍ତ କଲ୍‌ଲ୍ ଏହିପରି ଭାବରେ ହିଁ ସଦାସଚଳ ଏବଂ ସଦାତତ୍ପର ହୋଇ ରହିଥିଲେ । ଯିଏ ନିଜ ଜୀବନର ସମ୍ମୁଖସ୍ଥ ଶିଖରଟିକୁ ଆବିଷ୍କାର କରି ପାରିଥାଏ ଏବଂ ସେହି ଅନୁସାରେ ବାଟଟିଏ ଚାଲୁଥାଏ, ସିଏ ସଚରାଚର ନିଜ ଭିତରୁ ହିଁ ଆବଶ୍ୟକ ଶକ୍ତିଟିଏ ଲାଭ କରୁଥାଏ । କଦାପି କ୍ଳାନ୍ତ ଅନୁଭବ କରୁନଥାଏ । କଲ୍‌ଲ୍‌ଙ୍କର କର୍ମାବର୍ତ୍ତନଟି ବର୍ଷ ପରେ ବର୍ଷ ସେହିପରି ହିଁ ଚାଲିଥିଲା । ଉତ୍ସାହର ସହିତ ଚାଲିଥିଲା । ସିଏ ଯେ କେବେ ବୁଢ଼ା ହେବେ, ସେକଥା ବିଶ୍ୱାସ କରି ହେଉନଥିଲା । ଶୀତମାସରେ

ପ୍ରୁଅମାନଙ୍କର ବିଦ୍ୟାଳୟ, ଖରାମାସରେ ଝିଅମାନଙ୍କର; ଫସଲ ଅମଳ ବେଳର କେଇଟା ଦିନ ଛୁଟୀରେ ପ୍ରାଥମିକ ଶିକ୍ଷକମାନଙ୍କର ନିୟମିତ ବାର୍ଷିକ ପ୍ରଶିକ୍ଷଣ । ଏବଂ, ବର୍ଷତମାମ ପ୍ରାୟ ପ୍ରତ୍ୟହ ବିଳମ୍ବ ରାତ୍ରି ପର୍ଯ୍ୟନ୍ତ ପ୍ରାୟ ଅଖଣ୍ଡ ଭାବରେ ଲାଗି ରହିଥିବା ନାନା ଆଲୋଚନା ଓ କଥୋପକଥନ । ସାଧାରଣ ଶାରୀରିକ ସ୍ୱାସ୍ଥ୍ୟ ଦୃଷ୍ଟିରୁ ସିଏ ଯେ ଖୁବ୍ ଟଗଡ଼ା ଥିଲେ, ସେକଥା ଆଦୌ କୁହାଯାଇ ପାରିବନାହିଁ । ଜୀବନର ପ୍ରଥମ ଚରଣରେ ନିଜ ଅନ୍ନମୟ ଜୀବନରେ ତାଙ୍କୁ ଯେପରି ପରିସ୍ଥିତି ସହିତ ସଂଘର୍ଷ କରିବାକୁ ପଡ଼ିଥିଲା, ସେକଥା ଅନୁମାନ କରିବାକୁ ଆଦୌ ବେଶୀ କଷ୍ଟ କରିବାକୁ ପଡ଼ିବନାହିଁ । ତେଣୁ, କ୍ରମେ ବାଧିବାକୁ ଆରମ୍ଭ କଲା; କେଉଁଠି ଦଣ୍ଡେ ବସିପଡ଼ିଲା ମାତ୍ରକେ ଆଖି ବୁଜିହୋଇ ଆସିଲା ଏବଂ ଶୋଇବା ନିମନ୍ତେ ବିଛଣା ଧରିବାକୁ ଗଲେ ମଧ୍ୟ ଆଉ ଆଦୌ ନିଦ ହେଲାନାହିଁ । ଦେହଟା ଥକି ଯାଇଥିଲେ ମଧ୍ୟ ଭାବନାମାନେ ତଥାପି ମସ୍ତିଷ୍କ ଭିତରଟାକୁ ବିକ୍ଷୁବ୍ଧ କରି ରଖୁଥିଲେ ।

୧୮୭୦ ମସିହା ନବବର୍ଷ ପରେ କଲ୍ଡ୍ ନିଜକୁ କ୍ରମେ ଦୁର୍ବଳ ହୋଇ ଆସୁଥିବାର ଅନୁଭବ କରିବାକୁ ଲାଗିଲେ । ତଥାପି ବିଦ୍ୟାଳୟର କାର୍ଯ୍ୟରୁ କୌଣସି ପ୍ରକାରେ ଆଂଶିକ ଭାବରେ ମଧ୍ୟ କିଛିହେଲେ ବିରତି ନେବାକୁ ଇଚ୍ଛା କଲେନାହିଁ । ସିଏ ଭାବୁଥିଲେ, ଏହି ତରୁଣ ଛାତ୍ରମାନଙ୍କୁ ତାଙ୍କର ଆହୁରି ବହୁତ କିଛି କହିବାକୁ ରହିଛି; କାରଣ ସତକୁ ସତ ଶେଷଟା ନିକଟବର୍ତ୍ତୀ ହୋଇ ଆସୁଛି ବୋଲି ସିଏ ଅନୁଭବ କରିପାରିଲେ କି କ'ଣ କେଜାଣି, ତା' ଆଗରୁ ବାକୀ ରହି ଯାଉଥିବା କଥାଗୁଡ଼ିକୁ କହିଦେବାକୁ ସିଏ ସତେଅବା ଅଧିକ ବ୍ୟଗ୍ର ହୋଇ ପଡ଼ିଥିଲେ । ସେ ଏବେ ଅଧିକ ଜୋର୍ ଦେଇ ଛାତ୍ରମାନଙ୍କୁ ବାର ବାର କହୁଥିଲେ, '' ନିଜ ହୃଦୟର ହିଁ ଅନୁଶୀଳନ କର । ଯଦି ଆମେ ସତକୁ ସତ ନିଜ ଭିତରେ ଯଥାର୍ଥ ମଣିଷଟିଏ ହେବାକୁ ଇଚ୍ଛା କରୁଥିବା, ତେବେ ଈଶ୍ୱରଙ୍କର ଶକ୍ତି ସବୁ ସମୟରେ ହିଁ ଆମ ସହିତ ରହିଥିବ ଏବଂ ତାହା ହିଁ ଆମ ଜୀବନର ସର୍ବବୃହତ୍ ସମ୍ପଦରୂପେ କାର୍ଯ୍ୟ କରୁଥିବ । ତେବେଯାଇ ଆମେ ନିଜ ଜୀବନର ମହିମାମୟ ଉଜ୍ଜ୍ୱଳତାଟିକୁ ପ୍ରକୃତରେ ଅଙ୍ଗେ ନିଭାଇ ପାରିବା । ସେଇଥିରୁ ହିଁ ଅପରିମିତ ଶକ୍ତି ଲାଭ କରିବା ଏବଂ ସମଗ୍ର ପୃଥିବୀକୁ ମଧ୍ୟ ଜୟ କରି ପାରିବା ।'' ପୁନଶ୍ଚ ''ଯଦି ମୁଁ ଆହୁରି କେତୋଟି ବର୍ଷ ବଞ୍ଚିବାର ସୁଯୋଗ ଲାଭ କରନ୍ତି, ତେବେ, ଈଶ୍ୱର ଯେ ମନୁଷ୍ୟ ସନ୍ତାନ ମାନଙ୍କର କେତେ ମଙ୍ଗଳ କାମନା କରନ୍ତି, ସେହି ସତ୍ୟଟିକୁ ପ୍ରମାଣ କରି ଦେଖାଇ ଦେବାକୁ ଚେଷ୍ଟା କରନ୍ତି ।'' ହଁ, ଏହିପରି ଭାବରେ ଦୁଇମାସ ବିତି ଯାଇଥିଲା । ସିଏ ଅତ୍ୟନ୍ତ ଦୁର୍ବଳ ଦେଖାଗଲେ । ଦିନେ ସେହି ଗାଆଁ ଗୀର୍ଜାର ନୂଆ ପାଦ୍ରୀ ଆସି କିପରି ଅଛନ୍ତି ବୋଲି ପଚାରିବାରୁ କଲ୍ଡ୍ ଉତ୍ତରରେ କହିଥିଲେ ଯେ, ନିଜର ଛାତ୍ରମାନଙ୍କୁ ବିଶ୍ୱାସର ବାଟକୁ ଆଣିବା ନିମନ୍ତେ ସିଏ ଅନବରତ ଚେଷ୍ଟା କରୁଛନ୍ତି । ମାର୍ଚ୍ଚ ମାସ ଶେଷ ହୋଇ ଆସିବା ବେଳକୁ ସିଏ ଆଉ ମୋଟେ ପାରିଲେନାହିଁ ଏବଂ ବିଛଣା ଧରିବାକୁ ବାଧ୍ୟ ହେଲେ । ନିଦ ହେଉନଥାଏ ଏବଂ ସିଏ ମେଞ୍ଚାଏ ଆଲୋକ ପରି ବିଛଣାରେ

ପଡ଼ି ରହିଥାନ୍ତି । ତଥାପି ଲୋକମାନଙ୍କର ସ୍ରୋତ ବନ୍ଦ ହୋଇ ନଥିଲା । ତାଙ୍କର ଅସୁସ୍ଥତାର ଖବର ଶୁଣି ବରଂ ଏଣିକି ଅଧିକ ଲୋକ ଆସିଲେ । ତାଙ୍କର ଏହି କାମଟି ଲୋକମାନଙ୍କୁ ପ୍ରକୃତରେ ଭଲ ଲାଗୁଛି ବୋଲି ସିନା ସେମାନେ ତାଙ୍କୁ ମଧ୍ୟ ଏତେ ନିଜର ବୋଲି ଅନୁଭବ କରୁଛନ୍ତି, - ଏକଥା ଭାବି କଲ୍ଲ୍ ଖୁସୀ ହେଉଥିଲେ ଏବଂ ମୁହୂର୍ତ୍ତକ ଲାଗି ସତେ ଯେପରି ଚେଙ୍ଗା ହୋଇ ଉଠୁଥିଲେ ।

ଶେଷ କ୍ଷଣଟି ଆସନ୍ନ ହୋଇ ଆସୁଥିଲା । ସିଏ ସେଥିପାଇଁ ଭୟ କରୁଛନ୍ତି କି ନାହିଁ ବୋଲି ଜଣେ ଅନ୍ତରଙ୍ଗ ବନ୍ଧୁ ତାଙ୍କୁ ପ୍ରଶ୍ନ କରିବାରୁ ସେ ଉତ୍ତର ଦେଇଥିଲେ: ''ହଁ, ଭୟ ହେଉଛି । ମାତ୍ର, ଏକଥା ଏକାଧିକ ବାର ମୋ'ର ଜୀବନରେ ଘଟିଛି ଯେ,ଯେତେବେଳେ ମୁଁ ଘୋର ସଙ୍କଟରେ ଆସି ପଡ଼ିଛି ଏବଂ ମୁକୁଳିବାର କୌଣସି ରାସ୍ତା ପାଇ ପାରିନାହିଁ, ସେତେବେଳେ ସ୍ୱୟଂ ଈଶ୍ୱର ଆସି ପହଞ୍ଚିଛନ୍ତି ଏବଂ ମୋତେ ପୁଣି ବଳ ଦେଇ ଯାଇଛନ୍ତି । ଏବଂ, ମୁଁ ପୁନର୍ବାର ସମର୍ଥ ହୋଇ ଉଠିଛି । ଏଥର ମଧ୍ୟ ସିଏ ଅବଶ୍ୟ ତାହାହିଁ କରିବେ, - ମୃତ୍ୟୁ ଭିତରେ ବାଟ କଢ଼ାଇ ନେଇଯିବେ, ଅବଶ୍ୟ ନେଇଯିବେ ।''

କ୍ରମେ ଅଧିକରୁ ଲୋକ ଆସିଲେ । ଶୁଭେଚ୍ଛା ପ୍ରକାଶ କରି ବାର୍ତ୍ତାମାନ ଆସିବାକୁ ବି ଲାଗିଲା । ସହଧର୍ମିଣୀ ଓ ପିଲାମାନେ ତାଙ୍କର ଶଯ୍ୟା ପାଖରେ ବସିଥାନ୍ତି । ସେତେବେଳେ ବଡ଼ଝିଅ ମାରିଇ ତିନିବର୍ଷର ଓ ସାନ କ୍ରିଷ୍ଟିନ ଦୁଇ ବର୍ଷର । କଲ୍ଲ୍ ସ୍ଥିର ହୋଇ ବିଛଣା ଉପରେ ପଡ଼ି ରହିଥାନ୍ତି । ମୁହଁ ଉପରେ ଏକ ପ୍ରସନ୍ନତା ହିଁ ରାଜତ୍ୱ କରୁଥାଏ । ୧୮୭୦ ମସିହା ଏପ୍ରିଲ ମାସ ସାତ ତାରିଖ ଅପରାହ୍ନ ଦୁଇଟା ସମୟରେ କଲ୍ଲ୍ ଶରୀର ତ୍ୟାଗ କରିଥିଲେ । ସେତେବେଳକୁ ତାଙ୍କୁ ଚଉବନ ପୂରି ପଞ୍ଚାବନ ଚାଲିଥିଲା । ତାଙ୍କର ସାନ ଝିଅ ସେହି ସମୟଟିର ସ୍ମୃତିଚାରଣ କରି ଗୋଟିଏ ସ୍ଥାନରେ ଲେଖିଛନ୍ତି: ''ଜୀବନର ଶେଷ ଆଡ଼କୁ ବାପା ଖୁବ୍ ଦୁର୍ବଳ ହୋଇଗଲେ । ଡାକ୍ତରମାନେ ତାଙ୍କ ଭିତରେ କୌଣସି ରୋଗର ଲକ୍ଷଣ ଆଦୌ ଦେଖି ପାରିନଥିଲେ । କେବଳ ଦେହର ଶକ୍ତି ହିଁ ଦିନକୁ ଦିନ କ୍ଷୟ ହୋଇ ଯାଉଥିଲା ।''...ପୁନଶ୍ଚ, ''ସେତେବେଳେ କେବଳ ମୋ'ର ମାଆ ଓ ଡାକ୍ତର ସେହି ବଖରାଟିରେ ଥିଲେ । ଶେଷ ମୁହୂର୍ତ୍ତଟି ଏତେ ଶୀଘ୍ର ଆସିବ ବୋଲି ସିଏ ଆଶଙ୍କା କରିନଥିଲେ । ମାଆ ଯେତେ ଜିଗର କଲେ ମଧ୍ୟ ସେ ତାଙ୍କଠାରୁ କୌଣସି ପଇସା ନେଇନାହାନ୍ତି । ବାପା ଆଉ ଏହି ଡାକ୍ତର ପରସ୍ପରର ଅତି ଘନିଷ୍ଠ ବନ୍ଧୁ ଥିଲେ। ପରସ୍ପରକୁ ଖୁବ୍ ଭଲ ଭାବରେ ବୁଝୁଥିଲେ ।''

କଲ୍ଲ୍‌ଙ୍କର ଜଣେ ପୁରାତନ ଛାତ୍ର ମଧ୍ୟ ଲେଖିଛନ୍ତି: ତାଙ୍କର ମୃତ୍ୟୁସଂବାଦ ପାଇ ସେଦିନ ବହୁତଙ୍କ ଆଖିରୁ ଲୁହ ଗଡ଼ି ଆସିଥିବ । ସମସ୍ତେ କେତେ ଇଚ୍ଛା କରୁଥିଲେ ଓ ଆଶା ମଧ୍ୟ କରୁଥିଲେ ଯେ ସିଏ ଆହୁରି କେତେଦିନ ଏହି ସଂସାରରେ ରହିଥାନ୍ତେ ଏବଂ ନିଜର କାର୍ଯ୍ୟଟିକୁ କରିଥାଆନ୍ତେ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ, ଏପ୍ରିଲ ୧୨

ତାରିଖ ଦିନ ଯେତେବେଳେ ତାଙ୍କର ଶରୀରକୁ ସମାଧିସ୍ଥ କରାଗଲା, ସେତେବେଳେ ଦେଶର ଦୂର ଓ ନିକଟ ବହୁ ଅଞ୍ଚଳରୁ ପ୍ରାୟ ଦୁଇହଜାର ବ୍ୟକ୍ତି ଉପସ୍ଥିତ ରହିବାକୁ ଆସି ପହଞ୍ଚି ଯାଇଥିଲେ । ଶ୍ରୀ କଲ୍ଡ୍ ପ୍ରତିଦିନ ସକାଳେ ନିଜର ଛାତ୍ରମାନଙ୍କ ସହିତ ଏକାଠି ଯେଉଁ ଗୀତଟି ବୋଲୁଥିଲେ, ଆମେ ଗୋଟିଏ ଶ୍ରେଣୀକକ୍ଷରେ ଠେଁସାଠେଁସି ହୋଇ ବସି ସେହି ଗୀତଟିକୁ ବୋଲିଲୁ । ( ସିଏ ଗୀତଟି ଆଗ ବୋଲାଯିବା ପରେ ଯାଇ ନିଜର ପ୍ରବଚନ ଆରମ୍ଭ କରୁଥିଲେ ।) ଏବଂ ତା'ପରେ ଶବକୁ ସେଠାରୁ ଉଠାଇ ବାହାରକୁ ନିଆ ଯାଇଥିଲା । ସେଠାରେ ମୃତ ମହାତ୍ମଙ୍କର ସମ୍ମାନାର୍ଥେ କେତେକ ବ୍ୟକ୍ତି ଭାଷଣ ଦେଲେ । ସବାଆଗ, ସ୍ଥାନୀୟ ଗୀର୍ଜାର ପାଦ୍ରୀ ହିଁ କହିଥିଲେ : ଶ୍ରୀଯୁକ୍ତ କଲ୍ଡ୍ଙ୍କର ଜୀବନ ତଥା କାର୍ଯ୍ୟକ୍ଷେତ୍ରଟି ଉପରେ ଦୃଷ୍ଟିପାତ କରି ମୁଁ ଯେତିକି ଯେତେବେଳେ ବୁଝିଛି, ସେଥିରୁ ଏତିକି କହିବି ଯେ, ସେ ଦେଶର ଜନଗଣଙ୍କର ଅନ୍ତର ଭିତରକୁ ବହୁତ ଗଭୀରଯାଏ ପହଞ୍ଚି ପାରିଥିଲେ । ତାଙ୍କର ସବୁକିଛି କୃତିକୁ ଗୋଟିଏ କଥାରେ ସମ୍ଭବତଃ ଏହିପରି କୁହାଯାଇ ପାରିବ ଯେ, ସିଏ ଜନଗଣଙ୍କୁ ଅର୍ଥାତ୍ ମନୁଷ୍ୟକୁ ତା' ନିଜ ବିଷୟରେ ଚେତନାଯୁକ୍ତ କରିବା ଲାଗି ହିଁ ଚେଷ୍ଟା କରିଥିଲେ; କାରଣ ସିଏ ସମୂହ ଭାବରେ କୌଣସି ଜନସମାଜକୁ ନୁହେଁ, ମାତ୍ର ସେହି ସମାଜରେ ବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ହିଁ ସର୍ବଦା ନିଜର ଦୃଷ୍ଟିସମକ୍ଷରେ ରଖିଥିଲେ । ପ୍ରତିବେଶୀ ଆଉଗୋଟିଏ ଗୀର୍ଜାର ପାଦ୍ରୀ ନିଜର ଭାଷଣରେ କହିଥିଲେ: 'ଯେଉଁମାନେ ଏହି ସ୍ଥାନକୁ ପୂର୍ବରୁ ବହୁତ ଥର ଆସିଛନ୍ତି, ସେମାନେ ଆଜି ଏଠାରେ ସମସ୍ତେ ଉପସ୍ଥିତ ଅଛନ୍ତି; ମାତ୍ର ଯାହାଙ୍କ ସକାଶେ ହିଁ ଆମେ ଟାଣି ହୋଇ ଏହି ସ୍ଥାନଟିକୁ ଆସୁଥିଲୁ, ସମସ୍ତଙ୍କର କେଡ଼େ ପ୍ରିୟ ସେହି କଲ୍ଡ୍ ଏଠାରେ ନାହାନ୍ତି ଏବଂ ପାଟି ଖୋଲି ଆମକୁ କିଛି କହୁନାହାନ୍ତି । ଆମେ ସେହି ପ୍ରିୟ ବନ୍ଧୁଙ୍କର ମରଶରୀର ପାଖରେ ସମସ୍ତେ ରୁଣ୍ଡ ହୋଇ ରହିଛୁ, ଏବଂ ମୁଁ ସେହି ସମସ୍ତଙ୍କର ପକ୍ଷରୁ କେବଳ ଏତିକି କହିବି ଯେ, ଆମେ ତାଙ୍କୁ ଚିରଦିନ ଭଲ ପାଇ ଆସିଥିଲୁ ଏବଂ ଚିରଦିନ ପାଇଁ ତାଙ୍କୁ ଭଲ ପାଇବୁ । ବନ୍ଧୁଙ୍କୁ ସମ୍ବୋଧନ କରି ମୁଁ ପୁନର୍ବାର କହିବି, 'ହେ ଆମ ସମସ୍ତଙ୍କର ପ୍ରିୟ ସୁହୃଦ୍, ତୁମକୁ ଆମେ ସବୁଦିନେ ଭଲ ପାଉଥିଲୁ ଏବଂ ଆଗାମୀ ସବୁଦିନ ସକାଶେ ମଧ୍ୟ ସେହିପରି ଭଲ ପାଉଥିବୁ । କାରଣ ସେହି ଭଲ ପାଇବାଟି ଏକ ସାନ ଚାରାଗଛ ପରି ଆମ ହୃଦୟରେ ହିଁ ରୋପିତ ହୋଇ ରହିଛି । ଶ୍ରୀଯୁକ୍ତ କଲ୍ଡ୍ ଆମ ସମସ୍ତଙ୍କ ଭିତରେ ଏପରି ଏକ ଜୀବନ ଅତିବାହିତ କରି ଯାଇଛନ୍ତି, ଯାହାର ସ୍ମୃତି ପ୍ରକୃତରେ କେବେହେଲେ ନିଭି ଯିବନାହିଁ ।'

ଡେନ୍‌ମାର୍କର ଜଣେ ତତ୍କାଳୀନ ସାଂସଦ କହିଥିଲେ : ମୋ'ର ନିଜର ପ୍ରକୃତରେ ସ୍ୱତନ୍ତ୍ର ଭାବରେ କିଛି କହିବାକୁ ନାହିଁ; ମାତ୍ର ମୁଁ ଏଠାରେ ଆଜି ଉପସ୍ଥିତ ରହିଥିବା ବନ୍ଧୁମାନଙ୍କ ନିମନ୍ତେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କ ଠାରୁ ଏକ ପ୍ରଣତିବାର୍ତ୍ତା ସାଙ୍ଗରେ ନେଇ ଆସିଛି । ଗତ ରବିବାର

ଦିନ ମୁଁ ତାଙ୍କୁ ପାଖକୁ ଯାଇଥିଲି । ମୋ' ସହିତ ଏହି ବିଦ୍ୟାଳୟର ପ୍ରଶିକ୍ଷଣ ସମାପ୍ତ କରିଥିବା ତରୁଣମାନେ ମଧ୍ୟ ଥିଲେ । ଶ୍ରୀ କ୍ରିଷ୍ଟେନ୍ କଲ୍‌ଲ୍‌ଙ୍କର ତିରୋଧାନ ଦ୍ୱାରା ଆମ ସମସ୍ତଙ୍କର କେଡ଼େ ବଡ଼ କ୍ଷତି ହେଲା, ଗ୍ରୁଣ୍ଡ୍‌ଭିଗ୍ ଆମକୁ ସେହିକଥା ସୂଚାଇ ଦେଇଥିଲେ: କଲ୍‌ଲ୍ ହେଉଛନ୍ତି ସର୍ବପ୍ରଥମ ବ୍ୟକ୍ତି, ଯିଏକି ଲୋକବିଦ୍ୟାଳୟର କଳ୍ପନାଟିକୁ ଏକ ଅବବୋଧ୍ୟ ସାକାର ରୂପ ଦେଇ ପାରିଥିଲେ ଏବଂ ନିଜର ପ୍ରଚେଷ୍ଟା ଦ୍ୱାରା ତାହାକୁ ପ୍ରୟୋଗ କରି ଦେଖାଇଦେଲେ; ସିଏ ତାଙ୍କର ବାଳକବୟସରୁ ହିଁ ଜଣେ ଶିକ୍ଷକର ଜୀବନ ଆରମ୍ଭ କରିଥିଲେ । ତାଙ୍କ ପାଖରେ ପହଞ୍ଚିବା ବାଳକମାନେ ତାଙ୍କଠାରୁ ବୟସ ଏବଂ ଦୌହିକ ବଳ ଉଭୟରେ ହିଁ ଅଧିକ ଥିଲେ । ତେଣୁ, ସିଏ ମୂଳରୁ ସେମାନଙ୍କୁ କହି ଦେଇଥିଲେ ଯେ, ସେମାନେ ତାଙ୍କୁ ମରାମରି ନକଲେ ସିଏ ମଧ୍ୟ ସେମାନଙ୍କର ଶିକ୍ଷକ ହିସାବରେ ସେମାନଙ୍କୁ ମୋଟେ ମାରିବେନାହିଁ । ଗ୍ରୁଣ୍ଡ୍‌ଭିଗ୍ ନିଜର ବାର୍ତ୍ତାରେ କହିଛନ୍ତି ଯେ, ବିଦ୍ୟାଳୟର ଶିକ୍ଷା ଠିକ୍ ସେହିଭଳି ହିଁ ଏକ ସ୍ୱାଧୀନ ପରିବେଶ ଏବଂ ଭଲ ପାଇବା ମଧ୍ୟରେ ହିଁ ଚାଲିବ, - ସେଥିରେ କୌଣସି ଭୟପ୍ରଦର୍ଶନ କିମ୍ବା ଜବରଦସ୍ତି ମୋଟେ ରହିବନାହିଁ । ଏବଂ, ଏହିପରି ଭାବରେ ଯେଉଁ ନୂଆ ମଞ୍ଜିଟି ମାଟିରେ ପୋତାହେଲା, ସେଇଟିରେ ଅଙ୍କୁରୋଦ୍‌ଗମ ହେବ ହିଁ ହେବ ଏବଂ ଶେଷରେ ଗଛଟିଏ ହୋଇ ସେଥିରେ ସମୁଦାୟ ଜନଗଣ ତଥା ଜନ୍ମଭୂମି ନିମନ୍ତେ ଆନନ୍ଦ ଏବଂ ଆଶିଷ ରୂପେ କୁସୁମିତ ହୋଇ ଉଠିବ ।

ଆଉଜଣେ ବକ୍ତା କହିଥିଲେ, କଲ୍‌ଲ୍ ଯେ ଜଣେ ଅସାଧାରଣ ବ୍ୟକ୍ତି ଥିଲେ, ସେକଥା ଜାଣିବାପାଇଁ ତାଙ୍କ ସହିତ ଆଦୌ ବହୁତ ସମୟ କଥା କହିବାକୁ ପଡୁନଥିଲା । ମୁଁ ତ କହିବି ଯେ, କୃଷକଘରର ଏହି ମନୁଷ୍ୟଟି ମଧ୍ୟରେ ଏପରି କିଛି ଅତ୍ୟନ୍ତ ନିଶ୍ଚିତ ଭାବରେ ରହିଥିଲା, ଯାହାକୁ କି ପ୍ରକୃତରେ ରାଜକୀୟ ବୋଲି କୁହାଯାଇ ପାରିବ । ତାଙ୍କର ମୁଖମଣ୍ଡଳ ଉପରେ ଏପରି ଏକ ସ୍ଥିରନିଶ୍ଚୟତା ରହିଥିଲା, ଯାହାକି କୌଣସି ସ୍ଥିତିରେ ମଧ୍ୟ ବିଚଳିତ ହୋଇ ପଡୁନଥିଲା; ତାହାରି ବଳରେ ହିଁ କଲ୍‌ଲ୍ ନିଜର ପୁରାତନ ପୃଥିବୀରେ ନୂଆ ବାଟଟିଏ ସମ୍ଭବ କରି ପାରିଲେ ଏବଂ ଏପରି କିଛି କରି ଦେଖାଇଦେଲେ ଯାହାଦ୍ୱାରା କି ତାଙ୍କର ସ୍ମୃତି ପୁରୁଷ ପୁରୁଷ ଯାବତ୍ ଅମ୍ଳାନ ହୋଇ ରହିଥିବ । ନିଜର ପ୍ରୟାସ ତଥା ପ୍ରୟୋଗ ଦ୍ୱାରା ସିଏ ଏହି ମୁକ୍ତ ଲୋକବିଦ୍ୟାଳୟର ପ୍ରଣାଳୀଟିକୁ ନାଗରିକ ସ୍ୱୀକୃତି ଦିଆଇ ପାରିଲେ ଏବଂ ଆମର ସମସାମୟିକ ସମସ୍ତଙ୍କର ଦୃଷ୍ଟିକୁ ସେହି ଆଡ଼କୁ ଆକର୍ଷିତ କରି ପାରିଲେ । ଶ୍ରୀଯୁକ୍ତ କଲ୍‌ଲ୍ ଯାବତୀୟ ଅର୍ଥରେ ଲୋକଙ୍କ ମଧ୍ୟରୁ ହିଁ ସମ୍ଭବ ହୋଇ ପାରିଲେ, ଲୋକଙ୍କ ସହିତ ତଥା ଲୋକଙ୍କ ନିମିତ୍ତ ହିଁ ନିଜ ଜୀବନକୁ ବଞ୍ଚି ପାରିଲେ, '' ମୁଁ ମରିଗଲେ କୃଷକମାନଙ୍କ ଭିତରୁ ବହୁତ ମଣିଷ କାନ୍ଦିବେ''- ନିଜର ରୋଗଶଯ୍ୟାରୁ ସିଏ ଅନେକ ସମୟରେ ସେକଥା କହୁଥିଲେ । ସିଏ ନିରାଟ ସତ୍ୟ କଥା ହିଁ କହୁଥିଲେ । ଏବଂ, ମୁଁ ଆଉ ଗୋଟିଏ ପାଦ ଆଗକୁ ଯାଇ ମଧ୍ୟ କହିବି ଯେ, କେବଳ କୃଷକମାନେ ନୁହନ୍ତି,

ଆମ ଦେଶର ସକଳ ଜନଶ୍ରେଣୀ ହିଁ ତାଙ୍କୁ ସ୍ମରଣ କରିବେ ଏବଂ ତାଙ୍କର ତିରୋଧାନରେ କେବଳ କୃଷକମାନେ ନୁହନ୍ତି, ଆମ ଦେଶର ସକଳ ଜନଶ୍ରେଣୀ ହିଁ ତାଙ୍କୁ ସ୍ମରଣ କରିବେ ଏବଂ ତାଙ୍କର ତିରୋଧାନରେ ବ୍ୟଥିତ ହୋଇ ପଡ଼ିବେ । ସିଏ ଉପସଂହାର କରି କହିଥିଲେ: ମନୁଷ୍ୟମାନଙ୍କ ଭିତରେ ନିଜକୁ ଜଣେ ରାଜା ବୋଲି ପ୍ରମାଣିତ କରିଥିବା ଜଣେ ବ୍ୟକ୍ତି ହିଁ ଏଠାରେ ନିଜର ଶେଷଶଯ୍ୟାରେ ଶୋଇଛି ଏବଂ ସିଏ ଜଣେ ପୁରୋଗାମୀ ଭାବରେ ଯାହା ସମ୍ଭବ କରି ପାରିଲା, ତାହା ଯେପରି ସ୍ଥାୟୀ ହୋଇ ରହିବ, ଈଶ୍ୱର ଆମକୁ ସେଥିପାଇଁ ଆବଶ୍ୟକ ବଳ ଦିଅନ୍ତୁ, ଆବଶ୍ୟକ ସଂକଳ୍ପ ମଧ୍ୟ ଦିଅନ୍ତୁ । ସିଏ ଯେଉଁ କାଳଟିରେ ଆମ ଭିତରେ ଥିଲେ, ସେହି କାଳଟି ପାଇଁ ଈଶ୍ୱରଙ୍କୁ ଅନେକ ଧନ୍ୟବାଦ; ଏବଂ, ତାଙ୍କରି କାର୍ଯ୍ୟକୁ ହିଁ ତାଙ୍କରି ପ୍ରେରଣାରେ ଅବିଚ୍ଛିନ୍ନ କରି ରଖିବାକୁ ଯେଉଁ କାଳଟି ଆସୁଛି, ସେହି କାଳଟି ପାଇଁ ମଧ୍ୟ ଈଶ୍ୱରଙ୍କୁ ଆନେକ ଧନ୍ୟବାଦ ।

ଆଉଗୋଟିଏ ପ୍ରାର୍ଥନାସଙ୍ଗୀତ ବୋଲାଯିବା ପରେ ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର ଜଣେ ପୁରାତନ ଛାତ୍ର କହିଲେ: କଥାରେ ଅଛି, ଏହି ପୃଥିବୀରେ ତ ବହୁତ ମଣିଷ ରହିଛନ୍ତି, ମାତ୍ର ମଣିଷ ଭଳି ମଣିଷ ମାତ୍ର ମୁଷ୍ଟିମେୟ ହିଁ ରହିଛନ୍ତି । ଶ୍ରୀଯୁକ୍ତ କଲ୍‌ଲ୍ ସେହି ମୁଷ୍ଟିମେୟଙ୍କ ମଧ୍ୟରେ ଜଣେ ଥିଲେ । କାରଣ, କଲ୍‌ଲ୍ କେବେହେଲେ ନିଜର ଲାଭପ୍ରାପ୍ତି ଓ ନିଜର ସଫଳତା ନିମନ୍ତେ ଆଦୌ କିଛି କରିନଥିଲେ; ନିଜର ଭୂମି ଓ ସେହି ଭୂମିରେ ବାସ କରୁଥିବା ଲୋକମାନଙ୍କ ପାଇଁ ଯାହା କଲ୍ୟାଣକର ହେବ, କଲ୍‌ଲ୍ ସର୍ବଦା ତାହାହିଁ କରିଥିଲେ । ତେଣୁ ତାଙ୍କର ସ୍ମୃତି ଚିରଦିନ ନିମନ୍ତେ ଜାଗରୂକ ହୋଇ ରହିବ ଏବଂ ଆଗାମୀ ପୁରୁଷ ପୁରୁଷ ଧରି ତାଙ୍କୁ ସମସ୍ତେ ଅଶେଷ ଶ୍ରଦ୍ଧାର ସହିତ ଅବଶ୍ୟ ମନେ ରଖିବେ । ତାଙ୍କପାଇଁ ଆମେ ପ୍ରକୃତରେ କେଉଁ ପ୍ରକାରର ସ୍ମାରକଟିଏ ତିଆରି କରିବାକୁ ଇଚ୍ଛା କରିବା ? ମୁଁ ତ ଭାବୁଛି ଯେ, ସିଏ ସ୍ୱୟଂ ତିଆରି କରି ଯାଇଥିବା ଲୋକବିଦ୍ୟାଳୟ ହିଁ ତାଙ୍କପାଇଁ ସର୍ବୋତ୍ତମ ସ୍ମାରକ ହୋଇ ରହିବ । ଆଉ ଏକ ଲୋକବିଦ୍ୟାଳୟର ଅଧକ୍ଷ ନିଜ ଭାଷଣରେ କହିଲେ: ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କ ବିଷୟରେ ସବୁଠାରୁ ବଡ଼ କଥାଟି ହେଉଛି ଯେ, ସିଏ କେବଳ ଡେନ୍‌ମାର୍କ୍‌ର ନୁହନ୍ତି, ସମଗ୍ର ପୃଥିବୀର ହିଁ ସର୍ବଶ୍ରେଷ୍ଠ ଶିକ୍ଷକ, ଏବଂ, ସେହି ପରିଚୟରେ ହିଁ କଲ୍‌ଲ୍ ଚିରକାଳ ପ୍ରତ୍ୟେକ ଶିକ୍ଷକ ନିମନ୍ତେ ଏକ ସ୍ୱତନ୍ତ୍ର ପ୍ରେରଣାର ଉତ୍ସ ହୋଇ ରହିଥିବେ । ତାଙ୍କପରେ ଆଉଜଣେ ଅଧକ୍ଷ ମଧ୍ୟ କହିଥିଲେ, ''ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କ ଭଳି ଜଣେ ଦ୍ୱିତୀୟ ବ୍ୟକ୍ତି ମୋ' ଆଖିରେ କେହି ପଡ଼ିନାହାନ୍ତି, ଯିଏକି ଏତେ ପରିପୂର୍ଣ୍ଣ ବିଶ୍ୱାସର ସହିତ ନିଜ ଜୀବନର ବ୍ରତଟି ବିଷୟରେ ସଚେତନ ରହିଥିଲେ, ନିଜେ କରୁଥିବା କାର୍ଯ୍ୟଟି ପ୍ରତି ଯାହାଙ୍କର ଏତେବେଶୀ ସ୍ୱାଭାବିକ ନିଷ୍ଠା ରହିଥିଲା ଏବଂ ଯିଏକି ନିଜ କାର୍ଯ୍ୟଟିରେ ସଫଳ ହେବେ ବୋଲି ଅଧିକେ ସୁନିଶ୍ଚିତ ହୋଇ ରହିଥିଲେ । ତାଙ୍କ ଭଳି ଏଡ଼େ ସୁନିଶ୍ଚିତ ଭାବରେ ଆଉକେହି ଆଗକୁ

ପହୁଣ୍ଡ ପରେ ପହୁଣ୍ଡ କଦାଇ ପକାଇ ନଥିବେ, ଆଉକେହି ନିଜର ସମ୍ମୁଖରେ ରହିଥିବା ଲକ୍ଷ୍ୟଟିକୁ ଏଡ଼େ ସ୍ପଷ୍ଟ ଭାବରେ କଦାପି ଦେଖିନଥିବେ ।

''ଏତେ ସ୍ପଷ୍ଟ ଭାବରେ ନିଜର ଲକ୍ଷ୍ୟ ତଥା ପଥଟିକୁ ସତେଅବା ସ୍ପର୍ଶ କରି ରହିଥିବା ପରି ଦେଖି ପାରୁଥିବ, ଏବଂ ତେଣୁ ଏଡ଼େ ଅନୁତ୍ତେଜିତ ଅଥଚ ବେଗଯୁକ୍ତ ଭାବରେ ଆଗକୁ ଆଗକୁ ଚାଲିଯାଇ ପାରୁଥିବ - ସେହି ବ୍ୟକ୍ତିଟିର ବ୍ୟକ୍ତିତ୍ୱ ମଧ୍ୟରେ ସେପରି ବିଶେଷ ଭାବରେ ବଳଦାୟକ ଓ ନିଷ୍ଠାଯୁକ୍ତ କିଛି ରହିଥିଲା ବୋଲି ତାଙ୍କ ଜୀବନରେ ତାହା ଆମ ସମସ୍ତଙ୍କ ଲାଗି ଚାକ୍ଷୁଷ ହୋଇପାରିଲା । ପ୍ରାଚୀନ ଗ୍ରୀସ୍‌ର ଥେମିଷ୍ଟୋକ୍ଲିସ୍‌ଙ୍କ ସମ୍ପର୍କରେ ଏପରି କୁହାଯାଇଥାଏ ଯେ ସିଏ ଆକ୍ରମଣକାରୀ ପାରସିକମାନଙ୍କ ଉପରେ ବିଜୟ ହାସଲ କରିବେ ବୋଲି ନିଜ ଭିତରେ ଏତେ ଅଧିକ ପରିମାଣରେ ସୁନିଶ୍ଚିତ ହୋଇ ରହିଥିଲେ ଯେ ଠିକ୍ କେଉଁ ମୁହୂର୍ତ୍ତରେ ସିଏ ସେହି ବିଜୟଟିକୁ ହାସଲ କରିବେ, ତାହା ଆଗରୁ କହିଦେଇ ପାରିଥିଲେ । ଶ୍ରୀଯୁକ୍ତ କଲ୍ଲ୍‌ଙ୍କ ଜୀବନରେ ମଧ୍ୟ ଆମକୁ ସେହି କଥାଟିର ପ୍ରମାଣ ମିଳିଯାଇଥାଏ । ତାଙ୍କର ମୁଖରୁ ଉଚ୍ଚାରିତ ହେଉଥିବା ଶବ୍ଦଗୁଡ଼ିକ ସିଧା ଶ୍ରୋତାର ଅନ୍ତଃସ୍ଥଳକୁ ଚାଲି ଯାଉଥିଲା । ଶୁଣିବା ମାତ୍ରକେ ଏକ ଜାଗରଣ ସମ୍ଭବ ହେଉଥିଲା ଏବଂ ଏକ ଅନୁରୂପ ନିଷ୍ପତ୍ତି ମଧ୍ୟ ଘଟାଇ ପାରୁଥିଲା । ଯେତେବେଳେ ଜଣେ ମନୁଷ୍ୟର ହୃଦୟ ଏବଂ ଆତ୍ମା ଏକାଠି ଯୋଡ଼ି ହୋଇଯାଇ ପାରନ୍ତି ଏବଂ କୌଣସି ଏକ ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ପରସ୍ପର ସହିତ ସହଯୋଗ କରନ୍ତି, ସେତେବେଳେ ଜଣେ ବ୍ୟକ୍ତି ଏବଂ ଗୋଟିଏ ସମୂହ ପ୍ରକୃତରେ ଅଭୂତପୂର୍ବ ଭାବରେ ବହୁତକିଛି ଲାଗି ସମର୍ଥ ହୋଇଯାଏ । କ୍ରିଷ୍ଟେନ୍ କଲ୍ଲ୍ ହିଁ ଏକଦା କହିଥିଲେ ଯେ, ଆତ୍ମଶକ୍ତି ବା ଈଶ୍ୱରଶକ୍ତିର କ୍ଷୁଦ୍ର ଆଙ୍ଗୁଳିଟିରେ ଯେଉଁ ଶକ୍ତି ରହିଛି, ସମଗ୍ର ପୃଥିବୀର ଦୁଇଟିଯାକ ମୁଠାରେ ତାହା ଯେତେ ଅସ୍ତ୍ରଶସ୍ତ୍ର ଦ୍ୱାରା ଯେଡ଼େ ପରାକ୍ରମୀ ହୋଇ ରହିଥାଉ ପଛକେ, କଦାପି ସେହି ଶକ୍ତିର ସମ୍ମୁଖରେ ଛିଡ଼ା ହୋଇ ପାରିବନାହିଁ । କଲ୍ଲ୍ କହୁଥିଲେ ଯେ ଆମେ ଯେଉଁମାନେ ଈଶଶକ୍ତି ପର୍ବ ନେଇ ଅଗକୁ ବାହାରିଛି, ଆମେ ଏହି କଥାଟିକୁ ସ୍ମରଣ କରାଇ ଦେଇ ହିଁ ପରସ୍ପରକୁ ସର୍ବଦା ବଳ ଯୋଗାଇ ଦେଉଥିବ ।''

ସଭା ଶେଷରେ କୋପେନ୍‌ହେଗେନ୍‌ରୁ ଆସିଥିବା ଜଣେ ଅତିଥି ଆପଣାର ବକ୍ତବ୍ୟରେ କହିଥିଲେ: କଲ୍ଲ୍ ପୂର୍ଣ୍ଣ ସନ୍ଦେହମୁକ୍ତ ଭାବରେ ଶବ୍ଦର ଶକ୍ତି ଉପରେ ବିଶ୍ୱାସ ରଖିଥିଲେ, ଏବଂ ସେହି କାରଣରୁ ହିଁ ତାଙ୍କ କଥାଗୁଡ଼ିକ ମଧ୍ୟରେ ସର୍ବଦା ଏତେ ଶକ୍ତି ପୂର୍ଣ୍ଣ ହୋଇ ରହିଥିଲା । ଥରେ ମୁଁ ତାଙ୍କ ପାଟିରୁ ଏହି କଥାଟିକୁ ଶୁଣିଥିଲି ଯେ, ଶବ୍ଦଉପରେ ଆମର ଅଖ୍ତିଆର ଆସିଯିବାଟା ଆଦୌ ସେତେ ବଡ଼ କଥା ନୁହେଁ; ମାତ୍ର ଆତ୍ମାଉପରେ ମଧ୍ୟ କେତେ ଅଖ୍ତିଆର ରହିଛି, ତାହା ହେଉଛି ଅସଲ କଥା । ଏବଂ, ପ୍ରକୃତରେ ସେହି କାରଣରୁ ହିଁ ତାଙ୍କର

କଥାଗୁଡ଼ିକ ତାହାକୁ ଶୁଣିଥିବା ବ୍ୟକ୍ତିମାନଙ୍କୁ ଏପରି ଭାବରେ ଉତ୍ତୋଳିତ କରିନେଇ ପାରୁଥିଲା । ଆମକୁ ନିଜନିଜର ସଂକଳ୍ପପଥରେ ଅଗ୍ରସର ହେବାକୁ ବଳ ଦେଇ ଯାଉଥିଲା ।

ତା'ପରେ ଶବଟିକୁ ଡାଲୁମ୍ ଗୀର୍ଜାର ସମାଧିସ୍ଥାନକୁ ନିଆ ଯାଇଥିଲା । ସେହି ସ୍ଥାନଟି ବିଦ୍ୟାଳୟ ଠାରୁ ପ୍ରାୟ ଦୁଇ କିଲୋମିଟର ବାଟ । ଖାଲ ଢିପ ଥାନ - ସବୁଜିମାର ଶୀତଳତାରେ କେଡ଼େ ନୟନାଭିରାମ ହୋଇଛି । ବିଦାୟ ମୁହୂର୍ତ୍ତର ଶେଷ ସଂଗୀତଟି ବୋଲା ହେଲା, ତା'ପରେ ସ୍ଥାନୀୟ ଗୀର୍ଜାର ପାଦ୍ରୀ କହିଲେ: କ୍ରିଷ୍ଟେନ୍ କଲ୍ଡ୍ କପଟ, ମିଥ୍ୟା ଏବଂ ମୃତ୍ୟୁ ବିରୁଦ୍ଧରେ ଏକ ପ୍ରତିବାଦ ହୋଇ ରହିଥିଲେ ଏବଂ, ଜଣେ ପାଦ୍ରୀଙ୍କ ଆସ୍ଥାନ ମଧ୍ୟ ଯେହେତୁ ଈଶ୍ୱରଙ୍କର ଏହିସବୁ ମଞ୍ଜଶତ୍ରୁମାନଙ୍କ ବିରୁଦ୍ଧରେ ଏକ ପ୍ରତିବାଦ ହୋଇ ଅବଶ୍ୟ ରହିବା ଉଚିତ, ଆଜି ମୁଁ ସେହିପାଇଁ ତାଙ୍କର ସମାଧି ସ୍ଥାନରେ ଛିଡ଼ା ହୋଇ ତାଙ୍କର ଯାବତୀୟ କାର୍ଯ୍ୟ ନିମନ୍ତେ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି । କଲ୍ଡ୍ ଆମ ସହିତ ଆଉକିଛି ଅଧିକ ସମୟ ରହିଥାନ୍ତେ, ତେବେ ତାହା ପ୍ରକୃତରେ ଅଧିକ ଆଶା ଓ ଆନନ୍ଦର ବିଷୟ ହୋଇଥାନ୍ତା । ମାତ୍ର, ପରମେଶ୍ୱରଙ୍କର ଇଚ୍ଛା ସମ୍ଭବତଃ ଅନ୍ୟପ୍ରକାର ଥିଲା ! ପରମେଶ୍ୱର ସ୍ୱୟଂ କହିଛନ୍ତି: ''ଯିଏ ମୋ'ଠାରେ ବିଶ୍ୱାସ ରଖିଥାଏ, ସିଏ ଏହି ସଂସାରରୁ ବିଦାୟ ନେଇ ଚାଲିଗଲେ ମଧ୍ୟ ତଥାପି କେବେହେଲେ ମରେନାହିଁ ।'' କଲ୍ଡ୍‌ଙ୍କର କାର୍ଯ୍ୟର କୌଣସି ମୃତ୍ୟୁ ନାହିଁ । କାରଣ, ସତ୍ୟର ପରିଚର୍ଯ୍ୟା କରୁଥିବା ମୋର ଓ ଆପଣମାନଙ୍କର ମଧ୍ୟ ମୃତ୍ୟୁ ନାହିଁ । ସେହି ଈଶ୍ୱରଙ୍କର ଇଚ୍ଛା ହିଁ ପୂର୍ଣ୍ଣ ହେବ । ଏହାପରେ ଶବାଧାରଟିକୁ ତଳକୁ ଖସାଇ ନିଆଗଲା । ତା'ପରେ ସର୍ବଶେଷ ସଙ୍ଗୀତଟିଏ ବୋଲାଯିବା ପରେ କାର୍ଯ୍ୟକ୍ରମଟି ସମ୍ପୂର୍ଣ୍ଣ ହୋଇଥିଲା । ଶବାଧାର ଭିତରେ ଚିରବିଶ୍ରାମ ନେଉଥିବା ସେହି ମହାନ୍ ପ୍ରତିବାଦକାରୀଙ୍କର ମୁହଁ ତାଙ୍କର ବିଦ୍ୟାଳୟ ଆଡ଼କୁ ହୋଇ ରହିଛି । ଏବଂ, ମୁଣ୍ଡର ପୃଷ୍ଠଭାଗଟି ଗୀର୍ଜାରେ ଥିବା ଉପାସନାବେଦୀଟି ଆଡ଼କୁ ରହିଛି ।

କେଡ଼େ କୋଳାହଳଶୂନ୍ୟ ଭାବରେ କେତେ ଅଳପ ଭିତରେ କ୍ରାନ୍ତିକାରୀ କଲ୍ଡ୍ ତାଙ୍କର କାର୍ଯ୍ୟଟି ଏକଦା ଆରମ୍ଭ କରିଥିଲେ । ସେହି ଆରମ୍ଭକାଳରୁ ହିଁ ପ୍ରତ୍ୟେକ ପଦରେ ତାଙ୍କୁ ସଂଗ୍ରାମ ଦ୍ୱାରା ହିଁ ଅଗ୍ରସର ହେବାକୁ ପଡ଼ିଥିଲା । ପ୍ରତିବାଦଗୁଡ଼ିକ କ୍ରମେ ସୋଚ୍ଚାର ହେଲା, - ରାଜଧାନୀର କେତେ କେତେ ପ୍ରତିଷ୍ଠିତ ଅଭ୍ୟସ୍ତତାକୁ ଚ୍ୟାଲେଞ୍ଜ ଦେଲା ଏବଂ ଶିକ୍ଷା ତଥା ଧର୍ମଜୀବନର କ୍ଷେତ୍ରରେ ବହୁତ କୋଳାହଳ ସୃଷ୍ଟି କରିଥିଲା । କର୍ତ୍ତାମାନେ ରହିଗଲେ, ପୁରାତନ ରହିଗଲା, - ପ୍ରତିବାଦର ବିଜୟ ହେଲା । ତଥାପି ବଡ଼ ହେବାକୁ କିମ୍ବା ବଡ଼ ଦିଶିବାକୁ କଲ୍ଡ୍ ମୋଟେ ରାଜଧାନୀକୁ ଆସିବା ଲାଗି ମନ କରିନଥିଲେ । ଡେନ୍‌ମାର୍କ୍‌ର କୃଷକକୁଳ ନିମନ୍ତେ ସେ ଏକ ବୃହତ୍ ବିମୋଚନରେ ପୁରୋଗାମୀ ହୋଇ ରହିଲେ ।

- ୯ -

କଲ୍ଡଙ୍କ ଦ୍ୱାରା ପ୍ରତିଷ୍ଠିତ ରୁଇସ୍‌ଲିଙ୍ଗ-ଡାଲ୍‌ବୁଇ-ଡ଼ାଲୁମ୍ ଲୋକବିଦ୍ୟାଳୟଟି ହିଁ ଡେନ୍‌ମାର୍କ୍‌ର ସର୍ବପ୍ରଥମ ଲୋକବିଦ୍ୟାଳୟ ଥିଲା । ଏବଂ, ପୁରୋଗାମୀଙ୍କର ତିରୋଧାନ ପରେ ସେଇଟିର ଅବସ୍ଥା କ'ଣ ହେଲା ? ଥରେ ନିଜର ଜୀବଦ୍ଦଶାରେ ହିଁ କଲ୍ଡ କହିଥିଲେ, ''ମୋ'ପରେ ଆଉ କିଏ ଏଠାରେ ବିଦ୍ୟାଳୟଟିକୁ ଜୀଆଇ ରଖିବ, ତାହା କେବଳ ଈଶ୍ୱର ହିଁ ଜାଣନ୍ତି । ମୋ' ଆଖିକୁ ପ୍ରକୃତରେ କେହି ଦେଖା ଯାଉନାହାନ୍ତି । ଯଦି ମୋ' ଭଉଣୀ ଜଣେ ପୁରୁଷଲୋକ ହୋଇଥାନ୍ତା, ତେବେ ସେହି ସବୁ ଚଳାଇ ଥାଆନ୍ତା । ଝିଅମାନଙ୍କର ବିଦ୍ୟାଳୟଟି କିପରି ଚଳାଇବାକୁ ହେବ, ସେହି କଥାଟି ମୁଁ ତାହାରିଠାରୁ ଶିଖିଥିଲି ।''

ଗୋଟିଏ ମାସ ସବୁ ଚୁପ୍‌ଚାପ୍ ରହିଥିଲା । ତା'ପରେ ମଇ ମାସରେ ବନ୍ଧୁମାନେ ବୈଠକଟିଏ ଡକାଇଲେ । ପ୍ରଥମ ପ୍ରଶ୍ନଟି ଉଠିଲା: ବିଦ୍ୟାଳୟଟି କ'ଣ ବନ୍ଦ ହୋଇଯିବ ? ଏବଂ ଦ୍ୱିତୀୟ ପ୍ରଶ୍ନଟି : କଲ୍ଡଙ୍କର ଜୀବନୀ କିଏ ଲେଖିବ, ଯେପରି କି ପରବର୍ତ୍ତୀ ପୁରୁଷର ଲୋକେ ତାଙ୍କର ଯାବତୀୟ କାର୍ଯ୍ୟର ପ୍ରକୃତ ଚିତ୍ରଟିଏ ପାଇପାରିବେ ? କେହି ଜଣେ ଆଗଭର ହୋଇ ବାହାରିଲେ ନାହିଁ । ସମସ୍ତେ ଅବଶ୍ୟ ସାହାଯ୍ୟ କରିବେ ବୋଲି କହିଲେ ।

ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ବୈଠକଟି ନିମନ୍ତେ ଶୁଭେଚ୍ଛା ଜଣାଇ ପଠାଇଥିଲେ । ସେ ଲେଖିଥିଲେ, ମୁଁ ଶୁଣୁଛି, ବିଦ୍ୟାଳୟର ଘରଟିକୁ ବିକ୍ରୀ କରିଦେବା ପାଇଁ ବିଚାର କରାଯାଉଛି । ତାହା ଅତ୍ୟନ୍ତ ଲଜ୍ଜାର କଥା । କଲ୍ଡଙ୍କର ବିଦ୍ୟାଳୟଟି ବନ୍ଦ ହୋଇ ଯିବ ବୋଲି ଆଶଙ୍କା ମଧ୍ୟ ହେଉଛି । ମୁଁ ଭାବୁଛି, ଏଣିକି ସେଠା ବିଦ୍ୟାଳୟଟି ଉଭୟ ଶୀତ ଏବଂ ଖରାମାସରେ ଝିଅମାନଙ୍କ ପାଇଁ ଚାଲୁ ଓ କଲ୍ଡଙ୍କର ଭଉଣୀ ତାହାର ଦାୟିତ୍ୱରେ ରହନ୍ତୁ । ତାଙ୍କୁ ମୁଁ ଜାଣିନାହିଁ ସିନା, କିନ୍ତୁ ସିଏ କଲ୍ଡଙ୍କର ଭଉଣୀ ବୋଲି ତ ମୋତେ ଜଣା ଅଛି । କଲ୍ଡ ଅନେକ ସମୟରେ ମୋତେ ତାଙ୍କ କଥା କହିଛନ୍ତି ।

ବୈଠକରେ ଦୀର୍ଘ ଚର୍ଚ୍ଚାମାନ ହୋଇଥିଲା । ପଇସା ମଧ୍ୟ ଯୋଗାଡ଼ କରିବାକୁ ହେବ । କଥା ହେଲା, କିଛି ଋଣ ହେବ, କିଛି ଦାନ ବି ସଂଗ୍ରହ କରାଯିବ । ମାତ୍ର, ଅନୁଷ୍ଠାନଟି ବନ୍ଦ ହେବନାହିଁ । ପୁରୁଣା ଗୃହଟି ବିକ୍ରୀ ହେଲା ଏବଂ ନୂଆ ଗୃହଟି ତିଆରି କରିବାରେ ସେହି ପଇସାକୁ ଲଗାଗଲା । କିଛି ଅଧିକ ଜମି ମଧ୍ୟ ଖରିଦ ହେଲା । ସ୍ଥିର ହେଲା ଯେ କଲ୍ଡଙ୍କର

ବିଧବା ପତ୍ନୀ ବି ସେହି ଗୃହରେ ରହିବେ । ତାଙ୍କୁ କୌଣସି ଶୁଳ୍କ ଦେବାକୁ ପଡ଼ିବ ନାହିଁ । କଲ୍ଡ୍‌ଙ୍କର ଭଉଣୀ ଓ ଭଗ୍ନୀପତି ବିଦ୍ୟାଳୟର ଦାୟିତ୍ୱରେ ରହିଲେ । ବିଦ୍ୟାଳୟଟି ତା'ପରେ ଷୋଳ ବର୍ଷ ଚାଲିଥିଲା । ସେଠାରେ ଯାବତୀୟ କାର୍ଯ୍ୟରେ କଲ୍ଡ୍‌ଙ୍କର ପ୍ରେରଣା ହିଁ ସବୁକୁ ପରିଚାଳିତ କରି ନେଉଥିଲା ।

ଭଉଣୀ ସେଠାରୁ ଚାଲିଯିବା ପରେ ୧୮୮୬ ମସିହାରେ ବିଦ୍ୟାଳୟଟିକୁ ଏକ କୃଷିବିଦ୍ୟାଳୟରେ ପରିଣତ କରାଗଲା । ଏହାର ଦଶବର୍ଷ ପରେ ୧୮୯୬ରେ ଭଉଣୀଙ୍କର ମଧ୍ୟ ସ୍ୱର୍ଗବାସ ହୋଇଥିଲା । ଡାଲୁମ୍ ଗୀର୍ଜାରେ ତାଙ୍କର ମର ଶରୀରକୁ ଭାଇଙ୍କର ପାର୍ଶ୍ୱବର୍ତ୍ତୀ ଭାବରେ ହିଁ କବର ଦିଆଗଲା ।

ଗୋଟିଏ ଭଳି କେତେକ ମନୁଷ୍ୟ ଥାଆନ୍ତି, ଯେଉଁମାନେ ଭାବନ୍ତି ଯେ ସେମାନେ କୌଣସି କାର୍ଯ୍ୟର ଦାୟିତ୍ୱ ବହନ କରନ୍ତି ବୋଲି କାର୍ଯ୍ୟଟି ଆଦୌ ସମ୍ଭବ ହୋଇଥାଏ । ସେମାନେ ନିଜକୁ ସର୍ବଦା ଅପରିହାର୍ଯ୍ୟ ବୋଲି ମନେ କରୁଥାନ୍ତି ଏବଂ, ସେମାନେ ଆଗକୁ ବାହାରି ଆଗ ଦାୟିତ୍ୱ ବହନ ନକଲେ କୌଣସି କାର୍ଯ୍ୟ ସମ୍ଭବ ହେବନାହିଁ ବୋଲି ବହୁତ ଦମ୍ଭ ସହିତ ବିଚାରନ୍ତି । କ୍ରିଷ୍ଟେନ୍ କଲ୍ଡ୍ ଅଲଗା ପ୍ରକାରର ଭାବୁଥିଲେ: ''ଆମେ ଭାବୁ ଯେ, ଆମେ ପ୍ରକୃତରେ କୌଣସି କାର୍ଯ୍ୟର ଦାୟିତ୍ୱ ନେଇଛୁ ବୋଲି ସେଇଟି ଚାଲିଛି । ମାତ୍ର, ସେଇଟି ମଧ୍ୟ କେବଳ କହିବାର ଏକ ଶୈଳୀ ବ୍ୟତୀତ ଆଉ କିଛି ନୁହେଁ । ଯଦି କାର୍ଯ୍ୟଟି ଏକ ଭଲ କାର୍ଯ୍ୟ ହୋଇଥାଏ, ତେବେ ବସ୍ତୁତଃ କାର୍ଯ୍ୟଟି ହିଁ ଆମକୁ ବହନ କରିଥାଏ । କୌଣସି ଏକ କାର୍ଯ୍ୟରେ ପରିକର ରୂପେ କିଛି କରିବାର ଅର୍ଥ ହେଉଛି, ସେହି କାର୍ଯ୍ୟଟିର ପଶ୍ଚାତରେ ରହିଥିବା ଈଶ୍ୱରଙ୍କର ଅଭିପ୍ରାୟଟି ନିମନ୍ତେ ନିଜେ କାର୍ଯ୍ୟରେ ଲାଗିବା ପାଇଁ ସମ୍ମତ ହେବା । ସେହି ଅଭିପ୍ରାୟଟି ହିଁ ପଶ୍ଚାତରେ ରହି କାର୍ଯ୍ୟଟିକୁ ଅଗ୍ରସର କରାଇ ନେଉଥାଏ । ମାତ୍ର, ଯଦି କାର୍ଯ୍ୟଟି ମନ୍ଦ ହୋଇଥାଏ, ତେବେ ତାହା ଆମକୁ ନିଜର ଦଉଡ଼ିରେ ବାନ୍ଧି ତଳକୁ ତଳକୁ ନେବାରେ ଲାଗିଥାଏ । ଯେଉଁ ମନୁଷ୍ୟମାନେ ଆଦୌ କୌଣସି ଭୁଲ କରିବେନାହିଁ ବୋଲି କହୁଥାନ୍ତି, ସେମାନଙ୍କୁ ଈଶ୍ୱରଙ୍କର ଅଭିପ୍ରାୟ ଆଦୌ କୌଣସି କାମରେ ଲଗାଇ ପାରେନାହିଁ । ଈଶ୍ୱର କେବଳ ପରିକର ହିଁ ଚାହାନ୍ତି, ପରିକରମାନଙ୍କୁ ହିଁ କାମରେ ଲଗାନ୍ତି; ମାମଲତକାର ମାନଙ୍କୁ ମୋଟେ ପାରନ୍ତିନାହିଁ ।''

ଅତ୍ୟନ୍ତ ବିଚିତ୍ର ଲାଗିପାରେ, ମାତ୍ର ଏକଥା ସତ ଯେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍ କେବେ ଥରେ ହେଲେ କଲ୍ଡ୍‌ଙ୍କ ବିଦ୍ୟାଳୟଟିକୁ ଦେଖିବାଲାଗି ଡାଲୁମ୍ ଆସିନଥିଲେ । ସିଏ ଆସିବେ ବୋଲି ବେଳେ ବେଳେ ଖୁବ୍ ଶୁଣା ଯାଉଥିଲା, ମାତ୍ର ତାହା କେବେହେଲେ ଘଟି ପାରି ନଥିଲା । ସିଏ କେବେ ଆସିଥିଲେ ଶ୍ରୀଯୁକ୍ତ କଲ୍ଡ୍‌ଙ୍କର ଆନନ୍ଦର ସୀମା ହିଁ ରହିନଥାନ୍ତା ।

ତାଙ୍କ ଜୀବନର ସର୍ବଶେଷ ବର୍ଷ ବିଶପ ଆସୁଛନ୍ତି ବୋଲି ଶୁଣାଗଲା, ବାର୍ତ୍ତା ବି ଆସି ପହଞ୍ଚିଲା ଏବଂ ତାଙ୍କୁ ସ୍ୱାଗତ କରିବା ନିମନ୍ତେ କଲ୍‌ଡ୍ ସବୁକିଛି ପ୍ରସ୍ତୁତ କରି ରଖିଥିଲେ । ମାତ୍ର ତା'ପରେ କଲ୍‌ଡ୍ ଅସୁସ୍ଥ ହେଲେ ଓ ସବୁ ସେତିକିରେ ରହିଗଲା । ମାତ୍ର, କଲ୍‌ଡ୍ ଏବଂ ଗ୍ରୁଣ୍ଡ୍‌ଭିଗ୍ ଦୁହେଁ ସଂସାରରୁ ବିଦାୟ ନେଇ ଚାଲିଯିବା ପରେ ଥରେ ଶ୍ରୀମତୀ ଗ୍ରୁଣ୍ଡ୍‌ଭିଗ୍ ଡାଲୁମ୍ ଆସିଥିଲେ ।

କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କର କାହାଣୀଟିକୁ ଅନ୍ତରଙ୍ଗ ଭାବରେ ଜାଣିସାରିବା ପରେ ପ୍ରାୟ ପ୍ରତ୍ୟକ୍ଷ ଭାବରେ ଅନୁଭବ ହେବ ଯେ, ନିଜର ଏହି ବିଦ୍ୟାଳୟ-ଅଭିଯାନଟିକୁ ମାଧ୍ୟମ କରି ସିଏ ଏକ ନୂତନ ଅନ୍ୟଭଳି ସମାଜର ସ୍ଥାପନା ହୋଇପାରିବ ବୋଲି ସତତ ସ୍ୱପ୍ନ ଦେଖୁଥିଲେ, - ନୂତନ ଆଖିରେ ଜୀବନକୁ ଓ ପୃଥିବୀକୁ ଦେଖୁଥିବା ମୁକ୍ତ ମନୁଷ୍ୟସନ୍ତାନ ମାନଙ୍କର ଏପରି ଏକ ପରିବାରର ସ୍ୱପ୍ନ ଦେଖୁଥିଲେ,- ଯେଉଁ ପୃଥିବୀରେ ମନୁଷ୍ୟମାନେ ଯାବତୀୟ ଅର୍ଥରେ ପରସ୍ପରର ସ୍ୱେଚ୍ଛାପ୍ରବୃତ୍ତ ପରିକର ହୋଇ ରହିଥିବେ । ଏବଂ, ଏହାଠାରୁ ବଳି ଅଧିକ କ'ଣ ଈଶ୍ୱରୀୟତାର ଏହି ପୃଥିବୀରେ କଳ୍ପନା କରା ଯାଇପାରେ ? କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କର ସନ୍ଦେଶ ପ୍ରକୃତରେ ଏକ ନୂତନ ଜୀବନସଂକଳ୍ପର ହିଁ ଦାବୀ କରିଥାଏ, ମନୁଷ୍ୟମାନଙ୍କ ଠାରୁ ହୃଦୟର ଦାବୀ କରିଥାଏ । ତାଙ୍କ ମୃତ୍ୟୁର ଦେଢ଼ବର୍ଷ ପରେ ନର୍‌ୱେର ଏକ ସମ୍ବାଦପତ୍ରରେ 'ଡେନ୍‌ମାର୍କ୍‌ର ପ୍ରଥମ ଲୋକବିଦ୍ୟାଳୟ ଶିକ୍ଷକ' ଶୀର୍ଷକରେ କଲ୍‌ଡ୍‌ଙ୍କ ସମ୍ବନ୍ଧରେ ଯେଉଁ ଧାରାବାହିକ ଲେଖାଟି ବାହାରିଥିଲା, କିଞ୍ଚିଦ୍ ପୁନରାବୃତ୍ତି ହେଲେ ମଧ୍ୟ ଆମେ ସେହି ଲେଖାର ମୁଖ୍ୟ କଥାଗୁଡ଼ିକୁ ଆମେ ପୁନର୍ବାର ସ୍ମରଣ କରିବା । ଲେଖକ ଶ୍ରୀଯୁକ୍ତ କଲ୍‌ଡ୍‌ଙ୍କୁ ସେହି ଊନବିଂଶ ଶତାବ୍ଦୀର ବୃହତ୍ତମ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ବୋଲି ଅଭିହିତ କରିଛନ୍ତି । କଲ୍‌ଡ୍ ହିଁ ଲୋକବିଦ୍ୟାଳୟର କଳ୍ପନାଟିରେ ପ୍ରକୃତରେ ଅବୟବ ଆଣି ଯୋଗାଇ ଦେଇଛନ୍ତି ଏବଂ ସ୍ୱୟଂ ତାହାରି ଏକ ପ୍ରୟୋଗ କରି ପରବର୍ତ୍ତୀ ସମସ୍ତଙ୍କ ନିମନ୍ତେ ଅସଲ ଦ୍ୱାରଗୁଡ଼ିକୁ ଉନ୍ମୋଚିତ କରିଦେଇ ଯାଇଛନ୍ତି । ବିଶପ୍ ନିକୋଲାଇ ଗ୍ରୁଣ୍ଡ୍‌ଭିଗ୍ ଏକ ଲୋକବିଦ୍ୟାଳୟର ଲକ୍ଷ୍ୟଗୁଡ଼ିକ ବିଷୟରେ ନାନାବିଧ ସୂଚନା ପ୍ରଦାନ କରିଥିଲେ ସତ, ମାତ୍ର କ୍ରିଷ୍ଟେନ୍ କଲ୍‌ଡ୍ ହିଁ ସେଥିପାଇଁ ବାଟଟିଏ ବାହାର କରି ପାରିଛନ୍ତି । ପରବର୍ତ୍ତୀ ଲୋକବିଦ୍ୟାଳୟ ଗୁଡ଼ିକ ଅଧିକାଂଶତଃ ସେହି ନମୁନାଟିର ହିଁ ଅନୁସରଣ କରିଛନ୍ତି । ଏବଂ, ଆହୁରି ଅଧିକ ମହତ୍ତ୍ୱପୂର୍ଣ୍ଣ କଥାଟି ହେଉଛି ଯେ, ଦେଶର ମହାନ୍ ଓ ପ୍ରଖ୍ୟାତ ବ୍ୟକ୍ତି କିଏ ବୋଲି ଖୋଜିବାକୁ ଯାଇ ପାରମ୍ପରିକ ଭାବରେ ସମସ୍ତେ ସର୍ବଦା ସହରର ଉଚ୍ଚଶିକ୍ଷିତ ମାନଙ୍କ ଆଡ଼କୁ ଅନାଇ ଦେଖୁଥିଲେ, ସେହି ବ୍ୟକ୍ତିମାନଙ୍କର ପ୍ରଖ୍ୟାତି ସାଧାରଣତଃ ସହରରୁ ହିଁ, ଏପରିକି ରାଜଧାନୀରୁ ସର୍ବପ୍ରଥମେ ନିଜକୁ ପରିଚିତ କରାଇ ତା'ପରେ ଯାଇ ସମଗ୍ର ଦେଶ ଆଡ଼କୁ ବ୍ୟାପ୍ତ ହୋଇ ଆସୁଥିଲା । ମାତ୍ର, କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କ କ୍ଷେତ୍ରରେ ଏକାବେଳେକେ ବିପରୀତ କଥାଟି ହିଁ ଘଟିଲା । ଶ୍ରୀଯୁକ୍ତ କଲ୍‌ଡ୍‌ଙ୍କର ଦେହାନ୍ତ ଘଟିବା ପୂର୍ବରୁ ରାଜଧାନୀ

କୋପେନ୍‌ହେଗେନ୍‌ରେ ବାସ କରୁଥିବା ଶହେରେ ଜଣେ ମଧ୍ୟ ହୁଏତ ତାଙ୍କର ନାମ କେବେହେଲେ ଶୁଣିନଥିଲେ । ୧୮୭୦ ମସିହା ଏପ୍ରିଲ୍ ମାସରେ ସିଏ ପୃଥିବୀରୁ ବିଦାୟ ନେଲେ ଏବଂ ତାଙ୍କର ମୃତ ଶରୀରକୁ ସମାଧି ଦିଆଯିବାର ଅବସରରେ ନଅଜଣ ତାଙ୍କୁ ସମ୍ମାନ ଦେଖାଇ ଭାଷଣ ଦେଇଥିଲେ । ଏବଂ ଦେଶର ସବୁ ଅଞ୍ଚଳରୁ ଦୁଇ ହଜାରରୁ ଅଧିକ ନରନାରୀ ସେହି ଅନୁଷ୍ଠାନରେ ଯୋଗ ଦେବାକୁ ଆସି ସମବେତ ହୋଇଥିଲେ । ସେପର୍ଯ୍ୟନ୍ତ ପ୍ରଧାନତଃ ଅଜ୍ଞାତ ହୋଇ ରହିଥିବା ଶିକ୍ଷକ କଲ୍ଡ୍ ସତେଅବା ଅକସ୍ମାତ୍ ଏତେ ପ୍ରସିଦ୍ଧ ହୋଇ ପାରିଥିଲେ । ସହରର ଅଧିବାସୀମାନେ ସେହି ଘଟଣାରେ ଅବଶ୍ୟ ଭାରି ଚକିତ ହୋଇ ପଡ଼ିଥିବେ ଏବଂ ତଥାପି କେତେ ମୁହୂର୍ତ୍ତପରେ ସେହି ବିଶେଷ ଘଟଣାଟିକୁ ସମ୍ପୂର୍ଣ୍ଣ ଭାବରେ ପାସୋରି ବି ପକାଇଥିବେ । ମୃତ୍ୟୁର ବହୁତ ଦିନ ପରଯାଏ ମଧ୍ୟ 'ସମ୍ଭ୍ରାନ୍ତ' ସମାଜରେ କଲ୍ଡ୍ ସେହିପରି ଅପରିଚିତ ହୋଇ ରହିଥିଲେ; ମାତ୍ର ଦେଶର ଗ୍ରାମାଞ୍ଚଳରେ ସେ ପ୍ରସିଦ୍ଧ ହୋଇ ସାରିଥିଲେ, ଚାଷୀ ତଥା ସ୍କୁଲଶିକ୍ଷକ ମାନଙ୍କର ଘରେ ସୁପରିଚିତ ଥିଲେ । କାରଣ, ଦେଶର ଜନଗଣଙ୍କୁ ଶିକ୍ଷାଦ୍ୱାରା ଜାଗ୍ରତ କରି ଆଣିବାର କ୍ଷେତ୍ରରେ କଲ୍ଡ୍ ହିଁ ସବାଆଗ ସମସ୍ତଙ୍କର ସ୍ମରଣୀୟ ହୋଇ ଅବଶ୍ୟ ରହିଥିବେ । ଲୋକବିଦ୍ୟାଳୟ ହିଁ ସେହି ଦେଶର ପ୍ରାୟ ସକଳ ଅଗ୍ରଗତିକୁ ଏକ ସ୍ୱତନ୍ତ୍ର ରଙ୍ଗ ପ୍ରଦାନ କରି ଆସିଛି ।

ନୂତନ ଶିକ୍ଷା ଓ ତାହାକୁ ମୂଳ କରି ଆରମ୍ଭ ହୋଇଥିବା ନୂତନ ଜାଗରଣ ଯେ ହଠାତ୍ କେଉଁ ଆକାଶରୁ ଖସି ପଡ଼ିଥିଲା ଓ ତାହାରି ଆଜ୍ଞାପ୍ରମାଣେ ପରିବର୍ତ୍ତନ ଗୁଡ଼ିକୁ ଘଟାଇଲା, ସେକଥା ଆଦୌ ନୁହେଁ । ସେହି ପୁରୁଣାକୁ ଦେଖିବାର ଭଙ୍ଗୀରେ ଏକ ନୂତନ ସଂପୃକ୍ତତାର ଆବେଦନ ସମ୍ଭବ ହେଲେ ହିଁ ସତେଅବା କ'ଣସବୁ ନୂଆ ହୋଇ ସମ୍ଭୂତ ହେବାପରି ଲାଗେ, ନୂତନ ଉତ୍ସାହ ଆଣିଦିଏ ଏବଂ ନୂଆ ବିଶ୍ୱାସଦ୍ୱାରା ଆଗକୁ ବାଟ କଢ଼ାଇ ନେଇଯାଏ । ସେତେବେଳେ ପୁରୁଣାଟି ଭିତରେ ହିଁ ଏକ ନୂଆ ଜୀବନ୍ୟାସ ହୋଇଆସେ ଏବଂ ଯୁଗର ପାଦ ଆଗକୁ ଏକାବେଳେକେ କେତେ ପହଣ୍ଡ ପଡ଼ି ଯାଉଥିବା ପରି ମନେ ହୋଇଥାଏ । ଯାହାକିଛି ସତେଅବା ଗୋଟିଏ ନୂଆ କ'ଣଟିଏ ରୂପେ ଆମର ବର୍ତ୍ତମାନକୁ ବଦଳାଇ ଦେବାକୁ ଆସେ, ତାହାର ଚେର ଅତୀତ ମଧ୍ୟରେ ହିଁ ରହିଥାଏ; ଦେଖି ପାରୁଥିବା ଜଣେ ବା କେତେଜଣ ବ୍ୟକ୍ତିଙ୍କର ଆଖି ସେହି ଚେରଟିକୁ ଅନୁଭବ କରେ, ସେହି ଅନୁଭବ ଏକ ଭବିଷ୍ୟଦର୍ଶନକୁ ମଧ୍ୟ ଉଦ୍‌ବୁଦ୍ଧ କରି ଆଣେ ଏବଂ ପୁରୋଗାମୀମାନେ ତାହାକୁ ଉଭୟ ଭିତ୍ତି ତଥା ବ୍ୟଞ୍ଜନାରୂପେ ବ୍ୟବହାର କରି ଏକ ନୂତନ ଦିଗ୍‌ଦର୍ଶନରେ ସମୟଟିକୁ ଆଗକୁ ମୁହାଁଇ ନେବାପାଇଁ ଆସି ଉପସ୍ଥିତ ହୋଇ ଯାଆନ୍ତି । ତଥାପି, ଏହି ରୀତିଟି ଭିତରେ ମଧ୍ୟ କ୍ରିଷ୍ଟେନ୍ କଲ୍ଡ୍ ଜଣେ ତୁଙ୍ଗ ବ୍ୟତିକ୍ରମ ହୋଇ ରହିଛନ୍ତି ବୋଲି ତାଙ୍କ ବିଷୟରେ ଅଧିକରୁ ଅଧିକ ଜାଣୁଥିବା ସଙ୍ଗେ ସଙ୍ଗେ ପ୍ରକୃତରେ ଅତ୍ୟନ୍ତ ବିସ୍ମିତ

ହେବାକୁ ପଡ଼ିଥାଏ । ଶାସ୍ତ୍ର ଅଧ୍ୟୟନର ପୃଥିବୀ ମଧ୍ୟକୁ ତାଙ୍କର କୌଣସି ପ୍ରବେଶ ହୋଇନଥିଲା, କ୍ଲାସିକ୍ କାଳର ଇଉରୋପ ସହିତ ତାଙ୍କର କୌଣସି ପରିଚିତି ନଥିଲା । ମାତ୍ର, କଲ୍ଡ୍ ଗାଆଁରେ ବଢ଼ିଥିଲେ, ଲୋକଜୀବନ ସହିତ ତାଙ୍କର ଅନ୍ତର୍ନାଡ଼ୀଟି ଅତ୍ୟନ୍ତ ସ୍ୱାଭାବିକ ଭାବରେ ଲାଗି ରହିଥିଲା । କୃଷକ ଓ ସାଧାରଣ ନିତାନ୍ତ ସାନମାନଙ୍କ ଭିତରେ ତାଙ୍କର ବାଲ୍ୟଜୀବନ ଅତିବାହିତ ହୋଇଥିଲା । ତାଙ୍କର ମାଆ ସନ୍ତାନମାନଙ୍କୁ ପୁରାକାଳର କାହାଣୀମାନ ଶୁଣାଉଥିଲେ ଓ ସେମାନଙ୍କର କଳ୍ପନାଗୁଡ଼ିକୁ ମୁକ୍ତ ଭାବରେ କାୟାବିସ୍ତାର କରିବାର ପର୍ଯ୍ୟାପ୍ତ ସୁଯୋଗ ଆଣି ଦେଉଥିଲେ । କଲ୍ଡ୍‌ଙ୍କ ମାତ୍ର ଅଠର ବର୍ଷ ହୋଇଥିବା ସମୟରେ 'ଭଗବାନ ମନୁଷ୍ୟକୁ ଭଲ ପାଆନ୍ତି' ବୋଲି ସିଏ ଜଣୈକ ପାଦ୍ରୀଙ୍କ ଠାରୁ ଶୁଣିଥିବା ବାକ୍ୟଟି ତାଙ୍କ ଆଗରେ ସତେଅବା ଏକ ନୂତନ ଦିଗ୍‌ବଳୟକୁ ଆଣି ଉନ୍ମୋଚିତ କରି ଦେଇଥିଲା । ନିତାନ୍ତ ନିବିଡ଼ ବ୍ୟକ୍ତି-ଆସ୍ପୃହାର ସ୍ତରରେ କଲ୍ଡ୍ ସେହି ସତ୍ୟବାକ୍ୟଟିକୁ ନିଜର ହୃଦୟ ଭିତରକୁ ଗ୍ରହଣ କରି ନେଇଥିଲେ ଏବଂ ଅତ୍ୟନ୍ତ ବିଚିତ୍ର ଭାବରେ ତାହା ତାଙ୍କୁ ନିରତ ଆଗକୁ ଆଗକୁ ବାଟ କଢ଼ାଇ ନେଇ ଯାଉଥିଲା । ସେହି ଆନନ୍ଦପରିଚୟଟି ହେବା ପରେ ସେ ନିଜର ଭୂମି ଡେନ୍‌ମାର୍କ୍‌ର ପୁରାତନ କାହାଣୀଗୁଡ଼ିକୁ ପାଠ କଲେ, ପୃଥିବୀର ଇତିହାସକୁ ମଧ୍ୟ ପାଠ କଲେ ଏବଂ କ୍ରମେ କେଡ଼େ ସହଜ ଭାବରେ ଭୂମିଟି ସହିତ, ପୃଥିବୀ ସହିତ ବାନ୍ଧି ହୋଇଗଲେ, ଏକ ଆଧ୍ୟାତ୍ମିକ ଅଙ୍ଗୀକାରବଦ୍ଧତାର ସୋପାନକୁ ଉତ୍ତୀର୍ଣ୍ଣ ହୋଇଗଲେ ।

ବାସ୍ତବ ଜୀବନର ଗରଜଦ୍ୱାରା ବାଧ୍ୟ ହୋଇ କଲ୍ଡ୍ ମାତ୍ର ତେର ବର୍ଷ ବୟସରେ ଶିକ୍ଷକର ବୃତ୍ତି କରି ଜୀବିକା ଦ୍ୱାରା ମଣ ହେବାକୁ ଘରୁ ବାହାରିଥିଲେ । ଶୈଶବ ମୋଟେ କଟିନଥିଲା; ଦେଖିବାକୁ ବାଙ୍ଗରା ଥିଲେ, ତେଣୁ ତାଙ୍କର ଚାଟମାନେ ତାଙ୍କଠାରୁ ଅଧିକ ବଡ଼ ଦିଶୁଥିଲେ, ହୁଏତ ଅଧିକ ବଳୁଆ ମଧ୍ୟ ଥିଲେ । ବିଚରା କେଡ଼େ ସରଳ ଓ ନିରୀହ ଭାବରେ ସିଏ ନିଜର ଚାଟମାନଙ୍କୁ କହିଥିବେ: ତୁମେସବୁ ମୋ'ଠାରୁ ଅଧିକ ବଡ଼ ବଡ଼ ଦିଶୁଛ ଏବଂ, ଯଦି ମାଡ଼ ମରାମରି ଲାଗିବ, ତେବେ ତୁମେମାନେ ମୋତେ ଅତି ସହଜରେ ମାଡ଼ ଦେଇ ଭୂଇଁରେ ଚିତ୍ କରି ଦେଇ ପାରିବ । ମାତ୍ର, ମୁଁ ତୁମମାନଙ୍କୁ ମୋଟେ ମାଡ଼ ଦେବିନାହିଁ ଏବଂ ତେଣୁ ମୁଁ ଆଶା କରୁଛି ଯେ, ତୁମେମାନେ ମଧ୍ୟ ମୋତେ ମାଡ଼ ଦେବନାହିଁ । ମାତ୍ର, ଦେଖିବ, ତୁମେମାନେ ଅଚିରେ ନିଶ୍ଚୟ ଜାଣିପାରିବ ଯେ ମୁଁ ହେଉଛି ତୁମମାନଙ୍କ ଠାରୁ ଅଧିକ ବୁଦ୍ଧିଆ; ଏବଂ, ତେଣୁ, ଯଦି ତୁମମାନଙ୍କର ବୁଦ୍ଧି ଥିବ, ତେବେ ତୁମେମାନେ ମୋ'ଠାରୁ କିଛି ଶିକ୍ଷା କରିବାକୁ ନିଶ୍ଚୟ ଇଚ୍ଛା କରିବ । ତା'ପରେ କଲ୍ଡ୍ ସେମାନଙ୍କ ପାଇଁ ଶିକ୍ଷକଟିଏ ହେଲେ ଓ ସେମାନଙ୍କୁ ପାଠ ପଢ଼ାଇଲେ । ଚାଟ ହିସାବରେ ନୁହେଁ, ସେମାନଙ୍କର ଜଣେ ସାଙ୍ଗ ହିସାବରେ ସେମାନଙ୍କୁ ପାଠ ପଢ଼ାଇଥିଲେ । ଭଗବାନ ସେମାନଙ୍କୁ ଭଲ ପାଆନ୍ତି ବୋଲି ସେମାନଙ୍କର ହୃଦ୍‌ବୋଧ କରାଇଥିଲେ, ସେମାନଙ୍କର ଦେଶ ଡେନ୍‌ମାର୍କ୍

ପୁନର୍ବାର ସୌଭାଗ୍ୟଶାଳୀ ହୋଇପାରିବ ବୋଲି ସେମାନଙ୍କ ମନରେ ବିଶ୍ୱାସ ଜନ୍ମାଇ ପାରିଲେ । ମାତ୍ର ସେତେବେଳେ ଅନ୍ୟ ବିଦ୍ୟାଳୟମାନଙ୍କରେ ପିଲାମାନଙ୍କୁ ଭଗବାନଙ୍କୁ ଭୟ କରିବାକୁ ହିଁ ଶିକ୍ଷା ଦିଆ ଯାଉଥିଲା । ଭଲ ନହୋଇ ମନ୍ଦ ହେଲେ, ଉତ୍ତମ ମାର୍ଗରେ ନଚାଲି ମନ୍ଦ ମାର୍ଗରେ ଗଲେ ଭଗବାନ ମନୁଷ୍ୟମାନଙ୍କୁ ନର୍କକୁ ପଠାଇ ଦଅନ୍ତି ବୋଲି କୁହା ଯାଉଥିଲା । ପିଲାମାନେ ଧର୍ମପୁସ୍ତକକୁ ଘୋଷି ମୁଖସ୍ଥ କରିବାକୁ ବାଧ୍ୟ ହେଉଥିଲେ ।

ଅବଶ୍ୟ ୧୮୪୮ ମସିହାରେ ଇଉରୋପର ଜନଜୀବନରେ ଏକ ନୂତନ ଉଦ୍‌ବେଳନର ସନ୍ଦେଶ ଆସି ପହଞ୍ଚିଥିଲା ଏବଂ ଡେନ୍‌ମାର୍କ୍‌ରେ ମଧ୍ୟ ତାହାର ସ୍ପର୍ଶ ଅନୁଭୂତ ହୋଇଥିଲା । ସୁଖ କହିଲେ, ଭାଗ୍ୟ କହିଲେ ଆଗପରି ଅଳ୍ପ ଉଚ୍ଚସ୍ତରସ୍ଥ ମଣିଷଙ୍କର ସୁଖ ଓ ଭାଗ୍ୟକୁ ନବୁଝାଇ ସମସ୍ତଙ୍କର ସେହିଗୁଡ଼ିକ ଉପରେ ରହିଥିବା ଅଧିକାରକୁ ବୁଝାଇଲା । ଯୁଗ ଯୁଗ ଧରି ତଳେ ରହି ଆସିଥିବା ମନୁଷ୍ୟମାନଙ୍କୁ ନେଇ ମଧ୍ୟ ବିଚାର ହେଲା; ଆଲୋକ କହିଲେ ଏଣିକି ଯାହାକିଛି ବୁଝାଇବାକୁ ଆରମ୍ଭ କଲା, ତାହା ମନୁଷ୍ୟମାତ୍ରକେ ସମସ୍ତଙ୍କର ଜୀବନଘରକୁ ଅବଶ୍ୟ ଯେ ଆଲୋକିତ କରିବା ଉଚିତ, ସେହି ପ୍ରତ୍ୟୟଟି ଅଧିକରୁ ଅଧିକ ଅନୁକୂଳତା ସହିତ ତଳି ଛୁଇଁବାକୁ ଆରମ୍ଭ କଲା । ଇତିହାସରେ ଏହି ଆହ୍ୱାନଟି ପ୍ରଥମଥର ପାଇଁ ଆସି ପହଞ୍ଚିଥିବା ପରି ଲାଗିଲା । ହୁଏତ ସେଇଥିପାଇଁ କ୍ରିଷ୍ଟେନ୍ କଲ୍ଲ୍‌ଙ୍କ ଭଳି ନେତୃତ୍ୱଟିର ମୁହୂର୍ତ୍ତ ମଧ୍ୟ ସମାଗତ ହୋଇ ଆସିଥିଲା । ଏକ ଅନନ୍ୟ ଲୋକଭବିଷ୍ୟ ଆଡ଼କୁ ଅଙ୍ଗୁଳିନିର୍ଦ୍ଦେଶ କରିବାକୁ ଆରମ୍ଭ କଲା । ଧର୍ମମାନେ ଏହିପରି ଏକ ଲୋକାଭିମୁଖୀ ଉଦ୍‌ବେଳନ ବଳରେ ଆଧ୍ୟାତ୍ମିକତାର ଏକାଧିକ ପ୍ରସ୍ଥ ଆଡ଼କୁ ମଧ୍ୟ ସାହସ କରି ପାରିଲେ । ଶିକ୍ଷାରେ ଏକ ନବପ୍ରବର୍ତ୍ତନ ଦ୍ୱାରା ସେହି ଉଦ୍‌ବେଳନଟିକୁ ଅଗ୍ରସର କରାଇନେବାର ଇତିହାସରେ ଆମେ ଡେନ୍‌ମାର୍କ୍‌ରେ କ୍ରିଷ୍ଟେନ୍ କଲ୍ଲ୍‌ଙ୍କୁ ହିଁ ସର୍ବପ୍ରଥମେ ସ୍ମରଣ କରିବା । ଶିକ୍ଷା ଯେ ତଥାକଥିତ ପାଠପଢ଼ାଠାରୁ ଅନେକ ଅନେକ ଅଧିକ, ଶ୍ରୀ କଲ୍ଲ୍ ସେହି ସତ୍ୟଟିର ପ୍ରତିନିଧିତ୍ୱ କରି ଏକ ନୂତନ ଆରମ୍ଭର ସମାରମ୍ଭ କରାଇଥିଲେ । ପ୍ରଥମେ ଅନ୍ତରର ଜାଗରଣ, ତା'ପରେ ଯାହାକିଛି ଶିକ୍ଷାଦାନ, - ଏହାହିଁ ତାଙ୍କର ମୂଳମନ୍ତ୍ର ହୋଇ ରହିଥିଲା ।

କଲ୍ଲ୍ ଜୀବନର ଶିକ୍ଷା କଥା କହିଲେ । ଶିକ୍ଷାର ମାଧ୍ୟମରେ ଲୋକହୃଦୟରେ ଏକ ନୂତନ ଉନ୍ମେଷ ଆଣି ଦେଇଥିଲେ । ଲୋକମାନେ ନିଜର ଦେଶକୁ, ନିଜର ଭୂମିକୁ ଭଲ ପାଇବେ; ସେମାନେ ନିଜର ମାତୃଭାଷାକୁ ମଧ୍ୟ ଭଲ ପାଇବେ । ଏବଂ, ଅଧିକ ବଡ଼ କଥା ହେଉଛି, ସେହି ଉଭୟ ଭଲ ପାଇବାର ଆୟତନ ମଧ୍ୟରେ ସେମାନେ ପରସ୍ପରକୁ ପରସ୍ପର ସହିତ ଗୋଟିଏ ସୂତ୍ରରେ ଗୁନ୍ଥା ହୋଇଥିବାର ଜାଣିବେ ଏବଂ ସେହି ସୂତ୍ରଟିର ମାଧ୍ୟମରେ ଭଗବାନଙ୍କୁ ସ୍ପର୍ଶ କରି ରହିଥିବା ପରି ବି ଅନୁଭବ କରିବେ । ଏବଂ, ଏକ ବିଦ୍ୟାଳୟର

ନିବିଡ଼ ପରିବେଶ ମଧ୍ୟରେ ଏହି ଯାବତୀୟ କଥା ପ୍ରକୃତରେ ଘଟିବ, ଯେଉଁ ଶିକ୍ଷକ ସେହିପରି କଳ୍ପନା କରି ପାରୁଥିଲା ଓ ପ୍ରତିଦିନର ସହଜୀବନ ମଧ୍ୟରେ ତାହାକୁ ଅନୁଭୂତ କରାଇ ପାରୁଥିଲା, ତାକୁ କ'ଣ କେବେହେଲେ ଖାଲି ସାନ ଦେଶ ଡେନ୍‌ମାର୍କର ଜଣେ ଶିକ୍ଷକ ବୋଲି କୁହାଯିବ ? ହଁ, ଡେନ୍‌ମାର୍କର ଭୂମିଟିକୁ ଦର୍ପଣ କରି ତାହାରି ଭିତରେ ସମଗ୍ର ପୃଥିବୀର ଅନନ୍ତ ନିୟତିଟିକୁ ଅନୁଭବ କରିପାରିଲେ ଯାଇ ତାହା ସମ୍ଭବ ହେବ । କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କର ଯାବତୀୟ କାର୍ଯ୍ୟକୁ ଆମେ ସେହିଭଳି ଏକ ଜାଗତିକ ଆବେଦନର ଭୂମି ଉପରେ କଳନା କରିବାର ପ୍ରୟାସ କରିବା; ତେବେ ସିଏ ପୃଥିବୀର ଯେକୌଣସି ଦେଶ ପାଇଁ ଆମ ଏକାଳରେ ମଧ୍ୟ ଅତ୍ୟନ୍ତ ପ୍ରାସଙ୍ଗିକ ମନେ ହେବେ ।

ତତ୍କାଳୀନ ବିଶ୍ୱବିଦ୍ୟାଳୟର ଅଧାପନାକୁ ମଡ଼େଲ୍ ବୋଲି ଗ୍ରହଣ କରି ସେତେବେଳେ ଡେନ୍‌ମାର୍କରେ ଅଳ୍ପ କେତେଜଣଙ୍କ ନିମନ୍ତେ ଯେଉଁ ଶିକ୍ଷିତପଣିଆ ଅର୍ଜନ କରିବାର ପଦ୍ଧତିଟି ଚାଲିଥିଲା, ବିଶପ୍ ଗ୍ରୁନ୍‌ଡ୍‌ଭିଗ୍ ରାଜଧାନୀରୁ ହିଁ ତାହା ବିରୁଦ୍ଧରେ ଏକ ସଂଗ୍ରାମ ଆରମ୍ଭ କରି ଦେଇଥିଲେ । ତାହାକୁ ହିଁ ଶିକ୍ଷାଆକାଶର ଉଚ୍ଚତମ ନକ୍ଷତ୍ର ପରି ମାନିନେଇ ସମଗ୍ର ତଳସୋପାନ ଗୁଡ଼ିକୁ ମଧ୍ୟ ସେହି ଅନୁସାରେ ପ୍ରସୀମିତ କରି ରଖା ଯାଉଥିଲା । ଗ୍ରୁନ୍‌ଡ୍‌ଭିଗ୍ ପଦ୍ଧତିଟିରେ ମୂଳରୁ ହିଁ କୁଠାରଘାତ କରିବାକୁ ଇଚ୍ଛା କଲେ ଏବଂ ତାହାର ବିକଳ୍ପରୂପେ ସାଧାରଣ ଜନଗଣଙ୍କ ସକାଶେ ଏକ ଉଚ୍ଚତର ବିଦ୍ୟାଳୟର କଳ୍ପନା କରିଥିଲେ । ସେହି ବିଦ୍ୟାଳୟଟି ବିଶ୍ୱବିଦ୍ୟାଳୟର ଏକ ସ୍ଥାନାପନ୍ନ ହେବ ଅଥବା ତାହା ସହିତ ସମାନ୍ତର ଏକ ବିକଳ୍ପ ହୋଇ ରହିବ, ଯେପରିକି ଜ୍ଞାନ ଓ ବିଜ୍ଞାନ ଲୋକଭୂମିକୁ ମଧ୍ୟ ଭେଦି ପାରିବ ଏବଂ ସେଗୁଡ଼ିକ ଦ୍ୱାରା ସମଗ୍ର ଲୋକଜୀବନ ଅନୁପ୍ରେରିତ ମଧ୍ୟ ହୋଇପାରିବ । ତେବେ ବିଦ୍ୟା ଆଉ ଅଳପ କେତେଜଣଙ୍କର ବିଳାସମାତ୍ର ହୋଇ ରହିବନାହିଁ, - ତାହା ପ୍ରକୃତରେ କାର୍ଯ୍ୟରେ ଲାଗିବ ଏବଂ ଆଗାମୀ ଯାବତୀୟ ନବଗଠନରେ ପୁଞ୍ଜି ପରି ବ୍ୟବହୃତ ହେବ । ଏହି ନୂତନ ପଦ୍ଧତିର ବିଦ୍ୟାଳୟଟିକୁ ସେ ଜୀବନଲାଗି ଉଦ୍ଦିଷ୍ଟ ବିଦ୍ୟାଳୟ ବୋଲି କହିଲେ । ସେଠାରେ ମାତୃଭାଷା ହିଁ ସର୍ବନିୟାମକ ମାଧ୍ୟମ ହେବ । ପାଠ ଶେଷରେ ପରୀକ୍ଷାରେ ବସିବାର କୌଣସି ଉତ୍ପୀଡ଼ନ ରହିବନାହିଁ ଏବଂ ତରୁଣକୁଳ ସେଠାରୁ ଅଧ୍ୟୟନ ପୂର୍ଣ୍ଣ କରି ଲବ୍ଧ ଜ୍ଞାନବିଜ୍ଞାନକୁ ଲୋକଜୀବନକୁ ନେଇ ଆସିବାରେ ବାହକ ପରି କାର୍ଯ୍ୟ କରିବେ । ଡେନ୍‌ମାର୍କର ଲୋକଜୀବନରେ ଏକ ନୂତନ ଗତିଶୀଳତାର ସଞ୍ଚାର କରାଇ ଆଣିବେ । ସେହି ଶିକ୍ଷିତମାନେ ହିଁ ଯାବତୀୟ ନବନିର୍ମାଣରେ ନିମିତ୍ତ ହେବେ ।

ବିଶପ୍ ଗ୍ରୁନ୍‌ଡ୍‌ଭିଗ୍‌ଙ୍କର ନିକଟତମ କେତେ ବନ୍ଧୁ ମଧ୍ୟ ତାଙ୍କର ଏହି ବିଚାରଗୁଡ଼ିକୁ ତଥାପି ଅବ୍ୟାବହାରିକ ବୋଲି ମନେ କରୁଥିଲେ । ତଥାପି ସେହି ଦିଗରେ ଏକ ଉଦ୍ୟମ

ଆରମ୍ଭ ହୋଇଥିଲା । ଏକ ଦୁଇବର୍ଷିଆ ପାଠ୍ୟକ୍ରମର ମାଧ୍ୟମରେ କିଛି ପ୍ରୟୋଗ କରାଗଲା । ତଥାପି ମନ ବୁଝିବାଭଳି ଧାରାଟିଏ ମିଳିଲା ପରି ମନେ ହେଉନଥିଲା । ହୁଏତ ଏପରି ହେବାର ଏକ ପ୍ରଧାନ କାରଣ ହୋଇପାରେ ଯେ ଉତ୍ସାହୀ ଏମାନେ ସମସ୍ତେ ସହରର ସ୍କୁଲଗୁଡ଼ିକୁ ହିଁ ଅତିମାତ୍ରାରେ ଅଭିପ୍ରେତ ଛାଞ୍ଚ ଭଳି ଦେଖୁଥିଲେ ଏବଂ, ଯେତେ ଅଲଗା ପ୍ରକାରର କରିବା ସକାଶେ ଇଚ୍ଛା ଥିଲେ ମଧ୍ୟ ବହୁତ କିଛି ପ୍ରାୟ ଏକ ଅନୁକରଣ ପରି ହିଁ ହୋଇ ଯାଉଥିଲା । ଏତିକିବେଳେ ସୁଦୂର ପଲ୍ଲୀଅଞ୍ଚଳରେ ୧୮୫୧ ନଭେମ୍ବର ମାସରେ କ୍ରିଷ୍ଟେନ୍ କଲ୍‌ଡ୍‌ଙ୍କର ବିଦ୍ୟାଳୟ ଆରମ୍ଭ ହେଲା । ସେଠାରେ ବାହାରର ଗଢ଼ଣ ଓ ବରାଦଟିରେ ମଧ୍ୟ ମୂଳରୁ ହିଁ କେତେ ପରିବର୍ତ୍ତନକୁ ବାଟ ଛାଡ଼ି ଦିଆ ଯାଇଥିଲା: ପାଠ୍ୟକ୍ରମ ମୋଟେ ପାଞ୍ଚମାସର ହୋଇ ରହିଲା । ପଠିତ ବହୁତ ବିଷୟକୁ ବାଦ୍ ଦିଆଗଲା; ପାରସ୍ପରିକ କଥୋପକଥନ ଏବଂ ପ୍ରବଚନର ମାଧ୍ୟମରେ ତରୁଣମାନଙ୍କର ଚିତ୍ତରେ ଏକ ଜାଗରଣ ସମ୍ଭବ କରାଇ ଆଣିବା ହିଁ ମୂଳ ଲକ୍ଷ୍ୟହୋଇ ରହିଥିଲା । 'ଆପଣଙ୍କର ଏଠାରେ କେଉଁ ଯୋଜନା ଅନୁସାରେ ବିଦ୍ୟାଳୟ ଚାଲିଛି ?' ବୋଲି କେହି ପ୍ରଶ୍ନ କଲେ ଶ୍ରୀ କଲ୍‌ଡ୍ 'ଆମର ଏଠାରେ କୌଣସି ଯୋଜନା ନାହିଁ' ବୋଲି ଉତ୍ତର ଦେଉଥିଲେ । ଏବଂ, ପୂର୍ବରୁ ଯେପରି ଉଲ୍ଲେଖ କରାଯାଇଛି, 'ତେବେ ଏହି ବିଦ୍ୟାଳୟରେ ଆପଣମାନେ ପ୍ରକୃତରେ କ'ଣ କରିବେ' ? ବୋଲି ଶିକ୍ଷାବିଭାଗୀୟ ଜଣେ କର୍ତ୍ତା ତାଙ୍କୁ ଯେତେବେଳେ ପଚାରିଥିଲେ, ସେତେବେଳେ ଶ୍ରୀଯୁକ୍ତ କଲ୍‌ଡ୍ ସତେଅବା ସମ୍ପୂର୍ଣ୍ଣ ଭାବରେ ସ୍ଥିର ହୋଇ ଉତ୍ତର ଦେଇଥିଲେ: 'ମୋତେ ଅଠରବର୍ଷ ବୟସ ହୋଇଥିବା ସମୟରେ ମୁଁ ଭଗବାନଙ୍କୁ ଏବଂ ମୋ' ଚାରିପାଖରେ ରହିଥିବା ମନୁଷ୍ୟମାନଙ୍କୁ ଭଲ ପାଇବାକୁ ଶିକ୍ଷା କରିଥିଲି ଏବଂ ତାହାହିଁ ମୋ'ର ଜୀବନରେ ଏତେ ଖୁସୀ ଆଣି ଭରି ଦେଇଥିଲା ଯେ, ମୋ' ପ୍ରତିବେଶରେ ବାସ କରୁଥିବା ଅନ୍ୟ ମଣିଷମାନଙ୍କ ପାଖକୁ ମଧ୍ୟ ଏହି ବାର୍ତ୍ତାଟିକୁ ବହନ କରି ଆଣିବାରେ ହିଁ ମୁଁ ମୋ'ର ସମସ୍ତ ବଳ ଏବଂ ସମସ୍ତ ସମୟର ବିନିଯୋଗ କରିବି ବୋଲି ଏକ ନିଷ୍ପତ୍ତି ମଧ୍ୟ ଗ୍ରହଣ କରିଥିଲି । ଆମ ବିଦ୍ୟାଳୟ ସଂପୃକ୍ତ ସମସ୍ତଙ୍କୁ ସେହି ସତ୍ୟଟିକୁ ହିଁ ଶିଖାଇବା ନିମନ୍ତେ ଚେଷ୍ଟା କରିବ ।' କର୍ତ୍ତା ଏହାପରେ ଆଉ କ'ଣ କହିଥାଆନ୍ତେ ? 'ଏହା ଅବଶ୍ୟ ଏକ ଅତି ଉଚ୍ଚ ଏବଂ ମହାନ୍ ଲକ୍ଷ୍ୟ' ବୋଲି ସେ ମନ୍ତବ୍ୟଟିଏ ଦେଇଥିଲେ ।

ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ଉପରୁ ହିଁ ସବୁକିଛିକୁ ଏକ ବଡ଼ ଆକାର ଦେଇ ବିଦ୍ୟାଳୟଟିଏ ଆରମ୍ଭ କରାଇବାକୁ ଇଚ୍ଛା କରିଥିଲେ ଏବଂ ସେହିଠାରୁ ହିଁ ସମସ୍ତ ଦେଶକୁ ଜୀବନଶିକ୍ଷାର ବିକୀରଣ ହୋଇ ପାରିବ ବୋଲି ଆଶା ପୋଷଣ କରିଥିଲେ । କ୍ରିଷ୍ଟେନ୍ କଲ୍‌ଡ୍ ଏକାବେଳେକେ ତଳୁ ଆରମ୍ଭ କଲେ, ଗୋଟିଏ ନିତାନ୍ତ ସାନ ସ୍କୁଲରୁ ହିଁ ପ୍ରୟୋଗ କରିଥିଲେ - ଯାହାର ଚେରଗୁଡ଼ିକ ଲୋକଜୀବନ ଭିତରକୁ ଭେଦି କରି ରହି ପାରୁଥିବ । ଦୂରରୁ ଥାଇ ଅଧିକ

ଔପଚାରିକ ବିଦ୍ୟାରେ ପାରଙ୍ଗମମାନେ ତାହାକୁ ଅନେକ ସମୟରେ ଏକ ବିଚିତ୍ର ପ୍ରୟାସ ବୋଲି ଭାବୁଥିଲେ ଏବଂ ତାହାର ସ୍ଥାୟିତ୍ୱ ସମ୍ପର୍କରେ ସମ୍ଭବତଃ କିଞ୍ଚିତ୍ ସଂଶୟ ମଧ୍ୟ ବ୍ୟକ୍ତ କରିଥିଲେ: ମାତ୍ର ପରିଶେଷରେ ସେମାନେ ମଧ୍ୟ ସମସ୍ତେ ସହମତ ହୋଇଥିଲେ ଯେ, ଏହି ସାନ ଶିକ୍ଷାଳୟଟିରେ କଲ୍‌ଲ୍‌ଙ୍କ ଦ୍ୱାରା ଯାହା ଯେପରି ହେଉଛି, ତାହାହିଁ ସେମାନଙ୍କର କଳ୍ପିତ ଲୋକବିଦ୍ୟାଳୟଟିକୁ ପ୍ରକୃତ ସାକାରତା ପ୍ରଦାନ କରି ପାରୁଛି । ନିଜର ପ୍ରୟୋଗଟି ଯେ ପ୍ରକୃତରେ କେତେ ସାନ ଏବଂ କେତେ ସୀମିତ, ସ୍ୱୟଂ କଲ୍‌ଲ୍ ସବୁବେଳେ ସେହି ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥିଲେ: ''ଏଠାରେ ଯେତିକି ଆରମ୍ଭ ହୋଇ ଚାଲୁଛି, ସେଇଟିକୁ ଆଦୌ କୌଣସି ଅର୍ଥରେ ଏକ ଲୋକବିଦ୍ୟାଳୟ ବୋଲି କହି ହେବାନାହିଁ, ବରଂ ଏକାବେଳେକେ ତାହାର ଓଲଟା, - ଅତ୍ୟନ୍ତ ସାନ ସ୍ତରର ଏବଂ ଅଭାବ ମଧ୍ୟ ଅନେକ । ମାତ୍ର, ବର୍ତ୍ତମାନ ପାଇଁ କେବଳ ଏଇଟି ହିଁ ଏକମାତ୍ର ଦୃଷ୍ଟାନ୍ତରୂପେ ରହିଛି ଏବଂ, ମୋ'ର ପୂର୍ଣ୍ଣ ବିଶ୍ୱାସ ରହିଛି ଯେ ଡେନ୍‌ମାର୍କର ଜନଗଣଙ୍କୁ ଆମେ ଯହୁଁ ଯହୁଁ ଅଧିକ ପରିମାଣରେ ଜାଣିବାକୁ ସମର୍ଥ ହେବା, ତେବେ ଆମର ସେତିକି ଅଧିକ ହୃଦ୍‌ବୋଧ ମଧ୍ୟ ହେବାକୁ ଲାଗିବ ଯେ, ସେମାନଙ୍କର ଅନ୍ତର ଭିତରେ ପ୍ରଥମେ ଏକ ଜାଗରଣ ସମ୍ଭବ ନକରି ପାରିଲେ ସେମାନଙ୍କୁ କୌଣସି ଶିକ୍ଷା ମଧ୍ୟ ଦିଆଯାଇ ପାରିବନାହିଁ ।''

ନିଜର ବିଦ୍ୟାଳୟଟିକୁ ଆରମ୍ଭ କରିବାର ଗୋଟିଏ ବର୍ଷ ପରେ ଶ୍ରୀଯୁକ୍ତ କଲ୍‌ଲ୍ ନିଜର ଜଣେ ଛାତ୍ରଙ୍କ ଆଗରେ ଯେପରି କହିଥିଲେ: ''ବର୍ତ୍ତମାନ ଲୋକବିଦ୍ୟାଳୟ ଦେଶରେ ତିନୋଟି ରହିଛି ଏବଂ ପ୍ରତ୍ୟେକଟିରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ତାତ୍ପର୍ଯ୍ୟ ମଧ୍ୟ ରହିଛି,- ସେହି ତିନୋଟି ହେଲେ, ରୟଡ଼ିଙ୍ଗ୍, ହିନ୍‌ହଲ୍‌ମ୍ ଓ ମୋ'ର ଏହି ସ୍କୁଲଟି । ରୟଡ଼ିଙ୍ଗ୍ ହେଉଛି ସର୍ବପ୍ରଥମ, ସେଇଟି ଆମକୁ ଅର୍ଥାତ୍ ଆମର ସାଂସ୍କୃତିକ ଭୂଇଁଟିକୁ ଗ୍ରାସ କରି ପକାଇବାକୁ ବସିଥିବା ଜର୍ମାନ୍ ପ୍ରଭାବପକ୍ଷଟି ବିରୁଦ୍ଧରେ ଏକ ରକ୍ଷାପ୍ରାଚୀର ଠିଆ କରାଇ ରଖିବାକୁ ନିଜର ଲକ୍ଷ୍ୟ ବୋଲି ଗ୍ରହଣ କରିଛି । ବଡ଼ ବଡ଼ ଜମିମାଲିକ ଓ କୃଷିସାମନ୍ତ ମାନଙ୍କୁ ଅଧିକାରଚ୍ୟୁତ କରିବା ନିମନ୍ତେ ନିଜପାଇଁ ସମତା ଓ ମୁକ୍ତି ଦାବୀ କରି ଦେଶରେ ଯେଉଁ ଆନ୍ଦୋଳନ ଦେଖାଦେଇଛି, ଦ୍ୱିତୀୟ ବିଦ୍ୟାଳୟଟି ମୁଖ୍ୟତଃ ସେହି ସଂଗ୍ରାମଟି ଲାଗି ସଂପୃକ୍ତ ସଭିଙ୍କୁ ତିଆରି କରି ଆଣିବାକୁ ହିଁ ନିଜର ଉଦ୍ଦେଶ୍ୟ ବୋଲି ଘୋଷଣା କରିଛି । ଏବଂ, ମୋ'ର ଏହି ବିଦ୍ୟାଳୟଟି ମୃତ୍ୟୁ ଏବଂ ଜୀବନ ମଧ୍ୟରେ ଲାଗି ଆସିଥିବା ସଂଗ୍ରାମରେ ଜୀବନର ପକ୍ଷରେ ରହିବ ବୋଲି ନିଷ୍ପତ୍ତି ଗ୍ରହଣ କରିଛି । ସେହି ସଂଗ୍ରାମଟି କେବେହେଲେ ଶେଷ ହେବନାହିଁ, ଅନ୍ତତଃ ବହୁକାଳ ଧରି ଲାଗି ରହିଥିବ । କାରଣ, ଜୀବନ ଓ ମୃତ୍ୟୁ,- ଏମାନେ ହେଉଛନ୍ତି ଆଦ୍ୟରୁ ହିଁ ପରସ୍ପରର ଶତ୍ରୁ ଏବଂ, ଡେନ୍‌ମାର୍କବାସୀ ଓ ଜର୍ମାନୀବାସୀ ପରସ୍ପରର ଯେତିକି ନିକଟବର୍ତ୍ତୀ ହୋଇ ରହିଛନ୍ତି, ଜମିର ମାଲିକ ଓ ଜମିରେ କାମ କରୁଥିବା

ଚାଷୀ ପରସ୍ପରର ଯେତିକି କତିରେ ରହିଛନ୍ତି , ଜୀବନ ଓ ମୃତ୍ୟୁ ସେହି ଉଭୟଟି ତୁଳନାରେ ପ୍ରକୃତରେ ଅନେକ ଅଧିକ ପାଖାପାଖି ହୋଇ ଅବସ୍ଥାନ କରୁଛନ୍ତି । ସେହି ଜଣେ ବ୍ୟକ୍ତିର ଛାତିତଳେ ସେମାନେ ଦୁହେଁ ବାସ କରୁଛନ୍ତି । ଏବଂ, ସେହିଠାରୁ ହିଁ ଆମର ଯୁଦ୍ଧଟି ଆରମ୍ଭ ହେବ । ସର୍ବପ୍ରଥମେ ନିଜର ଦୁଆରଟିକୁ ସଫା ରଖ,- ଆମ ଭାଷାରେ ଏପରି ପ୍ରବଚନଟିଏ ରହିଛି ନା ? ନିମ୍ନଲିଖିତ ତିନୋଟି କଥାକୁ ନଜାଣିଥିବା ପର୍ଯ୍ୟନ୍ତ ମଣିଷ ବଡ଼ ନିର୍ବୋଧଭାବେ ବାହାର ସ୍ଥିତିଟା ସହିତ ଝଗଡ଼ା କରିବାରେ ଲାଗିଥାଏ: ସିଏ କେଉଁଠାରୁ ଏହି ପୃଥିବୀକୁ ଆସିଛି, ଏଠାରେ ନିଜର ଜୀବନକାଳ ମଧ୍ୟରେ ସିଏ ପ୍ରକୃତରେ କ'ଣସବୁ କରିବ ବୋଲି ସ୍ଥିର କରିଛି ଏବଂ, ଏହି ପୃଥିବୀରୁ ସିଏ ପ୍ରକୃତରେ କେଉଁଠାକୁ ଯିବ । ମନୁଷ୍ୟ ଈଶ୍ୱରଙ୍କ ଠାରୁ ହିଁ ଏହି ପୃଥିବୀକୁ ଆସିଛି, - ସେହି ଈଶ୍ୱର ହେଉଛନ୍ତି ସତ୍ୟର ଭଗବାନ ଏବଂ ଭଲ ପାଇବାର ଭଗବାନ । ମନୁଷ୍ୟ ସେହି ଭଗବାନଙ୍କର ଅନୁକୃତିରେ ହିଁ ତିଆରି ହୋଇଛି ଏବଂ ମୂଳରୁ ହିଁ ଗୋଟିଏ ଗାତଭିତରେ ଆସି ପଡ଼ିଯାଇଛି । ଏଥିରୁ ମୁକ୍ତିଲାଭ କରିବାକୁ ହେଲେ ଆମେ ଆପଣାକୁ ଜୀବନ ଉପରେ ହିଁ ଅଭିନିବେଶିତ କରି ରଖିବା, ଜୀବନପଟେ ରହିବା ।

''ଆମ ଦେଶର ଜନଗଣଙ୍କୁ କୃଷକମାନଙ୍କର ପଟେ ରହିବାକୁ ଶିକ୍ଷା ଦେବା ଅର୍ଥାତ୍ ଆଗରୁ ଉପରେ ରହି ଆସିଥିବା ଭୂସ୍ୱାମୀମାନଙ୍କର ବିରୋଧରେ ସଜ କରିବା, - ଶିକ୍ଷାର କ୍ଷେତ୍ରରେ ଏହାକୁ ପ୍ରକୃତରେ ଏକ ଦରିଦ୍ର ଅର୍ଥାତ୍ ଅତ୍ୟନ୍ତ କମ୍ ତାତ୍ପର୍ଯ୍ୟ ରଖିଥିବା କାର୍ଯ୍ୟକ୍ରମ ବୋଲି କହିବାକୁ ହେବ । ଠିକ୍ ସେହିପରି, ଜର୍ମାନ୍‌ମାନଙ୍କ ସହିତ ସଂଗ୍ରାମକୁ ମଧ୍ୟ ନିମ୍ନସ୍ତରର ଲକ୍ଷ୍ୟ ବୋଲି କୁହାଯାଇ ପାରିବ । କେବଳ ଆମ ଧର୍ମର ଯଥାର୍ଥ ଶିକ୍ଷାଗୁଡ଼ିକ ହିଁ ପ୍ରକୃତ ନିର୍ଦ୍ଦେଶନା ଦେଇପାରିବ ଏବଂ ପ୍ରକୃତ ସତ୍ୟଗୁଡ଼ିକ ସହିତ ଆମର ପରିଚୟ ଘଟାଇ ପାରିବ । ତେଣୁ, ଗୋଟିଏ ପ୍ରକୃତ ଲୋକବିଦ୍ୟାଳୟ ତାହାକୁ ହିଁ ଆପଣାର ଲକ୍ଷ୍ୟରୂପେ ଗ୍ରହଣ କରିବ । ଏଠାରେ, ଏହି ବିଦ୍ୟାଳୟରେ ମୁଁ ତାହାହିଁ କରିବାକୁ ଉଦ୍ୟମ କରୁଛି । ଅବଶ୍ୟ ତାହାର ଆଦୌ ଅର୍ଥ ନୁହେଁ ଯେ, ବିଦ୍ୟାଳୟ ନିଜକୁ ଗୋଟିଏ ଗୀର୍ଜାରେ ପରିଣତ କରିଦେବ; ମାତ୍ର ଜୀବନ ଏବଂ ମୃତ୍ୟୁ ମଧ୍ୟରେ ନିରନ୍ତର ଲାଗି ରହିଥିବା ଯୁଦ୍ଧରେ ବିଦ୍ୟାଳୟ ଜନଗଣଙ୍କୁ ଜୀବନପଟେ ରହିବାକୁ ଆବଶ୍ୟକ ପ୍ରେରଣା ଓ ନିର୍ଦ୍ଦେଶନାଗୁଡ଼ିକୁ ଦେଇପାରିବ ଏବଂ, ସର୍ବୋପରି, ମନୁଷ୍ୟ ହୃଦୟରେ ଯେତେ ଯାହା ଶୂନ୍ୟ ଏବଂ ବରବାଦ ହୋଇ ପଡ଼ି ରହିଥିବ, ଏହି ବିଦ୍ୟାଳୟର ଶିକ୍ଷା ସେଗୁଡ଼ିକୁ ସର୍ବଦା ସର୍ବୋତ୍ତମ ସାମଗ୍ରୀଗୁଡ଼ିକ ଦ୍ୱାରା ପୂର୍ଣ୍ଣ କରିଦେବା ସକାଶେ ଚେଷ୍ଟା କରୁଥିବ ।''

ଅର୍ଥାତ୍, ଜଣେ ମନୁଷ୍ୟ ପ୍ରକୃତରେ ଯାହା, ଶିକ୍ଷା ଲାଭ କରି ସିଏ ତାହାହିଁ ହେବ, - ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର ସକଳ ଶିକ୍ଷାଦାନ ତଥା କଥୋପକଥନରେ ସେହି କଥାଟି ସବୁବେଳେ

ମୁଖ୍ୟତମ ଆବେଦନ ହୋଇ ରହିଥିଲା । ମାତ୍ର, ସେହି ଲକ୍ଷ୍ୟଟିକୁ ହାସଲ କରିବାକୁ ହେଲେ, ଜନଗଣ ସର୍ବପ୍ରଥମେ ନିଜକୁ ଜାଣିବେ ଏବଂ, ନିଜକୁ ଜାଣିବାର ଅର୍ଥ ହେଉଛି, - ଯେପରି ବହୁତ ମନୁଷ୍ୟ ଅଧିକାଂଶ ସମୟରେ ସବାଆଗ କହିବାପାଇଁ ଇଚ୍ଛା କରୁଥାନ୍ତି - ନିଜ ଭିତରର ଦୋଷ ଏବଂ ମନ୍ଦଗୁଡ଼ିକ ବିଷୟରେ ଅବହିତ ହେବା ଆଦୌ ନୁହେଁ । ଆମ ଭିତରେ କେଉଁଠାରେ ଶଇତାନଟା ଲୁଚି କରି ରହିଛି ଓ ଆମର ସବୁକିଛିକୁ ବିଗାଡ଼ି ଦେବାରେ ହିଁ ଲାଗିଛି, - ଏ କଥା ମଧ୍ୟ ନୁହେଁ । ନିଜକୁ ଜାଣିବାର ଅର୍ଥ ହେଉଛି, ଜଣେ ଜଣେ ମନୁଷ୍ୟ ହିସାବରେ ନିଜର ଉଚ୍ଚତର ନିୟତିଟି ବିଷୟରେ ସଜ୍ଞାନ ହେବା, ଈଶ୍ୱରଙ୍କର ଅନୁରୂପ ହୋଇ ତିଆରି ହୋଇଥିବା ତାଙ୍କରି ସନ୍ତାନରୂପେ ନିଜକୁ ଜାଣିବା,- ଆମ ସମକ୍ଷରେ ଯେ ଏକ ପରିପୂର୍ଣ୍ଣ ଜୀବନ ଆମଲାଗି ଅପେକ୍ଷା କରି ରହିଛି, ସେହି ବିଷୟରେ ସଚେତନ ହେବା । ଏବଂ, ଆମେ ଯାହା ହୋଇପାରିବା ନିମନ୍ତେ ସୃଷ୍ଟ ହୋଇଛୁ ଓ ମନୁଷ୍ୟର ଗଢ଼ଣଟିଏ ଲାଭ କରିଛୁ, ଆମ ଅନ୍ଦାଜ ଓ ଅନୁଭବର ଆଖିମାନେ ସେ ଯାଏ ପହଞ୍ଚିଯାଇ ପାରିବା ପରେ ଆମେ ସେହିଭଳି ଏକ ଜୀବନକୁ ବଞ୍ଚିବା ନିମନ୍ତେ ମଧ୍ୟ ପୂର୍ଣ୍ଣ ଶକ୍ତି ସହିତ ପ୍ରୟାସ କରିବା ଏବଂ ଅବଶିଷ୍ଟ ଆଉ ଯାବତୀୟ କଥାକୁ ଭଗବାନଙ୍କର ହାତରେ ହିଁ ନେଇ ସମର୍ପିଦେବା । ଅଧ୍ୟାତ୍ମର ଜଗତରେ ଜଣେ ମନୁଷ୍ୟ କଦାପି ମାଲିକ ହୋଇ ପାରିବନାହିଁ, - କେବଳ ଭୃତ୍ୟଟିଏ ହିଁ ହୋଇ ରହିବ । ଆପଣାକୁ ସିଏ କେବଳ ସେହି ଈଶଶକ୍ତି ଏବଂ ପରମ ବାର୍ତ୍ତାଟି ପାଖରେ ନିଜକୁ ନେଇ ସମର୍ପଣ କରିଦେବ । ଆମେ ତେବେଯାଇ କହିପାରିବା ଯେ ଆମେ ପ୍ରକୃତରେ ସେହି ସତ୍ୟର ପକ୍ଷରେ ହିଁ ରହିଛୁ । ଏବଂ ତେବେଯାଇ ଆମର ବିଜୟ ସୁନିଶ୍ଚିତ ହୋଇ ରହିବ । କ୍ରିଷ୍ଟେନ୍ କଲ୍ଲ୍ ନିରନ୍ତର ଭଗବାନଙ୍କର ଭଲ ପାଇବା ଉପରେ ଅଟଳ ବିଶ୍ୱାସ ରଖିଥିଲେ ଏବଂ ସେହି କାରଣରୁ ହିଁ ସେ ସର୍ବଦା ସ୍ଥିର ତଥା ପୂର୍ଣ୍ଣନିର୍ଭର ଭାବରେ ଭବିଷ୍ୟ ଆଡ଼କୁ ମଧ୍ୟ ଅନାଇ ପାରୁଥିଲେ । ଚାରିଆଡ଼େ ଅନ୍ଧାର ଘନ ହୋଇ ରହିଥିବା ସମୟରେ ମଧ୍ୟ ଆଲୋକ ଉପରେ ବିଶ୍ୱାସ ରଖୁଥିଲେ । ମୃତ୍ୟୁର ସାମ୍ନାସାମ୍ନି ହୋଇଥିବା ସମୟରେ ବି ସେହିପରି ଅବିଚଳ ରହି 'ଈଶ୍ୱର ସର୍ବଦା ମୋ ପାଇଁ ଭଲ ହିଁ ବରାଦ କରିଛନ୍ତି' ବୋଲି କହି ପାରିଥିଲେ । ସେ ସେହି ସତ୍ୟଟି ସହିତ ନିଜ ଛାତ୍ରଛାତ୍ରୀଙ୍କୁ ମଧ୍ୟ ପରିଚିତ କରାଇ ଦେବାକୁ ଇଚ୍ଛା କରୁଥିଲେ ।

ଜୀବନବିଶ୍ୱାସୀ ଏହିଭଳି ଗୋଟିଏ ଦୃଢ଼ ଭୂମି ଉପରେ କ୍ରିଷ୍ଟେନ୍ କଲ୍ଲ୍ ବିଦ୍ୟାଳୟଟିରେ ଏକ ନୂତନ ମାନବିକ ତଥା ସାମୁଦାୟିକ ଜୀବନଗଠନ ଆଡ଼କୁ ନିର୍ଭରଯୋଗ୍ୟ ସୋପାନଟିଏ ପକାଇ ପାରିବେ ବୋଲି ଚିନ୍ତା କରିଥିଲେ । ସିଏ ହୃଦୟରୁ ହିଁ ଯାବତୀୟ ଶିକ୍ଷାର ଅୟଆରମ୍ଭ କରାଉଥିଲେ ଏବଂ ହୃଦୟକୁ ହିଁ ଜଣେ ବ୍ୟକ୍ତିର ଜୀବନଗଠନରେ ସର୍ବବିଧ ବ୍ୟକ୍ତିତ୍ୱର ଅସଲ କର୍ମଶାଳା ବୋଲି ବିଚାର କରୁଥିଲେ ।

'ଯାହାକିଛି ହେବ, ସେହି ଭିତରୁ ହିଁ ହେବ !' - ବାରମ୍ବାର ବିବିଧ ଅବସରରେ କଲ୍ଡ଼ ସେହି କଥାଟିକୁ କହୁଥିଲେ । ଜୀବନର ଅଭିବ୍ୟକ୍ତି କ୍ଷେତ୍ରରେ ଯାହାକିଛି ଘଟିବ, ତାହା ସେହି ଭିତରୁ ହିଁ କ୍ରମବିକଶିତ ହୋଇ ଆସିବ । କଲ୍ଡ଼ ସୁନିଶ୍ଚିତ ଭାବରେ ଅନୁଭବ କରୁଥିଲେ ଯେ ପ୍ରଥମେ ଭିତରେ ଏକ ଜାଗୃତି ଘଟିବ ଏବଂ ତାହାରି ଭିତ୍ତି ଉପରେ ଯାବତୀୟ ଶିକ୍ଷାପ୍ରାପ୍ତି ସମ୍ଭବ ହେବ । ଭୂମିଟି ମାନବିକ ଅର୍ଥାତ୍ ମାନବଧର୍ମୀ ବା ଜୀବନକାମୀ ହୋଇ ରହିଲେ ପ୍ରାପ୍ତ ଯାବତୀୟ ଜ୍ଞାନ ମଧ୍ୟ ଅନୁକୂଳତା ଲାଭ କରି ଆପଣାକୁ କ୍ରିୟାଶୀଳ କରି ପାରିବ । ତାଙ୍କର କଳ୍ପନାଚିତ୍ରଟି ଅନୁସାରେ ତାହାହିଁ ଏକ ଲୋକବିଦ୍ୟାଳୟର ସର୍ବପ୍ରଧାନ କାମ୍ୟ ଏବଂ ଲକ୍ଷ୍ୟ ହୋଇ ସର୍ବଦା ରହିବ । ଅବଶ୍ୟ ଏକଥା ସମ୍ପୂର୍ଣ୍ଣ ସତ୍ୟ ଯେ, ଜଣେ ଶିକ୍ଷାର୍ଥୀ ପାଞ୍ଚମାସର ପ୍ରଶିକ୍ଷଣଟିକୁ ଅତିବାହିତ କରି ଯେତେବେଳେ ବିଦ୍ୟାଳୟରୁ ଘରକୁ ଯାଉଥିଲା, ତା' ଭିତରେ ସେହି ଜାଗୃତିର ପ୍ରକ୍ରିୟାଟି ହୁଏତ ଅଧା ମଧ୍ୟ ପୂର୍ଣ୍ଣତାପ୍ରାପ୍ତ ହେଉନଥିଲା; ମାତ୍ର, ଯଦି ସେପରି କୌଣସି ପ୍ରତିବନ୍ଧକ ନଥିବ, ତେବେ ଏକ ଆରମ୍ଭ ଅବଶ୍ୟ ହୋଇ ଯାଉଥିଲା । ମଞ୍ଜିଟିଏ ପୋତା ହୋଇ ପାରୁଥିଲା ଏବଂ କ୍ରମଶଃ ଅଙ୍କୁରୋଦ୍‌ଗମର ପରିପୂର୍ଣ୍ଣ ସମ୍ଭାବନା ମଧ୍ୟ ଥିଲା । ଅନ୍ୟାନ୍ୟ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ତ ମଧ୍ୟ ସେହି ଆରମ୍ଭଟିଏ ହିଁ ହୋଇଥାଏ । ମାତ୍ର, ଏହି ଉଭୟ ଆରମ୍ଭ ମଧ୍ୟରେ ଏକ ମୌଳିକ ପ୍ରଭେଦ ରହିଥାଏ : ଲୋକବିଦ୍ୟାଳୟରେ ଶିକ୍ଷାର୍ଥୀର ବ୍ୟକ୍ତିତ୍ୱବିକାଶ ଉପରେ ହିଁ ସର୍ବପ୍ରଧାନ ମହତ୍ତ୍ୱ ଓ ଗୁରୁତ୍ୱ ଦିଆ ଯାଇଥାଏ ଓ ସମ୍ପର୍କ ସେହି ଅନୁସାରେ ଅନେକାଂଶରେ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ରହିଥିବା ଏକ ସମ୍ପର୍କର ସ୍ତରକୁ ସ୍ପର୍ଶ କରିଥାଏ; କିନ୍ତୁ ଅନ୍ୟାନ୍ୟ ବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟରେ ତଥ୍ୟ ଏବଂ ଜ୍ଞାନକୁ ଆଣି ଜମା କରି ଦିଆଯାଏ, ସେଗୁଡ଼ିକ ପରେ କାମରେ ଲାଗିବ ବୋଲି ପ୍ରତ୍ୟାଶା ରହିଥାଏ । ସବୁକିଛି ଥାଏ, ମାତ୍ର ଅସଲ କେନ୍ଦ୍ରବିନ୍ଦୁଟି ତିଆରି ହୋଇ ନଥାଏ । କେନ୍ଦ୍ରବିନ୍ଦୁ ଅର୍ଥାତ୍ ମଧ୍ୟବିନ୍ଦୁଟିଏ ରହିଛି ବୋଲି କେହି ପ୍ରତ୍ୟାଶା କରିନଥାନ୍ତି !

ଶ୍ରୀଯୁକ୍ତ କଲ୍ଡ଼ଙ୍କର ଜୀବଦ୍ଦଶାରେ ତାଙ୍କର ବିଦ୍ୟାଳୟକୁ ପ୍ରାୟ ତେରଶହ ପର୍ଯ୍ୟନ୍ତ ଶିକ୍ଷାର୍ଥୀ ଆସି ତାଙ୍କର ପ୍ରେରଣାଦାୟକ ବାଣୀଗୁଡ଼ିକୁ ଶୁଣି ସାରିଥିଲେ । ଆହୁରି ବଡ଼ କଥା ହେଉଛି, ସେମାନେ ଅତ୍ୟନ୍ତ ସମୀପବର୍ତ୍ତୀ ଭାବରେ ସିଏ ବଞ୍ଚୁଥିବା ଜୀବନଧାରାଟିର ସାନ୍ନିଧ୍ୟ ମଧ୍ୟ ପାଇ ସାରିଥିଲେ । ସମଗ୍ର ଦେଶରେ ତାଙ୍କର ନାମଟି ଏକ ଜଣାଶୁଣା ନାମରେ ପରିଣତ ହୋଇ ଯାଇଥିଲା ଏବଂ ସାରା ଦେଶରେ ଚାଷୀଘର ମାନଙ୍କରେ ଏପରି କ୍ୱଚିତ୍ କୌଣସି ବୟସ୍କ ବ୍ୟକ୍ତି ଥିଲେ, ଯିଏ କି ଶ୍ରୀଯୁକ୍ତ କଲ୍ଡ଼ଙ୍କ ବିଷୟରେ ଅପରିଚିତ ଥିଲେ । କଲ୍ଡ଼ଙ୍କ ନାଆଁକୁ ଶୁଣିବା ମାତ୍ରକେ ସେମାନଙ୍କର ଆଖି ତତ୍‌କ୍ଷଣାତ୍ ଉଜ୍ଜ୍ୱଳ ହୋଇ ଉଠୁଥିଲା ଏବଂ, କଲ୍ଡ଼ ଯେ ଡେନ୍‌ମାର୍କ୍‌ର କୃଷକମାନଙ୍କର ଜାଗରଣକ୍ଷେତ୍ରରେ ସର୍ବପ୍ରଥମ

ମୂଳଦୁଆଟିଏ ପକାଇଥିଲେ, ସେକଥାକୁ ସେମାନେ ଉତ୍ତମ ଭାବରେ ଜାଣିଥିଲେ । କଲ୍‌ଲ୍ ଲିଖିତ ଭାବରେ ତାଙ୍କର ପରବର୍ତ୍ତୀ ପୁରୁଷଗୁଡ଼ିକ ସକାଶେ କିଛି ସେପରି ରଖି ଯାଇନାହାନ୍ତି ସତ, - ସିଏ ନିଜେ ସବୁକିଛିକୁ କାର୍ଯ୍ୟରେ ଦେଖାଇ ଦେଉଥିଲେ ଏବଂ ତାଙ୍କର କଥାଗୁଡ଼ିକରେ ଏକ ଅକଳ୍ପନୀୟ ସଂକ୍ରମଣଶକ୍ତି ଭରି ରହିଥିଲା । ଏପରିକି, ହୁଏତ କଥାଗୁଡ଼ିକ ଭୁଲି ହୋଇ ଯାଉଥିଲା, ମାତ୍ର ଏପରି ଏକ ବୀଜର ବପନ ଘଟାଉଥିଲା, ଯେଉଁଥିରୁ ଅଙ୍କୁରଟିଏ ଅବଶ୍ୟ ବାହାରୁଥିଲା । ଜଣେ ଜର୍ମାନ୍ ଜୀବନୀକାରଙ୍କର ଭାଷାରେ, ଶ୍ରୀ କଲ୍‌ଲ୍‌ଙ୍କୁ ଅଧିକ ନ୍ୟାୟର ସହିତ ପ୍ରାଚୀନ ଗ୍ରୀସ୍‌ର ସକ୍ରେଟିସ୍‌ଙ୍କ ସହିତ ହିଁ ତୁଳନା କରାଯାଇ ପାରିବ । ସକ୍ରେଟିସ୍ ଅଧିକାଂଶ ସମୟରେ କହୁଥିଲେ ଯେ ପୃଥିବୀ ପାଇଁ ସତ୍ୟରୂପୀ ନବଜାତଟିକୁ ଭୂମିଷ୍ଠ କରାଇ ଆଣିବାରେ ସେ ଏକ ଧାତ୍ରୀର ଭୂମିକାକୁ ହିଁ ଗ୍ରହଣ କରି ନେଇଥିଲେ । ସକ୍ରେଟିସ୍‌ଙ୍କର ଜୀବନଧାରା, ମୂଲ୍ୟାୟନର ସ୍ୱତନ୍ତ୍ର ଦୃଷ୍ଟିକୋଣ ଏବଂ କଥୋପକଥନର ପଦ୍ଧତିଟି ସହିତ କଲ୍‌ଲ୍‌ଙ୍କର ଏହି ସବୁକିଛିର ମଧ୍ୟ ବହୁତ ମେଳ ରହିଥିଲା । ମନୁଷ୍ୟ ଭିତରେ ଯାହାକିଛି ଉତ୍ତମ ଏବଂ ଯାହାକିଛି ଉଦାର, ସକ୍ରେଟିସ୍‌ଙ୍କ ପରି କଲ୍‌ଲ୍ ମଧ୍ୟ ସେଗୁଡ଼ିକର ଜାଗୃତି ଘଟାଇବାକୁ ହିଁ ନିଜର ଲକ୍ଷ୍ୟରୂପେ ଅନୁଭବ କରୁଥିଲେ । ଜୀବନରେ ଯାହାକିଛି ଉଚ୍ଚ ଓ ସୁନ୍ଦର, ସକ୍ରେଟିସ୍‌ଙ୍କ ପରି କଲ୍‌ଲ୍ ମଧ୍ୟ ସେହିଗୁଡ଼ିକୁ ସବାଆଗକୁ ନେଇ ଆସିବାପାଇଁ ସର୍ବଦା ଅତ୍ୟନ୍ତ ମହତ୍ତ୍ୱ ଦେଉଥିଲେ । ନିଜ ଦୃଷ୍ଟାନ୍ତ ଏବଂ ବ୍ୟକ୍ତିତ୍ୱ ଦ୍ୱାରା ସେ ତାଙ୍କପରେ ଅଗଣିତ ବହୁ ଶିକ୍ଷକଙ୍କୁ ପ୍ରଭାବିତ କରି ପାରିଥିଲେ । ଶ୍ରୀ କଲ୍‌ଲ୍‌ଙ୍କ ପରି ତାଙ୍କ ପରେ ମଧ୍ୟ ଡେନ୍‌ମାର୍କର ଲୋକବିଦ୍ୟାଳୟ ଗୁଡ଼ିକ ନିଜ କାର୍ଯ୍ୟକ୍ରମରେ ବ୍ୟକ୍ତିତ୍ୱର ଉଦ୍‌ବୋଧନକୁ ହିଁ ପ୍ରଥମ ମହତ୍ତ୍ୱ ଦେଲେ ଏବଂ କେବଳ ଏକ ଦ୍ୱିତୀୟ କର୍ତ୍ତବ୍ୟରୂପେ ହିଁ ତଥାକଥିତ ପାଠପଢ଼ାକୁ ଗ୍ରହଣ କରିଥିଲେ ।

ବିଶପ୍ ଗ୍ରୁନ୍‌ଟ୍‌ୱିଗ୍‌ଙ୍କର ଅନୁରକ୍ତମାନେ ପ୍ରଧାନତଃ ରାଜଧାନୀ କୋପେନ୍‌ହେଗେନ୍‌ରେ ବାସ କରୁଥିଲେ । ବିଶପ୍‌ଙ୍କର ୭୦ ତମ ଜନ୍ମଦିନରେ ସେମାନେ ଏକାଠି ବସି କିଛି ଅର୍ଥ ସଂଗ୍ରହ କରି ବିଶପ୍‌ଙ୍କୁ ପ୍ରଦାନ କରିବେ ବୋଲି ସ୍ଥିର କଲେ । ଅଭିପ୍ରାୟ ଥିଲା ଯେ ସେହି ଅର୍ଥକୁ କାମରେ ଲଗାଇ ବିଶପ୍ ଗ୍ରୁନ୍‌ଟ୍‌ୱିଗ୍ ନିଜ କଳ୍ପନାର ଏକ ଲୋକବିଦ୍ୟାଳୟ ପ୍ରତିଷ୍ଠିତ କରାଇବେ । ଏଥିପାଇଁ ପ୍ରାୟ ସାଢ଼େ ପନ୍ଦର ହଜାର ମୁଦ୍ରା ସଂଗୃହୀତ ହୋଇଗଲା । ସେତେବେଳକୁ ଶ୍ରୀ କଲ୍‌ଲ୍‌ଙ୍କର ପ୍ରୟୋଗାତ୍ମକ ଲୋକବିଦ୍ୟାଳୟଟି ମଧ୍ୟ ଆରମ୍ଭ ହୋଇ ଯାଇଥାଏ । ଗ୍ରୁନ୍‌ଟ୍‌ୱିଗ୍ ଦମ୍ପତି ସେହି ବିଦ୍ୟାଳୟର କ୍ରମାଗ୍ରଗତିକୁ ପ୍ରଭୂତ ଉତ୍କଣ୍ଠା ଓ ଆଶ୍ୱସ୍ତି ସହିତ ଦୂରରୁ ଥାଇ ଲକ୍ଷ୍ୟ କରୁଥାନ୍ତି । ଏହାପରେ ଦେଶରେ ଯେଉଁଠି ଯେତେ ଲୋକବିଦ୍ୟାଳୟ ତିଆରି କରିବାର ପ୍ରଚେଷ୍ଟା ହେବ, ସେଗୁଡ଼ିକ କଲ୍‌ଲ୍‌ଙ୍କ ନଜର ତଥା ପ୍ରୟାସଟିର ଛାଞ୍ଚ ଅନୁସାରେ ହେବା ଉଚିତ ବୋଲି ସେମାନେ ଅଧିକରୁ ଅଧିକ

ପରିମାଣରେ ନିଜର ମନ ଭିତରେ ପରିଷ୍କାର ହୋଇ ଯାଉଥାନ୍ତି । ସହରବାସୀ ସେମାନଙ୍କର ଅନୁଗାମୀମାନେ ଏଥିରେ ହୁଏତ ଖୁବ୍‌ବେଶୀ ଉତ୍ସାହିତ ଅନୁଭବ କରିନଥିବେ । କଲ୍‌କ୍‌ଙ୍କର ପାରିବାପଣ ଉପରେ ସହରବାସୀଙ୍କର ବିଶେଷ ଆସ୍ଥା ନଥିଲା । ସାଧାରଣ ଶିକ୍ଷକଟିଏ ନିଜର ଧ୍ରୁବତାରାଟିକୁ ଅନୁସରଣ କରି ନିଜର ଅନ୍ତର ଭିତରୁ ପରିଚାଳିତ ହୋଇ କ'ଣ ଗୋଟାଏ ଆରମ୍ଭ କରିଦେବ ଓ ସହରବାସୀ ସେଇଟିକୁ ଅନୁସରଣ କରିବେ, ଏଇଟା ସେମାନଙ୍କୁ ଭାରି ଅସ୍ୱାଭାବିକ ଲାଗିଥିବ । ଯେତେ ଯାହାହେଉ, କ୍ରିଷ୍ଟେନ୍ କଲ୍‌କ୍‌ଙ୍କୁ ସେମାନେ ମୁଖ୍ୟତଃ ଦରିଦ୍ର ଗ୍ରାମାଞ୍ଚଳର ଜଣେ ମାମୁଲି ମନୁଷ୍ୟ ପରି ଦେଖିଥିବେ । କଲ୍‌କ୍‌ଙ୍କର ପାଠପଢ଼ା ବା ସେପରି କ'ଣ ଥିଲା ? ଏବଂ, ତାଙ୍କରି ପ୍ରୟୋଗଟି ପକ୍ଷରେ ସ୍ୱୀକୃତି ବୃଦ୍ଧି ପାଉଥିଲା, ଏପରିକି ସ୍ୱୟଂ ଗ୍ରୁଣ୍ଡ୍‌ଭିଗ୍ ମଧ୍ୟ ଅନ୍ୟମାନେ ତାହାରି ଅନୁସରଣ କରନ୍ତୁ ବୋଲି ଯେତେବେଳେ କହିଲେ, ସେତେବେଳେ ବିଶପ୍‌ଙ୍କର ଅନୁରକ୍ତମାନେ ସତେଅବା ତଣ୍ଟିରେ ଭାତଗୁଣ୍ଡା ଅଟକିଯିବା ପରି ନିଶ୍ଚୟ ଅନୁଭବ କରିଥିବେ ।

କଲ୍‌କ୍‌ଙ୍କର ତିରୋଧାନ ପରେ ସମଗ୍ର କୃଷିସମାଜ ତାଙ୍କୁ ନିଜର ଜାଗୃତିକାରୀ ପୁରୋଗାମୀରୂପେ ସ୍ୱୀକୃତି ଦେଲା, ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଲୋକବିଦ୍ୟାଳୟ ଆଗାମୀ ଆହୁରି ସେହିଭଳି ବିଦ୍ୟାଳୟ ନିମନ୍ତେ ଛାଞ୍ଚଟିଏ ଯୋଗାଇ ଦେଉଥିବା ପରି ମନେ ହେଉଥିଲା; ଏବଂ ସ୍ୱୟଂ ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ମଧ୍ୟ କଲ୍‌କ୍ ତଥା ତାଙ୍କର ପ୍ରୟୋଗଟିକୁ ସ୍ୱୀକୃତି ଦେଲେ, ତଥାପି ସହରବାଲାଙ୍କର ପ୍ରତ୍ୟୟ ହେଉନଥିଲା । ଗ୍ରାମଟା କିପରି ସହରକୁ ମାର୍ଗ ଦେଖାଇବ, ମୂଳତଃ ସେହି କଥାଟି ହିଁ ଏପରି ହେବାର ଏକ ପ୍ରଧାନ କାରଣ ହେଲା କି ? ଯେତେ ଦକ୍ଷତା ଥିଲେ ମଧ୍ୟ କ୍ରିଷ୍ଟେନ୍ କଲ୍‌କ୍ ଜଣେ କୃଷକ ପରି ଦେଖା ଯାଉଥିଲେ, କୃଷକର ପରିଚ୍ଛଦ ପିନ୍ଧୁଥିଲେ, କୃଷକଜୀବନରୁ ଉଦାହରଣମାନ ସଂଗ୍ରହ କରି ନିଜ ବିଦ୍ୟାଳୟର ଶ୍ରେଣୀଗୃହରେ ବ୍ୟବହାର କରୁଥିଲେ ଏବଂ ସର୍ବୋପରି, ସିଏ ବହି ପଢ଼ି ପଣ୍ଡିତ ହୋଇ ନଥିଲେ । ଏଗୁଡ଼ାକ ସହରବାସୀ ଅନ୍ୟଭଳି ଅଭ୍ୟସ୍ତମାନେ ମୋଟେ ସହଜରେ ଗ୍ରହଣ କରି ନଥାନ୍ତେ । ଅଥବା, ସ୍ୱୟଂ କ୍ରିଷ୍ଟେନ୍ କଲ୍‌କ୍ ଲୋକବିଦ୍ୟାଳୟର କଳ୍ପନାଟିକୁ ଏକ ସାକାର ରୂପ ଦେବାରେ ନିଜକୁ ଯେପରି ସମ୍ପୂର୍ଣ୍ଣ ଭାବରେ ସମର୍ପିତ କରି ଦେଇଥିଲେ ଏବଂ ସିଏ ଖାସ୍ ସେହି କାର୍ଯ୍ୟଟିକୁ ସମ୍ପନ୍ନ କରିବାଲାଗି ପୃଥିବୀକୁ ଆସିଛନ୍ତି ବୋଲି ଯେପରି ଅନୁଭବ କରୁଥିଲେ, ସମସାମୟିକ ସେହି ବିଚାରଟିର ଶିବିର ଭିତରେ ରହିଥିବା ଉଚ୍ଚଶିକ୍ଷାପ୍ରାପ୍ତ ସହରାଗ୍ରହୀ ଆଉମାନେ ସେତେଦୂର ଯିବାପାଇଁ ନିଜ ଭିତରେ ଆଦୌ ଏତେ ବେଶୀ ପ୍ରସ୍ତୁତ ଓ ସମର୍ପିତ ନଥିଲେ ବୋଲି ସେମାନେ କଲ୍‌କ୍‌ଙ୍କର ଅବଦାନକୁ ଜାଣି ନଜାଣିଲା ପରି ଏବଂ ଦେଖି ନଦେଖିଲା ପରି ଆଚରଣ କରୁଥିଲେ କି ? ଏବଂ, ଦେଶର କୃଷକକୁଳ କଲ୍‌କ୍‌ଙ୍କର ଅଭିପ୍ରେତ ଅନ୍ତର୍ଜାଗରଣ ଦ୍ୱାରା ସତକୁ ସତ ନିଜ ଭିତରର ଶକ୍ତିଦ୍ୱାରା ସଚେତନ ହେଲେ ତଦ୍ୱାରା

ସେତେବେଳର ସ୍ଥିତାବସ୍ଥାରେ ଯେ ବହୁ ଦିଗରୁ ନାନା ପରିବର୍ତ୍ତନ ଘଟିବାକୁ ଆରମ୍ଭ କରିବ, ସେମାନେ ସେହି କାରଣରୁ କିଛି ପ୍ରମାଦର ଆଶଙ୍କା ମଧ୍ୟ କରୁଥିଲେ କି ? ପୂରା ଜଣା ପଡୁଥିଲା ଯେ ଏଣିକି ଲୋକବିଦ୍ୟାଳୟ ବିଷୟରେ ଚର୍ଚ୍ଚା ହେଉଥିବା ସମୟରେ ସେମାନେ କଲ୍‌ଲ୍‌ଙ୍କର ଅବଦାନଟିକୁ ଯଥାସମ୍ଭବ କମ୍ ଉଲ୍ଲେଖ କରୁଥିଲେ । ଭିତରେ କ'ଣସବୁ ଅଭିପ୍ରାୟ ରଖିଥିବା ଭଳି ସେମାନେ ପ୍ରେରଣାରୂପେ ଏକମାତ୍ର ଗ୍ରୁଣ୍ଡ୍‌ଭିଗ୍‌ଙ୍କୁ ସ୍ୱୀକାର କରୁଥିବା ପରି ମନୋଭାବ ଦେଖାଇଲେ, ତାଙ୍କରି ଉଦ୍ଧୃତିଗୁଡ଼ିକୁ ପଛକୁ ପଛ ଆଣି ବାଢ଼ି ଦେଉଥିଲେ । ଏବଂ, ସତ କଥା ହେଉଛି, କଲ୍‌ଲ୍‌ଙ୍କ ପରି ଏତେ ସନ୍ଦେହମୁକ୍ତ ଭାବରେ ଏହି କ୍ଷେତ୍ରରେ ଆଉ କିଏ ଅଧିକ ଅଙ୍ଗେ ନିଭାଇଥିଲା ଓ ଅଧିକ ପ୍ରୟୋଗ କରିବାକୁ ସାହସ ମଧ୍ୟ କରିଥିଲା ?

ଅନ୍ୟ ପକ୍ଷରେ, ମୁକ୍ତ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକମାନେ ଏବଂ ସାଧାରଣ ଦେଶବାସୀ କଲ୍‌ଲ୍‌ଙ୍କୁ ସର୍ବଦା ତାଙ୍କର ଯୋଗ୍ୟ ସ୍ୱୀକୃତିଟିକୁ ଦେବାରେ ଆଦୌ କୌଣସି ତ୍ରୁଟି କରୁନଥିଲେ । ସେମାନେ କଲ୍‌ଲ୍‌ଙ୍କୁ ସର୍ବୋପରି ହୃଦୟ ଦେଇ ହିଁ ବୁଝୁଥିଲେ ଓ ତେଣୁ ଅଧିକ ବୁଝି ପାରୁଥିଲେ । ଉପର ବର୍ଗର ବ୍ୟକ୍ତିମାନେ ସଚରାଚର ମସ୍ତିଷ୍କ ଓ ବୁଦ୍ଧି ଦେଇ ବୁଝିଥାଆନ୍ତି । ହୃଦୟ ଦେଇ ବୁଝନ୍ତି ନାହିଁ ବୋଲି ମସ୍ତିଷ୍କଟାକୁ ଏପରି ଏକବାଗିଆ ଭାବରେ ନେଇ ଲଦି ଦେଉଥାନ୍ତି କି ? ଏହି ଉଚ୍ଚବର୍ଗୀୟମାନେ କଲ୍‌ଲ୍‌ଙ୍କୁ କ୍ୱଚିତ୍ ସହାନୁଭୂତି ସହିତ ବୁଝୁଥିଲେ ବା ତାଙ୍କୁ ଭଲ ପାଉଥିଲେ । ସେମାନେ ତାଙ୍କୁ ଜଣେ ଏକ ଅଲଗା କିସମର ବିଚିତ୍ର ମନୁଷ୍ୟ ବୋଲି କଳ୍ପନା କରୁଥିଲେ । ସେମାନେ କଲ୍‌ଲ୍‌ଙ୍କୁ ଜଣେ କଠୋର ସ୍ୱଭାବର ବ୍ୟକ୍ତି ବୋଲି ବିଚାର କରୁଥିଲେ; ଭାରି ଏକବାଗିଆ,- ଯାହା ଭାବୁଥିବେ ତାହାହିଁ କରିବେ, ମୋଟେ କାହାରି କଥା ଶୁଣିବେନାହିଁ । ଅତ୍ୟନ୍ତ ସତ୍ୟ କଥା ଯେ କଲ୍‌ଲ୍ ତଥ୍ୟଜ୍ଞାନ ଏବଂ ପାଣ୍ଡିତ୍ୟ ଉପରେ ଜୋର୍ ଦେଉନଥିଲେ, ଜଣେ ମନୁଷ୍ୟ ହେବା ଉପରେ ହିଁ ପ୍ରାୟ ସବୁଯାକ ଗୁରୁତ୍ୱ ଦେଉଥିଲେ । ସମ୍ଭବତଃ ସେହି କାରଣରୁ ହିଁ ସେ ପାଦ୍ରୀ ଏବଂ ଶିକ୍ଷକମାନଙ୍କ ଠାରୁ ସର୍ବଦା ବହୁତ କିଛି ଦାବୀ କରୁଥିଲେ । ତାଙ୍କର କଠୋରତମ ବାଣଗୁଡ଼ିକ ସେହିମାନଙ୍କ ଆଡ଼କୁ ହିଁ ଉଦ୍ଦିଷ୍ଟ ଥିଲା । ·ସେ ସେମାନଙ୍କ ଠାରୁ ପ୍ରକୃତରେ କ'ଣ ଆଶା କରୁଥିଲେ ? କଲ୍‌ଲ୍ ସର୍ବଦା ଇଚ୍ଛା କରୁଥିଲେ ଯେ ସେମାନେ ଜନଗଣଙ୍କର ସେବକ ହୋଇ ରହିବେ; ହଁ, ସେ କେବଳ ସେତିକି ଆଶା କରୁଥିଲେ । ଯେଉଁ ପାଦ୍ରୀ ଓ ଶିକ୍ଷକମାନଙ୍କର ସମ୍ପର୍କରେ ଆସୁଥିଲେ, ସେମାନଙ୍କ ଠାରୁ ସେତିକି ଦାବୀ କରୁଥିଲେ । ପୃଥିବୀକୁ ଉଜ୍ଜୀବିତ କରି ରଖିବାପାଇଁ ଯାହାକିଛି ଆବଶ୍ୟକ, ସେମାନେ କେବଳ ତାହାହିଁ କରନ୍ତୁ ବୋଲି କଲ୍‌ଲ୍ ନିରନ୍ତର ଦାବୀ କରୁଥିଲେ । ସିଏ ନିଜେ ଯାହା କରୁଥିଲେ, କେବଳ ସେତିକି !

ପାଦ୍ରୀମାନେ ଓ ଶିକ୍ଷକମାନେ ନିଜକୁ କଦାପି ଏହି ଦାବୀର ବାହାରେ ବୋଲି କହି ପାରିବେନାହିଁ । ଯେଉଁମାନେ ଶିକ୍ଷା ଲାଭ କରିଛନ୍ତି, ନିଜକୁ ଶୋଧିତ ଏବଂ ଶାଳୀନ

ବୋଲି ଅନୁଭବ କରୁଛନ୍ତି ଏବଂ ଯେଉଁମାନେ ଏକ ଉପର ବର୍ଗରେ ଅଛନ୍ତି ବୋଲି ଭାବୁଛନ୍ତି, ସେମାନଙ୍କ ଠାରୁ ଅଧିକ ଦୃଢ଼ ଭାବରେ ଏହି ଦାବୀଟିକୁ କରାଯିବା ଉଚିତ ବୋଲି କ୍ରିଷ୍ଟେନ୍ କଲ୍‌ଲ୍ ହୁଏତ ନିଜେ କହିଥାନ୍ତେ । ଏବଂ, ସେବକ ଓ ପରିକର ହେବାର କ୍ଷେତ୍ରରେ ସିଏ ତ ସ୍ୱୟଂ ସବାଆଗରେ ମଧ୍ୟ ଯାଇଛନ୍ତି ଓ ବାଟ ଦେଖାଇ ଦେଇଛନ୍ତି । ଯେଉଁମାନେ ତାଙ୍କର ମୁହଁରୁ ବାହାରିଥିବା କଥାଗୁଡ଼ିକୁ ଶୁଣିଥିବେ, ସେମାନଙ୍କ ଭିତରେ ପାଦ୍ରୀ ଥିଲେ, ଶିକ୍ଷକ ମଧ୍ୟ ଥିଲେ,- ସେମାନେ ଅବଶ୍ୟ ତାହାର ସାକ୍ଷୀ ହୋଇ ରହିଛନ୍ତି । ଏହି ଦାବୀ କରିବା ନିମନ୍ତେ କଲ୍‌ଲ୍‌ଙ୍କର ପୂର୍ଣ୍ଣ ଅଧିକାର ରହିଥିଲା । କଲ୍‌ଲ୍ ଯେ ଉପରେ ଉପରେ ଖାଲି କଥାଗୁଡ଼ିଏ କହି ଯାଉନଥିଲେ ଓ ପୂର୍ଣ୍ଣ ଗାମ୍ଭୀର୍ଯ୍ୟର ସହିତ ସବୁ କହୁଥିଲେ, ଶୁଣିଥିବା ସମସ୍ତେ ତାହା ଭଲ ଭାବରେ ଜାଣିଥିଲେ । ଶବ୍ଦଗୁଡ଼ିକ ପଛରେ ଜଣେ ପୂରା ମଣିଷ ହିଁ ବିଦ୍ୟମାନ ରହିଥିଲା । ଡେନ୍‌ମାର୍କ୍‌ର ଜନଗଣଙ୍କ ନିମନ୍ତେ ଯେଉଁ ଭବିଷ୍ୟ ଅପେକ୍ଷା କରିଥିଲା, କଲ୍‌ଲ୍ ପୂର୍ଣ୍ଣ ଅର୍ଥରେ ତାହାରି ପ୍ରତୀକ ଥିଲେ । ସେହି ହିସାବରେ ଶିକ୍ଷିତ ଉଚ୍ଚମାନଙ୍କ ଅପେକ୍ଷା ତାଙ୍କୁ ହିଁ ଡେନ୍‌ମାର୍କ୍‌ର ଜନଗଣଙ୍କର ଅଧିକ ନିକଟବର୍ତ୍ତୀ ବୋଲି କୁହାଯାଇ ପାରିବ । ଏହି କଥାଟିକୁ ଉଚ୍ଚବର୍ଗର କର୍ତ୍ତାମାନେ କଦାପି ବୁଝି ପାରିନଥାନ୍ତେ । ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର କଥାଗୁଡ଼ିକୁ ମଧ୍ୟ ସେମାନେ କେତେ ଅଳପ ବୁଝିଥିଲେ ! ହୁଏତ ଅଧାଅଧି ବୁଝିଥିଲେ ଓ ତାଙ୍କୁ ଅନନ୍ୟସାଧାରଣ ବୋଲି କହୁଥିଲେ ।

ଏମାନେ ସମସ୍ତେ ଏକ ଉଚ୍ଚବର୍ଗୀୟ କାଚକାନ୍ଥ ଭିତରେ ରହି ହିଁ ସେହି ଅନୁସାରେ କଲ୍‌ଲ୍‌ଙ୍କୁ ବୁଝୁଥିଲେ, ତାଙ୍କ ବିଷୟରେ କେତେକ ବଦ୍ଧ ଧାରଣା ମଧ୍ୟ ପୋଷଣ କରୁଥିଲେ ଓ ତାହାହିଁ ପରବର୍ତ୍ତୀ ପୁରୁଷଯାଏ ଆହୁରି କେତେଜଣଙ୍କୁ ଆଚ୍ଛନ୍ନ କରି ରଖିଥିଲା - ଏମାନଙ୍କ ଭିତରେ କିଛି ପାଦ୍ରୀ ରହିଥିଲେ, ଲୋକବିଦ୍ୟାଳୟର କିଛି ଶିକ୍ଷକ ବି ଥିଲେ । ମାତ୍ର ତଥାପି ମୂଳ ଆହ୍ୱାନଟି ସେତେବେଳେ ଯେଉଁପରି ଥିଲା, ବର୍ତ୍ତମାନ ମଧ୍ୟ ସମଗ୍ରତଃ ଠିକ୍ ସେହିଭଳି ରହିଛି । ଶ୍ରୀଯୁକ୍ତ କଲ୍‌ଲ୍ ଶିକ୍ଷକ ଏବଂ ପାଦ୍ରୀମାନଙ୍କ ଠାରୁ ଯେଉଁ ପ୍ରତ୍ୟାଶା ରଖିଥିଲେ, ତାହା ସମାଜର ଅନ୍ୟ ସମସ୍ତଙ୍କ ନିମନ୍ତେ ମଧ୍ୟ ଅବଶ୍ୟ ପ୍ରଯୁଜ୍ୟ ହେବ: ଯଦି ଆମେ ସେଗୁଡ଼ିକୁ ଗମ୍ଭୀର ଭାବରେ ଗ୍ରହଣ କରିବା, ଅର୍ଥାତ୍ ସେଗୁଡ଼ିକ ଅନୁସାରେ ଜୀବନଟିଏ ବଞ୍ଚିବା, ତେବେ ଆମ ଜୀବନକୁ ତାହା ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦେବ । ଏବଂ, ଅତ୍ୟନ୍ତ ସ୍ପଷ୍ଟ କଥା ଯେ, ସେମାନେ ସେପରି କୌଣସି ପରିବର୍ତ୍ତନ ଆଦୌ ଇଚ୍ଛା କରୁନାହାନ୍ତି । ଉଦାହରଣ ସ୍ୱରୂପ, କଲ୍‌ଲ୍ ଯେତେବେଳେ ଆମକୁ ସେବକଟିଏ ହେବା ବିଷୟରେ କହୁଛନ୍ତି, ସେତେବେଳେ ସେ ଅମୁକ କିମ୍ବା ସମୁକ କୌଣସି ଏକ ତାତ୍କାଳିକ ଲକ୍ଷ୍ୟର ସେବା ଖଟିବାକୁ ଆଦୌ କହୁନାହାନ୍ତି । ମାତ୍ର, ଯେଉଁ ମନୁଷ୍ୟମାନେ ସତକୁ ସତ ସାହାଯ୍ୟ ଆବଶ୍ୟକ କରୁଛନ୍ତି, ସେହିମାନଙ୍କର ସେବା କରିବାକୁ ହିଁ ଆମକୁ କହୁଛନ୍ତି । ଏତିକି ହୋଇପାରିଲେ ମଧ୍ୟ ଏକ

ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ୍ର ହୁଅନ୍ତା, ଲୋକବିଦ୍ୟାଳୟରେ ନୂତନ ଜୀବନର ସଞ୍ଚାର ହୁଅନ୍ତା ଏବଂ ଆମର ନେତୃତ୍ୱଗୁଡ଼ିକ ମଧ୍ୟ ଏକାବେଳେକେ ଏକ ଅନ୍ୟ ଆହ୍ୱାନର ସମ୍ମୁଖୀନ ହୁଅନ୍ତେ । ଶ୍ରୀ କଲ୍‌ଲ୍‌ଙ୍କ ସହିତ କଥା ହେବାଲାଗି ବିଭିନ୍ନ ସମୟରେ ଯେଉଁ ଶିକ୍ଷକମାନେ ଆସୁଥିଲେ, ସେମାନଙ୍କୁ ସିଏ ସର୍ବଦା ସେହି ଗୋଟିଏ ଉତ୍ତର ହିଁ ଦେଉଥିଲେ, ''ଆପଣମାନେ ଆତ୍ମତ୍ୟାଗ ଏବଂ ଆତ୍ମଦାନର ଫୁଲଗଛଟିର ନିଜ ଜୀବନରୂପୀ ଉଦ୍ୟାନରେ ଅଧିକରୁ ଅଧିକ ଶୁଶ୍ରୂଷା କରନ୍ତୁ । ନିଜପାଇଁ କମ୍ ଦାବୀ କରନ୍ତୁ ଓ ନିଜକୁ ଅଧିକରୁ ଅଧିକ ଦେବାଲାଗି ସମର୍ଥ ହୁଅନ୍ତୁ ।'' ଏବଂ, ତା' ସିହତ ସେହି ଅଳ୍ପ କେତୋଟି ବାକ୍ୟ ମଧ୍ୟ ଉଚ୍ଚାରଣ କରୁଥିଲେ: ଯଦି ତୁମେ ପ୍ରକୃତ ଜୀବନଟିଏ ବଞ୍ଚିବାକୁ ଇଚ୍ଛା କରୁଛ, ତେବେ ସରଳ ଜୀବନଟିଏ ବଞ୍ଚ ଯେଉଁଥିପାଇଁ କି ଆଦୌ ବହୁତଗୁଡ଼ାଏ ବସ୍ତୁର କୌଣସି ପ୍ରୟୋଜନ ନଥିବ । ଏହି ସରଳ କେତୋଟି ପଦର ଗଭୀରତା ମାପିବାକୁ ଚେଷ୍ଟା କଲେ ଆମେ ତାହାର ବହୁଦୂରପ୍ରସାରୀ ତାତ୍ପର୍ଯ୍ୟଟିକୁ ମଧ୍ୟ ଅବଶ୍ୟ ବୁଝି ପାରିବା । କଲ୍‌ଲ୍ ନିଜର ଜୀବନକୁ ହାତ୍‌ପାପୁଲି ଉପରେ ରଖି ହିଁ ଏ କଥା କହୁଥିଲେ, କୌଣସି ମହାନ୍ ପୁସ୍ତକରୁ ଉକ୍ତିମାନ ଉଦ୍ଧାର କରି କହୁନଥିଲେ । ଏହି ମନୁଷ୍ୟ ସମାଜରେ ହିଁ ପରମେଶ୍ୱରଙ୍କର ଇଚ୍ଛା ଦିନେ ନା ଦିନେ ମୂର୍ତ୍ତରୂପ ଗ୍ରହଣ କରିବ ବୋଲି କଲ୍‌ଲ୍ ଅତ୍ୟନ୍ତ ସଚଳ ଭାବରେ ବିଶ୍ୱାସ କରୁଥିଲେ ଏବଂ ଏହି ପଥରେ ସ୍ୱୟଂ ଆଗେ ଆଗେ ଚାଲୁଥିଲେ ।

କେତେ ବ୍ୟକ୍ତି ମନ୍ତବ୍ୟ ପ୍ରକାଶ କରି କହୁଥିଲେ ଯେ ଶ୍ରୀଯୁକ୍ତ କଲ୍‌ଲ୍‌ଙ୍କର କଥାମାନଙ୍କୁ ଆଦୌ ଗମ୍ଭୀର ଭାବରେ ଗ୍ରହଣ କରି ହେବନାହିଁ; କାରଣ ସିଏ ଅତି ଅଳପ ଭିତରେ ଏକ କଠୋର ଜୀବନ ଯାପନ କରନ୍ତି ଏବଂ ନିଜର ଖାଦ୍ୟ,ପାନୀୟ, ପୋଷାକ ଓ ଚାଲିଚଳଣରେ ଚାଷୀଟିଏ ପରି ଚଳନ୍ତି । ସେତେବେଳେ ଦ୍ରବ୍ୟବହୁଳତାର ଏକ ନୂଆ ପ୍ରୟୋଜନର ଯୁଗ ଇଉରୋପରେ କ୍ରମଶଃ ପ୍ରଭାବ ଜମାଇ ଆସୁଥିଲା ଓ ଅଧିକରୁ ଅଧିକ ଉପଭୋଗକୁ ହିଁ ଅସଲ ଜୀବନର କାମ୍ୟ ବୋଲି ବି ଭାବିବାକୁ ଆରମ୍ଭ କରୁଥିଲା । ବାହାରର ଜୀବନଟା ଯେତିକି ଅଭାବପରେ ଅଭାବପୂରଣର ପ୍ରାୟ ଏକ ପ୍ରତିଯୋଗିତାରେ ପରିଣତ ହୋଇଯିବା ଭଳି ବୋଧ ହେଉଥିଲା, ତେଣେ ଅନ୍ତର୍ଗତ ଅନୁଭବ ଏବଂ ସଂଲଗ୍ନତା ଗୁଡ଼ିକ ସତେଅବା ଅଗଭୀର ହୋଇ ଆସିବାର ଏକ ଆଶଙ୍କା ମଧ୍ୟ ଆସି ଉପସ୍ଥିତ ହୋଇ ଯାଉଥିଲା । ଏହି ପରିପ୍ରେକ୍ଷୀରେ ଖୁବ୍ ସହଜରେ ବୁଝି ହେଉଛି ଯେ ଉପରେ ଅଧିକ ଭୋଗ ଭିତରେ ରହିଥିବା ସମ୍ଭ୍ରାନ୍ତମାନେ କଲ୍‌ଲ୍‌ଙ୍କୁ ଏକ ବିଚିତ୍ର ବ୍ୟତିକ୍ରମ ପରି ଦେଖୁଥିଲେ ଏବଂ ସିଏ କରୁଥିବା ପ୍ରତ୍ୟାଶାଗୁଡ଼ିକ ପ୍ରାୟ ଅସାଧ ବୋଲି ମନେ କରୁଥିଲେ । ଗୋଟିଏ ପ୍ରଲୋଭନପୂର୍ଣ୍ଣ ସୁଅ ମାଡ଼ି ଆସୁଥିଲା ଏବଂ ହୁଏତ ବହୁତ ମନୁଷ୍ୟ ତାହାରି ଭିତରକୁ ଡେଇଁପଡ଼ି ଅଧିକ ସୁଖର ଅଧିକାରୀ ହେବେ ବୋଲି ନାନା ଉତ୍ତେଜିତ ସ୍ୱପ୍ନମାନ ଦେଖୁଥିଲେ ।

ଲୋକବିଦ୍ୟାଳୟ ସେହି ସ୍ରୋତର ଗତିରୋଧ କରୁ - ଅଧିକରୁ ଅଧିକ ମନୁଷ୍ୟ ଅନ୍ୟମାନଙ୍କ ପ୍ରତି ଆଖି ବୁଜିଦେଇ ଅଧିକରୁ ଅଧିକ ଭିତରେ ନିଜକୁ ହରାଇ ନଦିଅନ୍ତୁ - ସେମାନେ ଜୀବନଟିଏ ବଞ୍ଚନ୍ତୁ - ଜୀବନ ସହିତ ଜୀବନର ଲାଗି ରହିଥିବା ଡ଼ୋରଟିକୁ ଅନ୍ତରଙ୍ଗ ଭାବରେ ବଞ୍ଚିବା ସକାଶେ ଆଗ୍ରହୀ ହୁଅନ୍ତୁ, କ୍ରିଷ୍ଟେନ୍ କଲ୍ଡ୍ ସାରା ଡେନ୍‌ମାର୍କକୁ ସମ୍ମୁଖରେ ରଖି ସେହି ସ୍ୱପ୍ନଟିକୁ ଦେଖୁଥିଲେ ।

ତେଣୁ କ୍ରିଷ୍ଟେନ୍ କଲ୍ଡ୍‌ଙ୍କୁ ଆମେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର ମୁଖ୍ୟତଃ ଜଣେ ଅନୁଗାମୀ ବୋଲି ଆଦୌ କହି ପାରିବାନାହିଁ । ଏବଂ, ସମ୍ଭବତଃ ସେହି କାରଣରୁ ଲୋକବିଦ୍ୟାଳୟର କଳ୍ପନାଟିକୁ କ୍ରମରୂପାୟିତ କରି ଆଣିବା କ୍ଷେତ୍ରରେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ମଧ୍ୟ ନିଜର ତଥାକଥିତ ଅନୁଗାମୀମାନଙ୍କ ଅପେକ୍ଷା କ୍ରିଷ୍ଟେନ୍ କଲ୍ଡ୍‌ଙ୍କ ଉପରେ ହିଁ ଅଧିକ ଆସ୍ଥା ସ୍ଥାପନ କରିଥିଲେ ଏବଂ ତାଙ୍କ ପ୍ରୟୋଗପଥଟିକୁ ଏକ ନିର୍ଦ୍ଦିଷ୍ଟ ପ୍ରସ୍ଥ ଆଣିଦେବାରେ ତାଙ୍କର ମାଆ, ଶ୍ରୀଯୁକ୍ତ ସ୍ତ୍ରେପେନ୍‌ବର୍ଗ୍ ଏବଂ ଦାର୍ଶନିକ ସ'ରେନ୍ କିଅର୍କଗୋର୍‌ଙ୍କର ହିଁ ସର୍ବାଧିକ ଅବଦାନ ରହିଛି । ଗ୍ରୁଣ୍ଡ୍‌ଭିଗ୍ ଓ କଲ୍ଡ୍ ଉଭୟେ ନିଜ ନିଜ ପରିଚୟରେ ସ୍ୱତନ୍ତ୍ର ଏବଂ ମହାନ୍ ଥିଲେ । ମନୁଷ୍ୟଜୀବନର ପ୍ରତିଶ୍ରୁତିପୂର୍ଣ୍ଣ ନିୟତି ବିଷୟରେ ଦୁହେଁ ପ୍ରାୟ ଏକ ଉଚ୍ଚ ଶିଖର ପର୍ଯ୍ୟନ୍ତ ବହୁ ସମ୍ଭାବନାର ପ୍ରତ୍ୟକ୍ଷ କରି ପାରୁଥିଲେ । ଏକ ପ୍ରଶସ୍ତତର ଅର୍ଥରେ ଉଭୟଙ୍କର ଭୂମି ଆଧ୍ୟାତ୍ମିକ ହିଁ ଥିଲା । ଗ୍ରୁଣ୍ଡ୍‌ଭିଗ୍‌ଙ୍କର ବନ୍ଧୁ ଏବଂ ଅନୁଗାମୀମାନେ ନିଜ ଦେଶର କୃଷକମାନଙ୍କୁ କିଛି ନୂତନ ଆଲୋକ ଦେବାଲାଗି ଯେତେବେଳେ ରାଜଧାନୀ କୋପେନ୍‌ହେଗେନ୍‌ରେ ବିଚାର କରିଥିଲେ, ସେତେବେଳେ ସେମାନେ କଲ୍ଡ୍‌ଙ୍କର ସାହାଯ୍ୟ ଲୋଡ଼ିଥିଲେ । ପ୍ରସ୍ତାବ ଦିଆଗଲା ଯେ କଲ୍ଡ୍ ଦେଶର ନାନା ସ୍ଥାନକୁ ଯାଇ ବକ୍ତୃତା ଦେବେ । ମାତ୍ର କଲ୍ଡ୍ ସେହି ପ୍ରସ୍ତାବଟିକୁ ସ୍ୱୀକାର କଲେନାହିଁ । ଉତ୍ତର ଦେଇଥିଲେ: ମୁଁ କ'ଣ କରିବି, ସେକଥା ଠିକ୍ କରି ସାରିଛି । ମୁଁ ବିଦ୍ୟାଳୟଟିଏ ଆରମ୍ଭ କରିବି । ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ତରୁଣମାନଙ୍କ ନିମନ୍ତେ ଯେଉଁ ଜାତୀୟ ବିଦ୍ୟାଳୟଟିର କଥା ଚିନ୍ତା କରୁଥିଲେ, ସେଥିରେ ଶିକ୍ଷାର ଏକ କାର୍ଯ୍ୟକ୍ରମ ହିଁ ପ୍ରଧାନ ହୋଇ ରହିଥିଲା । କ୍ରିଷ୍ଟେନ୍ କଲ୍ଡ୍ ବ୍ୟକ୍ତିତ୍ୱର ଉନ୍ମୀଳନକୁ ସର୍ବାଗ୍ର ପ୍ରାଧାନ୍ୟ ଦେଇଥିଲେ । ଏବଂ ସେଥିଲାଗି ବ୍ୟକ୍ତି ହିସାବରେ ହିଁ ପ୍ରତ୍ୟେକ ଶିକ୍ଷାର୍ଥୀର ନିକଟବର୍ତ୍ତୀ ହେବାକୁ ଚେଷ୍ଟା କରିବା ହିଁ ତାଙ୍କର ଯାବତୀୟ ବ୍ୟବସ୍ଥାରେ ସବାଆଗ କଥା ହୋଇ ରହିଥିଲା । ସିଏ ଅନେକ ସମୟରେ କହୁଥିଲେ ଯେ ତାଙ୍କ ବିଦ୍ୟାଳୟ ବସ୍ତୁତଃ କୌଣସି ବିଦ୍ୟାଳୟ ହିଁ ନଥିଲା । ବାଟ ଚାଲୁ ଚାଲୁ ଯେପରି ମଝିରେ କୌଣସି ଏକ ସ୍ଥାନରେ କିଛି ସମୟ ବିଶ୍ରାମ ବି ନେବାକୁ ପଡ଼େ, ସେହିପରି ତାଙ୍କ ବିଦ୍ୟାଳୟକୁ ଗୋଟିଏ ବିଶ୍ରାମସ୍ଥାନ ବୋଲି କୁହାଯାଇ ପାରିବ । ଜୀବନର ଯାତ୍ରାରେ ତରୁଣ ଶିକ୍ଷାର୍ଥୀମାନେ କିଛି ସମୟ ଲାଗି

ଏଠାକୁ ଆସିବେ, ବିଶ୍ରାମ ନେବେ ଏବଂ ପୁନରାୟ ବଳ ସଂଗ୍ରହ କରି ନିଜ ନିଜର ଯାତ୍ରାରେ ବାହାରି ଯାଇ ପାରିବେ । ତାଙ୍କରି କଥାରେ କହିଲେ:

''ଆମ ମନୁଷ୍ୟମାନଙ୍କର ଜୀବନକ୍ଷେତ୍ରରେ ଈଶ୍ୱରୀୟ ଶକ୍ତି ଏବଂ ପ୍ରାଣଶକ୍ତି ପରସ୍ପର ସହିତ ଯୋଡ଼ା ହୋଇ ରହିଛି । ସେହିଠାରେ ହିଁ ଆତ୍ମା ଏବଂ ଜଡ଼ ମଧ୍ୟରେ ନିତ୍ୟସଂଗ୍ରାମ ଲାଗି ରହିଛି । ଈଶ୍ୱର ଏବଂ ପଶୁ ମଧ୍ୟରେ ସଂଗ୍ରାମ ଚାଲିଛି । ଏବଂ, ସେହି ସଂଗ୍ରାମର ପରିଣାମ ଉପରେ ହିଁ ଏହି ପୃଥିବୀର ଅଗ୍ରଗତି ନିର୍ଭରଶୀଳ ହୋଇ ରହିଛି । ମନୁଷ୍ୟ ଭିତରେ ବିଦ୍ୟମାନ୍ ଥିବା ଆତ୍ମା ହିଁ ସେହି ସଂଗ୍ରାମଟିକୁ କରୁଛି । ମନୁଷ୍ୟ ଭିତରେ ଯେଉଁ ଉଚ୍ଚତର ସାମର୍ଥ୍ୟମାନ ରହିଛି, ସେହିଗୁଡ଼ିକର ସାହାଯ୍ୟରେ ହିଁ ସିଏ ତା' ଭିତରେ ଥିବା ମନ୍ଦ ଶକ୍ତିଗୁଡ଼ିକ ସହିତ ଲଢ଼ିବ । ସେହି ଲଢ଼ାଇଟିରେ ଯଦି କୌଣସି ପ୍ରକାରର ହେଳା ଆସି ପହଞ୍ଚିଯାଏ, ତେବେ ମନୁଷ୍ୟକୁ ଯାବତୀୟ ବାସନା ହାତରେ କ୍ରୀଡନକ ପରି ହୋଇ ରହିବାକୁ ହିଁ ପଡ଼ିବ । ତା'ପରେ ଭୃତ୍ୟ ମାଲିକ ହୋଇ ବସିବ ଏବଂ ମନୁଷ୍ୟ ଭୃତ୍ୟ ହୋଇଯିବ । ତେଣୁ, ହେ ମନୁଷ୍ୟ, ତୁ ଶକ୍ତ ହେବୁ, ଲଢ଼ିବୁ, ସଂଗ୍ରାମରେ ଜୟଲାଭ କରିବୁ । ତୋ'ରି ଭିତରେ ହିଁ ଏକ ଈଶ୍ୱରୀୟ ଜୀବନ ଲୁକ୍କାୟିତ ହୋଇ ରହିଛି ।''

କ୍ରିଷ୍ଟେନ୍ କଲ୍‌ଲ୍ ଶିକ୍ଷକରୂପେ ଶହ ଶହ ବ୍ୟକ୍ତିଙ୍କୁ ସେହି ସଂଗ୍ରାମରେ ସାହାଯ୍ୟ କରିଥିଲେ । ପୃଥିବୀର ପ୍ରତ୍ୟେକ ଶିକ୍ଷକ ନିମନ୍ତେ ସେ ସେହି କାରଣରୁ ଚିରଦିନ ଏକ ବୃହତ୍ ପ୍ରେରଣା ହୋଇ ରହିଥିବେ, ବନ୍ଧୁ ପରି ଆଗକୁ ନେଇ ଯାଉଥିବେ ।

## - ୧୦ -

ଶ୍ରୀଯୁକ୍ତ କ୍ରିଷ୍ଟେନ୍ କଲ୍ଡ୍‌ଙ୍କ ନାମରେ ରଚିତ ହୋଇଥିବାକୌଣସି ପୁସ୍ତକ ଦୃଷ୍ଟିଗୋଚର ହୁଏନାହିଁ । ହଁ, ତୁରସ୍କରୁ ନିଜ ଦେଶକୁ ପାଦରେ ଚାଲି ଚାଲି ଫେରିବା ସମୟରେ ସେ ନିଜର ଯାତ୍ରା ବିବରଣୀକୁ ଲେଖି ରଖୁଥିଲେ । ରୁଇସ୍‌ଲିଙ୍ଗଠାରେ ନିଜର ଭାବନାଗୁଡ଼ିକୁ ରୂପ ଦେଇ ସିଏ ବିଦ୍ୟାଳୟଟିଏ ଆରମ୍ଭ କରିବା ବେଳକୁ Om Barneskolen ବା' ଶିଶୁମାନଙ୍କର ବିଦ୍ୟାଳୟ ବିଷୟରେ' ବୋଲି ଦୀର୍ଘ ଲେଖାଟିଏ ଲେଖିଥିଲେ । ଏକାବେଳେକେ ସାନ ବେଳୁଁ ଏକାଧିକ ସ୍ଥାନରେ ଶିକ୍ଷକତା କରି ତାଙ୍କର ପିଲାମାନଙ୍କ ବିଷୟରେ ଏବଂ ପିଲାମାନଙ୍କୁ ଶିକ୍ଷା ଦେବା ବିଷୟରେ ଯେଉଁ ପ୍ରତ୍ୟକ୍ଷ ଅଭିଜ୍ଞତା ହୋଇଥିଲା, ତାହାକୁ ହିଁ ସଜାଡ଼ି ଆଣି ସିଏ ମୁଖ୍ୟତଃ ଉକ୍ତ ଲେଖାଟିକୁ ପ୍ରସ୍ତୁତ କରିଥିବେ । ଅବଶ୍ୟ ଜଣେ ଶିକ୍ଷକ ହେବାପାଇଁ ଔପଚାରିକ ଭାବରେ ତାଲୀମ ପାଉଥିବା ସମୟରେ ମଧ୍ୟ ତାଙ୍କୁ କିଛି ତାତ୍ତ୍ୱିକ ବିଷୟ-ସାମଗ୍ରୀ ମିଳି ଯାଇଥିବ । ଲେଖାଟି ୧୮୫୦ ମସିହା ଡିସେମ୍ବର ୩୦ ତାରିଖରେ ସମ୍ପୂର୍ଣ୍ଣ ହୋଇଥିଲା । ଲେଖାଟି ବିଷୟରେ ତାଙ୍କର ଜଣେ ପୁରାତନ ଶିକ୍ଷାର୍ଥୀଙ୍କ ଠାରୁ ଆମକୁ କିଛି ଅଧିକ ତଥ୍ୟ ମଧ୍ୟ ମିଳିପାରିଛି । ଶିକ୍ଷାର୍ଥୀଙ୍କର ଏକ ସଂସ୍ମରଣରୁ ଜାଣି ହେଉଛି:

ଦିନେ ଶିକ୍ଷାର୍ଥୀମାନଙ୍କର ମେଳରେ କଥୋପକଥନ ଚାଲିଥିବା ସମୟରେ କ୍ରିଷ୍ଟେନ୍ କଲ୍ଡ୍ ନିଜ ବିଷୟରେ କହିଥିଲେ ଯେ, ସିଏ ପ୍ରକୃତରେ କେବେହେଲେ କିଛି ଲେଖିନାହାନ୍ତି । ହଁ, ଥରେ କେଉଁଠି ଘୋଷଣାଟିଏ ପ୍ରକାଶ ପାଇଥିଲା ଯେ, ପିଲାମାନଙ୍କୁ ଶିକ୍ଷା ଦେବା ବିଷୟରେ ଯେଉଁମାନେ ଇଚ୍ଛା କରିବେ, ସେମାନେ ଲେଖାମାନ ଲେଖି ପଠାଇ ପାରିବେ । ସେଗୁଡ଼ିକ ମଧ୍ୟରୁ ଯେଉଁ ପାଣ୍ଡୁଲିପିଟି ଶ୍ରେଷ୍ଠ ବୋଲି ବିବେଚିତ ହେବ, ସେଇଟିକୁ ଏକ ପୁରସ୍କାର ମଧ୍ୟ ମିଳିବ ବୋଲି କୁହା ଯାଇଥିଲା, ସେଇ ଘୋଷଣାଟି ଦ୍ୱାରା ଉତ୍ସାହିତ ହୋଇ କଲ୍ଡ୍ ଏକ ନାତିଦୀର୍ଘ ଲେଖା ପ୍ରସ୍ତୁତ କରି ପଠାଇ ଦେଇଥିଲେ । ଅବଶ୍ୟ ସେଇଟି ପୁରସ୍କାର ପାଇନଥିଲା । ଏକଦା କଲ୍ଡ୍ ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କୁ ମଧ୍ୟ ସମ୍ପୂର୍ଣ୍ଣ ଲେଖାଟିକୁ ପଢ଼ି ଶୁଣାଇଥିଲେ ଏବଂ ତାହାକୁ ଛପାଇଲେ କିପରି ହୁଅନ୍ତା ବୋଲି ତାଙ୍କର ମତ ଜାଣିବାକୁ ଚାହିଥିଲେ । ଉତ୍ତର ଦେଇ ବିଶପ୍ କହିଥିଲେ ଯେ, ଲେଖାଟିରେ ବହି ହୋଇ ଛାପା ହେଲାଭଳି ସାମଗ୍ରୀ କିଛି ରହିଛି ବୋଲି ସିଏ ଆଦୌ ଅନୁଭବ କରୁନାହାନ୍ତି । କାରଣ, ଅନ୍ୟମାନେ ମଧ୍ୟ ଏହି କଥାଗୁଡ଼ିକୁ ପୂର୍ବରୁ କହିଛନ୍ତି ଓ ଅଧିକ ଭଲ ଭାବରେ କହିଛନ୍ତି ।

ଯେଉଁ କାରଣରୁ ହୋଇଥାଉ ପଛକେ, ଗ୍ରୁଣ୍ଡ୍‌ଭିଗ୍ ଆଦୌ ଏକ ଉଚିତ ମତ ଦେଇନଥିଲେ । ଅବଶ୍ୟ ପାଣ୍ଡୁଲିପିଟି ସେହିଭଳି ଅନ୍ୟମାନଙ୍କର ଅଗୋଚରରେ ହିଁ ରହି ଯାଇଥିଲା ଏବଂ କଲ୍‌ଡ୍‌ଙ୍କର ମୃତ୍ୟୁପରେ ୧୮୭୭ ମସିହାରେ ଯାଇ ଛାପା ହୋଇ ବାହାରିଥିଲା । ଲେଖକଙ୍କର ଆଉଜଣେ ଛାତ୍ର ପୁସ୍ତକଟିର ମୁଖବନ୍ଧରେ ଲେଖିଛନ୍ତି: ପରବର୍ତ୍ତୀ ସମୟରେ ସେ ଶିକ୍ଷାର କ୍ଷେତ୍ରରେ ଯେଉଁସବୁ ପ୍ରୟୋଗରେ ମନୋନିବେଶ କଲେ, ସମ୍ପୂର୍ଣ୍ଣ ନିବନ୍ଧଟିକୁ ତାହାରି ଏକ ପରିଚାୟକ ପୁସ୍ତକ ବୋଲି କୁହାଯାଇ ପାରିବ । ପୁସ୍ତକଟିର ବିଷୟଗୁଡ଼ିକୁ ପାଠ କରି ପ୍ରକୃତରେ ଅତ୍ୟନ୍ତ ବିସ୍ମିତ ହେବାକୁ ପଡୁଛି ଯେ, ସେହି ଆରମ୍ଭରୁ ହିଁ ସେ ନିଜର ଲକ୍ଷ୍ୟ ବିଷୟରେ ଅତ୍ୟନ୍ତ ସ୍ପଷ୍ଟ ଏବଂ ସନ୍ଦେହରହିତ ଥିଲେ । ଅବଶ୍ୟ ପରେ ସେ ହୁଏତ ଏଠି ସେଠି କେତେକ ନିର୍ଦ୍ଦିଷ୍ଟ କଥାରେ ନିଜ ମତରେ କିଛି ପରିବର୍ତ୍ତନ କରିଥିଲେ ସିନା, ଅଥବା, ଜୀବନର ଶେଷ ଚରଣରେ ସେ ପୁସ୍ତକରେ ରହିଥିବା କେତୋଟି ବିଷୟକୁ ଅଧିକ ସ୍ପଷ୍ଟ ଭାବରେ ମଧ୍ୟ ଲେଖି ପାରିଥାନ୍ତେ, - ତଥାପି ତାଙ୍କର ମୂଳ ବିଚାରଗୁଡ଼ିକ ପ୍ରଥମେ ଯେଉଁପରି ଥିଲା, ଶେଷଯାଏ ମଧ୍ୟ ସମଗ୍ରତଃ ସେହିଭଳି ହିଁ ରହିଥିଲା । ଏବଂ, ତାଙ୍କର ଶିକ୍ଷାପ୍ରୟୋଗରେ ଅଗ୍ରଗତି ହେଉଥିବା ସଙ୍ଗେ ସଙ୍ଗେ ମୂଳ ବିଶ୍ୱାସଗୁଡ଼ିକ ମଧ୍ୟ ଅଧିକ ଦୃଢ଼ ହେବାରେ ଲାଗିଥିଲା ।

ବର୍ତ୍ତମାନ ଏହି ଭାଗଟିରେ ଆମେ ପୁସ୍ତକଟିର ଆଲୋଚ୍ୟଗୁଡ଼ିକୁ କ୍ରମବଦ୍ଧ ଭାବରେ ଯଥାସମ୍ଭବ ବିଶଦ ଆକାରରେ ଏଠାରେ ଉପସ୍ଥାପିତ କରିବାକୁ ଚେଷ୍ଟା କରିବା :

''ସାଂପ୍ରତିକ କାଳରେ ଯେତେଗୁଡ଼ିଏ ପ୍ରଶ୍ନ ଆମ ସମସ୍ତଙ୍କର ଧ୍ୟାନକୁ ସାଧାରଣତଃ ଅଧିକ ଆକର୍ଷଣ କରିଥାଏ, ସାର୍ବଜନୀନ ଶିକ୍ଷାର ବ୍ୟବସ୍ଥାରେ କିପରି ଆବଶ୍ୟକ ଉନ୍ନତିମାନ ସମ୍ଭବ କରିବାକୁ ହେବ, ସେହି ପ୍ରଶ୍ନଟିକୁ ଆଦୌ କୌଣସି ପ୍ରକାରେ କମ୍ ମହତ୍ତ୍ୱପୂର୍ଣ୍ଣ ବୋଲି କୁହାଯାଇ ପାରିବନାହିଁ । ଏହି ବର୍ତ୍ତମାନ ସମୟର ଏକ ପ୍ରଧାନ କାର୍ଯ୍ୟ ହେଉଛି ଯେ, ସମାଜର ଅପେକ୍ଷାକୃତ ତଳ ସ୍ତରଗୁଡ଼ିକରେ ରହିଥିବା ଲୋକମାନଙ୍କର ଜୀବନକୁ ମଧ୍ୟ କ୍ରମଶଃ ଉପରକୁ ଆଣିବାକୁ ପଡ଼ିବ, କାରଣ ତେବେଯାଇ ସେମାନଙ୍କର ଶକ୍ତି ଏବଂ ଯୋଗ୍ୟତାଗୁଡ଼ିକୁ ମଧ୍ୟ ସମାଜର ହିତ ତଥା ଅଗ୍ରଗତି ନିମନ୍ତେ କାର୍ଯ୍ୟରେ ଲଗାଯାଇ ପାରିବ । ଏହି ବିଷୟଗୁଡ଼ିକୁ ବିଚାରକୁ ନେଇ ମୁଁ ମଧ୍ୟ କିଛି ଲେଖି ଉପସ୍ଥାପିତ କରିବି ବୋଲି ଇଚ୍ଛା କରିଛି ଏବଂ ସେହି ସମ୍ପର୍କରେ ମୋ'ର ଯତ୍‌କିଞ୍ଚିତ୍ ବକ୍ତବ୍ୟଟିକୁ ବ୍ୟକ୍ତ କରିବି ବୋଲି ସ୍ଥିର ମଧ୍ୟ କରିଛି । ଅବଶ୍ୟ ଏଥିରେ କୌଣସି ସନ୍ଦେହ ନାହିଁ, କେବଳ ଜଣେ ବ୍ୟକ୍ତି ଏକାକୀ ଏହି କ୍ଷେତ୍ରରେ କଦାପି ଏକ ସମଗ୍ର ସମାଧାନ ଦେଇ ପାରିବନାହିଁ, କାରଣ ବହୁସଂଖ୍ୟକ ବ୍ୟକ୍ତି କହୁଛନ୍ତି ଯେ ସାର୍ବଜନୀନ ଶିକ୍ଷାଦାନର ପ୍ରଚଳିତ ବ୍ୟବସ୍ଥାଟିରେ ଏକ ମୌଳିକ ପରିବର୍ତ୍ତନ ଆଣିବାକୁ ପଡ଼ିବ ଏବଂ ତାହାକୁ ଏକାବେଳେକେ ଅନ୍ୟ ସତ୍ୟାନୁମାନ ଗୁଡ଼ିକ ଉପରେ ନୂଆ କରି ତିଆରି କରିବାକୁ ହେବ ।''

## ଏହି ଶିକ୍ଷାଦାନ ପିଲାମାନଙ୍କର ସାମର୍ଥ୍ୟ ତଥା ଆଗ୍ରହ ଅନୁସାରେ ହିଁ କାର୍ଯ୍ୟକାରୀ ହେବ

ବର୍ତ୍ତମାନ ସାର୍ବଜନୀନ ଶିକ୍ଷା କହିଲେ ଆମେ ଯାହା ବୁଝୁଛୁ ତାହା ସ୍ଥୂଳତଃ ଚଉଦ ବର୍ଷର ପିଲାଙ୍କର ଶିକ୍ଷାକୁ ହିଁ ବୁଝାଉଛି । ଏ ପର୍ଯ୍ୟନ୍ତ ସେହି କ୍ଷେତ୍ରରେ ଯାହାକିଛି ଚଳି ଆସିଛି, ତାହା ପ୍ରାୟ ସମ୍ପୂର୍ଣ୍ଣ ଭାବରେ ପିଲାଙ୍କର ବୁଝିବାଶକ୍ତି ଅର୍ଥାତ୍ ମଥାଟାକୁ ହିଁ ବିଚାରକୁ ନେଇ ଆସିଛି । ହଁ, ସଂବେଗ ବା ଅନୁଭବ ବିଷୟରେ ତାହା କେବଳ ଆଂଶିକ ଭାବରେ ହିଁ ମୁଣ୍ଡ ଖେଳାଇଛି । ମାତ୍ର, ପିଲା ଭିତରେ ରହିଥିବା କଳ୍ପନାଶକ୍ତିକୁ ପ୍ରାୟ ପାସୋରି ଚାଲିଯାଇଛି । ଏହି ଭୁଲ୍‌ଟି ପଛରେ ଏକ କାରଣ ଅବଶ୍ୟ ରହିଛି । ଆମେ ଧରି ନେଇଛୁ ଯେ ଏକ ସମୂହ ହିସାବରେ ଆମେ ବହୁକାଳରୁ ବିକାଶଲାଭ କରି ଆସିଛୁ ଏବଂ ଏଣୁ ଆମର ବୋଧଶକ୍ତି ବା ବୁଦ୍ଧି ନିଶ୍ଚୟ ଯଥେଷ୍ଟ ପରିମାଣରେ ପରିପକ୍ୱତା ଲାଭ କରି ସାରିଛି । ତେଣୁ, ଆମେ ବା ଆମର ପିଲାମାନେ ଆଉ ଅପରିପକ୍ୱ ଅନ୍ୟମାନଙ୍କ ପରି ସେହି ଆଗକାଳର ତୁଚ୍ଛା କଳ୍ପନା ଏବଂ ସ୍ୱପ୍ନଚାରିତା ଭିତରେ କାହିଁକି ବୃଥା ବାନ୍ଧି ହୋଇ ରହିଥିବେ ? - ଏବେ ଏହିପରି ବିଚାର କରାଯାଉଛି । ଏବଂ, ଏହାରି ଫଳରେ ପିଲାମାନଙ୍କୁ ଶିକ୍ଷା ଦେବାର କ୍ଷେତ୍ରରେ ମଧ୍ୟ କାଳକ୍ରମେ ନାନା ଅସ୍ୱାଭାବିକତା ଆସି ପ୍ରବେଶ କରିଛି । ଏପରିକି ଧର୍ମ ବିଷୟରେ ଶିକ୍ଷାଦାନ ବେଳେ ଆମକୁ ସେହି ଅଭ୍ୟାସଟି ଭାରି କାମୁଡ଼ି ରହିଛି । ଆମ ପ୍ରଶିକ୍ଷିତ ଶିକ୍ଷକମାନେ ଏହା ଫଳରେ ଧର୍ମର ଶିକ୍ଷାଦାନରେ କେବଳ କିଞ୍ଚିତ୍ ପରିମାଣରେ ହିଁ ଅଭିପ୍ରେତ ଲକ୍ଷ୍ୟଟିକୁ ହାସଲ କରି ପାରୁଛନ୍ତି । ଅନେକ ଶିକ୍ଷକ ଏପରିକି ସେହି ପୁରୁଣା ପଦ୍ଧତିଟିକୁ ଛାଡ଼ି ସାରିଲେଣି ସତ, ମାତ୍ର ତାହା ବଦଳରେ କୌଣସି ବିକଳ୍ପ ଅଧିକ ଫଳପ୍ରଦ ପଦ୍ଧତି ହାସଲ କରି ପାରିନାହାନ୍ତି । ପିଲା ନିଜର ହୃଦୟ ଦେଇ ହିଁ ବହୁତ କଥା ବୁଝିଥାଏ, ଆପଣାର କଳ୍ପନାଦ୍ୱାରା କେତେ କ'ଣ ଅନୁମାନ ଓ ଗ୍ରହଣ କରି ନେଇପାରେ, ବହୁତ କିଛିକୁ ଶିଶୁସୁଲଭ ବିଶ୍ୱାସଦ୍ୱାରା ଆମୂଳ କରିଥାଏ; ଏବଂ, ଯେଉଁସବୁ ବିଷୟକୁ ମସ୍ତିଷ୍କର ବୁଦ୍ଧିଦ୍ୱାରା ପ୍ରମାଣ କରାଯାଇ ପାରିବନାହିଁ, ତାହାକୁ ତଥାପି ସେହିପରି ମାର୍ଗରେ ବୁଝାଇବାର ପ୍ରଚେଷ୍ଟା କରିବା, ତାହା ପ୍ରକୃତରେ ଗୋଟିଏ ଭୁଲ୍, ଏବଂ ଏହାଦ୍ୱାରା ବହୁତ ଦୁଃଖଦ ପରିଣାମ ଭୋଗିବାକୁ ହୋଇଥାଏ । ପିଲା ଭିତରେ ଯଥାସମ୍ଭବ ତା'ର ବୁଦ୍ଧିକୁ ବିକଶିତ କରି ଆଣିବାର ପରିଶ୍ରମ କଲେ ମଧ୍ୟ ଆମେ ଅବଶ୍ୟ ସ୍ମରଣ ରଖିବା ଯେ ସେହି ବୟସରେ ତାହା ଆଦୌ କୌଣସି ପରିପକ୍ୱତା ଲାଭ କରିନଥାଏ ଏବଂ ବୁଦ୍ଧି ଉପରେ ଏତେ ବେଶୀ ଗୁରୁତ୍ୱ ଦେବା ସମୟରେ ଆମେ ଶିଶୁ ଭିତରର ପ୍ରକୃତ ସାମର୍ଥ୍ୟକୁ କଦାପି ଭୁଲି ଯିବାନାହିଁ । ବରଂ, ପିଲାର

କଳ୍ପନାଶକ୍ତିର ଦ୍ୱାର ଦେଇ ହିଁ ଆମେ ତା' ଭିତରେ ପ୍ରବେଶ କରିବା, କାରଣ ତାହା ସେଠାରେ ଅବଶ୍ୟ ବିଦ୍ୟମାନ ରହିଥିବ । ବର୍ତ୍ତମାନ ତ ଆମେ ରାସ୍ତାରୁ ବିଚ୍ୟୁତ ହୋଇଯାଇ ଜାଣତ ବା ଅଜାଣତରେ ଧରିନେଇଛୁ ଯେ, ମଣିଷ ଦିନେ ଗୋଟିଏ ପଶୁ ହିଁ ଥିଲା ଏବଂ ଶିକ୍ଷା ତଥା ତାଲୀମ ଦ୍ୱାରା ହିଁ ତାକୁ ଗୋଟିଏ ମନୁଷ୍ୟରେ ପରିଣତ କରିବାକୁ ହେବ । ଆମେ ବରଂ ଓଲଟାଟି ହିଁ ଭାବୁଥାଆନ୍ତୁ ଯେ, ମନୁଷ୍ୟ ଭିତରେ ଆଗରୁ ହିଁ ଯେଉଁସବୁ ସାମର୍ଥ୍ୟ ରହିଛି, ଆମକୁ ପ୍ରକୃତରେ ସେହିଗୁଡ଼ିକୁ ହିଁ ବିକଶିତ କରି ଆଣିବାକୁ ପଡ଼ିବ । ଜର୍ମାନୀ ବା ଅନ୍ୟ ଦେଶମାନଙ୍କରେ, ଯେଉଁଠାରେ ମଥା ବା ବୁଦ୍ଧିର ବହୁତ ଅଗ୍ରଗତି ହୋଇଥିବ, ସେଠାରେ ବୁଦ୍ଧିକୁ ସବାଆଗ ଗୁରୁତ୍ୱ ଦିଆଯାଉ ପଛକେ, ମାତ୍ର ଆମ ଦେଶରେ ତାହା ଆଦୌ କାମ ଦେବନାହିଁ । ଆମର ପୂର୍ବପୁରୁଷ ଯାବତୀୟ ଶିକ୍ଷାରେ ମୁହଁର କଥାକୁ ହିଁ ମାଧ୍ୟମରୂପେ ଗ୍ରହଣ କରିଥିଲେ । ଆମର ଏଠାରେ କେବେହେଲେ ଗୋଟିଏ ହେଲେ ଦାର୍ଶନିକ ଗ୍ରନ୍ଥ ଲେଖା ହୋଇନାହିଁ ବା କେହି କୌଣସି ଗହନ ଦାର୍ଶନିକ ବିଚାରବାଦର ପ୍ରତିଷ୍ଠା ମଧ୍ୟ କରିନାହାନ୍ତି । ଆମର ଏଠି ବରଂ କଥା ଓ କାହାଣୀଗୁଡ଼ିକର ଗନ୍ତାଘର ମହଜୁଦ ରହିଛି, ପୂର୍ବପୁରୁଷଙ୍କର ଦୁଃସାହସ-କାହାଣୀଗୁଡ଼ିକର ସମ୍ଭାର ମଧ୍ୟ ରହିଛି, କେବଳ ଇହୁଦୀ ଓ ଗ୍ରୀକ୍‌ମାନଙ୍କୁ ବାଦ୍ ଦେଲେ ଯାହାକି ଅନ୍ୟ କୌଣସି ଦେଶରେ ଦେଖିବାକୁ ମିଳିବନାହିଁ । ଏପରିକି ଆମ ଧର୍ମୀୟ ତଥା ସାଂସାରିକ ଜୀବନରେ ଆମେ ଯେଉଁ ଶବ୍ଦମାନଙ୍କୁ ବ୍ୟବହାର କରି ଆସିଛୁ, ସେଗୁଡ଼ିକ ସତେଅବା ଗୋଟିଏ ଗୋଟିଏ ଚିତ୍ର ପରି ଆମ ଆଗରେ ଆସି ଦଣ୍ଡାୟମାନ ହୋଇଥାନ୍ତି, କଳ୍ପନାଦ୍ୱାରା ହିଁ ତିଆରି ହୋଇଥାନ୍ତି ଏବଂ କଳ୍ପନାକୁ ହିଁ ଅନୁପ୍ରେରିତ କରି ଆଣିଥାନ୍ତି ।

ଆମ ପିଲାମାନଙ୍କୁ ଆମେ କିଭଳି ପ୍ରଣାଳୀରେ ଶିକ୍ଷା ଦେବା, ଏହି ପ୍ରଶ୍ନଟି ଯଦି ସେହି ପିଲାମାନଙ୍କୁ ହିଁ ପଚରା ଯିବ, ତେବେ ସେମାନେ ଏହିପରି ଉତ୍ତର ଦେବେ: ଆମକୁ କାହାଣୀଟିଏ କହ ! ଆମ ପିଲାବେଳୁଁ ମଧ୍ୟ ଆମେ ଏପରି ଅନେକ ଶିକ୍ଷକ ଏବଂ ଶିକ୍ଷୟତ୍ରୀଙ୍କୁ ନିଶ୍ଚୟ ମନେ ପକାଇ ପାରିବା, ଯେଉଁମାନଙ୍କ ଭିତରେ ପିଲାମାନଙ୍କ ପ୍ରତି ମମତା ଭରି ରହିଥିଲା ଓ ଯେଉଁମାନେ କାହାଣୀ ଓ ଗାଥାଗୁଡ଼ିକୁ ମାଧ୍ୟମ କରି ହିଁ ସେମାନଙ୍କୁ ଯାବତୀୟ ଶିକ୍ଷା ଦେଉଥିଲେ । କେତେବେଳେ ଦେବତାମାନଙ୍କର, କେତେବେଳେ ପୂର୍ବକାଳରେ ହୋଇଥିବା କୌଣସି ଯୁଦ୍ଧର ଏବଂ ପୁଣି କେତେବେଳେ ବାମନମାନଙ୍କର କାହାଣୀ କହୁଥିଲେ । ଆମର ଚିତ୍ତରେ ସେଗୁଡ଼ିକର ଅନେକ ସୁସ୍ଥ ପ୍ରଭାବ ପଡୁଥିଲା । ଏବେ ସେହି ସହଜ ଖୁସୀ ଏବଂ ସହଜ ଘୃଣା ବା ପ୍ରତ୍ୟାଖ୍ୟାନ ପିଲାମାନଙ୍କ ଠାରେ ଦେଖିବାକୁ ହିଁ ମିଳୁନାହିଁ ।

ଗଛଟିକୁ ଯେପରି ସେଥିରୁ ଫଳୁଥିବା ଫଳରୁ ଜାଣି ହେଉଛି, ଠିକ୍ ସେହିପରି ଯାବତୀୟ ଶିକ୍ଷାକୁ ଆମେ ତାହା ଉନ୍ମୋଚିତ କରାଇ ଦେଉଥିବା ଦିଗନ୍ତଗୁଡ଼ିକରୁ ହିଁ ଜାଣି ପାରିବା । ଆମେ ତା' ଜୀବନର ପହେଳିଗୁଡ଼ିକୁ ତା' ପାଇଁ ଉନ୍ମୋଚିତ କରିଦେବୁ ବୋଲି ଯେତେବେଳେ ପିଲାଟିଏ ଆମପାଖକୁ ଆସୁଛି, ସେତେବେଳେ ଆମେ ତାହାର ସମଗ୍ର ଧାରଣାଗୁଡ଼ିକୁ ଖଣ୍ଡ ଖଣ୍ଡ କରି କାଟିଦେଉଛୁ ଏବଂ ତେଣୁ, ଏଥିରେ ବିସ୍ମିତ ହେବାର ଆଦୌ କିଛି ନାହିଁ ଯେ, ପିଲାଟି, ସିଏ ଆମଠାରୁ ତା' ସଂଶୟଗୁଡ଼ିକୁ କାଟି ପାରିବାର କୌଣସି ବୃହତ୍ତର ତଥା ଗଭୀରତର କିଛି ପାଇବା ନିମନ୍ତେ ଆସିଥିଲା, ସିଏ ମୁହଁ ବୁଲାଇଦେଇ ଆମପାଖରୁ ଚାଲିଯାଉଛି ଅଥବା ତା' ସଂଶୟଗୁଡ଼ିକର ସମାଧାନ କରିବାର ସମ୍ପୂର୍ଣ୍ଣ ପ୍ରୟାସଟିକୁ ମଧ୍ୟ ବର୍ଜନ କରି ପକାଉଛି । କହିବାର ଅଭିପ୍ରାୟ ହେଉଛି ଯେ, ଅନୁରୂପ ଓ ଅନୁକୂଳ ଅବସର ମାନଙ୍କରେ ଆମେ ବୁଦ୍ଧିର ଅବଶ୍ୟ ସାହାଯ୍ୟ ନେବା ଓ ସୂତ୍ରଗୁଡ଼ିକୁ ଶିଖାଇବା: ଉଦାହରଣ ସ୍ୱରୂପ, ଆମେ ସେହି ପ୍ରଣାଳୀରେ ଗଣିତ, ଜ୍ୟାମିତି, ସାଧାରଣ ହିସାବକଷା ପ୍ରଭୃତିକୁ ସେହିପରି ଶିକ୍ଷା ଦେବା । ମାତ୍ର, ବାଇବେଲ୍‌ର ଅଥବା ନିଜ ଦେଶର ଇତିହାସର ଅଧ୍ୟାପନା ସମୟରେ, - ଏଗୁଡ଼ିକ ଦ୍ୱାରା ପିଲାଟିଏ ତା' ସମାଜର ଜଣେ ସକ୍ରିୟ ସଦସ୍ୟ ହେବାକୁ ଶିକ୍ଷା କରିଥାଏ, - ମୋ' ବିଚାରରେ ଏଗୁଡ଼ିକୁ ଆମେ କାହାଣୀ ଛଳରେ ହିଁ ଅଧିକ ସହଜରେ ଓ ଅଧିକ ଫଳପ୍ରଦ ଭାବରେ ପଢ଼ାଇ ପାରିବା ।

ଏଣୁ,ଗଳ୍ପ, କାହାଣୀ, ଗାଥା ଏବଂ ଉପାଖ୍ୟାନ ଗୁଡ଼ିକୁ ଆମେ ପୁନର୍ବାର ସେମାନଙ୍କର ଅଧିକାର ପ୍ରଦାନ କରିବା; ଆମ ଦେଶର ଅନ୍ତର ଭିତରେ ଯେଉଁ କାବ୍ୟିକତା ପ୍ରାୟ ସହଜାତ ଭାବରେ ରହିଆସିଛି ଏବଂ ହଜାର ହଜାର ବର୍ଷ ହେଲା ଆମ ଲୋକଜୀବନକୁ ଭେଦାଇ ରଖିଛି, ତାହାକୁ ଆମେ ସାନମାନଙ୍କୁ ଶିକ୍ଷା ଦେବାର କ୍ଷେତ୍ରରେ ପ୍ରଣାଳୀ ହିସାବରେ ବ୍ୟବହାର କରିବା । ତେବେ ବିଦ୍ୟାଶିକ୍ଷା ପ୍ରତି ସେମାନଙ୍କର ଆଦୌ କୌଣସି ବିରକ୍ତି ଆସିବନାହିଁ ଏବଂ ସେମାନଙ୍କର ଯାବତୀୟ ଭାବନା ମଧ୍ୟ ଆଉ କଦାପି କେବଳ ବସ୍ତୁକେନ୍ଦ୍ରିତ ଇନ୍ଦ୍ରିୟବୁଦ୍ଧି ଭିତରେ ବାନ୍ଧିହୋଇ ରହିଯିବ ନାହିଁ । ମୁଁ ଆଦୌ ଅସ୍ୱୀକାର କରୁନାହିଁ ଯେ, ବର୍ତ୍ତମାନ ଯେତେ ଯେତେ ଆଖ୍ୟାନ ଓ କାହାଣୀ ଲୋକମୁଖରେ ପ୍ରଚଳିତ ରହିଛି, ସେଗୁଡ଼ିକ ଭିତରୁ ବହୁତ କିଛି ଆମର ଏହି ଲକ୍ଷ୍ୟଟିର ଆଦୌ ଅନୁରୂପ ହେବନାହିଁ । ସେଗୁଡ଼ିକ ହୁଏତ ବାହାରୁ ଆମ ଦେଶକୁ ଆସିଛନ୍ତି ଓ ଏହି ଭୂମି ସହିତ ସେଗୁଡ଼ିକର କୌଣସି ଚେର ଲାଗିନାହିଁ । ଯେତେବେଳେ ଆମର ଏଠାରେ ଲୋକଚେତନା ଶୋଇ ପଡ଼ିଥିଲା ହୁଏତ ସେତିକିବେଳେ ସେହି ପ୍ରମାଦଟି ଆସି ପଶିଯାଇଛି ।

ଗୋଟିଏ ଲୋକୋକ୍ତିରେ ଅଛି ଯେ, ମଣିଷ ଇଚ୍ଛା କଲେ ମଧ୍ୟ ବେଶୀ ଦିନ ପଶୁ ବା ଇତର ପ୍ରାଣୀଟିଏ ହୋଇ ରହିପାରିବ ନାହିଁ, - ତାକୁ କ୍ଷେତରେ କାମ କରିବାକୁ ପଡ଼ିବ ।

ଏବଂ, ଯଦି ଜଣେ ଦୀର୍ଘ ଦିନ ପିଲାଟିଏ ହୋଇ ରହିବାକୁ ଇଚ୍ଛା କରୁଥିବ, ତେବେ ତାକୁ ଦିନ ତମାମ ସ୍କୁଲରେ ହିଁ ଘୋଷାରି ହେବାକୁ ପଡୁଥିବ। ଆମର ପାଠ ପଢ଼ାଇବାଟା ପିଲାକୁ କ୍ଳାନ୍ତ କରିଦେଉଛି, ତା'ପାଇଁ ଅତ୍ୟନ୍ତ ବିରକ୍ତିକର ହୋଇ ରହିଛି; କାରଣ, ଯାହା ଅଧିକାଂଶ ସମୟରେ ଦୃଷ୍ଟିଗୋଚର ହୋଇଥାଏ, ପିଲାକୁ ସେହି ଗୋଟିଏ କଥାକୁ ବାରମ୍ବାର ଘୋଷିବାକୁ ପଡ଼ିଥାଏ ଅଥବା, ପିଲାଟିର ଆଖି ପ୍ରକୃତରେ କେତେଯାଏ ପହଞ୍ଚି ପାରୁଛି ବା ତା' ଭିତରେ କେତେ ସାମର୍ଥ୍ୟ ରହିଛି, ତା'ପ୍ରତି ଆଦୌ କୌଣସି ଦୃଷ୍ଟି ଦିଆ ଯାଏନାହିଁ। ତେଣୁ ଉଭୟ କ୍ଷେତ୍ରରେ ହିଁ ସେହି ଶିକ୍ଷାଦାନର ଉଦ୍ଦେଶ୍ୟ ପୂରଣ ହୋଇ ପାରେନାହିଁ। ...ଆମ ପିଲାଟିଏ ଯେତେବେଳେ ଚଉଦ ବର୍ଷର ହୋଇଯାଉଛି, ସେତେବେଳେ ସିଏ କେଡ଼େ ଉଶ୍ୱାସ ହୋଇ କହୁଛି ଯେ ଏଥର ସେ ଏକ ବଡ଼ ଦଣ୍ଡଭୋଗରୁ ହିଁ ମୁକ୍ତି ପାଇପାରିଲା ! ଏଥର ପାଠ ସରିଲା, ଏଥର ଜୀବନଟିକୁ ପ୍ରକୃତରେ ବଞ୍ଚିବାକୁ ହେବ, - ସିଏ ଏପରି ମଧ୍ୟ ଅନୁଭବ କରୁଛି। ଏବଂ, ଅଧିକ ଆପଦର କଥା ଯେ, ଯାବତୀୟ ଶିକ୍ଷାର କ୍ଷେତ୍ରରେ ମଧ୍ୟ ସିଏ ଏକ ପ୍ରବଳ ଅନିଚ୍ଛା ଏବଂ ଅନାଗ୍ରହ ହିଁ ପ୍ରକାଶ କରୁଛି।

ବାଇବେଲ୍‌ରୁ କାହାଣୀମାନ କହି ଯଦି ପିଲାମାନଙ୍କୁ ଆମେ ଧର୍ମ ବିଷୟରେ ଶିକ୍ଷା ଦିଅନ୍ତେ, ତେବେ ସେମାନେ କେଡ଼େ ଖୁସୀ ହୁଅନ୍ତେ ଓ ଅଧିକ ଉପକୃତ ବି ହୋଇପାରନ୍ତେ। ଏବଂ, ତା'ପରେ ସୂତ୍ର, ଦର୍ଶନ ବିଚାରବାଦ ପ୍ରଭୃତିକୁ ସେମାନେ ଆଉ ମୋଟେ ଭୟର ସହିତ ଦେଖନ୍ତେ ନାହିଁ। ଯଦି ଶିକ୍ଷକ କିଞ୍ଚିତ୍ କାବ୍ୟିକ ମିଜାଜର ହୋଇଥିବେ, - ଏବଂ ତା' ନହେଲେ ଜଣେ ଆଦୌ ଶିକ୍ଷକ ହୋଇ ପାରିବ କି ? - ଅନ୍ତତଃ ଡେନ୍‌ମାର୍କ୍‌ର ପିଲାମାନଙ୍କପାଇଁ କଦାପି ନୁହେଁ, - ତେବେ ସିଏ କାହାଣୀଗୁଡ଼ିକୁ ଏପରି ଜୀବନ୍ତ ଓ ରସବନ୍ତ ଭାବରେ କହିପାରିବେ ଯେ, ପିଲାମାନେ ସେଗୁଡ଼ିକୁ ନିଃସନ୍ଦେହ ଭାବରେ ଖୁବ୍ ସହଜରେ ଗ୍ରହଣ କରିନେବେ। ସାତ ଆଠ ବର୍ଷର ପିଲାକୁ କିପରି କାହାଣୀକୁ ମାଧ୍ୟମ କରି ଶିକ୍ଷା ଦିଆଯାଇ ପାରିବ, ଏଠାରେ ତାହାର ଗୋଟିଏ ଉଦାହରଣ ଦେବା ଏଠାରେ ଖୁବ୍ ପ୍ରାସଙ୍ଗିକ ହେବ। ଈଶ୍ୱର କିପରି ଆବ୍ରାହାମ୍‌ଙ୍କୁ ଦର୍ଶନ ଦେବାକୁ ଆସିଥିଲେ, ଆମେ ପିଲାଙ୍କୁ ସେହି କାହାଣିଟିକୁ କହିବା :

ଗ୍ରୀଷ୍ମକାଳ, ସେଦିନ ଭାରି ଗରମ ହେଉଥାଏ। ଆମେ ଆବ୍ରାହାମ୍‌ଙ୍କୁ ଗୋଟିଏ ବିରାଟ ବୃକ୍ଷତଳେ ନିଜର ତମ୍ବୁ ବାହାରେ ବସିଥିବାର ଦେଖିବାକୁ ପାଇବା। ଗଛଟିର ବହଳ ସବୁଜ ଶାଖାଗୁଡ଼ିକ ହେତୁ ସୂର୍ଯ୍ୟକିରଣ ତାଙ୍କ ଉପରେ ପଡ଼ି ପାରୁନଥିଲା। ଆମ ଦେଶ ତୁଳନାରେ ସେଠାରେ ତାଙ୍କ ଦେଶରେ ସୂର୍ଯ୍ୟର ତାପ ଅଧିକ ପ୍ରଖର। ମଧାହ୍ନ ସମୟ ଗତ ହୋଇ ଯାଇଥାଏ; ଅନ୍ୟ ମନୁଷ୍ୟମାନେ ବିଶ୍ରାମ ନେଉଥାଆନ୍ତି ଏବଂ ସାରା ମଧ୍ୟ ତମ୍ବୁ ଭିତରେ ଥାଆନ୍ତି। ଆବ୍ରାହାମ୍ ବାହାରେ ଥିଲେ ମଧ୍ୟ ବିଶ୍ରାମର ମୁଦ୍ରାରେ ହାତ ଉପରେ

ମୁହଁଟିକୁ ରଖି ବସି ରହିଥାନ୍ତି ଏବଂ ସ୍ୱର୍ଗରେ ବାସ କରୁଥିବା ଈଶ୍ୱରଙ୍କ ବିଷୟରେ ଚିନ୍ତା କରୁଥାନ୍ତି । ଈଶ୍ୱର ତାଙ୍କ ଉପରେ କିପରି ନିଜର ସମସ୍ତ ଆଶୀର୍ବାଦ ଢାଳି ଦେଇଛନ୍ତି - ତାଙ୍କୁ କେତେ ଓଟ, କେତେ ଗାଈ ଏବଂ କେତେ ମେଣ୍ଢା ଦେଇଛନ୍ତି, ଆବ୍ରାହାମ କୃତଜ୍ଞ ଭାବରେ ସେହିକଥା ଚିନ୍ତା କରୁଥିଲେ । ଈଶ୍ୱର ତାଙ୍କୁ ସାରା ଭଳି ସୌନ୍ଦର୍ଯ୍ୟବତୀ ପତ୍ନୀଟିଏ ଦେଇଛନ୍ତି ଏବଂ ଏକାବେଳେକେ ନିଜର ପିତୃତୁଲ୍ୟ ତାଙ୍କ ଉପରେ ଏତେ ଏତେ ମଧ୍ୟ ସ୍ନେହ ଆଣି ଅଜାଡ଼ି ଦେଇଛନ୍ତି । ହଁ, ଜଣେ ମଣିଷର ବହୁମୂଲ୍ୟ ଧନଗୁଡ଼ିକ ଯେଉଁଠି ରହିଥାଏ, ତା'ର ସକଳ ଭାବନା ମଧ୍ୟ ସେହି ସ୍ଥାନରେ ହିଁ ଥାଏ । ପତ୍ନୀର ବୟସ ଅଧିକ ହେବାକୁ ବସିଲାଣି, ଅଥଚ ଭଗବାନ ଆବ୍ରାହାମଙ୍କୁ ପୁତ୍ର ସନ୍ତାନଟିଏ ଏବେସୁଦ୍ଧା ଦେଲେନାହିଁ, - ଇତ୍ୟାଦି ଇତ୍ୟାଦି ।

ଏହି କାହାଣୀଟି କୌଣସି ବହିରେ ଲେଖା ହୋଇଥିବ ଏବଂ ତାହାକୁ ଜଣେ ଶିକ୍ଷକ ବହିରୁ ପାଠ କରି ପିଲାମାନଙ୍କୁ ଶୁଣାଇବେ - ପିଲାମାନଙ୍କୁ ଭାରି ନୀରସ ଲାଗିବ ହିଁ ଲାଗିବ । ପିଲାମାନେ ମଧ୍ୟ ବିଭିନ୍ନ ବୟସର ଥିବେ ଓ କାହାଣୀଟିକୁ ବି ସେହି ଅନୁସାରେ ବିଭିନ୍ନ ପ୍ରକାରେ ଗ୍ରହଣ କରିବେ । ବଡ଼ମାନେ ତାହାର ଗଭୀରତର ଅର୍ଥରେ ବୁଝି ପାରୁଥିବେ ଓ ସାନମାନେ କେବଳ କାହାଣୀ ଅଂଶଟିକୁ ହିଁ ଉପଭୋଗ କରି ପାରିବେ । ଯାହା ଭିତରେ ଯେତେ ବେଶୀ କଳ୍ପନାଶକ୍ତିର ବିକାଶ ହୋଇଥିବ, ସିଏ ସେତେ ଅଧିକ ଖୁସୀ ହୋଇ କାହାଣୀଟିକୁ ଶୁଣିବ । ଏପରିକି, ପିଲାମାନେ ସେମାନଙ୍କର ମଥା ଦେଇ କାହାଣୀଟିକୁ ଗ୍ରହଣ କରନ୍ତୁ ବୋଲି ଯଦି ଆମେ ଇଚ୍ଛା କରୁଥିବା, ତଥାପି ତାହାକୁ ସେମାନଙ୍କର କଳ୍ପନାଶକ୍ତିର ସାହାଯ୍ୟରେ ହିଁ କରି ପାରିବା । ସେହି ଶକ୍ତିଟିର ସାହାଯ୍ୟ ବ୍ୟତିରେକେ ଆଦୌ କୌଣସି ବୁଝିବା ସମ୍ଭବ ହେବନାହିଁ । କଳ୍ପନାଶକ୍ତି ସକ୍ରିୟ ନହେଲେ ଶବ୍ଦଗୁଡ଼ିକ ମୃତପ୍ରାୟ ଲାଗୁଥିବେ । ଉଦାହରଣ ସ୍ୱରୂପ, ପିଲାମାନଙ୍କୁ ଆମେ opdragelse ( ଶିକ୍ଷା, ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି, ଯାହା ଭିତରେ ରହିଛି, ତାହାକୁ ବାହାର କରି ଆଣିବା ) କଥାଟିକୁ ଯଦି ବୁଝାଇ କହିଦେବାକୁ ଇଚ୍ଛା କରିବା,ତେବେ ବିଭିନ୍ନ ଉପମା ଦେଇ ସେହି କଥାଟିକୁ କହିପାରିବା । ଭିତରର ସାମଗ୍ରୀଗୁଡ଼ିକୁ ବାହାରକୁ ଆଣିବା, ଅର୍ଥାତ୍, ଯାହା ନିମ୍ନରେ ରହିଛି ତାହାକୁ ଉପରକୁ ଆଣିବା, ଯାହା ଜଡ଼ ବା ଭୌତିକ ସ୍ତରରେ ରହିଛି, ତାହାକୁ ଅଧ୍ୟାତ୍ମ ସ୍ତରକୁ ଆଣିବା, ଖାଲି ନିଜକୁ ହିଁ ଭଲ ପାଇବାର ସ୍ତରରୁ ସମଗ୍ର ସମାଜକୁ ଭଲ ପାଇବାର ସ୍ତରକୁ ଆସିବା ଇତ୍ୟାଦି, ଇତ୍ୟାଦି; - ଏବଂ ମୁଁ ଭାବୁଛି, ଯଦି କେବଳ କେତୋଟି ଶୁଷ୍କ ସୂତ୍ର ଦେଇ କଥାଟିକୁ ଆମେ କହିଥାନ୍ତେ, ତେବେ ତାହା ଅପେକ୍ଷା ଏପରି ନାନା ଉପମା ଦେଇ କହିବାଦ୍ୱାରା ପିଲାମାନେ କଥାଟିର ତାତ୍ପର୍ଯ୍ୟକୁ ଅଧିକ ସ୍ପଷ୍ଟ ଭାବରେ ଅବଶ୍ୟ ବୁଝି ପାରିବେ । ଏହିସବୁ କ୍ଷେତ୍ରରେ ବହୁତ କିଛି ଗଭୀର ଏବଂ ଅନ୍ଧାର ଭିତରେ ରହିଥାଏ, ଯାହାକୁ କେବଳ

ଅନୁଭବ କରିହୁଏ ଏବଂ ପରେ ଏକ ଅନ୍ତର୍ଗତ ଚକ୍ଷୁ ଦ୍ୱାରା ହିଁ ଆମୃଷ୍ଟ କରାଯାଏ । ଏବଂ, ଆମ ଭାଷାରେ ମଧ୍ୟ ଏପରି ଏକ କାବ୍ୟିକତା ରହିଛି, ଯାହାକି ଗୋଟିଏ ପିଲାକୁ କୌଣସି ଶବ୍ଦର ତାତ୍ପର୍ଯ୍ୟକୁ ହୃଦୟଙ୍ଗମ କରିବାରେ ସକ୍ରିୟ କରାଇ ଦେଇଥାଏ । ଆମେ ବର୍ତ୍ତମାନ ବୁଝି ପାରୁଥିବା ଯେ, ଗଣିତର ହିସାବ ଭଳି ଏକ ବିଷୟ ଏପରି ସ୍ୱତନ୍ତ୍ର ଭାବରେ ତିଆରି ହୋଇଛି ଯେ ତାହା ମଥାରେ ହିଁ କ୍ରିୟାଶୀଳ ହୋଇ ପାରିବ, - କାରଣ ସେଥିରେ ଧାରାଟି ଖନ୍ଦା ପରେ ଖନ୍ଦା ଆମକୁ ଆଗକୁ ନେଇ ଯାଉଥିବ ଓ ଶେଷରେ ଫଳ ବା ଉତ୍ତର ପାଖରେ ଆଣି ପହଞ୍ଚାଇ ଦେବ । ତେଣୁ, ସେଥିରେ ମଥାର ଉପଯୋଗ କରିବାରୁ ହିଁ ଆନନ୍ଦ ମିଳିବ । ମାତ୍ର, ଆମ ବିଦ୍ୟାଳୟ ମାନଙ୍କରେ ମଥାର ସେହି ପଦ୍ଧତିଟିକୁ ଯେପରି ଯାନ୍ତ୍ରିକ ଭାବରେ କାମରେ ଲଗାଯାଉଛି, ସେଥିରେ ତାହା ଏକ ବିଦ୍ରୂପରେ ପରିଣତ ହୋଇ ଯାଉଛି ।

## ତିନୋଟି ମୂଳ କୌଶଳ: ପଠନ, ଗଣିତ, ଲିଖନ

ସାର୍ବଜନୀନ ଶିକ୍ଷାର ଦ୍ୱିତୀୟ ଅର୍ଦ୍ଧାଂଶଟି ହେଉଛି ଯେ, ପିଲାମାନେ ପଢ଼ି ଶିଖିବେ, ହିସାବ କରି ଶିଖିବେ ଓ ଲେଖି ମଧ୍ୟ ଶିଖିବେ । ଏଗୁଡ଼ିକୁ ଶିକ୍ଷାଳୟ ମାନଙ୍କରେ ଯେପରି ଭାବରେ ଶିକ୍ଷା ଦିଆଯାଉଛି, ସେଗୁଡ଼ିକର ପ୍ରକୃତରେ ଆଦୌ ସେତେବେଶୀ ମୂଲ୍ୟ ରହି ପାରୁନାହିଁ । କାରଣ, ଏଗୁଡ଼ିକର ଶିକ୍ଷା ମଧ୍ୟ ମୂଳତଃ ଅନ୍ତରର ଜାଗୃତିରେ ସାହାଯ୍ୟ କରିପାରିବା ଉଚିତ । ଏପର୍ଯ୍ୟନ୍ତ ଏହି କ୍ଷେତ୍ରରେ ଏତିକି ସଫଳତା ମିଳିଛି ଯେ, ଆମ ଦେଶର ସବୁ ପିଲା ପଢ଼ିବାକୁ ସମର୍ଥ ହୋଇଛନ୍ତି, ମାତ୍ର ଖୁବ୍ ଅଳ୍ପସଂଖ୍ୟକ ନାଗରିକ ଏବଂ କୃଷକସନ୍ତାନଙ୍କର ହିଁ ସେହି ସାମର୍ଥ୍ୟଟି ଆଦୌ କୌଣସି ପ୍ରୟୋଜନରେ ଲାଗି ପାରୁଛି । କାରଣ, ସେମାନଙ୍କର ଭିତରଟା ଶୋଇ ରହିଛି ଏବଂ, ଗୋଟିଏ ଶୋଇ ରହିଥିବା ଜଣେ ମନୁଷ୍ୟର ପ୍ରକୃତରେ ଏତେ ଏତେ ସାମର୍ଥ୍ୟ ଅର୍ଜନ କରିବାର କି ପ୍ରୟୋଜନ ବା ରହିବ ? ଏବଂ, ପିଲାର ଭିତରେ ତା' ଆତ୍ମା ଶୋଇ ରହିଥାଉ ବୋଲି ଛାଡ଼ିଦେଇ ଏଣେ ଅତ୍ୟନ୍ତ ଯାନ୍ତ୍ରିକ ଭାବରେ ଏହି ତିନୋଟି ପାଠକୁ ପିଲାମାନଙ୍କ ଉପରେ ନେଇ ଲଦି ଦିଆଯାଉଛି । ସତେ ଯେପରି ଏହି ତିନୋଟି କଥାକୁ ଶିଖାଇବା ହିଁ ଆମ ବିଦ୍ୟାଳୟଗୁଡ଼ିକର ସର୍ବପ୍ରଧାନ ଉଦ୍ଦେଶ୍ୟରେ ପରିଣତ ହୋଇ ରହିଛି ! ଏବଂ, ବିଦ୍ୟାଳୟରେ ପିଲାଟିର ସବୁଯାକ ସମୟ ସେଇଥିରେ ହିଁ ଶେଷ ହୋଇ ଯାଉଛି । ମାତ୍ର, ଯଦି ପ୍ରଥମେ ମୌଖିକ ଶିକ୍ଷାଦାନ ଦ୍ୱାରା ପିଲାମାନଙ୍କର ସାମର୍ଥ୍ୟଗୁଡ଼ିକୁ ବିକଶିତ କରି ଅଣା ଯାଉଥାନ୍ତା, ଏବଂ ସେମାନଙ୍କର ଦୃଷ୍ଟିର କ୍ଷେତ୍ରରେ ଏକ ପ୍ରସାରଣ ସମ୍ଭବ କରି ହେଉଥାନ୍ତା, ତେବେ ପଠନ ନାମକ କର୍ମଟିକୁ ଆୟତ୍ତ କରିବାଟା ସେମାନଙ୍କ ନିମନ୍ତେ

କଦାପି ଏତେ ଆୟାସକର ହେଉନଥାନ୍ତା । ଅନୁଭୂତିରୁ ପ୍ରମାଣ ମିଳିଛି ଯେ, ବୟସ୍କ ଲୋକମାନେ ଦୈନିକ ଦୁଇ ଘଣ୍ଟା ସମୟ ଦେଇ ଗୋଟିଏ ମାସ ଭିତରେ ପଠନ ଶିଖି ଯାଉଛନ୍ତି । ମୁଁ ନିଜେ ଚଉଦ ବରଷର ଜଣେ ବାଳକକୁ ମାସକ ଭିତରେ ତାହା ଶିଖାଇ ପାରିଛି । ମାତ୍ର ଚାରି ଘଣ୍ଟାରେ ହିଁ ସିଏ ସବୁ ଅକ୍ଷରଗୁଡ଼ିକୁ ଶିଖି ପାରିଥିଲା । ହଁ, ବହିରେ ଲେଖା ହୋଇଥିବା ପାଠଗୁଡ଼ିକୁ ଗଳ ଗଳ ପଢ଼ି ଯାଉଥିବ, ମାତ୍ର ଯାହା ପଢ଼ିଲ ତାହାର ଅର୍ଥକୁ ବୁଝି ପାରୁନଥିବ, ପିଲା ପାଇଁ ଏହା ନିଶ୍ଚୟ ଅତ୍ୟନ୍ତ ବିରକ୍ତିକର ହେବ, ଏବଂ ସାରା ଜୀବନ ପାଠ ପ୍ରତି ତା'ର ଏପରି ଗୋଟିଏ ଘୃଣାଭାବ ରହିଯିବ ଯେ, ଅଧିକାଂଶ ବ୍ୟକ୍ତି ପରେ କିଛି ପାଠ କରିବାକୁ ଆଦୌ ଇଚ୍ଛା ହିଁ କରୁନଥିବେ ।

କାଳକ୍ରମେ ଏହି ପରିଣାମଟି ବିଷୟରେ ଏତେ ଦୁର୍ନାମ ରଟି ଯାଇଥିଲା ଯେ, 'ବରଂ ଘୁଷୁରି ଜଗିବ, ମାତ୍ର କେବେ ସ୍କୁଲଟିଏ ବସାଇବ ନାହିଁ' ବୋଲି ଲୋକମୁଖରେ ଅପବାଦ ଶୁଣିବାକୁ ମିଳିଲା । ତଥାପି, ଇତ୍ୟବସରେ ଲୋକେ ନିଜର ପିଲାମାନଙ୍କୁ ପଢ଼ି ଶିଖାଇବାରେ ଏତେ ଅଧିକ ପରିମାଣରେ ତତ୍ପର ହୋଇପଡ଼ିଲେ ଯେ, - ସତେଅବା ଯାବତୀୟ ସଫଳତାର ରହସ୍ୟ ସେଇ ପଢ଼ି ଜାଣିବାରେ ହିଁ ନିହିତ ହୋଇ ରହିଥିଲା, - ପିଲାମାନଙ୍କର ଅନ୍ତର୍ଗତ ଜୀବନରେ ଆଦୌ କୌଣସି ବିକାଶ ସମ୍ଭବ ହେବା ପୂର୍ବରୁ ସେଇଟିକୁ ଆଣି ଲଦି ଦିଆଗଲା । ମୁଁ ଠିକ୍ ଓଲଟା କଥାଟି ଭାବୁଛି ଯେ, ପିଲାମାନେ ସ୍କୁଲବର୍ଷ ଗୁଡ଼ିକୁ ଅତିବାହିତ କରିବାର ଶେଷଭାଗରେ ହିଁ ପଠନର କାର୍ଯ୍ୟକ୍ରମଟିକୁ ହାତକୁ ନିଆଯିବା ଉଚିତ ହେବ ଓ ସେଥିରୁ ପ୍ରକୃତରେ ଅଧିକ ସୁଫଳ ମିଳିବ । ବିଦ୍ୟାଳୟର ପାଠ ଶେଷ ହେବା ପରେ ଗ୍ରାମାଞ୍ଚଳର କୃଷକମାନେ କିଏ ବସ୍ତୁତଃ କେତେ ବା ପଢ଼ନ୍ତି ? ଏହା ନିରାଟ ସତ୍ୟ ଯେ, ଆମ ଜନସାଧାରଣଙ୍କର ସାଧାରଣତଃ ଏତେ ଯଥେଷ୍ଟ ପରିମାଣରେ ଏକ ଅନୁରୂପ ରୁଚି ବା ଇଚ୍ଛାର ବିକାଶ ହୋଇନଥାଏ, ଯାହାଫଳରେ କି ସେମାନେ ପିଲାଦିନେ ଶିକ୍ଷା କରିଥିବା ଏହି ପଠନର କଳାଟିକୁ ପରେ କୌଣସି ବିଶେଷ କାର୍ଯ୍ୟରେ ଲଗାଇ ପାରିବେ । ତେଣୁ ନିଜର ଦୈନନ୍ଦିନ ଜୀବନରେ ସେମାନେ ମୁଖ୍ୟତଃ ନିଜ ପୂର୍ବଗମାନଙ୍କର ହିଁ ଅନୁସରଣ କରନ୍ତି ଅର୍ଥାତ୍ ବିଶେଷ କିଛି ପଢ଼ନ୍ତି ନାହିଁ । ଉଦାହରଣ ସ୍ୱରୂପ, ଅତ୍ୟନ୍ତ ଅଳ୍ପସଂଖ୍ୟକ କୃଷକ ଏପରିକି କୃଷକମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ବାହାରୁଥିବା ଦରକାରୀ ପତ୍ରପତ୍ରିକା ଗୁଡ଼ିକୁ ମଧ୍ୟ ପାଠ କରିଥାନ୍ତି । ସେମାନେ ଏପରି ଆଦୌ କିଛି ପଢ଼ନ୍ତି ନାହିଁ, ଯାହାକି ସେମାନଙ୍କୁ ନିଜର କୃଷି ନିର୍ବାହରେ ମଧ୍ୟ କିଞ୍ଚିତ୍ ସାହାଯ୍ୟ କରି ପାରନ୍ତେ । ହଁ, ସେମାନଙ୍କ ଭିତରୁ ଅଧିକାଂଶ ବିଦ୍ୟାଳୟ ଛାଡ଼ିବାର ବର୍ଷେ ଦୁଇବର୍ଷ ପର୍ଯ୍ୟନ୍ତ ହୁଏତ ଆଖି ଆଗରେ କିଛି ପାଇଲେ ଟିକିଏ ଉତ୍ସୁକତା ପ୍ରକାଶ କରି ତାହାକୁ ପଢ଼ିବାକୁ ଇଚ୍ଛା କରନ୍ତି, ମାତ୍ର ତା'ପରେ

ସବୁ ଭୁଲି ଯାଆନ୍ତି । ପୁନଶ୍ଚ, ସାଧାରଣଙ୍କ ମଧ୍ୟରେ ଅତ୍ୟନ୍ତ ଅଳ୍ପ କେତେଜଣ ରହିଥାନ୍ତି, ଯେଉଁମାନେ କି ଗମ୍ଭୀର ଭାଗଗର୍ଭକ କୌଣସି କଥାର ମର୍ମକୁ ପ୍ରକୃତରେ ବୁଝିପାରନ୍ତି । ଏବଂ, ଏହି କଥାଟିକୁ ଖୁବ୍ ସହଜରେ ବୁଝି ହେବ ଯେ, ସ୍ୱାଭାବିକ ଭାବରେ ମୁହଁରୁ କୁହା ଯାଉଥିବା କଥାକୁ ବୁଝିବାରେ ଯେଉଁଠି ଏତେ ଅସୁବିଧା ରହିଛି, ବହିରେ ଲେଖା ହୋଇଥିବା ସାମଗ୍ରୀଗୁଡ଼ିକୁ ପାଠ କରି ବୁଝିବା ତା'ଠାରୁ ନିଶ୍ଚୟ ଅଧିକ ଅସୁବିଧା ସୃଷ୍ଟି କରିବ । ତେଣୁ, ବିଦ୍ୟାଳୟମାନଙ୍କରେ ପଠନଦ୍ୱାରା ଯେଉଁ ଶିକ୍ଷାଟିକୁ ସମ୍ଭବ କରିବା ନିମନ୍ତେ ଦୀର୍ଘ ସାତବର୍ଷ ଦେବାକୁ ପଡୁଛି, ମୁହଁରେ କହିବା ଓ କାନରେ ଶୁଣିବାର ମାଧ୍ୟମରେ ଅଧିକ ସହଜ ଓ ସ୍ୱାଭାବିକ ଭାବରେ ତାହା ଅବଶ୍ୟ ସମ୍ଭବ ହୋଇ ପାରନ୍ତା ଏବଂ ଅଧିକ ଶୀଘ୍ର ତଥା ଅଧିକ ନିଶ୍ଚିତ ଭାବରେ ଲକ୍ଷ୍ୟଟି ହାସଲ ହୋଇ ପାରନ୍ତା । କାରଣ, ପିଲାଟି ତ ତା' ପିଲାଦିନରୁ ହିଁ ଶୁଣିକରି ବୁଝିବାର ଓ ମନେ ରଖିବାର ସ୍ୱାଭାବିକ ଧାରାଟି ସହିତ ପରିଚିତ ହୋଇ ରହିଥାନ୍ତା ।

ଖାଲି କମ୍ ସମୟ ଖର୍ଚ୍ଚ ହେବ ବୋଲି ଯେ ଏହି ଅନ୍ୟ ପରାମର୍ଶଟିକୁ ଦିଆଯାଉଛି ସେକଥା ଆଦୌ ନୁହେଁ । ଏହାଦ୍ୱାରା ସବୁଠାରୁ ବଡ଼ ତଥା ଅଧିକ ମହତ୍ତ୍ୱପୂର୍ଣ୍ଣ ଯେଉଁ ଲାଭଟି ହେବ, ସେଇଟି ହେଉଛି ଯେ, ଏହାଦ୍ୱାରା ଶିକ୍ଷକ ଓ ପିତାମାତା ଶିଶୁମାନଙ୍କର ଆତ୍ମିକ ବିକାଶ ଉପରେ ହିଁ ଅଧିକ ମୂଲ୍ୟ ଦେବେ ଏବଂ ତାହାହିଁ ଏକ ବିଦ୍ୟାଳୟର ସବୁଠାରୁ ବଡ଼ କାର୍ଯ୍ୟ ବୋଲି କ୍ରମେ ହୃଦୟଙ୍ଗମ କରିବେ । ସେମାନଙ୍କର ହୃଦୟର ପରିପକ୍ୱତାଲାଭ ଉପରେ ଅଧିକ ଗୁରୁତ୍ୱ ଦେବେ । ପ୍ରୋଟେଷ୍ଟାଣ୍ଟ୍ ଧର୍ମମାର୍ଗୀୟ ଆମ ଦେଶମାନଙ୍କରେ ଲୋକମାନଙ୍କର ଅକ୍ଷର ଓ ଛାପାବହି ଉପରେ ହିଁ ଅତ୍ୟଧିକ ବିଶ୍ୱାସ ହୋଇଯାଇଛି, ସେମାନେ ପଠନକଳାଟିକୁ ଆବଶ୍ୟକରୁ ଅଧିକ ସମ୍ମାନ ଦେଇ ବିଚାର କରୁଛନ୍ତି, ଯାହାଫଳରେ କି ଏହି ପଠନଶିକ୍ଷାଟାକୁ ହିଁ ଆମର ଏଠାରେ ବିଦ୍ୟାଳୟରେ ସବୁଠାରୁ ବଡ଼ ଉଦ୍ଦେଶ୍ୟ ବୋଲି ମାନି ନିଆଯାଉଛି, - ଏହା ଯେ କେବଳ ଏକ ସାଧନମାତ୍ର, ଏହି କଥାଟି ପାସୋରି ହୋଇ ଗଲାଣି । ମାର୍ଟିନ୍ ଲୁଥର୍ ପୋଟେଷ୍ଟାଣ୍ଟ୍ ଧର୍ମମାର୍ଗର ପ୍ରଚାର କଲାବେଳେ ବହିରେ ଲେଖା ହୋଇଥିବା କଥା ଉପରେ ଯେ ଏତେ ଗୁରୁତ୍ୱ ପ୍ରଦାନ କରା ଯାଉଥିଲା, ସେକଥାଟି ଅବଶ୍ୟ ବୁଝି ହେଉଛି । ତଥାପି ଲୁଥର୍ ଓ ତାଙ୍କର ସହଗାମୀମାନେ ତାହାକୁ ଏକ ସାଧନରୂପେ ହିଁ ବ୍ୟବହାର କରିଥିଲେ । ତା'ପରେ ଅଧିକରୁ ଅଧିକ ବ୍ୟକ୍ତି ପଠନ ଶିକ୍ଷା କଲେ । ସେମାନେ ଭାବିଥିଲେ ଯେ, ସେମାନେ ସ୍ୱୟଂ ପଢ଼ି ଶିଖିଗଲେ ଆଉ କେହିହେଲେ ସେମାନଙ୍କୁ ଧର୍ମର ତତ୍ତ୍ୱ ବିଷୟରେ ଭୁଲାଇଦେଇ ପାରିବନାହିଁ । ମାତ୍ର, ଏପରି କରି ସେମାନେ ପ୍ରକୃତରେ ଭୁଲ୍ କଲେ । ଏବଂ ଆମର ଦୈନନ୍ଦିନ ଅଭିଜ୍ଞତାରୁ ତାହାହିଁ ପ୍ରମାଣିତ ହୋଇଯାଉଛି । କାରଣ, ଜଣେ ବ୍ୟକ୍ତିର ବିଶ୍ୱାସ ଯଦି ନିଜକୁ କେବଳ ଲିଖିତ ପୁସ୍ତକ ଉପରେ ହିଁ ନିର୍ଭରଶୀଳ କରାଇ

ରଖିବାକୁ ବାହାରିବ, ତେବେ ତାକୁ କାର୍ଯ୍ୟତଃ ନିଜର ଅଥବା ଆଉକାହାର ସେହି ବିଷୟରେ କରିଥିବା ଭାଷ୍ୟଟି ଉପରେ ହିଁ ଭରସା ରଖିବାକୁ ପଡ଼ିବ ଏବଂ ପରିଣାମରେ ଏକ ନୂତନ କିସମର ଧର୍ମବକ୍ତାବାଦର ହିଁ ସୃଷ୍ଟି ହେବ । ଏବଂ, ମୁହଁର କଥା ପରି ଶାସ୍ତ୍ରରେ ଲିଖିତ କଥାଗୁଡ଼ିକ ମାଧ୍ୟମରେ ମଧ୍ୟ ସତ୍ୟ ଖୁବ୍ ସହଜରେ ଅନ୍ତରାଳରେ ରହିଯାଇ ପାରିବ, - ପ୍ରମାଦପୂର୍ଣ୍ଣ ଭାବରେ ପ୍ରଚାରିତ ହେବ ।

ଯେକୌଣସି ଏକ ସମୟରେ ମଧ୍ୟ ପଣ୍ଡିତମାନେ ଇଚ୍ଛା କଲେ ଏପରି ଗୋଟିଏ ଭାଷାର ଉଦ୍‌ଭାବନ କରାଇ ଆଣନ୍ତି, ଯାହାକୁ କି ସାଧାରଣ ମଣିଷଟିଏ ପ୍ରକୃତରେ ବୁଝି ପାରେନାହିଁ । ଆମର ଏହି ସମୟରେ ମଧ୍ୟ ସେହି କଥାଟି କେତେକ ପରିମାଣରେ ଦେଖିବାକୁ ମିଳିବ । ତେଣୁ, ବର୍ତ୍ତମାନ ମଧ୍ୟ ପଢ଼ିବାର ସାମର୍ଥ୍ୟଟି ହାସଲ ହୋଇଗଲେ ହିଁ କଦାପି ନିର୍ଭର ସହିତ କହି ହେବନାହିଁ ଯେ ଜଣେ ବ୍ୟକ୍ତିକୁ ଆଲୋକଲାଭରୁ ବଞ୍ଚିତ କରି ରଖାଯାଇ ପାରିବନାହିଁ । ଏବଂ, ଯଦି ଏକ ଆତ୍ମିକ ଜାଗରଣ ସମ୍ଭବ ହୋଇ ପାରିଥାଏ, ତେବେ ଜନସାଧାରଣ ଅବଶ୍ୟ ପଠନର ସାମର୍ଥ୍ୟକୁ ହାସଲ କରିବେ; ମାତ୍ର ତାହା ଏପରି ମାର୍ଗରେ ଏପରି ଅବଶ୍ୟ ହେବା ଉଚିତ, ଯାହାଦ୍ୱାରା କି ସେମାନେ ତାହାକୁ ଜୀବନର ସବାବଡ଼ ଲକ୍ଷ୍ୟ ହିସାବରେ ନୁହେଁ, ମାତ୍ର ଯଥାର୍ଥ ଶିକ୍ଷାର କେବଳ ଏକ ସାଧନରୂପେ ହିଁ ଗ୍ରହଣ କରୁଥିବେ ।

ତେଣୁ, ସଂକ୍ଷେପ ଓ ସହଜରେ ଏହି କ୍ଷେତ୍ରରେ ଏହିପରି ଗୋଟିଏ ପ୍ରସ୍ତାବ ଦେଇହେବ; ବିଦ୍ୟାଳୟମାନେ ଯେତେ କମ୍ ସମ୍ଭବ ମୁଖସ୍ଥ କରି ମନେ ରଖିବା ଉପରେ ଆଦୌ କୌଣସି ଗୁରୁତ୍ୱ ଦେବେ । ଏପର୍ଯ୍ୟନ୍ତ ସେମାନେ ପ୍ରାୟ ତାହାକୁ ହିଁ ସବୁଠାରୁ ଅଧିକ ଆବଶ୍ୟକ ବୋଲି ବିଚାର କରି ଆସିଛନ୍ତି । ସେମାନଙ୍କର ପ୍ରକୃତରେ ଏକ ଅଧିକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସବୁବେଳେ ରହି ଆସିଛି; ସେମାନେ ପିଲାମାନଙ୍କର ଆତ୍ମିକ ବିକାଶରେ ସବୁଠାରୁ ଅଧିକ ଯତ୍ନଶୀଳ ହେବେ । ଏବଂ, ମୌଖିକ ଶିକ୍ଷାଦ୍ୱାରା ହିଁ ସେହି ଲକ୍ଷ୍ୟଟି ସବୁଠାରୁ ଅଧିକ ସହଜ ତଥା ସୁନିଶ୍ଚିତ ଭାବରେ ହାସଲ ହୋଇ ପାରିବ । ଏବଂ, ଯେତେବେଳେ ସେଇଟି ଯଥାର୍ଥ ପ୍ରଣାଳୀରେ ସାଧ୍ୟ ହୋଇ ଆସିବ, ତା'ପରେ ଗୋଟିଏ ପିଲା ତା'ର ତେର ବା ଚଉଦ ବର୍ଷ ବେଳକୁ ସମର୍ଥ ଭାବରେ ଏବଂ ପୂର୍ଣ୍ଣ ସମ୍ମତି ସହିତ ଏତେ ବେଶୀ ପଢ଼ିବାର ଶକ୍ତିଟିକୁ ଆୟତ୍ତ କରିନେବ, ଯାହାକି ତା'ର ସାରା ଜୀବନ ନିମନ୍ତେ ମଧ୍ୟ ଆବଶ୍ୟକ ହେଉଥିବ । ବର୍ତ୍ତମାନ ସିଏ ଗୋଟିଏ ଘଣ୍ଟାରେ ଅତି ବେଶୀ ହେଲେ ମାତ୍ର ପୃଷ୍ଠାଟିଏ ଥଙ୍ଗେଇ ଥଙ୍ଗେଇ ପଢ଼ି ପାରୁଛି, - ମାତ୍ର, ସେତେବେଳେ ସିଏ ଯାହା କିଛି ପଢ଼ିବ, ତାହାର ଅର୍ଥକୁ ମଧ୍ୟ ବୁଝି ପାରୁଥିବ । ବର୍ତ୍ତମାନ ଯେ ସିଏ ଘଣ୍ଟାକୁ ଦଶପୃଷ୍ଠା ପଢ଼ିଦେଉଛି ମାତ୍ର ତାହାର କୌଣସି ଅର୍ଥ ବୁଝି ପାରୁନାହିଁ, ତଦ୍ୱାରା କ'ଣ ଲାଭ ହେଉଛି ?

ବର୍ତ୍ତମାନ ଆମେ ଲିଖନ ବିଷୟରେ ଅଳ୍ପକିଛି ଆଲୋଚନା କରିବା । ଏହାକୁ ଏବେ ହସ୍ତାକ୍ଷର ବା ଗୋଲ୍ ଗୋଲ୍ ଲିଖନ ବୋଲି କୁହାଯାଉଛି । ଆମ ବିଦ୍ୟାଳୟମାନଙ୍କରେ ଏଇଟି ଉପରେ ମଧ୍ୟ ଅନାବଶ୍ୟକ ଭାବରେ ଅତିବେଶୀ ଗୁରୁତ୍ୱ ପ୍ରଦାନ କରାଯାଉଛି । ଏହା ଏକାଧାରରେ ଅତ୍ୟନ୍ତ ଦୁଃଖର ତଥା ଅତ୍ୟନ୍ତ ହାସ୍ୟାସ୍ପଦ କଥା ଯେ, ଆମ ଶିକ୍ଷକମାନେ ପ୍ରାୟ ଏକ ଅସ୍ୱାଭାବିକ ଆଗ୍ରହ ସହିତ ପିଲାମାନଙ୍କୁ ବ୍ୟାକରଣ ଏବଂ ଗୋଲ୍ ଗୋଲ୍ ଲିଖନ ଶିଖାଇବାରେ ବ୍ୟସ୍ତ ହୋଇ ରହି ଯାଉଛନ୍ତି । ଗଣିତ ହିସାବ ଅର୍ଥାତ୍ ମିଶାଣ ଫେଡ଼ାଣ ବିଷୟରେ ମଧ୍ୟ ପିଲାମାନଙ୍କୁ ୫ମ ଅଥବା ୬ଷ୍ଠ ବର୍ଷରେ ଶିକ୍ଷା ଦେବା ଅଧିକ ଉଚିତ ହେବ । ସେତେବେଳେ ପିଲାର ବୁଦ୍ଧି ମଧ୍ୟ କ୍ରମେ ପୋଖତ ହୋଇ ଆସିଥିବ ଏବଂ ସିଏ ସଂଖ୍ୟାଗୁଡ଼ିକର ତାତ୍ପର୍ଯ୍ୟକୁ ପରିଷ୍କାର ଭାବରେ ବୁଝି ପାରୁଥିବ । ପୁନଶ୍ଚ, ଅକ୍ଷର ଲେଖି ଶିଖିବା ଆଗରୁ ପିଲାମାନଙ୍କ ପାଇଁ କିଛି ଅଙ୍କନର ଅଭ୍ୟାସ ମଧ୍ୟ ରହିବ । ପୁନଶ୍ଚ, ଲେଖି ଏବଂ ପଢ଼ି ଶିଖିବା ପୂର୍ବରୁ ମୌଖିକ ଶିକ୍ଷାଦାନ ଏବଂ ଅନୁଭୂତି-ଅର୍ଜନର ମାଧ୍ୟମରେ ଶିଶୁ କିଛି ଜ୍ଞାନ ବି ଆହରଣ କରି ପାରିଥିବା ଅଧିକ ଉଚିତ ହେବ । ତା' ନହେଲେ ସିଏ ବହିକୁ ହିଁ ସତ୍ୟ ଏବଂ ତୁଚ୍ଛା ଜାଣିବାଗୁଡ଼ାକୁ ହିଁ ପ୍ରକୃତ ଜୀବନ ବୋଲି ଗ୍ରହଣ କରିନେବାର ପ୍ରମାଦ ସବୁବେଳେ ଅବଶ୍ୟ ରହିଥିବ ।

## ଶିକ୍ଷାରେ ସତ୍ୟ ଏବଂ ବାସ୍ତବ

ଉଭୟ ବ୍ୟକ୍ତି ଏବଂ ସମୁଦାୟର ଜୀବନରେ ଯେପରି ବହୁତ ସମୟରେ ଘଟିଥାଏ, ଯେତେବେଳେ ଭିତରେ ଅସଲ ଆତ୍ମାଟି ସହିତ ଖିଅଟି କଟିଯାଏ, ସେତେବେଳେ ସେମାନେ ବାହ୍ୟଟାକୁ ଅନ୍ତର ବୋଲି ଭ୍ରମ କରନ୍ତି, ପ୍ରତିଭାସକୁ ବାସ୍ତବ ତଥା ସାଧନଗୁଡ଼ିକୁ ହିଁ ଉଦ୍ଦେଶ୍ୟ ବା ଲକ୍ଷ୍ୟ ବୋଲି ବିଶ୍ୱାସ କରିବାକୁ ଆରମ୍ଭ କରିଥାନ୍ତି । ଅଷ୍ଟାଦଶ ଶତାବ୍ଦୀର ଶେଷ ଓ ଊନବିଂଶ ଶତାବ୍ଦୀର ଆରମ୍ଭ ବେଳେ ଆମର ଜୀବନରେ ତାହାହିଁ ଘଟିଥିଲା, - ବିଶେଷ କରି ଶିକ୍ଷାର କ୍ଷେତ୍ରରେ ବେଶୀ ସେହିପରି ଘଟିଥିଲା । ପୁରାତନ କହିଲେ ଯାହାକିଛିକୁ ବୁଝାଇଲା, ତାହାକୁ ବର୍ଜନ କରିବାର ଏକ ହୋ' ଉଠିଲା ଏବଂ ସମସ୍ତେ ତାହାରିଦ୍ୱାରା ହିଁ ଆସନ୍ନ ନୂତନଗୁଡ଼ିକ ମଧ୍ୟକୁ ହିଁ ଲମ୍ଫପ୍ରଦାନ କରିପାରିବେ ବୋଲି ଭାବିବାକୁ ଆରମ୍ଭ କଲେ । ଇତିହାସ ନିରର୍ଥକ ବୋଧ ହେଲା ଏବଂ କେବଳ ଉପସ୍ଥିତ ମୁହୂର୍ତ୍ତଟିର ଆଦୌ କୌଣସି ସତ୍ୟତା ରହିଛି ବୋଲି ବିଶ୍ୱାସ କରାଗଲା ।

ଏହି ଯେଉଁ ରୀତିଟି, - ବାହାରେ ଏକ ଆକାର ଥିବ, ଅଥଚ ଭିତରେ ସାର ବୋଲି କିଛି ନଥିବ; ଧର୍ମର ବାକ୍ୟଗୁଡ଼ିକୁ କେବଳ କେତୋଟି ଶବ୍ଦ ବୋଲି ଧରିନେଇ ଘୋଷି ମୁଖସ୍ଥ କରି ରଖା ଯାଇଥିବ ମାତ୍ର ହୃଦୟ ଯାଇ କୁଆଡ଼େ କେତେ ଦୂରରେ ରହିଥିବ, - ଗୁଡ଼ାଏ ବଚନ କୁହା ହେଉଥିବ ଓ କାର୍ଯ୍ୟ ବୋଲି କିଛି ନଥିବ, ବୃହତ୍ ଯୋଜନାମାନ ରହିଥିବ ଓ କିଛି କାର୍ଯ୍ୟକାରୀ ହେଉନଥିବ, ଲମ୍ବା କଥାମାନ ଶୁଣିବାକୁ ମିଳୁଥିବ, ବେଢା ବେଢା କଳ୍ପନା ଥିବ, ମାତ୍ର ବାସ୍ତବରେ ପ୍ରାୟ କିଛି ଘଟୁନଥିବ; ସମସ୍ତେ ଅନୁଭବ କରୁଥିବେ ଓ ଘୋଷଣା ହେବାରେ ଲାଗିଥିବ ଯେ ପ୍ରକୃତରେ ବହୁତ କିଛି ଘଟୁଛି ଓ ହେଉଛି, ମାତ୍ର କେବଳ ଏକ ସ୍କନ୍ଧକୁଞ୍ଚନ ବ୍ୟତୀତ ବସ୍ତୁତଃ କିଛି ହେଉନଥିବ, ଯାବତୀୟ ବ୍ୟାପାରରେ ନାନାବିଧ ଅବାସ୍ତବତା ଏବଂ ଶିଥିଳତା କାମୁଡ଼ି ଧରିଥିବ ଏବଂ ସତ୍ୟ ପ୍ରକୃତରେ କ'ଣ ବୋଲି ପ୍ରଶ୍ନ କରା ଯାଉଥିବ, - ଏହି ମିଥ୍ୟାଟା ହିଁ ସେତେବେଳେ ଭାରି ବିକ୍ରମରେ ରାଜତ୍ୱ କରୁଥିଲା । ସତ୍ୟ ଏବଂ ବାସ୍ତବତା ବୋଲି କିଛି ନଥିଲା, -ଜୀବନରେ କୌଣସି ଶକ୍ତିର ନିଦର୍ଶନ ହିଁ ନଥିଲା । ଆମର ଶିକ୍ଷାବ୍ୟବସ୍ଥାକୁ ଏବେ ମଧ୍ୟ ତାହାହିଁ ପରାକ୍ରମ ସହିତ ଗ୍ରାସ କରି ରହିଛି । ପିଲାଟିଏ ଶିକ୍ଷା ପାଉଛି ଓ ପରୀକ୍ଷାରେ ବସୁଛି ଏବଂ ତା'ପରେ ସବୁ କାର୍ଯ୍ୟ ଶେଷ ହେଲା ବୋଲି ବିଶ୍ୱାସ କରିନେଉଛି । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ଲକ୍ଷ୍ୟପ୍ରାପ୍ତି ମଧ୍ୟ ହୋଇଯାଉଛି । ଜୀବନଟିଏ ବଞ୍ଚିବା ନିମନ୍ତେ ଯେ ସକଳ ଶିକ୍ଷା କେବଳ ଏକ ମାଧ୍ୟମରୂପେ କାର୍ଯ୍ୟ କରିବ, ନିଜର ଅଭିଳଷିତ ସ୍ଥାନଟିରେ ଯାଇ ପହଞ୍ଚିବାରେ ଯେ ଶିକ୍ଷା ତାକୁ ଆବଶ୍ୟକ ଉତ୍ସାହ ଏବଂ ବଳ ହିଁ ପ୍ରଦାନ କରିବ, - ଏହି କଥାଟି ଶିକ୍ଷକ କିମ୍ବା ଶିଶୁ କାହାରିହେଲେ ହୋସ୍‌ରେ ଆଦୌ ରହି ପାରେନାହିଁ, ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲେ ହିଁ ଏତେ ପରିଶ୍ରମରେ ସମ୍ଭବ ହୋଇଥିବା ଗଛଟିରୁ ସବୁଯାକ ଫଳ ମିଳିଗଲା ପରି ଲାଗୁଥାଏ । କେବଳ ପରୀକ୍ଷାଟା ସକାଶେ ହିଁ ଯାବତୀୟ ଶିକ୍ଷା ପ୍ରଦାନ କରାଯାଉଛି ବୋଲି ବିଶ୍ୱାସଟିକୁ ଶିଶୁଟି ମଧ୍ୟରେ ଅତ୍ୟନ୍ତ ଦୃଢ଼ କରିଦିଆ ଯାଇଥାଏ - ଶିକ୍ଷା ପାଇଁ ପରୀକ୍ଷା ଓ ପରୀକ୍ଷା ପାଇଁ ଶିକ୍ଷା ବୋଲି ଧାରଣାଟି ବଦ୍ଧମୂଳ ହୋଇ ଯାଇଥାଏ - ଯାହାଫଳରେ ଶିକ୍ଷାର ଅସଲ ଲକ୍ଷ୍ୟଟି ସମ୍ପୂର୍ଣ୍ଣ ଭାବରେ ଅସ୍ତବ୍ୟସ୍ତ ହୋଇଯାଏ । ଶିକ୍ଷାର ଅସଲ ପ୍ରୟୋଜନ ବିଷୟରେ ସିଏ ଅନବଗତ ହୋଇ ରହେ । ସିଏ ଆୟତ୍ତ କରିଥିବା କଥାଗୁଡ଼ାକ ହିଁ ତାକୁ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ଲାଗେ ।

ଆମ ଦେଶର ଜନଗଣ ଯାବତୀୟ କଥାକୁ ପ୍ରକୃତରେ ବିଚାର କରି ଜାଣିବେ, ସେମାନଙ୍କର ଜୀବନ ଉତ୍ସାହ ଏବଂ ଭଲ ପାଇବାଦ୍ୱାରା ଅନୁସିକ୍ତ ହୋଇ ରହିବ, ସେମାନେ ସୁକୁଶଳ ହେବେ ଏବଂ ନିଜ ଗୋଡ଼ରେ ଛିଡ଼ା ହୋଇ ପାରିବେ, ନିଜର ଯଥାଶକ୍ତି ଏହି ପୃଥିବୀରେ ବଞ୍ଚିବାଟିକୁ ସୁଫଳପ୍ରଦ କରିପାରିବେ, ଯଦି ଏହିଗୁଡ଼ିକୁ ହିଁ ଆମପାଇଁ ଶିକ୍ଷାର

ଯଥାର୍ଥ ଉଦ୍ଦେଶ୍ୟ ବୋଲି କୁହାଯାଏ, ତେବେ ସେହି ଶିକ୍ଷାର ଏକ ବାସ୍ତବ ମୂଲ୍ୟ ଅବଶ୍ୟ ରହିଥିବା ଉଚିତ ଏବଂ, ଖାଲି ପାଠ ଘୋଷି କଣ୍ଠସ୍ଥ କରି ରଖିବାର ଏଥିରେ ଆଦୌ କୌଣସି ସ୍ଥାନ ରହିବା ଉଚିତ ନୁହେଁ । ଶିକ୍ଷା ଦ୍ୱାରା ପ୍ରଥମେ ଭିତରଟି ଯଥାର୍ଥ ପ୍ରକାରେ ଗଠିତ ହୋଇ ଆସିବ ଏବଂ ବାହାର ଜୀବନଟି ପ୍ରକୃତରେ ତାହାରି ପ୍ରତିଫଳନ ହୋଇ ରହିଥିବ; ଅନ୍ତର ଭିତରେ ଏକ ଗତିଶୀଳ ଜୀବନଦୃଷ୍ଟି ଅନୁଭୂତ ହେବ ଏବଂ ସେହି ଅନ୍ତରଟି ହିଁ ଉତ୍ସାହ ତଥା ଭଲ ପାଇବାଦ୍ୱାରା ପରିଚାଳିତ ହୋଇ ବାହ୍ୟ ଜୀବନକୁ ଆକାର ଦେଇ ପାରୁଥିବ ଏବଂ, ବାହାରର ଜୀବନଟା ଯେ ଆମର ସମଗ୍ର ଜୀବନ, ସେହି ଭ୍ରମଟିରୁ ମଧ୍ୟ ଆମେ ମୁକ୍ତ ହୋଇ ରହିଥିବା ।

ଏଥି ନିମନ୍ତେ ଆମକୁ ଦୁଇଟି କଥା ଉପରେ ସର୍ବଦା ଦୃଷ୍ଟି ଦେବାକୁ ହେବ : ଶିକ୍ଷକର ଜୀବନ ଏବଂ ଆଗ୍ରହ ଏହିସବୁ ଉତ୍କର୍ଷ ତଥା ଆବଶ୍ୟକତାକୁ ସ୍ୱୟଂ ଭଲପାଉଥିବ ଯାହାଫଳରେ କି ତା' ମୁହଁରୁ ବାହାରୁଥିବା ଜୀବନପ୍ରେରଣାମୟ ଯାବତୀୟ ଶବ୍ଦର ଶକ୍ତି ଶିକ୍ଷାର୍ଥୀର ଜୀବନରେ ମଧ୍ୟ ଏକ ଅନୁରୂପ ଉନ୍ମୋଚନ ଘଟାଇବାରେ ପୂର୍ଣ୍ଣ ସହାୟତା କରି ପାରୁଥିବ ଏବଂ ଶିକ୍ଷାର୍ଥୀ ତା' ସମ୍ମୁଖରେ ଉପସ୍ଥାପିତ କରା ଯାଉଥିବା ଭାବନା, ଅନୁଭବ ଏବଂ ଭାବପ୍ରରଣାଗୁଡ଼ିକୁ ଗ୍ରହଣ କରି ପାରୁଥିବ । ଦ୍ୱିତୀୟତଃ, ଶିକ୍ଷାର୍ଥୀକୁ ଶିକ୍ଷଣୀୟ ସମ୍ପଦ ହିସାବରେ ଯାହାକିଛି ପ୍ରଦତ୍ତ ହେଉଥିବ, ସେଗୁଡ଼ିକୁ ଗ୍ରହଣ କରିବାର ସାମର୍ଥ୍ୟ ମଧ୍ୟ ତା' ଭିତରେ ରହିଥିବ ଏବଂ ତଦ୍ୱାରା ସେ ନିଜର ଆତ୍ମିକ ଜୀବନଟିକୁ ଜାଗୃତ କରାଇ ପାରୁଥିବ । ଏହି ଦୁଇଟିଯାକକୁ ହିଁ ଆମେ ଶିକ୍ଷାର ସର୍ବମୂଳ ସାରସୂତ୍ର ବୋଲି ଅବଶ୍ୟ ଜାଣି ରଖିଥିବା । ଏହାକୁ ସମ୍ଭବ କରି ପାରିବାକୁ ହେଲେ ଶିକ୍ଷକ ମଧ୍ୟରେ ବି ଏକ ଜାଗୃତି ଅବଶ୍ୟ ଘଟିଥିବା ଦରକାର ଏବଂ ଶିକ୍ଷକ ସେହିପରି ଜୀବନଟିଏ ଅତିବାହିତ କରି ପାରୁଥିବା ଆବଶ୍ୟକ । .....ବର୍ତ୍ତମାନ ତ ଗୀର୍ଜାରେ ଏବଂ ବିଦ୍ୟାଳୟରେ ଏଡ଼େ ବଡ଼ ଚିତ୍କାର କରି ଯାହାକିଛି କୁହାଯାଉଛି, ତାହାକୁ କହୁଥିବା ବ୍ୟକ୍ତିମାନେ ସେଗୁଡ଼ିକର ଅନୁରୂପ ଜୀବନଟିଏ ଆଦୌ ବଞ୍ଚୁ ନାହାନ୍ତି, ସେମାନେ ଉଚ୍ଚାରଣ କରୁଥିବା ସତ୍ୟଗୁଡ଼ିକୁ ନିଜ ଜୀବନରେ ଆଦୌ ସ୍ୱୀକାର କରିନାହାନ୍ତି । ସେମାନେ ତଥାପି ସେଗୁଡ଼ିକୁ ଯେ ଉଚ୍ଚାରଣ କରୁଛନ୍ତି, ତାହାର କାରଣ ହେଉଛି ଯେ, ସେମାନେ ଉଚ୍ଚାରଣ କରୁଥିବା ସତ୍ୟଗୁଡ଼ିକୁ ନିଜ ଜୀବନରେ ଆଦୌ ସ୍ୱୀକାର କରିନାହାନ୍ତି । ସେମାନେ ତଥାପି ସେଗୁଡ଼ିକୁ ଯେ ଉଚ୍ଚାରଣ କରୁଛନ୍ତି, ତାହାର କାରଣ ହେଉଛି ଯେ, ସେମାନେ ଜନଗଣଙ୍କୁ ନିଜର ଲଗାମରେ ବାନ୍ଧି ରଖିବାକୁ ହିଁ ଇଚ୍ଛା କରୁଛନ୍ତି । ସେମାନେ ଭ୍ରମ ଦ୍ୱାରା ପରିଚାଳିତ ହୋଇ ଭାବୁଛନ୍ତି ଯେ, ଯେଉଁ ସତ୍ୟକୁ ସେମାନେ ନିଜେ ଏକ ବ୍ୟକ୍ତିଗତ ଜୀବନସତ୍ୟରେ ପରିଣତ କରିନାହାନ୍ତି, ତାହାକୁ ଖାଲି କଥାରେ କହିଦେଲେ ହିଁ

ଶିକ୍ଷାର୍ଥୀମାନଙ୍କ ଉପରେ ତାହାର ଅବଶ୍ୟ ପ୍ରଭାବ ପଡ଼ିବ ଓ ସେମାନେ ନିଜ ନିଜ ଉପରେ ଇପ୍ସିତ କର୍ତ୍ତୃତ୍ୱଟିକୁ ଅର୍ଜନ କରି ପାରିବେ ।

ଜଣେ ଶିକ୍ଷକପାଇଁ ଆଉ ଗୋଟିଏ ଆବଶ୍ୟକତା ହେଉଛି ଯେ, ସିଏ ଉଚ୍ଚାରଣ କରୁଥିବା ଶବ୍ଦଗୁଡ଼ିକ ସର୍ବଦା ଅବଶ୍ୟ ତା' ନିଜ ଆୟତ୍ତରେ ରହିଥିବେ । ଶିକ୍ଷକ ଯାହା କହୁଥିବ, ତାହା ପ୍ରକୃତରେ ତା'ର ଅନ୍ତର ଭିତରୁ ହିଁ ଆସୁଥିବ, - କଦାପି କାହାର ଏକ ନକଲ ହୋଇନଥିବ । ଗୋଟିଏ ପାଖରେ ଗୋଟିଏ ଜୀବନ୍ତ ମନୁଷ୍ୟ ଓ ଆଉ ଗୋଟିଏ ପାଖରେ ତା'ର ଏକ ଛବି ବା ଅନୁକୃତି, - ଦୁଇଟାଯାକ କଦାପି ଗୋଟିଏ କଥା ହୋଇ ପାରିବେନାହିଁ । ଯେତେବେଳେ ଆମର ସାଂପ୍ରତିକ ଜନଜୀବନ ପ୍ରାୟ ନିଦ୍ରାମଗ୍ନ ହୋଇ ରହିଛି, ତାହାର ନିଦ୍ରାଭଙ୍ଗ କରି ପାରିବାକୁ ହେଲେ, ଆମେ ଯାହା ଶବ୍ଦର ସାହାଯ୍ୟ ଦ୍ୱାରା କହୁଥିବା, ସେହି ଅନୁସାରେ ଜୀବନଟିଏ ମଧ୍ୟ ଅବଶ୍ୟ ବଞ୍ଚୁଥିବା । ତା' ନହେଲେ ନିଦ୍ରାଭଙ୍ଗ କରିବାର ସେହି କାର୍ଯ୍ୟଟି କେବଳ କଥାରେ ହିଁ ରହିଯିବ । ତେଣୁ, ଯେଉଁ ବ୍ୟକ୍ତି ନିଜପାଇଁ ପିଲାମାନଙ୍କୁ ଶିକ୍ଷା ଦେବାର କାର୍ଯ୍ୟଟିକୁ ବାଛିନେବ, ତାହାର ନିଜର ମଧ୍ୟ ଅନୁରୂପ ଆତ୍ମିକ ବିକାଶବିଧାନ ଅବଶ୍ୟ ହୋଇଥିବ । ପ୍ରାଚୀନ ଗ୍ରୀସ୍‌ରେ ସେହି ଦେଶର ସବାଶ୍ରେଷ୍ଠ ବ୍ୟକ୍ତିମାନେ ହିଁ ନିଜପାଇଁ ସେହି କାର୍ଯ୍ୟଟିକୁ ବାଛି ନେଉଥିଲେ, ମାତ୍ର ପୁରାତନ ରୋମ୍‌ରେ କ୍ରୀତଦାସମାନଙ୍କୁ ସେହି କାର୍ଯ୍ୟଟି ଅର୍ପଣ କରା ଯାଇଥିଲା । ଏବଂ, ପରିଣାମ ମଧ୍ୟ ସେହିଭଳି ହିଁ ହେଲା । ଆମେ ଡେନ୍‌ମାର୍କ୍‌ର ଜନଗଣଙ୍କୁ ଯଦି ପ୍ରକୃତରେ ସ୍ୱାଧୀନ ଓ ବିମୁକ୍ତ ଦେଖିବାକୁ ଇଚ୍ଛା କରୁଥିବା, ସେମାନେ ଶକ୍ତିମାନ୍ ହୋଇ ନିଜ ଗୋଡ଼ରେ ନିଜେ ଛିଡ଼ା ହୁଅନ୍ତୁ ବୋଲି ଯଦି ଚାହୁଁଥିବା, ଯେପରିକି ସେମାନେ ନିଜର ଲବ୍ଧ ସେହି ସ୍ୱାଧୀନତାକୁ ନିଜ ନିମନ୍ତେ ତଥା ସମଗ୍ର ସମାଜ ନିମନ୍ତେ ବ୍ୟବହାର କରନ୍ତୁ ବୋଲି ଯଦି ଆମର ଆଗ୍ରହ ରହିଥିବ, ତେବେ, ଯେଉଁମାନେ ସଂକୀର୍ଣ୍ଣହୃଦୟ, ନିଜସୁଖକାମୀ ହୋଇ ରହିଛନ୍ତି ଓ ଅନ୍ୟମାନଙ୍କୁ ତଳେ ଚାପି ରଖି ସମୁଦାୟର ବିକାଶରେ ବାଧା ପରି କାର୍ଯ୍ୟ କରୁଛନ୍ତି, ସେମାନେ ସବାଆଗ ମୁକ୍ତ ହୋଇ ପାରିଲେ ଯାଇ ଆମର ଶିକ୍ଷାର କ୍ଷେତ୍ରରେ ବସ୍ତୁତଃ କିଛି ଘଟିପାରିବ । ବର୍ତ୍ତମାନ ତ ଆମ ବିଦ୍ୟାଳୟଗୁଡ଼ିକର ଜୀବନ ସତେଅବା ଅପରାଧୀମାନଙ୍କ ପାଇଁ ଶୃଙ୍ଖଳା ଏବଂ ସଂଶୋଧନ ବିଧାନ କରିବାର ଗୋଟିଏ ଗୋଟିଏ ଗୃହ ପରି ହୋଇ ରହିଛି; ବିଚରା ସାନମାନେ ବେଞ୍ଚଗୁଡ଼ିକ ଉପରେ ଢାକି ଢୁକି ହୋଇ ବସୁଛନ୍ତି, ନିଜର ବୟସ ଦୃଷ୍ଟିରୁ ଅତ୍ୟନ୍ତ ଅସ୍ୱାଭାବିକ ଭାବରେ ଗମ୍ଭୀର ଓ ପଥରପରି ଦେଖା ଯାଉଛନ୍ତି - କେବଳ ନାନାବିଧ ଭୟ ହିଁ ସେମାନଙ୍କୁ ଏପରି ଏକ ଦଶା ଭିତରେ ବାଧ୍ୟକରି ରଖିପାରିଛି । ସେମାନଙ୍କୁ ଏହିଭଳି ଭାବରେ ଦେଖି ଭିତରଟା ଅତ୍ୟନ୍ତ ବିମର୍ଷ ହୋଇ ଯାଉଛି । ମନେ ହେଉଛି, ଏଠାରେ ପ୍ରକୃତରେ ଏକ ଦାସତ୍ୱପ୍ରଥା ହିଁ ରାଜତ୍ୱ କରୁଛି । ସତକୁ ସତ ଏହାର ଠିକ୍ ଓଲଟା ହେଉଥାନ୍ତା

ଯେ, ପିଲାମାନଙ୍କର ସେହି ସମୂହଟି ଓ ସେମାନଙ୍କର ଶିକ୍ଷାଦାତା ଉତ୍ସାହ ଏବଂ ସଚଳତାରେ ପୂର୍ଣ୍ଣ ହୋଇ ରହିଥାନ୍ତେ ଏବଂ ସେଠାରେ କେବଳ ଭୟଶୂନ୍ୟତା ଏବଂ ଖୁସୀ ହିଁ ବିରାଜମାନ କରୁଥାଆନ୍ତା । କିନ୍ତୁ ବର୍ତ୍ତମାନ ତ ସେମାନଙ୍କର ମୁହଁ ଉପରେ ଅଧିକାଂଶ ସମୟରେ ଏକ ବିରକ୍ତି ହିଁ ଘର କରି ରହିଛି । ସେମାନଙ୍କୁ ସ୍ୱାଭାବିକ ଲାଗୁଥିବା କୌଣସି ପ୍ରକାରର ଆଚରଣ କରିବା ନିମନ୍ତେ ପିଲାମାନଙ୍କର କୌଣସି ସ୍ୱାଧୀନତା ନାହିଁ । ଏହାଫଳରେ ସେହି ଶିଶୁ ଅବସ୍ଥାରୁ ହିଁ ସେମାନଙ୍କ ଜୀବନାତ୍ମାଟି ପ୍ରାୟ ଏକ ଦାସତ୍ୱର ବେଡ଼ୀରେ ହିଁ ବାନ୍ଧିହୋଇ ରହୁଛି, ସେମାନେ ସେହିଥିରୁ ହିଁ ନିଜର ସମସ୍ତ ଜୀବନଲାଗି ନାନା ଧୂର୍ତ୍ତତା ଓ ଚତୁରତା ବି ଶିକ୍ଷା କରୁଛନ୍ତି ଏବଂ ବିଦ୍ୟାଳୟରେ ମଧ୍ୟ ଶିକ୍ଷକଙ୍କର ଦୃଷ୍ଟିକୁ ଏଡ଼ାଇ ରହିବା ନିମନ୍ତେ ସେମାନେ ସାନ ସାନ ପାଜିଗିରି ମଧ୍ୟ ଖୁବ୍ ଆୟତ୍ତ କରି ନେଉଛନ୍ତି । ଶିକ୍ଷକଙ୍କୁ ସେମାନେ ସତେଅବା କୌଣସି କଏଦୀଖାନାର ଜଗୁଆଳି ପରି ଦେଖିବାରେ ଅଭ୍ୟସ୍ତ ହୋଇ ଯାଉଛନ୍ତି ଏବଂ ସେପରି କରି ତାଙ୍କୁ ଠକିଦେଲେ ବୋଲି କିଞ୍ଚିତ୍ ଖୁସୀ ମଧ୍ୟ ହେଉଛନ୍ତି ।

ବର୍ତ୍ତମାନ ଆମେ ବିଦ୍ୟାଳୟରେ ପଢ଼ା ଯାଉଥିବା ପାଠର ପ୍ରସଙ୍ଗଟିକୁ ଆସିବା । ଯେଉଁ ପାଠ ପଢ଼ାଯାଉଛି, ତାହାକୁ ଗ୍ରହଣ କରିବାପାଇଁ ଓ ନିଜର ଜୀବନକୁ ତଦ୍ୱାରା ଯଥାର୍ଥ ପ୍ରକାରେ ସମୃଦ୍ଧିମନ୍ତ କରିବାପାଇଁ ତା'ଭିତରେ ଆବଶ୍ୟକ ସମର୍ଥତା ଅବଶ୍ୟ ରହିଥିବା ଉଚିତ । ଜଣେ ମନୁଷ୍ୟର ଜୀବନ ଯେତିକି ବଳ ଓ ଚେତନାଯୁକ୍ତ ହେଉଥିବ, ଅର୍ଥାତ୍ ତାହା ଯେତିକି ନିଜର ଜଡ଼ତାରୁ ମୁକ୍ତ ହୋଇ ଆସୁଥିବ, ତାହା ସେତିକି ଅଧିକ ପରିମାଣରେ ମହତ୍ତ୍ୱପୂର୍ଣ୍ଣ ବି ହୋଇ ପାରିବ ଏବଂ ବସ୍ତୁତଃ ସେତିକି ଅଧିକ ଅନୁକୂଳ ଖାଦ୍ୟ ମଧ୍ୟ ଆବଶ୍ୟକ କରିବ । ମାତ୍ର, ଏକ ଉପରଠାଉରିଆ ଜୀବନ କେବଳ ଉପରଠାଉରିଆ ହେବାରେ ହିଁ ଅଧିକ ଖୁସୀ ହେଉଥିବ । ଆମର ଜୀବନରେ ଏକ ଜାଗରଣ ସମ୍ଭବ ହୋଇଯିବା ମାତ୍ରକେ ତେଣେ ଆତ୍ମାର କ୍ଷେତ୍ରରେ କ୍ଷୁଧା ବି ବଢ଼ିବ, - ଫଳରେ ଜୀବନରେ ଏକ ଫରକ ମଧ୍ୟ ଦେଖିବାକୁ ମିଳିବ ଏବଂ ନିଜ ଅନ୍ତର ପାଇଁ ଖାଦ୍ୟର ଅନ୍ୱେଷଣ କରିବାର ପ୍ରବୃତ୍ତି ମଧ୍ୟ ଅଧିକ ପରିମାଣରେ ଅନୁଭୂତ ହେଉଥିବ । ଯାହା ହୃଦୟ ଭିତରୁ ଆସେ, କେବଳ ତାହାହିଁ ହୃଦୟ ଭିତରେ ପ୍ରବେଶ କରି ପାରିବ । ତେଣୁ,ଆମର ଯାହା କିଛିର କିଛି ପ୍ରଭାବ ଅବଶ୍ୟ ପଡୁ ବୋଲି ଆମେ ଇଚ୍ଛା କରୁଥିବା, ହୃଦୟର ଗଭୀରରେ ଯାଇ ତାହାର ଉତ୍ସଟି ରହିଥିବା ଉଚିତ, - ସେହିଠାରୁ ହିଁ ତାହା ଶବ୍ଦରୂପେ, କାର୍ଯ୍ୟରୂପେ ବ୍ୟକ୍ତ ହୋଇ ପାରୁଥିବ; ମାତ୍ର ଦେଖାଣିଆ ଜୀବନ କେବଳ ସେହି ଦେଖାଣିଆରେ ହିଁ ନିଃଶେଷିତ ହୋଇଯିବ ।

ଯାବତୀୟ ଶିକ୍ଷା ଜୀବନର ପ୍ରସଙ୍ଗଗୁଡ଼ିକୁ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଦେଖାଇ ଦେଇ ପାରୁଥିବ, ଯାହାଫଳରେ କି କର୍ମକୁଶଳତା ବୃଦ୍ଧି ପାଇବ, ଯାହା ମନୁଷ୍ୟକୁ ସ୍ୱାଧୀନଚେତା କରି ପାରୁଥିବ । ଶିକ୍ଷକ ସେଗୁଡ଼ିକୁ ନିଷ୍କପଟ ଭାବରେ ଆଣି ଉପସ୍ଥାପିତ କରି ପାରୁଥିବ ଓ

ଅନ୍ୟ ପକ୍ଷଟି ତାହାକୁ ସେହିପରି ନିଷ୍କପଟ ଭାବରେ ଗ୍ରହଣ ମଧ୍ୟ କରୁଥିବ । ଅନେକ ସମୟରେ ଏହି ଦ୍ୱିତୀୟ ପକ୍ଷଟି ଏପରି ସ୍ଥିତିରେ ରହିଥାଏ ଯେ, ତାହା ପରିବେଷ୍ଟିତ ସାମଗ୍ରୀଗୁଡ଼ିକୁ ଯଥାର୍ଥ ଭାବରେ ଗ୍ରହଣ କରି ପାରେନ୍ନାହିଁ । କାରଣ ସ୍ୱରୂପ, ହୁଏତ ଛାତ୍ରର ଅନ୍ତର୍ଗତ ଶକ୍ତିଟି ବିଷୟରେ ଶିକ୍ଷକ ଠିକ୍ ଭାବରେ ପରିଚିତ ନଥାଏ ବା ତାହା କେବଳ ତାହାର ମଥାଟା ଭିତରେ ହିଁ ଯାହାକିଛି କରେ ଓ କଳ୍ପନା ତଥା ସଂବେଦନା ମଧ୍ୟକୁ ପ୍ରବେଶ କରି ପାରେନାହିଁ । କିମ୍ବା, ପିଲାକୁ ଯାହା ଦିଆ ଯାଉଥାଏ, ତା' ଭିତରକୁ ତା'ର ଆଖି ମଧ୍ୟ ପାଇ ପାରୁନଥାଏ, କାରଣ ନିଜ ଜୀବନରେ ତା'ର ସେତେଯାଏ ଅନୁଭୂତି ହୋଇନଥାଏ । ଯଦି ପିଲାମାନଙ୍କୁ ହିଁ ଶିକ୍ଷା ଦେବା କଥା, ତେବେ ଆମକୁ ଯଥାସମ୍ଭବ ତାହାରି ଅନୁଭବବୃତ୍ତଟିର ନିକଟବର୍ତ୍ତୀ ହୋଇ ରହିବାକୁ ପଡ଼ିବ, ଯେପରିକି ପିଲା ଏକ ସମୁଚିତ ଜୀବନର ଆଘ୍ରାଣ ପାଇପାରିବ ଓ ତାହାକୁ ଦିଆ ଯାଉଥିବା ଶିକ୍ଷାର ଆବଶ୍ୟକତାକୁ ମଧ୍ୟ ଅନୁଭବ ବି କରି ପାରିବ । ତେବେଯାଇ ଯାବତୀୟ ଶିକ୍ଷା ଫଳପ୍ରଦ ଏବଂ ହର୍ଷକାରକ ହୋଇ ପାରିବ । ମାତ୍ର, ଯଦି ଆମେ ପିଲାଟିର ନିଜ ଜଗତର ପ୍ରସଙ୍ଗଗୁଡ଼ିକୁ ଗୌଣ କରି ଦେଖାଇବା ଏବଂ ବୟସ୍କ ଓ ପୌଢ଼ ଜୀବନର ବ୍ୟାପାରଗୁଡ଼ିକୁ ପ୍ରଧାନତା ଦେଉଥିବା, ତେବେ ପିଲାମାନେ ଆମକୁ ଆଦୌ ବୁଝି ପାରିବେ ନାହିଁ ଏବଂ ଯଦି ଆମେ ସେହି କ୍ଷେତ୍ରରେ ପ୍ରାୟ ଏକପାଖିଆ ଭାବରେ କିଛି ଲଦିଦେବାର ଚେଷ୍ଟା କରିବା, ତେବେ ପିଲାଟି ହିଁ ଚାପି ହୋଇଯିବ । ପିଲାର ଜୀବନ ଓ ତାକୁ ଦିଆ ଯାଉଥିବା ଶିକ୍ଷାର ଆଲୋକ ମଧ୍ୟରେ ଏକ ସଙ୍ଗତି ଅବଶ୍ୟ ରହିଥିବା ଦରକାର । ନହେଲେ,ଶିକ୍ଷା ବସ୍ତୁତଃ ଏକ ମିଥ୍ୟାରେ ପରିଣତ ହୋଇ ରହିବ ଏବଂ ଜଣେ ପ୍ରକୃତ ଶିକ୍ଷକ ସେହି ବିପଦଟି ବିଷୟରେ ସର୍ବଦା ଖୁବ୍ ସାବଧାନ ହୋଇ ରହିଥିବ । ପିଲାର ପିତାମାତାଙ୍କ ପରି ତା'ର ମଧ୍ୟ ଯଥେଷ୍ଟ ଧୈର୍ଯ୍ୟ ରହିଥିବ, ପିଲାକୁ ସେ ଶ୍ରଦ୍ଧାର ଦୃଷ୍ଟିରେ ହିଁ ଦେଖୁଥିବ । ପିଲାମାନଙ୍କ ଉପରେ ତା'ର ନିଶ୍ଚୟ ବହୁତ ପ୍ରଭାବ ପଡ଼ିବ ବୋଲି ସିଏ କଦାପି ବାହାଦୁର ହୋଇ ଭାବି ପକାଇବ ନାହିଁ । ଅସଲ ଶିକ୍ଷକ ପିଲାର ଜୀବନରେ ଅଧିକ ଗଭୀରଯାଏ ହିଁ ଦେଖି ପାରୁଥିବ । ପିଲାଟିଏ ଯେପରି ଛାଞ୍ଚରେ ଗଢ଼ି ହୋଇ ଆସୁ ବୋଲି ଶିକ୍ଷକ ଇଚ୍ଛା କରୁଥିବ, ଯଦି ସେ ତାହାକୁ ସେତିକି ଏକପାଖିଆ ଭାବରେ ଲଦି ଦେବାକୁ ଇଚ୍ଛା କରିବ, ତେବେ ତାହା ଅତ୍ୟନ୍ତ ଅନିଷ୍ଟକାରୀ ହେବ ।

ଅନ୍ୟ ପକ୍ଷରେ ସିଏ ଯେତିକି ଭଲ ପାଇବାଦ୍ୱାରା ପରିଚାଳିତ ହେଉଥିବ, ସେତିକି ତାହାର ତଥା ପିଲାମାନଙ୍କର ହିତ ମଧ୍ୟ ହେବ ଏବଂ ସମସ୍ତ କାର୍ଯ୍ୟଟି ସେତିକି ଆନନ୍ଦଦାୟକ ହୋଇପାରିବ । କାରଣ, ଅସଲ ସତ୍ୟଟି ହେଉଛି ଯେ, କୌଣସି ବସ୍ତୁର ଜ୍ଞାନ କିମ୍ବା କୌଣସି ବିଷୟରେ ଲବ୍ଧ ଅନ୍ତଃଦୃଷ୍ଟିକୁ ନିଜ ଜୀବନରେ କାର୍ଯ୍ୟକାରୀ କରିବା ନିମନ୍ତେ ପ୍ରତ୍ୟେକ ମନୁଷ୍ୟର ସ୍ୱଭାବ ଭିତରେ ଏକ ପ୍ରଲୋଭନ ବହୁ ଗଭୀରରେ ପ୍ରଚ୍ଛନ୍ନ ହୋଇ ରହିଥାଏ ।

ମୋ' ଜୀବନରେ ମୁଁ ଏପରି ଅନେକ ପିଲାଙ୍କର ସମ୍ପର୍କରେ ଆସିଛି, ଯେଉଁମାନେ କି ଏକ ଉତ୍ତମ ଜୀବନ ବିଷୟରେ କିଛି ଜାଣିବା ପରେ ସେହି ଅନୁସାରେ ଜୀବନଟିଏ ବଞ୍ଚିବାକୁ ପ୍ରକୃତରେ ଇଚ୍ଛା କରୁଥାନ୍ତି, ମାତ୍ର ସେଥିଲାଗି ସେମାନଙ୍କ ଭିତରେ ଏକ ଅନୁରୂପ ଶକ୍ତିର ଅଭାବ ରହିଥାଏ ଏବଂ ତେଣୁ ସେମାନେ ତାହା କରି ପାରନ୍ତି ନାହିଁ; ପଢୁଥିବା ପାଠର ଗର୍ଭଟା ଯେତେବେଳେ ଶୂନ୍ୟ ହୋଇ ରହିଥାଏ, ସେତେବେଳେ ହୃଦୟ ଭିତରକୁ ରାସ୍ତା ମଧ୍ୟ ବନ୍ଦ ହୋଇଯାଏ ଏବଂ ତାହା ଫଳରେ ନମ୍ର ହେବା ଓ ଭଲ ପାଇବା ଉପରେ ବିଶ୍ୱାସ ଅର୍ଜନ କରିବା ମଧ୍ୟ ଖୁବ୍ କଷ୍ଟକର ହୋଇଯାଏ । ଯାବତୀୟ ଶିକ୍ଷାଦାନରେ ପ୍ରଧାନତଃ ଏତିକି ଦେଖିବାକୁ ହେବ ଯେ, ପ୍ରଦତ୍ତ ହେଉଥିବା ଶିକ୍ଷା ପିଲା ଭିତରେ ଏକ ବିମୋଚନର ଅନୁଭବ ଆଣି ଦେଉଛି, ପିଲାମାନଙ୍କ ପାଇଁ ଆନନ୍ଦର କାରଣ ହେଉଛି ଏବଂ, ତେଣେ ଭିତରେ ଅବଶ୍ୟ କିଛି ଘଟୁଛି ବୋଲି ସଙ୍କେତ ଦେଇ ତା'ର ଆଖିମାନେ ମଧ୍ୟ ଉଜ୍ଜ୍ୱଳ ଦେଖା ଯାଉଛନ୍ତି । ତେବେ, ଆଉ ଆଦୌ କୌଣସି ସନ୍ଦେହ ରହିବା ଉଚିତ ନୁହେଁ ଯେ, ଏପରି ଗୋଟିଏ ଦିନ ଅବଶ୍ୟ ଆସିବ, ଯେତେବେଳେ କି ଏକାଧିକ ଅଙ୍କୁରୋଦ୍‌ଗମ ସମ୍ଭବ ହୋଇ ଆସିବ ଏବଂ ପୂର୍ଣ୍ଣ ହୃଦ୍‌ବୋଧ କରାଇଦେବ ଯେ ପ୍ରାପ୍ତ ଶିକ୍ଷାର ଏକ ଫଳ ଅବଶ୍ୟ ଫଳିଲା । ହୁଏତ ଅନେକ ସମୟରେ ଆମର ପ୍ରତ୍ୟାଶା ଅନୁସାରେ ସେହି ଫଳ କଦାପି ଫଳିବ ନାହିଁ ସତ, ମାତ୍ର ଆମକୁ ନମ୍ରତାର ସହିତ ସ୍ୱୀକାର କରିବାକୁ ହେବ ଯେ, ଜୀବନର ଉନ୍ମୋଚନ କ୍ଷେତ୍ରରେ କେଉଁଠିରୁ କ'ଣ ଘଟିବ, ଆମେ ସେହି ବିଷୟରେ ବିଶେଷ କିଛି ଆଗରୁ ନିଶ୍ଚିତ ହୋଇ ପାରିବାନାହିଁ । ତଥାପି, ଆମ ବୁଝିବାରେ ଯାହା ଯେତେ ବଙ୍କା ହୋଇଥାଉ ପଛକେ, ତାହାକୁ ପୁନର୍ବାର ସୁଧାରି ଆଣିବାର ସାମର୍ଥ୍ୟ ସେହି ଜୀବନ ଭିତରେ ହିଁ ରହିଛି ।

## ପରୀକ୍ଷା, ଶ୍ରେଣୀପାଠ୍ୟ ଏବଂ ଘୋଷି ମୁଖସ୍ଥ କରିବା

ଅତ୍ୟନ୍ତ ବିଚିତ୍ର କଥା ଯେ, ପିଲାମାନଙ୍କର ସ୍କୁଲରେ ସେମାନେ ଯାହା ପଢୁଛନ୍ତି, ସେଗୁଡ଼ିକର ପରୀକ୍ଷା ମଧ୍ୟ କରାଯାଉଛି । ପିଲାମାନଙ୍କୁ ଗଦାଏ ପାଠ ପଢ଼ାଇ ଦିଆଯାଉଛି ଓ ସେମାନେ କେତେ ମନେ ରଖିଲେ କି ନାହିଁ, ତାହାରି ପରୀକ୍ଷା ନିଆଯାଉଛି । ଏହିପରି ପରୀକ୍ଷା ନେବାର ପ୍ରକୃତରେ କୌଣସି ଅର୍ଥ ନାହିଁ, କାରଣ, ପିଲାମାନେ ଭାରି ଛୋଟ ଛୋଟ ଏବଂ ସେମାନଙ୍କର ଅନୁରୂପ ସାମର୍ଥ୍ୟଗୁଡ଼ିକ ବିକଶିତ ହୋଇ ଆସିବା ନିମନ୍ତେ କିଛି ସମୟ ଅବଶ୍ୟ ଲାଗିବ । ସେମାନେ ସେତେବେଳେ ଯାଇ କିଛି ଗ୍ରହଣ କରିପାରିବେ, କିଛି ସାଇତି ମଧ୍ୟ ରଖିପାରିବେ । ବର୍ତ୍ତମାନ ତଥାପି ଯେଉଁ ପରୀକ୍ଷା ନିଆଯାଉଛି, ତାହାର କାରଣ ସ୍ୱରୂପ ଦର୍ଶାଯାଉଛି ଯେ, ପିଲାମାନଙ୍କୁ ଯାହାକିଛି ଦିଆଗଲା, ସେମାନେ ତାହାକୁ କେତେଦୂର

ଗ୍ରହଣ କରିଛନ୍ତି ବା ନକରିଛନ୍ତି, ତାହାର ଏକ ସଂବାଦ ଆମକୁ ଅବଶ୍ୟ ମିଳିବା ଉଚିତ ହେବ । ଯଥାର୍ଥରେ କହିବାକୁ ଗଲେ, ବାହାରୁ ଗୋଛାଏ ଜ୍ଞାନ ନେଇ ପିଲାର ମଥା ଉପରେ ଗଦା କରିଦେବା ପ୍ରାଥମିକ ଶିକ୍ଷାର ଆଦୌ ଉଦ୍ଦେଶ୍ୟ ନୁହେଁ; ପିଲାଟିଏ ଏପରି ଭାବରେ ବିକଶିତ ହୋଇ ଆସିବ, ଯାହାଦ୍ୱାରା କି ସିଏ ଏକ ସୁସ୍ଥ, ଶକ୍ତିମନ୍ତ ଓ ସଚେତନ ଜୀବନ ଯାପନ କରି ପାରିବ; ପିଲାଟି ଭିତରେ ଯାହା ସମ୍ଭାବନାରୂପେ ରହିଛି ତାହାକୁ ପ୍ରସ୍ଫୁଟିତ କରାଇବ । ଶିକ୍ଷକର ସର୍ବପ୍ରଧାନ ପ୍ରୟାସଟି କେବଳ ତାହାହିଁ ହେବ: ଜୀବନରେ ଜାଗରଣ ଆଣିବ, ଦୃଷ୍ଟିକୁ ତୀକ୍ଷ୍ଣ କରିବ, ଜୀବନକ୍ଷେତ୍ରକୁ ଆଲୋକିତ କରିବ ଏବଂ ଅନୁଭବରେ ସନ୍ଦୀପନ ଆଣି ଦେବ । ଏଠାରେ କୌଣସି ପରୀକ୍ଷାର କୌଣସି ସ୍ଥାନ କାହିଁକି ରହିବ ? ପୁନଶ୍ଚ, ଯଦି ତଥାପି ପରୀକ୍ଷା ଥିବ ଓ ପରୀକ୍ଷକମାନେ ରହିଥିବେ, ତେବେ ଜାଣିବାକୁ ହେବ, ପ୍ରାଥମିକ ବିଦ୍ୟାଳୟର ଅସଲ ଲକ୍ଷ୍ୟଟିକୁ ସେଠି ସମସ୍ତେ ଭୁଲ୍ ଭାବରେ ବୁଝିଛନ୍ତି । ସେହି କ୍ଷେତ୍ରରେ ପଢ଼ା ଯାଉଥିବା ପାଠର ମଧ୍ୟ କୌଣସି ଯଥାର୍ଥ ଉଦ୍ଦେଶ୍ୟ ନଥିବ ।

ବର୍ତ୍ତମାନ ସବୁ ପାଠଶାଳାରେ ଯେହେତୁ ପରୀକ୍ଷା ହେଉଛି, ତେଣୁ ପରୀକ୍ଷାରେ ପଡ଼ିବ ବୋଲି ପାଠଗୁଡ଼ିକ ମଧ୍ୟ ପଢ଼ାହେଉଛି । ପିଲାମାନେ ପରୀକ୍ଷାକୁ ଭୟ କରୁଛନ୍ତି ଏବଂ ତେଣେ ସେହି ଭୟ ଦ୍ୱାରା ଜୀବନର ସହଜ ବିକାଶଟି ବାଧାପ୍ରାପ୍ତ ହେବାରେ ଲାଗିଛି, ସେମାନଙ୍କର ଜୀବନରୁ ସକଳ ସରସତାକୁ ହରଣ କରି ନିଆଯାଉଛି । ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ଯେ, ନିଜ ଘରୁ ବାହାରକୁ ବାହାରି ପିଲାମାନେ ଯେଉଁ ସର୍ବପ୍ରଥମ ପରିବେଶଟିର ସମ୍ପର୍କରେ ଆସୁଛନ୍ତି, ସେହି ବିଦ୍ୟାଳୟ ସେମାନଙ୍କପାଇଁ କେବଳ ଏକ ଦୁଃଖଦ ଅନୁଭବର ହିଁ କାରଣ ହେଉଛି ଏବଂ ତାହା ପିଲାର ହୃଦୟ ଭିତରେ ସତେଅବା ଚିରସ୍ଥାୟୀ ହୋଇ ରହିଯାଉଛି । ପିଲାମାନେ କଥା ନମାନିଲେ ବା ଦୁଷ୍ଟ ହେଲେ ପିତାମାତା ସେମାନଙ୍କୁ ପାଠଶାଳାକୁ ପଠାଇଦେବେ ବୋଲି ଧମକ ଦେଉଛନ୍ତି । ଏସବୁ ସହିତ ପୁଣି ଘୋଷି ପାଠ ମନେ ରଖିବାର ରୀତିଟି ପିଲାମାନଙ୍କ ସକାଶେ ଆହୁରି କାଳ ହୋଇ ରହିଛି । ପରୀକ୍ଷାରେ ମଧ୍ୟ ମୁଖସ୍ଥ କରା ଯାଇଥିବା ପାଠକୁ କହିଯିବା ପାଇଁ କୁହାଯାଉଛି । ଅନେକେ ତ ଯୁକ୍ତି ଦେଖାଇ କହନ୍ତି ଯେ, ମୁଖସ୍ଥ କରିବା ପ୍ରକୃତରେ ଖୁବ୍ ସହଜ ଓ ଆମ ପିଲାଙ୍କ ସ୍କୁଲରେ ସେମାନେ ପ୍ରକୃତରେ କେଡ଼େ ବିଚକ୍ଷଣ ଭାବରେ ତାହା କରି ପାରୁଛନ୍ତି ! ଏଥିକୁ ଉତ୍ତର ଦେଇ ମୁଁ କହିବି ଯେ, ଏହା ଦୁର୍ଭାଗ୍ୟବଶତଃ ପ୍ରକୃତରେ ସତ; କାରଣ ତୁମେ ନିଜେ ଯେତେ କମ୍ ଭାବି ପାରୁଥିବ, ସେତେ ସହଜରେ ଏକ ବିଷୟକୁ ମୁଖସ୍ଥ କରି ଥୋଇ ଦେଇ ପାରିବ । ଈଶ୍ୱର କରନ୍ତୁ, ଡେନ୍‌ମାର୍କ୍‌ର ପିଲାମାନେ ଶୀଘ୍ରାତିଶୀଘ୍ର ଏହି ଦାସତ୍ୱଟିରୁ ମୁକ୍ତ ହୋଇ ଯାଆନ୍ତୁ ।

## ପାଠର ସ୍ୱରୂପ, ପିଲାର ଶିକ୍ଷା ଏବଂ ଆତ୍ମଜାଗରଣ

ପିଲାଟି ଜଣେ ବୟସ୍କ ମଣିଷ ହୋଇ କି ଚାକିରି କରି ତା'ର ଜୀବିକାନିର୍ବାହ କରିବ, ପ୍ରାଥମିକ ବିଦ୍ୟାଳୟର ଶିକ୍ଷା ନିଜ ସମ୍ମୁଖରେ ସେହି ଉଦ୍ଦେଶ୍ୟ ରଖି ତାକୁ ତିଆରି କରିବନାହିଁ; ଜଣେ ମଣିଷପିଲାକୁ ମଣିଷଟିଏ କରି ଗଢ଼ିଆଣିବା ହିଁ ସେହି ଶିକ୍ଷାର ଉଦ୍ଦେଶ୍ୟ ହୋଇ ରହିବ । ତା' ଜୀବନରେ ଈଶ୍ୱରଙ୍କ ପାଇଁ ଓ ତା' ସମାଜ ପାଇଁ ଏକ ସୁସ୍ଥ ମୂଳଦୁଆ ହିଁ ପଡ଼ିବ । ଶିଶୁର ଭିତରେ ଏକ ଜାଗୃତି ଘଟିବ, ତା' ଭିତରଟି ହିଁ ଶିକ୍ଷିତ ହୋଇ ପାରୁଥିବ; ତା' ନହେଲେ ତା' ଉପରେ ଗଦା ଗଦା ଜ୍ଞାନ ଆଣି ଲଦିଦେଲେ ଆଦୌ କିଛି ଫଳ ଫଳିବନାହିଁ । ପିଲାର ଆଗ୍ରହଗୁଡ଼ିକ ବଢ଼ିବ, ସିଏ ଭିତରୁ ପ୍ରେରିତ ହୋଇ ଜୀବନ ଓ ଜଗତ ଆଡ଼କୁ ଆକର୍ଷିତ ହୋଇ ପାରିବ । ତେଣୁ, ପିଲାର ବିଦ୍ୟାଳୟଶିକ୍ଷା ତା'ପାଇ ସର୍ବଦା ସୁଖକର ହିଁ ହୋଇ ରହିଥିବ । ବର୍ତ୍ତମାନ ତ ପିଲାମାନଙ୍କର ସ୍କୁଲରେ ଅତ୍ୟନ୍ତ ମାମୁଲି ଓ ବିରକ୍ତିବ୍ୟଞ୍ଜକ ବିଷୟଗୁଡ଼ିକ ଉପରେ ବେଶୀ ଜୋର୍ ଦିଆଯାଉଛି ଏବଂ ସେଗୁଡ଼ିକୁ ଅତ୍ୟନ୍ତ ଅନିଷ୍ଟକାରୀ ପ୍ରଣାଳୀଦ୍ୱାରା ହିଁ ପିଲାପାଖରେ ଆଣି ପହଞ୍ଚା ଯାଉଛି । ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକଗୁଡ଼ିକୁ ସେମାନେ କେବଳ ବାଧ୍ୟ ହୋଇ ପଢୁଛନ୍ତି । ମାତ୍ର, ବହିଗୁଡ଼ାକୁ ମୁଖସ୍ଥ ନକରାଇ ଯଦି ପିଲାମାନଙ୍କୁ ଏକ ସହଜ ଓ ଗ୍ରହଣଶୀଳ ପରିବେଶ ମଧ୍ୟରେ କାହାଣୀଗୁଡ଼ିକୁ କୁହାଯାଇ ପାରନ୍ତା, ତେବେ ପିଲାମାନେ ଏଡ଼େ ଏଡ଼େ କାନରେ ସେଗୁଡ଼ିକୁ ପ୍ରକୃତରେ ଶୁଣନ୍ତେ ଏବଂ ଶୁଣୁଥିବା କଥାଗୁଡ଼ିକ ସିଧା ସେମାନଙ୍କର ହୃଦୟ ଭିତରକୁ ପ୍ରବେଶ କରି ପାରୁଥାନ୍ତା । ଲକ୍ଷ୍ୟଟି ହାସଲ ହୋଇ ଯାଉଥାନ୍ତା ଓ ବହିଗୁଡ଼ିକ ଯେମିତି ସେମିତି ପଡ଼ି ରହିଥାଆନ୍ତେ । ମୁଁ ମୋ' ନିଜର ପିଲାଦିନ କଥା ମନେ ପକାଇ କହିବି ଯେ ପାଠ୍ୟପୁସ୍ତକର କୌଣସି ଗୋଟିଏ ବିଷୟ ମଧ୍ୟ ମୋ' ଉପରେ କୌଣସି ପ୍ରଭାବ ପକାଇନଥିଲା । ସେଗୁଡ଼ିକ ମୋ'ର ମୁଖସ୍ଥ ହୋଇ ରହିଥିଲା ସତ, ମାତ୍ର ମୋ' ଭିତରେ ଆଦୌ କୌଣସି ଭାବନାର ଉଦ୍ରେକ କରୁନଥିଲା, ମୋ' ଜୀବନରେ କୌଣସି ଗତିଶୀଳତା ସୃଷ୍ଟି କରୁନଥିଲା । ସେତେବେଳେ ଯଦି ଆମ ଶିକ୍ଷକମାନେ କାହାଣୀ ଆକାରରେ ଆମକୁ ସେଗୁଡ଼ିକୁ କହିଥାଆନ୍ତେ, ତେବେ ଆମକୁ ନିଜେ ମଧ୍ୟ ଭାବିବାପାଇଁ କେତେ ସାମଗ୍ରୀ ମିଳି ଯାଇଥାନ୍ତା, ଆମ ହୃଦୟରେ ତାହା ଅବଶ୍ୟ ଗତି ସଞ୍ଚାର କରିଥାନ୍ତା । ମାତ୍ର, ବହିମାନେ କେବଳ ବିରକ୍ତି ହିଁ ସୃଷ୍ଟି କରୁଥିଲେ ଏବଂ ସେହି ନୀରସତାକୁ ଭୁଲିବା ନିମନ୍ତେ ଆମେ କେତେକେତେ ମାମୁଲି ଆନନ୍ଦକୁ ଅନ୍ୱେଷଣ କରିବାରେ ତତ୍ପର ହୋଇ ରହୁଥିଲୁ ।

ଅସଲ ଶିକ୍ଷା ଆଦୌ କୌଣସି ଗୁଳାକୁ ଅନୁସରଣ କରିବନାହିଁ, ପୁନରାବୃତ୍ତି କରିବନାହିଁ, - କୌଣସି ପ୍ରକାରର ଯାନ୍ତ୍ରିକତାରୁ ଦୂରରେ ରହିଥିବ । ତା ଚକ୍ଷୁ ସମ୍ମୁଖରେ

ସବାଆଗ ପିଲାମାନେ ହିଁ ରହିଥିବେ; ଯାହା ସେମାନଙ୍କର ଆତ୍ମାକୁ ସରସ କରି ପାରିବ, ଶିକ୍ଷା ତାହାକୁ ହିଁ ନିଜର ସାମଗ୍ରୀ ଏବଂ ପ୍ରଣାଳୀ ବୋଲି ଗ୍ରହଣ କରିବ । ଏବଂ, ଯାହାକିଛି ସେମାନଙ୍କର ଭାବପ୍ରକ୍ରିୟାରେ ଏକ ଉତ୍ତୋଳନ ଆଣି ଦେଉଥିବ, ତାହାହିଁ ସେମାନଙ୍କର ହୃଦୟଯାଏ ପ୍ରକୃତରେ ପହଞ୍ଚି ପାରିବ । ଅସଲ ଶିକ୍ଷଣ କିମ୍ବା ଅସଲ ଜାଗରଣ କଦାପି ବାହାରୁ କୌଣସି କିଛିକୁ ନେଇ ଲଦିଦେଇ ପାରିବନାହିଁ; କାରଣ, ଜଣେ ଖୁସୀ ହୋଇ ଆପେ ଆଗକୁ ବାହାରି ଆସି ଯାବତୀୟ କଥାକୁ ଗ୍ରହଣ କରିବ, - ତାହାହିଁ ସେଥିରେ ସର୍ବଦା ସର୍ବମୂଳ ସତ୍ୟ ହୋଇ ରହିଥିବ । ଏବଂ, ଜୋର୍ କରି ଲଦି ଦିଆ ଯାଉଥିବା ସାମଗ୍ରୀଗୁଡ଼ିକ ତୁଳନାରେ ଖୁସୀହୋଇ ଗ୍ରହଣ କରାଯାଇ ପାରୁଥିବା ଦ୍ରବ୍ୟଗୁଡ଼ିକର ପ୍ରକୃତରେ ଅଧିକ ତାତ୍ପର୍ଯ୍ୟ ରହିଥିବ । ଅନେକ ସମୟରେ ଏପରି ହୁଏ ଯେ, ଜଣେ ଶିକ୍ଷକ ପିଲାମାନଙ୍କ ନିମନ୍ତେ ଯେଉଁଟିକୁ ବିଶେଷ ଭାବରେ ଆବଶ୍ୟକ ଓ ହିତକାରୀ ବୋଲି ଜାଣନ୍ତି, ତାଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ବି ପିଲାମାନେ ତାହାକୁ ମୋଟେ ଗ୍ରହଣ କରନ୍ତିନାହିଁ ଏବଂ ତାହା ପ୍ରତି ବିତୃଷ୍ଣା ପ୍ରଦର୍ଶନ ମଧ୍ୟ କରନ୍ତି; ସେଥିରେ ଶିକ୍ଷକ ସ୍ୱାଭାବତଃ ବହୁତ ଦୁଃଖୀ ଓ ନିରାଶ ଅନୁଭବ କରନ୍ତି । ଏହିଭଳି ଘଟେ, କାରଣ ଶିକ୍ଷକ ପିଲାମାନଙ୍କ ହୃଦୟର ଉନ୍ମୋଚନଟିକୁ ସମ୍ଭବ କରିନଥାନ୍ତି । ଆଗରୁ ଏକ ମରଣବାଚୀ ଜ୍ଞାନସମଗ୍ର ସତେଅବା ବୋଝ ହୋଇ ହୃଦୟର ଚାରିପାଖରେ ବସି ଯାଇଥାଏ ଏବଂ ହୃଦୟର ସକଳ ଦ୍ୱାରକୁ ବନ୍ଦ କରି ଦେଇଥାଏ । ପିଲାର ଶିକ୍ଷକମାନେ ସେହି ଅସଲ କଥାଟିକୁ ପାଇନଥାନ୍ତି ବୋଲି ଖାଲି ପାଠଜ୍ଞାନଗୁଡ଼ିକର ପୁନରାବୃତ୍ତି କରିବାରେ ଲାଗିଥାନ୍ତି ଓ ତଦ୍ୱାରା ପିଲାଟି ଭିତରକୁ କିଛି ଅବଶ୍ୟ ପ୍ରବେଶ କରିପାରିବ ବୋଲି ବିଶ୍ୱାସ କରୁଥାନ୍ତି । ତେଣୁ, ବହିଗୁଡ଼ିକ ହିଁ ପିଲା ନିମନ୍ତେ ଅସଲ ସାଥୀ ହୋଇ ରହିଥାଆନ୍ତୁ ବୋଲି ପରାମର୍ଶ ଦିଅନ୍ତି ।

## ଶିକ୍ଷକ-ନିର୍ବାଚନ ଓ ପ୍ରଶିକ୍ଷଣ

ଏହି ସବୁକିଛିର ଆଲୋଚନା ପରେ ଅନେକେ ସମ୍ଭବତଃ ପ୍ରଶ୍ନ କରିବେ: ଏସବୁ କଥା ବୁଝିହେଉଛି ସିନା, ମାତ୍ର ଏତେ ଏତେ ସଂଖ୍ୟାରେ ଶିକ୍ଷକ ଆମକୁ ପ୍ରକୃତରେ କେଉଁଠୁ କିପରି ମିଳିବେ, ଯେଉଁମାନଙ୍କର ଆତ୍ମିକ ଜୀବନରେ ଉପଯୁକ୍ତ ଉନ୍ନୟନ ସଂଘଟିତ ହୋଇଥିବ ଓ ଯେଉଁମାନେ ପିଲାମାନଙ୍କର ଆତ୍ମାକୁ ଜାଗ୍ରତ କରି ଆଣିବାରେ ଯଥାର୍ଥରେ ସାହାଯ୍ୟ କରିପାରିବେ ? ହଁ, ଏହି ପ୍ରଶ୍ନଟିର ଅବଶ୍ୟ କିଛି ପ୍ରାସଙ୍ଗିକତା ରହିଥିଲା, ଯେତେବେଳେ କି ମନୁଷ୍ୟମାନେ ଶୋଇ ରହିଥିଲେ ଏବଂ କାଳଟା ମଧ୍ୟ ସେହିପରି ଶୋଇ ରହିଥିବା ପରି ଲାଗୁଥିଲା । କିନ୍ତୁ, ବର୍ତ୍ତମାନ ତ ସମୟ ବଦଳିବାକୁ ଆରମ୍ଭ କଲାଣି । ଏକାଧିକ ସଙ୍କେତରୁ

ଅନୁଭବ କରି ହେଉଛି ଯେ, ଅଧିକରୁ ଅଧିକ ବ୍ୟକ୍ତି ଆତ୍ମିକ ଜାଗରଣର ଗାର ପାଖରେ ଆସି ପହଞ୍ଚି ଗଲେଣି ଏବଂ ଏକ ସମୂହ ହିସାବରେ ସଚେତନ ବି ହେଉଛନ୍ତି । ଅବଶ୍ୟ ଏକଥା ସତ ନୁହେଁ ଯେ, ଆମେ ଆବଶ୍ୟକ କଲା ମାତ୍ରକେ ଆମକୁ ଏହି କେତେ ହଜାର ସଂଖ୍ୟାରେ ଯୋଗ୍ୟ ଶିକ୍ଷକମାନେ ମିଳିଯିବେ । କେତେ ଶହ ମିଳିଯିବା ମଧ୍ୟ କଦାପି ସମ୍ଭବ ହେବନାହିଁ । ମାତ୍ର, ଯେତିକି ଉପଯୁକ୍ତ ଶିକ୍ଷକ ତଥାପି ରହିଛନ୍ତି, ସେମାନଙ୍କୁ ଆମେ କାମରେ ଲଗାଇପାରିବା । ହଁ, ଯେଉଁମାନେ ବାଧ୍ୟତାମୂଳକ ଶିକ୍ଷାର କଥା କହୁଛନ୍ତି, ପିଲାମାନେ ପାଠକୁ ଘୋଷି ମୁଖସ୍ଥ କରନ୍ତୁ ବୋଲି ଇଚ୍ଛା କରୁଛନ୍ତି, ଆମେ ସେମାନଙ୍କୁ ମୋଟେ କାମରେ ଲଗାଇ ପାରିବାନାହିଁ । ଯେଉଁମାନେ ଏଡ଼େ ବଡ଼ ପାଟିରେ ଆମର ବେତନ ବୃଦ୍ଧି ପାଉ ବୋଲି ଦାବୀ କରୁଛନ୍ତି, ସେମାନେ ମଧ୍ୟ ଆମର ଖୁବ୍‌ବେଶୀ କାମରେ ଆସିବେ ନାହିଁ । ଏମାନେ ସମସ୍ତେ ଜାଗରଣରୁ ବଞ୍ଚିତ ହୋଇ ରହିଥିବା ଜଣେ ଜଣେ ବ୍ୟକ୍ତି, - ସେମାନଙ୍କର ହୃଦୟ ପୂରା ଶୂନ୍ୟ ଏବଂ ବରବାଦ ହୋଇ ପଡ଼ିଛି ଏବଂ ସେମାନେ ତ ସେହି ଶୂନ୍ୟସ୍ଥାନ ଗୁଡ଼ିକୁ କେବଳ ରୌପ୍ୟମୁଦ୍ରା ଦେଇ ଭରିହେବ ବୋଲି ବିଶ୍ୱାସ କରୁଛନ୍ତି । ସେହି ଶୂନ୍ୟସ୍ଥାନଗୁଡ଼ିକୁ ସେମାନେ ରୂପା, ଶସ୍ୟ, ପୁଆଳ, ଏବଂ କୁଟା ଦେଇ ଭରିବେ ବୋଲି ବାହାରିଛନ୍ତି । ସେମାନେ ଚିତ୍କାର କରି କହୁଛନ୍ତି ଯେ, ସେମାନେ ପ୍ରଦାନ କରୁଥିବା ଶିକ୍ଷାକୁ ଗୋଟିଏ ଚାଷୀ ଆଦୌ ଗ୍ରହଣ କରି ପାରିବନାହିଁ, କାରଣ ତା' ପାଖରେ ସେମାନଙ୍କ ପରି ଯାନବାହନ ନାହିଁ, ଏଡ଼େ ବଡ଼ ଘରଟିଏ ନାହିଁ ଏବଂ ସିଏ କଦାପି ଆତ୍ମିକ ଜୀବନର ପରିଚର୍ଯ୍ୟା କରିବାକୁ ସମର୍ଥ ହେବନାହିଁ । ସେମାନେ ତ ଜନଗଣଙ୍କ ଉପରେ ମାଲିକ ହୋଇ ବସିବାକୁ ଚାହାନ୍ତି, ଜନଗଣଙ୍କର ପରିକର ହେବାକୁ ସମର୍ଥ ନୁହନ୍ତି । ସେମାନେ ନିଜର ପାଠଗୁଡ଼ିକୁ ନେଇ ଚାଷୀଟି ଉପରେ ବାଧ୍ୟ କରି ଲଦି ଦେବେ ଓ ସେହି ଚାଷୀ ପ୍ରକୃତରେ କେଡ଼େ ଅଯୋଗ୍ୟ ବୋଲି ଦେଖାଇଦେବେ । ମୋ'ର ମନେ ପଡୁଛି, ସର୍ବପ୍ରଥମେ ଯୀଶୁଙ୍କର ନୂତନ ମାର୍ଗଟିକୁ ଗ୍ରହଣ କରିଥିବା ବ୍ୟକ୍ତି ବାରଜଣ କେଉଟ ହିଁ ଥିଲେ ! ଆମେ ଯିଏ ଯେଉଁ ଶକ୍ତିକୁ ନିଜ ଜୀବନରେ ସ୍ୱୀକାର କରୁଛୁ, କେବଳ ତାହାରି ହିଁ ଆମ ଉପରେ କୌଣସି ଶକ୍ତି ରହିଛି । ଆମେ କ'ଣ କେବଳ ବସ୍ତୁଗୁଡ଼ିକୁ ହିଁ ଏକମାତ୍ର ଶକ୍ତିରୂପେ ସ୍ୱୀକାର କରିଛୁ ଓ ତାହାର ବନ୍ଧନରେ ପଡ଼ିଯାଇଛୁ ? କେବଳ ସେହିଗୁଡ଼ିକର ଦାସ ହୋଇ ରହିଛୁ ?

ଜନଗଣଙ୍କର ଶିକ୍ଷକ ହେବାକୁ ଏକ ବ୍ରତରୂପେ ଗ୍ରହଣ କରିବା, - ତାହା ହେଉଛି ଗୋଟିଏ ପବିତ୍ର ଏବଂ ଉତ୍ତୋଳନକାରୀ ଆହ୍ୱାନ । ମାତ୍ର ଏଥିରେ ଅଡ଼ାଇବାଠାରୁ ଚଳାଇବାର ଭାଗଟା ହିଁ ଅନେକ ଅଧିକ । ଥରେ ଭାବି ଦେଖିଲ, ଜନଗଣଙ୍କୁ ଗୋଟାଏ ସୁନାତିଆରି ଗାଡ଼ୀରେ ନେଇ ଯୋଚା ଯାଇଛି; ଏବଂ ଯଦି ଚାଷୀମାନେ ଉଚିତ ଭାବରେ ଶିକ୍ଷିତ ହୋଇଥାନ୍ତେ, ତେବେ ସେମାନେ ନିଜର ଏହି ସ୍ୱର୍ଣ୍ଣଖଚିତ ଜୀବଦ୍ଦଶାକୁ ଦେଖି ହସନ୍ତେ ନା

ସେହି ସୁନା ଯାନ ପାଖରେ ମସ୍ତକନତ କରି ଦିଅନ୍ତେ ? ଏହି ପ୍ରକାରର ଶିକ୍ଷକମାନେ ଆମର ଆଦୌ କୌଣସି କାମରେ ଆସିବନାହିଁ, କାରଣ ଆମର ବିଦ୍ୟାଳୟବ୍ୟବସ୍ଥା କେବଳ ଉପରଦେଖାଣିଆ ଏକ ଯନ୍ତଠାରୁ ଅଧିକ କିଛି ହେଉ ବୋଲି ଯଦି ଆମେ ଇଚ୍ଛା କରୁଥିବା, ତେବେ ସେହି ବିଦ୍ୟାଳୟର ଶିକ୍ଷକକୁ ମଧ୍ୟ ଜନଗଣଙ୍କର ଆତ୍ମିକ ଜୀବନରେ ନେତୃତ୍ୱ ଦେବାଭଳି ଜଣେ ବ୍ୟକ୍ତି ଅବଶ୍ୟ ହୋଇ ରହିବାକୁ ପଡ଼ିବ । ମାତ୍ର, କେତେକ ମୃତ ଜ୍ଞାନର ଅଧିକାରୀ ହୋଇ ସେହି ବ୍ୟକ୍ତି କଦାପି ସେହି ଦାୟିତ୍ୱର ଯୋଗ୍ୟ ହୋଇ ପାରିବନାହିଁ । କାରଣ, ସେହି ମୃତ ଜ୍ଞାନକୁ ତଥାପି ଏକ ଶକ୍ତି ବୋଲି କୁହାଗଲେ ମଧ୍ୟ ତାହା ଆମର କୃଷକମାନଙ୍କୁ ମୋଟେ ଉଚିତ ଭାବରେ ଚିହ୍ନିବାକୁ ସମର୍ଥ ହେବନାହିଁ ଓ ସେମାନଙ୍କ ପାଇଁ ଏକ ଶକ୍ତିରୂପେ କାର୍ଯ୍ୟ ମଧ୍ୟ କରି ପାରିବନାହିଁ । ମାତ୍ର, ଯଦି ଶବ୍ଦଗୁଡ଼ିକ ଜୀବନ୍ତ ହୋଇଥିବେ ଓ ତା'ସହିତ ଅନ୍ତର ଭିତରେ ଯଦି ସତ୍ୟଲାଗି ଏକ ଜାଗରଣ ଘଟିଥିବ,ତେବେ ତାହା ଯେ କେବଳ ଏକ ବିଦ୍ୟୁଦ୍‌ସ୍ପର୍ଶ ଭଳି କାର୍ଯ୍ୟ କରିବ ତା ନୁହେଁ, ତାହା ସଂପୃକ୍ତ ମଣିଷଟିକୁ ଉତ୍ତୋଳିତ ବି କରିଆଣିବ, ତାହାର ସକଳ ବନ୍ଧନକୁ ଛିଡ଼ାଇଦେବ ଏବଂ ନୂତନ ଜୀବନର ସଞ୍ଚାର କରି ଆଣିବ ।

ମାତ୍ର, ଏହିସବୁ ଯୋଗ୍ୟତା ରହିଥିବା ଶିକ୍ଷକମାନଙ୍କୁ ଏକାବେଳେକେ ଏକ ନୂତନ ପ୍ରକାରେ ବାଛିବାକୁ ପଡ଼ିବ । ଏମାନେ ବୟସରେ ପରିପକ୍ୱ ହୋଇଥିବେ; ଶିକ୍ଷକ ହେବାପାଇଁ ଆବଶ୍ୟକ ସାଧାରଣ ପ୍ରଶିକ୍ଷଣକୁ ସମାପ୍ତ କରିଥିବେ, ଗୋଟିଏ ଆତ୍ମା କିପରି ଆଉ ଗୋଟିଏ ଆତ୍ମାକୁ ପ୍ରଭାବିତ କରାଏ, ସେକଥା ସେମାନଙ୍କୁ ଜଣାଥିବ ଏବଂ, ଜଣେ ଶିକ୍ଷକ ହେବା ସକାଶେ ସେମାନଙ୍କର ଏକ ରୁଚି ରହିଛି କି ନାହିଁ, ସେଥିଲାଗି ସେମାନେ ଭିତରୁ ଆହ୍ୱାନଟିଏ ଅନୁଭବ କରିଛନ୍ତି କି ନାହିଁ, ସେମାନେ ସ୍ୱୟଂ ତାହାର ନିଷ୍ପତ୍ତି ମଧ୍ୟ କରିଥିବେ । ସେମାନେ ଅତ୍ୟନ୍ତ ଉତ୍ତମରୂପେ ଜାଣିଥିବେ ଯେ, ପ୍ରତ୍ୟେକ ବ୍ୟକ୍ତି ଜଣେ ଶିକ୍ଷକ ହେବା ସକାଶେ ଆଦୌ ତିଆରି ହୋଇନଥାଏ, ଅବଶ୍ୟ ଔପଚାରିକ ପାଠଗୁଡ଼ିକୁ ପଢ଼ିଥିଲେ ମଧ୍ୟ ସିଏ ଶିକ୍ଷକ ହେବାଲାଗି ତଆରି ହୋଇନଥାଏ । ଜଣେ ବ୍ୟକ୍ତି ନିଜ ଭିତରୁ ହିଁ ଶିକ୍ଷକ ହେବ ବୋଲି ଜୀବନ୍ତ ଭାବରେ ଅନୁଭବ କରିପାରୁଥିବା ଉଚିତ ଏବଂ ଅନ୍ୟମାନଙ୍କ ସହିତ ଯାବତୀୟ ପ୍ରକାରେ ଡୋର ଲଗାଇ ପାରିବା ନିମନ୍ତେ ତା' ଭିତରେ ବିଶେଷ ପ୍ରତିଭାଟିଏ ଏବଂ ଯୋଗ୍ୟତାମାନ ରହିଥିବା ମଧ୍ୟ ଉଚିତ । ପ୍ରଥମ ଯୋଗ୍ୟତାଟି ଅନେକଙ୍କର ରହିଥାଏ ସତ, ମାତ୍ର ଶେଷ ଯୋଗ୍ୟତାଟି ନଥାଏ; ଏବଂ, ଆଉକେତେକଙ୍କର ଶେଷଟି ଥାଏ, ମାତ୍ର ପ୍ରଥମଟି ନଥାଏ । ଓ ଉଭୟେ ସମାନଭାବରେ ଶିକ୍ଷକ ହେବାଲାଗି ଅଯୋଗ୍ୟ ବୋଲି ପ୍ରମାଣିତ ହୁଅନ୍ତି । ଏବଂ, ଏକ ଅନୁରୂପ ଆଗ୍ରହ ହେଉଛି ଏକ ତୃତୀୟ କଥା ଏବଂ ସେଇଟିର ଅଭାବ ରହିଥିଲେ ମଧ୍ୟ କିଛି ହୋଇ ପାରେନାହିଁ । ବର୍ତ୍ତମାନ ପ୍ରଶିକ୍ଷଣ ବୋଲି ଔପଚାରିକ

ଭାବରେ ଯେତିକି ଉପଲବ୍ଧ ହେଉଛି, ସେତିକି ମିଳିଗଲେ ଧାରଣା ହୋଇଯାଏ ଯେ ଏକ ସାଧାରଣ ସାମର୍ଥ୍ୟ ରହିଥିବା ଯେକୌଣସି ବ୍ୟକ୍ତି ବେଶ୍ ଜଣେ ଶିକ୍ଷକ ଅବଶ୍ୟ ହୋଇପାରିବ । ସେହି ପ୍ରଶିକ୍ଷଣ କେବଳ ଏହି ଅଭିପ୍ରାୟରେ ଦିଆ ଯାଇଥାଏ ଯେ,ତାହାକୁ ଲାଭ କରି ଜଣେ ବ୍ୟକ୍ତି ଖାଲି ସ୍କୁଲଶିକ୍ଷକଟିଏ ହିଁ ହୋଇ ପାରିବ ଏବଂ ଆଉ କିଛି ହୋଇ ପାରିବନାହିଁ । ତେଣୁ, ପ୍ରଶିକ୍ଷଣ-ବିଦ୍ୟାଳୟର ଜଣେ ଶିକ୍ଷକ ଶିକ୍ଷାର୍ଥୀମାନଙ୍କୁ କେବଳ ସେହିଗୁଡ଼ିକର ହିଁ ଶିକ୍ଷା ଦିଏ । ମାତ୍ର, ଜଣେ ଜଣେ ମଣିଷ ହିସାବରେ ଶିକ୍ଷାର୍ଥୀମାନଙ୍କର ଯେଉଁସବୁ ଯୋଗ୍ୟତା ଅର୍ଜନ କରିବା ଏକାନ୍ତ ଆବଶ୍ୟକ, ସେମାନେ ସେସବୁ କିଛି ପାଇନଥାନ୍ତି । ଆସନ୍ନ ପରୀକ୍ଷାଟି ହିଁ ସେମାନଙ୍କର ଆଖି ଆଗରେ ଏକମାତ୍ର ଲକ୍ଷ୍ୟ ହୋଇ ରହେ । ଏହି କାରଣରୁ ହିଁ ପ୍ରଶିକ୍ଷଣ ମଧ୍ୟରେ ଯଥାର୍ଥରେ ଅସଲ ଜୀବନଟି ନଥାଏ ଏବଂ ତାହାକୁ ଶେଷ କରି ଆମ ଶିକ୍ଷାର୍ଥୀମାନେ ମୃତପ୍ରାୟ ହୋଇ ସେଠାରୁ ବାହାରନ୍ତି । ଜନଗଣଙ୍କ ପ୍ରତି ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ଭିତରେ କିଏ ଯେପରି ସତେଅବା ନାକ ଟେକି ରହିଥାଏ । ଆଉ ଯେପରି ଏହିସବୁ ପ୍ରମାଦ ଭିତରେ ପଡ଼ିବାକୁ ନହେବ, ସେଥିଲାଗି ମୁଁ ପ୍ରସ୍ତାବ କରୁଛି ଯେ, ଆମର ପ୍ରଶିକ୍ଷଣ-ବିଦ୍ୟାଳୟ ଗୁଡ଼ିକୁ ଗୋଟିଏ ଗୋଟିଏ ଗଣବିଦ୍ୟାଳୟର ଢାଞ୍ଚାରେ ତିଆରି କରାଯାଉ - ଏକ ଜାଗୃତି ଘଟାଇବା ହିଁ ତାହାର ସର୍ବପ୍ରଧାନ ଉଦ୍ଦେଶ୍ୟ ହୋଇ ରହୁ - ଜନଗଣର ଜୀବନରେ ଏକ ଉଚିତ ସନ୍ଦୀପନ ସମ୍ଭବ କରୁ, ସେଠାରେ ଜନ୍ମଭୂମି ପ୍ରତି ଭଲ ପାଇବାର ବିଶେଷ ଗୁଣଟିକୁ ତରୁଣମାନଙ୍କୁ ଶିକ୍ଷା ଦିଆଯାଉ । ସେଠାରେ ଶିକ୍ଷା ପାଉଥିବା ଶିକ୍ଷାର୍ଥୀମାନେ ଅତୀତର ଶିକ୍ଷାବିତ୍‌ମାନଙ୍କ ସହିତ ହୁଏତ ପରିଚିତ ନହୁଅନ୍ତୁ, ମାତ୍ର ନିଜ ଦେଶର ଓ ଭାଷାର କବି ଏବଂ ଲେଖକମାନଙ୍କର କୃତି ସହିତ ଅବଶ୍ୟ ଅବଗତ ହୁଅନ୍ତୁ । କାରଣ, ଆମର ସର୍ବପ୍ରଥମେ ଏହିମାନଙ୍କୁ ଜାଣିବା ଉଚିତ, ତା'ପରେ ଯାଇ ସେହି ଅନ୍ୟମାନଙ୍କୁ । ଆଗ ଘରଭିତରେ ପ୍ରବେଶ କରନ୍ତୁ ଓ ତା'ପରେ ଯାଇ ବାହାରକୁ ଯାଆନ୍ତୁ । ସେଠାରେ ଆମ ଦେଶର ପୌରାଣିକ କାହାଣୀ ଓ ଇତିହାସ କୁହାଯାଉ । କାରଣ, ଜଣେ ସ୍କୁଲଶିକ୍ଷକ ପ୍ରକୃତରେ ପ୍ରଥମେ ଏହିଗୁଡ଼ିକୁ ହିଁ ଭଲ କରି ଜାଣିବା ଉଚିତ ଏବଂ ଏହିଗୁଡ଼ିକ ପ୍ରତି ତା'ର ଶ୍ରଦ୍ଧା ମଧ୍ୟ ରହିଥିବା ଉଚିତ ।

ପୁନଶ୍ଚ, ଶିକ୍ଷାର୍ଥୀମାନଙ୍କୁ ମଧ୍ୟ ଏହି ଶିକ୍ଷା ଲାଭକରିବା ସକାଶେ ଖୁବ୍‌ବେଶୀ ପଇସା ଦେବାକୁ ପଡ଼ିବା ଉଚିତ ହେବନାହିଁ, - ସେମାନେ ବହି ତଥା ଅନ୍ୟାନ୍ୟ ସରଞ୍ଜାମ ନିମନ୍ତେ ବି କୌଣସି ଅର୍ଥବ୍ୟୟରେ ପଡ଼ିବେନାହିଁ, ସେମାନେ ସେହି ବିଦ୍ୟାଳୟରେ ହିଁ ରହିବେ । ଖାଇବା ଓ ରହିବା ଖର୍ଚ୍ଚ ଯଥାସମ୍ଭବ କମ୍ ହୋଇଥିବ । ଅର୍ଥାତ୍, ଛଅମାସର ସମ୍ପୂର୍ଣ୍ଣ ଖର୍ଚ୍ଚ ହିସାବରେ ସେମାନଙ୍କୁ ପଚିଶିଟି ମୁଦ୍ରାରୁ ଯେପରି ଅଧିକ ଦେବାକୁ ନପଡ଼େ, ସେଥିପାଇଁ ଦୃଷ୍ଟି ଦେବାକୁ ପଡ଼ିବ । ସେମାନେ ପ୍ରଶିକ୍ଷଣ ଗ୍ରହଣ କରିବାକୁ ଅନୁଷ୍ଠାନକୁ

ଆସିବା ସମୟରେ ମଧ୍ୟ ସେମାନଙ୍କର ଯୋଗ୍ୟତାର ପରୀକ୍ଷା କରିବାକୁ ଯାଇ ସେମାନେ ଆଗରୁ କ'ଣସବୁ ବିଷୟଜ୍ଞାନ ଅର୍ଜନ କରିଛନ୍ତି, ସେମାନଙ୍କୁ ସେ ବିଷୟରେ ବେଶୀ କିଛି ପଚରା ଯିବନାହିଁ । ସେମାନଙ୍କର କେବଳ ଏକ ସାଧାରଣ ବୋଧଶକ୍ତି ରହିଥିବ ଓ ଗ୍ରହଣଶୀଳତାର ସାମର୍ଥ୍ୟ ମଧ୍ୟ ଥିବ, - ଏତିକି ହିଁ ଯଥେଷ୍ଟ ହେବା ଉଚିତ । ଶିକ୍ଷାର୍ଥୀମାନଙ୍କର ବୟସ ୧୮ ରୁ ୨୫ ବର୍ଷଯାଏ ହେବ । ହଁ, କୌଣସି ପ୍ରବେଶିକା ପରୀକ୍ଷା ମଧ୍ୟ ହେବନାହିଁ, ଯାହାପାଇଁ ପ୍ରସ୍ତୁତ ହେବାକୁ ସେମାନଙ୍କୁ ଆଗରୁ ରାତି ଉଜାଗର ହୋଇ ବହି ପଢ଼ିବାକୁ ପଡ଼ିଥିବ । ବସ୍ତୁତଃ, ଏକ ସାଧାରଣ କଥାବାର୍ତ୍ତାରେ ହିଁ ନିର୍ବାଚନର କାର୍ଯ୍ୟଟି ହୋଇଯିବା ଉଚିତ ହେବ । ଏହି କଥାବାର୍ତ୍ତା ଦ୍ୱାରା ହିଁ ଜଣେ ଅଭିଜ୍ଞ ବ୍ୟକ୍ତି ସଂପୃକ୍ତ ପ୍ରାର୍ଥୀର ଯୋଗ୍ୟତା ଏବଂ ରୁଚି ବିଷୟରେ ବହୁତ କିଛି ଅନୁମାନ କରିନେଇ ପାରିବେ । ଏବେ ତ ଗମ୍ଭୀର ଭୟଉଦ୍ରେକକାରୀ ଏଡ଼େ ମୁହଁ କରି ପରୀକ୍ଷକମାନେ ଏକ ଗୋଟାସୁଦ୍ଧା ଉତ୍ସାହ ନଥିବା ପରିବେଶରେ ପରୀକ୍ଷା ନେଉଛନ୍ତି, - ଯାହାକି ନିର୍ବାଚନର ଅସଲ ଉଦ୍ଦେଶ୍ୟ ଏବଂ ପ୍ରଣାଳୀଟିକୁ ନଷ୍ଟ କରି ପକାଉଛି ।

## ଶିକ୍ଷାଳୟର ବାହାରପଟ

ଗୋଟିଏ ଲୋକସମୂହ ଯେତେବେଳେ ପ୍ରତିବେଶୀ ଆଉଗୋଟିଏ ସମୂହଦ୍ୱାରା ଶାସିତ ଓ ଚାଳିତ ହେଉଥାଏ, ସେତେବେଳେ ତାହାକୁ ଦ୍ୱିତୀୟଟିର ଜୁଆଳି ତଳେ ବାଧ୍ୟ ହୋଇ ରହିବାକୁ ପଡ଼ିଥାଏ । ଠିକ୍ ସେହିପରି ଭାବରେ ସେହି ଗୋଟିଏ ସମୂହ ଭିତରେ ମଧ୍ୟ ନିଜ ହାତରେ ଶାସନର ଲଗାମ ଧରିଥିବା ନିଜ ଲୋକମାନେ ମଧ୍ୟ ସତେଅବା ନିଜ ସମୂହ ବାହାରର ଆଉ କୌଣସି ଅଭିପ୍ରାୟ ଦ୍ୱାରା ପରିଚାଳିତ ହୋଇ ନିଜ ସମୂହଟିର ଆତ୍ମା ତଥା ହୃଦୟଟିକୁ ବୁଝି ପାରନ୍ତିନାହିଁ ଏବଂ ଏକ ଅଲଗା ସମୂହ ହିସାବରେ ସବୁକିଛି କରିବାରେ ଲାଗିଥାନ୍ତି, ସେତେବେଳେ ସେହି ସମୂହଟି କ୍ରମେ ଅଧୋଗତି ଆଡ଼କୁ ଗତି କରିବାକୁ ଆରମ୍ଭ କରିଥାଏ । ନ୍ୟାୟତଃ ନିଜର ସ୍ୱକୀୟ ପଦ୍ଧତିଗୁଡ଼ିକ ଅନୁସାରେ ହିଁ ଏକ ସମୂହର ଯାବତୀୟ ବିକାଶ ସୁଷ୍ଠ ଭାବରେ ହୋଇଥାଏ । ମାତ୍ର ସେହି ନିୟମ ତଥା ପଦ୍ଧତିଗୁଡ଼ିକ ସହିତ ଶାସନ କରୁଥିବା କର୍ତ୍ତାମାନେ ଯଦି ପରିଚିତ ନଥାନ୍ତି, ଅଥବା ନିଜ ସମୂହର ମୁଖ୍ୟ ଜୀବନନାଳୀ ଗୁଡ଼ିକୁ ସେମାନେ ଭୁଲ୍ ଭାବରେ ବୁଝିଥାନ୍ତି, ତେବେ ସେହି କ୍ଷେତ୍ରରେ ବହୁତକିଛି ବିଗିଡ଼ିଯାଏ ଏବଂ ବହୁତ କିଛି ଅଟକି ଯାଇଥାଏ । ଆମର ଏହି ଦେଶ ଓ ଏହି ସମୂହଟିର ଜୀବନକ୍ଷେତ୍ରରେ ଭଲ ପାଇବା ହେଉଛି ଅସଲ ବଳ, ଯାହା ନିରନ୍ତର କ୍ରିୟାଶୀଳ ହୋଇ ଆମକୁ ପରସ୍ପର ସହିତ ଯୋଡ଼ି ରଖିଛି । ଏବଂ, ମୁକ୍ତି ହେଉଛି ସେହି ଭଲପାଇବାର ମୂଳ ଉପାଦାନ । ତେଣୁ, ଯଦି ପ୍ରାଚୀନ ରୋମ୍‌ର ଶାସନପଦ୍ଧତିରେ ଆମକୁ କିଏ ଶାସନ କରିବାକୁ ବସିବ, ତେବେ

ଆମେ ଯେ କି କଷଣରେ ଯାଇ ପଡ଼ିବା, ସେକଥା ଖୁବ୍ ସହଜରେ ନିଶ୍ଚୟ ବୁଝି ହେଉଥିବ । ଆମକୁ ବାଧ୍ୟ କରା ହେଉଥିବ ଏବଂ ବନ୍ଧନ ଭିତରେ ପକାଇ ଦିଆଯିବ । ଭଲ ପାଇବା ହେଉଛି ଯେ ଆମ ଏହି ଭୂମିଟିର ଅସଲ ପ୍ରାଣ ଓ ଅସଲ ଉପାଦାନ, ପ୍ରମାଣ ପାଇଲେ ଯାଇ ସବୁକିଛି ବୁଝି ପାରିବେ ବୋଲି ଅଡ଼ି ବସିଥିବା ସେହି ଶାସକମାନଙ୍କୁ ପ୍ରକୃତରେ କିଏ ସେକଥା ବୁଝାଇ ପାରିବ ? ମାତ୍ର, ଆମେ ତାହାହିଁ ଅନୁଭବ କରିଛୁ ଏବଂ ଆମ ସାମୂହିକ ଜୀବନର ଯାବତୀୟ ଅବସରରେ ସେହି ଅନୁଭବର ସତ୍ୟତାକୁ ହିଁ ଅନୁଭବ କରି ଆସିଛୁ । ସମାଜକୁ ଭଲ ପାଇବା ଓ ସମୂହର ଜୀବନଟି ସକାଶେ ନିଜକୁ ଉତ୍ସର୍ଗୀକୃତ କରି ରଖିବା, - ଏହି ଦୁଇଟିଯାକ ହେଉଛି ଆମର ମହାର୍ଘତମ ଉତ୍ତରାଧିକାର ଏବଂ, ଯେତେବେଳେ ଏହି ସମୂହର ନିର୍ମାଣକର୍ତ୍ତାମାନେ ସେହି ଅସଲ ସନ୍ତକଟିକୁ ପଥ ଉପରୁ କାଢ଼ି ଫୋପାଡ଼ି ଦିଅନ୍ତି, ତେବେ ଜୀବନ ଦୁର୍ବଳ ହୋଇ ହଲିବାକୁ ଆରମ୍ଭ କରିବ । କର୍ତ୍ତାମାନେ ସବୁବେଳେ ସେହି ଭଲ ପାଇବା ଓ ସ୍ୱାଧୀନତାବୋଧକୁ ଭୟ କରି ଆସିଛନ୍ତି । ଏକ ଉଦାହରଣ ସ୍ୱରୂପ, ଯେତେବେଳେ ଆମର ଏଠାରେ ଚାଷୀମାନେ ନିଜର ଏକ ସମିତି ଗଠନ କଲେ, ସେତେବେଳେ ଭୂମିମାଲିକମାନେ ଭୟ କରିବାକୁ ଆରମ୍ଭ କଲେ, ସତେ ଯେପରି ଚାଷୀମାନେ ଆସି ସେମାନଙ୍କୁ ପୂରା ଗିଳି ପକାଇବେ । କର୍ତ୍ତାମାନେ ସର୍ବଦା ଭାବି ଆସିଛନ୍ତି ଯେ, ସେମାନେ ସାଧାରଣ ମନୁଷ୍ୟମାନଙ୍କୁ ଶାସନଦ୍ୱାରା ବାଧ୍ୟ କରି ରଖିଛନ୍ତି ବୋଲି ସମାଜନାମକ ଯନ୍ତ୍ରଟି ଆଦୌ ଚାଲି ପାରୁଛି । ଭଲ ପାଇବାର ପ୍ରଚ୍ଛନ୍ନ ଶକ୍ତିଟିକୁ ସେମାନେ କେଉଁଭଳି ବା ବୁଝିଥାନ୍ତେ ? ଭଲ ପାଇବା ଏବଂ ସ୍ୱାଧୀନ ଭାବରେ ଜୀବନ ବଞ୍ଚିବାର କ୍ଷେତ୍ରରେ ବାଧବାଧକତା ଆଦୌ କୌଣସି କାମ ଦିଏନାହିଁ ।

ତେଣୁ, ଆମେ ପ୍ରସ୍ତାବ କରୁଛୁ ଯେ, - ଏବଂ ସାର୍ବଜନୀନ ବିଦ୍ୟାଳୟ ତରଫରୁ ହିଁ ସେହି ପ୍ରସ୍ତାବ କରୁଛୁ, - ଯେଉଁମାନେ ଭଲ ପାଇବାକୁ ହିଁ ମୂଳ ବୋଲି ଗ୍ରହଣ କରି ତାହାରିଦ୍ୱାରା ପରିଚାଳିତ ହେଉଛନ୍ତି, ସେମାନଙ୍କୁ ସ୍ୱାଧୀନତା ମିଳୁ; ଏବଂ, ଯେଉଁମାନେ ଏହି ମାର୍ଗରେ ନାହାନ୍ତି, ସେହିମାନଙ୍କୁ ହିଁ ବାଧ୍ୟ କରାଯାଉ । ଏହି ବିଦ୍ୟାଳୟର ଶିକ୍ଷକମାନଙ୍କୁ କିଏ ନିଯୁକ୍ତି ଦେବ, - ବର୍ତ୍ତମାନ ସେହି ପ୍ରଶ୍ନଟିର ଉତ୍ତର ଦେବାକୁ ଚେଷ୍ଟା କରାଯାଉ । ବର୍ତ୍ତମାନ ପାଦ୍ରୀ ଓ ଗ୍ରାମାଞ୍ଚଳର ପଦସ୍ଥମାନେ ସେହି କାର୍ଯ୍ୟଟିକୁ କରୁଛନ୍ତି, ଏବଂ ଏଥିରେ ବହୁତ ଅନାଚରଣ ଆସି ପଶିଯାଉଛି । ପାରିବାରିକତା ଏବଂ ପ୍ରିୟାପ୍ରୀତି-ତୋଷଣର ବି କିଛି ଭୂମିକା ପଶିଯାଉଛି । ଏବଂ, ଆହୁରି ଅଧିକ ମନ୍ଦ ରୀତିଟି ହେଉଛି ଯେ, ନିଯୁକ୍ତିକାରୀମାନେ ସମୂହର ଚାହିଦାଗୁଡ଼ିକୁ ନଦେଖି ନିଜ ଚାହିଦା ଉପରେ ହୁଏତ ଅଧିକ ଦୃଷ୍ଟି ରଖୁଛନ୍ତି । ଏହା ଫଳରେ ଶିକ୍ଷକ ଓ ଶିକ୍ଷା ଉଭୟ କ୍ଷେତ୍ରରେ ହିଁ ବହୁତ ଉଦାସୀନତା

ଆସି ଦେଖାଦେଉଛି । ଏଠାରେ ବରଂ ଏପରି ହେବା ଆବଶ୍ୟକ ଯେ, ଶିକ୍ଷକମାନେ ପ୍ରକୃତରେ ଯେଉଁମାନଙ୍କର କାମରେ ଲାଗୁଛନ୍ତି,ଯେଉଁମାନେ ସେମାନଙ୍କୁ ବେତନ ଦେଉଛନ୍ତି ଓ କେତେ ବିଶ୍ୱାସ ସହିତ ନିଜର ପିଲାମାନଙ୍କୁ ନେଇ ସେମାନଙ୍କର ହେପାଜତରେ ଛାଡୁଛନ୍ତି, ଶିକ୍ଷକ ବାଛିବା ଓ ସେମାନଙ୍କୁ ନିଯୁକ୍ତି ଦେବାର କ୍ଷେତ୍ରରେ ସେହିମାନଙ୍କର ହିଁ ସମସ୍ତଙ୍କ ଠାରୁ ଅଧିକ ଅଧିକାର ରହିବା ଉଚିତ । ତେଣୁ, ଆମର ବିଚାର ହେଉଛି, ଗୋଟିଏ ସମୂହର ପିତାମାତାମାନେ, ଯେଉଁମାନେ ଏହିସବୁ ସାର୍ବଜନୀନ ବିଦ୍ୟାଳୟ ଦ୍ୱାରା ଉପକୃତ ହେବେ, ସେହିମାନେ ହିଁ ବିଦ୍ୟାଳୟର ଅଧକ୍ଷ ଏବଂ ଶିକ୍ଷକମାନଙ୍କୁ ବାଛିବେ । ଏବଂ,ଯେଉଁମାନଙ୍କର ବିଦ୍ୟାଳୟକୁ ଯିବା ବୟସର କୌଣସି ପିଲା ନଥିବେ କିମ୍ବା ଯେଉଁମାନେ ନିଜ ପିଲାଙ୍କର ଶିକ୍ଷା ନିମନ୍ତେ କୌଣସି ଘରୋଇ ବ୍ୟବସ୍ଥା କରି ପାରୁଥିବେ, ନିର୍ବାଚନର ପ୍ରକ୍ରିୟାରେ ସେମାନଙ୍କର କୌଣସି ଭାଗ ରହିବନାହିଁ ।

ଏହି ଶିକ୍ଷକମାନଙ୍କର ବେତନ କିଏ ଦେବ ଏବଂ ସେଥିପାଇଁ କେଉଁ ସୂତ୍ରରୁ ଅର୍ଥ ଆସିବ, ବର୍ତ୍ତମାନ ଏହି ପରବର୍ତ୍ତୀ ପ୍ରଶ୍ନଟିର ଆଲୋଚନା କରାଯିବ । ଶିକ୍ଷକମାନେ ଜଣେ ଜଣେ ବେତନଭୋଗୀ କର୍ମଚାରୀ ହେବେ ବୋଲି ଆମେ ଆଦୌ ବିଚାର କରିନାହୁଁ । ସେମାନେ ସାଧାରଣ ଲୋକଙ୍କ ପରି ହୋଇ ହିଁ ରହିବେ । ମାତ୍ର, ସେମାନଙ୍କର ଆତ୍ମିକ ବରିଷ୍ଠତା ତଥା ଜ୍ଞାନଗତ ପରିଚୟ ହିଁ ସେମାନଙ୍କୁ ଅବଶିଷ୍ଟ ସମସ୍ତଙ୍କ ଭିତରେ ମଧ୍ୟ ତଥାପି ଅଲଗା କରି ଚିହ୍ନାଇ ଦେଉଥିବ । ଡେନ୍‌ମାର୍କ୍ ପରି ଆମର ଏହି ସାନ ଦେଶଟି କଦାପି ବେତନଭୋଗୀ ମାନଙ୍କର ଏହି ବାହିନୀଟିକୁ ପଇସା ଦେଇ ପୋଷି ପାରିବନାହିଁ । ଏଥି ସହିତ ପୁଣି ପେନ୍‌ସନ୍ ଓ ବିଧବାଭତ୍ତା ଇତ୍ୟାଦି ଅନ୍ୟାନ୍ୟ ବିଷୟ ମଧ୍ୟ ରହିଛି । ଆମର ବର୍ତ୍ତମାନର ଶିକ୍ଷକମାନଙ୍କର ସନ୍ତୋଷବିଧାନ କରିବା ଯେ ଏତେ କଷ୍ଟକର ହୋଇ ପଡୁଛି, ତାହାର କାରଣ ହେଉଛି ଯେ, ଏହାର ପଶ୍ଚାତରେ ରହିଥିବା ମୂଳ ବୁଦ୍ଧିଟି ବାହାରୁ ଏଠାକୁ ଆସିଛି । ଅତ୍ୟନ୍ତ ବିଚିତ୍ର କଥା ଯେ ସରକାରୀ ବେତନଭୋଗୀ ଯେଉଁ ଶିକ୍ଷକମାନେ ଅପେକ୍ଷାକୃତ ଅଧିକ ଭଲ ଅବସ୍ଥାରେ ଅଛନ୍ତି, ସେମାନେ ସବୁଥିରେ ଅଧିକ ବଡ଼ପାଟିରେ ଅଭିଯୋଗ କରୁଛନ୍ତି । ଆମର ନୂଆ ପ୍ରଶିକ୍ଷଣ-ପଦ୍ଧତି ଅନୁସାରେ ଶିକ୍ଷକମାନଙ୍କୁ କୌଣସି ପରୀକ୍ଷା ଦେବାର ବୋଝ ବହନ କରିବାକୁ ପଡୁନାହିଁ । ପ୍ରଶିକ୍ଷଣକାଳର ଦୁଇଟି ବର୍ଷ ସେମାନଙ୍କର ଅତ୍ୟନ୍ତ ଖୁସୀରେ କଟିଛି ଏବଂ ସେମାନଙ୍କର ଭିତରକୁ ସେମାନେ ବାଟଟିଏ ମଧ୍ୟ ପାଇ ଯାଇଛନ୍ତି । ଏହିସବୁ ଅଧିକା ଲାଭ ଦୃଷ୍ଟିରୁ, ଅପେକ୍ଷାକୃତ ଅଳ୍ପ ବେତନରେ ସେମାନଙ୍କର ସନ୍ତୁଷ୍ଟ ହୋଇ ରହିବାପାଇଁ ଏକ ବଡ଼ କାରଣ ରହିଛି । ଆମର ଏହି ଶିକ୍ଷକମାନେ ବିଦ୍ୟାଳୟରେ ହିଁ ରହିବେ, ସେମାନଙ୍କ ପାଖରେ କିଛି ଭୂମି ମଧ୍ୟ ରହିବ ମାତ୍ର ବେତନ

ହିସାବରେ ମାସିକ କୌଣସି ନିର୍ଦ୍ଦିଷ୍ଟ ପରିମାଣ ରହିବନାହିଁ । ବିଦ୍ୟାଳୟ ଖରାମାସରେ ଚାଲିବ ଏବଂ ଶୀତମାସରେ ଚାଲିବ । ସବା ତଳ ଶ୍ରେଣୀ ଖରାମାସେ ବସିବ, ଏଥିରେ ୧୦ ରୁ ୧୨ ଯାଏ ବୟସର ପିଲାମାନେ ରହିବେ ଓ ସବା ଉପର ଶ୍ରେଣୀରେ ୧୨ ରୁ ୧୪ ବର୍ଷର ପିଲା ଥିବେ । ଏଇଟି ଶୀତମାସରେ ଚାଲିବ । ଖରାମାସର ଦୈନିକ ଚାରିଘଣ୍ଟା କରି ପୂର୍ବାହ୍ନରେ ବସିବ ଓ ଶୀତମାସର ବିଦ୍ୟାଳୟ ପ୍ରତ୍ୟହ ଛଅ ଘଣ୍ଟା (ପୂର୍ବାହ୍ନରେ ତିନି ଘଣ୍ଟା ଏବଂ ଅପରାହ୍ନରେ ତିନି ଘଣ୍ଟା) ପାଇଁ ବସିବ । ଶିକ୍ଷକଙ୍କର ସମ୍ମତି ବିନା କେହି ଶ୍ରେଣୀରେ ଅନୁପସ୍ଥିତ ରହିବନାହିଁ ଓ ରହିଲେ କଠୋର ଶାସ୍ତି ପାଇବ । ଖରାମାସ ସ୍କୁଲ ପାଇଁ ପ୍ରତ୍ୟେକ ପିଲା ଦୁଇ ମୁଦ୍ରା ଓ ଶୀତ ସ୍କୁଲ ପାଇଁ ପାଞ୍ଚ ମୁଦ୍ରା ବେତନ ଦେବ । ଯଦି ପିତାମାତାଙ୍କର ସେଥିପାଇଁ ସାମର୍ଥ୍ୟ ନଥିବ, ତେବେ ତାହା ଗ୍ରାମସମୂହଠାରୁ ଆଦାୟ ହେବ । ସ୍କୁଲଗୃହର ମରାମତି ଓ ରକ୍ଷଣାବେକ୍ଷଣର ଦାୟିତ୍ୱ ମଧ୍ୟ ସମୂହ ବହନ କରିବ ।

ଏହିସବୁ ବିଦ୍ୟାଳୟର ପରିଦର୍ଶକ କିଏ ବା କେଉଁମାନେ ହେବେ ? ଯାହାର ପିଲା ସେଠାରେ ପଢୁଥିବେ, ସେହି ଅଭିଭାବକମାନଙ୍କୁ ହିଁ ସର୍ବପ୍ରଥମେ ପରିଦର୍ଶକ ବୋଲି ଗ୍ରହଣ କରାଯିବ । ଆଉ ଅନ୍ୟ କାହାକୁ ପରିଦର୍ଶକ ଭାବରେ ଗ୍ରହଣ କରିବା ଆଦୌ ଉଚିତ ହେବନାହିଁ । ଏବଂ, ଏହିସବୁ ବିଦ୍ୟାଳୟରେ କେଉଁସବୁ ବିଷୟ ପଢ଼ାଯିବ ? ତଳ ଶ୍ରେଣୀରେ ଝିଅ ଓ ପୁଅ ଏକାଠି ପଢ଼ିବେ ଓ ସେମାନଙ୍କୁ ବାଇବେଲ୍‌ରୁ କାହାଣୀମାନ କୁହାଯିବ; ଡେନ୍‌ମାର୍କ୍‌ର ଇତିହାସରୁ ଯାହା ପିଲାମାନଙ୍କୁ ଭଲ ଲାଗୁଥିବ, ସେଗୁଡ଼ିକ ମଧ୍ୟ ଅନ୍ତର୍ଭୁକ୍ତ ହୋଇ ରହିପାରିବ । ପୁରାଣକଥା ରହିବ, ସ୍ଥାନୀୟ କାହାଣୀମାନ ବି ରହିପାରିବ । ଏସବୁକୁ ପିଲାମାନେ କେତେଦୂର ମନେ ରଖିଲେ ବା ନରଖିଲେ ସେକଥା ଉପରେ କୌଣସି ଦୃଷ୍ଟି ଦିଆଯିବ ନାହିଁ; ସେମାନେ ଯାହାକିଛି ଶୁଣିବେ, ତାହା ସେମାନଙ୍କୁ ଭଲ ଲାଗୁଥିବ, - ଏତିକି ମାନଦଣ୍ଡ ରହିବ । ଏହି ସବୁକିଛିର ପଶ୍ଚାତରେ ପିଲାମାନଙ୍କର କଳ୍ପନାଶକ୍ତିକୁ ବୃଦ୍ଧି କରିବା ହିଁ ସବାଆଗ ଲକ୍ଷ୍ୟ ହୋଇ ରହିଥିବ । ଏସବୁ ଶୁଣି ପିଲାମାନଙ୍କର ଈଶ୍ୱରଙ୍କ ପ୍ରତି ତଥା ଭୂମି ପ୍ରତି ଶ୍ରଦ୍ଧା ବୃଦ୍ଧି ପାଉଥିବ; ସବୁକିଛି ପିଲାଙ୍କର ହୃଦୟକୁ ଛୁଇଁ ପାରୁଥିବ ଓ ଆବଶ୍ୟକ ଅଭିବୃଦ୍ଧିକୁ ବାଟ ଛାଡ଼ି ଦେଉଥିବ । ଏହି ବିଦ୍ୟାଳୟ ମାନଙ୍କରେ ପିଲାମାନେ ଜୀବନରେ ଭରି ରହିଥିବେ, ପ୍ରଶ୍ନପରେ ପ୍ରଶ୍ନ କରି ପାରୁଥିବେ, ଶୁଣୁଥିବା ସବୁ କିଛିକୁ ଆତ୍ମସ୍ଥ କରି ନେଉଥିବେ ଏବଂ ଘରକୁ ଯାଇ ପିତାମାତାଙ୍କ ଆଗରେ ମଧ୍ୟ ସେଗୁଡ଼ିକୁ କହି ପକାଉଥିବେ । ଏସବୁ ହୋଇପାରିଲେ ଶିକ୍ଷାର ସବୁ ଲକ୍ଷ୍ୟ ପୂରଣ ହୋଇପାରିଲା ବୋଲି ପ୍ରମାଣ ମିଳିବ । ବାରବର୍ଷର ପିଲାଟିଏ ତା' ବହିଟି ପଢ଼ି ପାରୁଥିବ, ମୋଟାମୋଟି ଅର୍ଥ ବୁଝି ପାରୁଥିବ ଏବଂ ପଢ଼ିସାରି ପଠିତ ଅଂଶଟିର ବିଷୟକୁ ନିଜ ଭାଷାରେ କହି ମଧ୍ୟ ପାରୁଥିବ । ଗଣିତପାଠ

ସାଧାରଣତଃ ମାନସାଙ୍କରେ ସୀମିତ ରହିବ, - ଯେପରିକି ଦୈନନ୍ଦିନ ଜୀବନରେ ମଧ୍ୟ ତାହା କାମରେ ଲାଗି ପାରିବ । ହଁ, ଏହି ବୟସରେ ଲିଖନ ଇଚ୍ଛାଧୀନ ହୋଇ ରହିବ । ଦ୍ୱିତୀୟ ବର୍ଷ ବେଳକୁ ଭୂଗୋଳ ଆସିବ ଓ ସେଥିପାଇଁ ଭୂମଣ୍ଡଳର ବ୍ୟବହାର କରାଯିବ । ଏଥିରେ ମଧ୍ୟ ବହି ରହିବ ନାହିଁ । ପିଲାମାନଙ୍କୁ ଭଲ କବିତା ପଢ଼ି ଶୁଣାଇ ଦିଆ ଯାଉଥିବ । ଏହାଦ୍ୱାରା ସେମାନଙ୍କର କାନକୁ ଉତ୍ତମ ପ୍ରଶିକ୍ଷଣ ମିଳିଯିବ ଓ ପଠନପ୍ରତି ଆଗ୍ରହ ମଧ୍ୟ ଆସିବ । ହଁ, ଗଣିତରେ ମିଶାଣ, ଫେଡ଼ାଣ, ଗୁଣନ ଓ ହରଣ କିଛି ରହିବ ଏବଂ ପିଲାଏ ଏବେ ଶୁଣିଥିବା କୌଣସି ଗପକୁ ନିଜେ ଲେଖି ପାରିବା ଭଳି ସାମର୍ଥ୍ୟ ମଧ୍ୟ ହାସଲ କରିବେ । ସର୍ବନିମ୍ନ ଏତିକି ହୋଇପାରିଲେ ଚଉଦ ବର୍ଷ ହେବାପରେ ଗୋଟିଏ ଶିଶୁ ସମାଜର ଜଣେ ସଦସ୍ୟରୂପେ ଯୋଗ୍ୟତା ହାସଲ କରିବ । ସମାଜର କାର୍ଯ୍ୟରେ ବି ଲାଗିବ । ହଁ, ଏହି ସାର୍ବଜନୀନ ବିଦ୍ୟାଳୟଗୁଡ଼ିକ ବ୍ୟତୀତ ଘରୋଇ ଶିକ୍ଷାଲାଭ ନିମନ୍ତେ ମଧ୍ୟ ଅବକାଶ ରହିବ; କାରଣ, ନିଜ ପିଲାମାନଙ୍କୁ କିପରି ଶିକ୍ଷା ଦିଆଯାଇ ପାରିବ, ତାହା ନିଷ୍ପତ୍ତି କରିବାର ଅଧିକାର ପିତାମାତାଙ୍କର ଅବଶ୍ୟ ରହିଥିବ । ଖାଲି ଏତିକି ଦେଖିବାକୁ ପଡ଼ିବ ଯେ ତଦ୍ୱାରା ପିଲାଟିଏ ସାଧାରଣ ବିଦ୍ୟାଳୟର ପିଲାଙ୍କର ତୁଳନାରେ ଅଧିକ ଆଗକୁ ଯାଉଛି ସିନା, ଆଦୌ ପଛରେ ରହି ଯାଉନାହିଁ ।

ଭବିଷ୍ୟତରେ ଆମର ଶିକ୍ଷାବ୍ୟବସ୍ଥା ଯେପରି ଯାହା ହେଉ ପଛକେ, ଅନ୍ତତଃ ଏତିକି ଦେଖିବାକୁ ପଡ଼ିବ ଯେ ତାହା କେବେହେଲେ ସତ୍ୟକୁ ବର୍ଜନ କରିବନାହିଁ, ବାସ୍ତବ ଜୀବନକୁ ମଧ୍ୟ କଦାପି ବର୍ଜନ କରିବନାହିଁ । ଶିକ୍ଷା ନାମରେ ଉପରଠାଉରିଆ ଓ ଉପରଦେଖାଣିଆ ତ କେତେ ରହିଛି, - ଉପରୁ କର୍ତ୍ତାମାନେ କେତେ କ'ଣ ଆଣି ଲଦିଦେବାର ଉଦ୍ୟମ କରି ଆସିଛନ୍ତି । ତଦ୍ୱାରା ସକଳ ଲଗାମକୁ ଅନେକ ସମୟରେ ମିଥ୍ୟା ହାତରେ ଛାଡ଼ିଦିଆ ଯାଇଛି । ଜ୍ଞାନ ବୋଲି କେତେ ଚକଚକ ଅଜ୍ଞାନକୁ ବାଟ ଛାଡ଼ି ଦିଆଯାଇଛି । ତଦ୍ୱାରା ସାମୂହିକ ଜୀବନର ବହୁତ କ୍ଷତି ହୋଇଛି, ଅନ୍ତର୍ଗତ ଜୀବନଟି ମଧ୍ୟ ଉପଯୁକ୍ତ ଉତ୍ସାହ ନପାଇ ଜ୍ୟୋତିହୀନ ହୋଇ ପଡ଼ିଛି । ସବୁକିଛି ଥାଇ ମଧ୍ୟ ସବୁକିଛି ପଥ ହୁଡ଼ି ଯାଇଥିବା ପରି ଲାଗିଛି । ଶିକ୍ଷାକୁ, ପିଲାମାନଙ୍କର ଶିକ୍ଷାକୁ ମୂଳ ସାଧନରୂପେ ଗ୍ରହଣ କରି ସାମୁଦାୟିକ ଜୀବନରେ ସତ୍ୟର ପ୍ରତିଷ୍ଠା ନିମନ୍ତେ ନୂତନ କିଛି ଅବଶ୍ୟ ହେଉ, ବର୍ତ୍ତମାନ ଏତିକି ହିଁ ପ୍ରାର୍ଥନା କରିବାକୁ ହେବ, ଆଶା ବି ରଖିବାକୁ ପଡ଼ିବ ।

- ୧୧ -

ନିକୋଲାଇ ଫ୍ରେଡ଼େରିକ୍ ସେଭେରିନ୍ ଗ୍ରୁଣ୍ଡ୍‌ଭିଗ୍ (୧୭୮୩-୧୮୭୨) ସେପ୍ଟେମ୍ବର ମାସ ୮ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ। ସେ ଗ୍ରାମାଞ୍ଚଳର କୌଣସି ଗୀର୍ଜାର ଜଣେ ପାଦ୍ରୀଙ୍କର ସନ୍ତାନ ଥିଲେ । ଘରର କନିଷ୍ଠତମ ସନ୍ତାନ ହିସାବରେ ନିଜ ମାଆଙ୍କର ଅଧିକ ପ୍ରିୟ ହୋଇଥିଲେ ଓ ପ୍ରାୟ ତାଙ୍କରି ହେପାଜତ ଦ୍ୱାରା ଗଢ଼ା ହୋଇଥିଲେ । ତାଙ୍କର ପ୍ରଥମ ପାଠପଢ଼ା ସେହି କାଳର ଗୋଟିଏ ଲାଟିନ୍ ସ୍କୁଲରେ ହିଁ ହୋଇଥିଲା । ସେତେବେଳେ ପାଠପଢ଼ାର ପଦ୍ଧତି ଅତ୍ୟନ୍ତ ପୁରୁଣାକାଳିଆ ଥିଲା। ବାଇବେଲ୍‌ର ସୂତ୍ର ଏବଂପାଠ ନାମରେ ଯାବତୀୟ ବିଷୟକୁ ପିଲାଙ୍କଠାରୁ ମୁଖସ୍ଥ କରାଇ ନିଆ ଯାଉଥିଲା। ପିଲାର ମଥା ଉପରେ ଗୀର୍ଜାର ପ୍ରାଦୁର୍ଭାବଟା ହିଁ ଅଧିକ ମାତ୍ରାରେ ରହିଥିଲା। ପରବର୍ତ୍ତୀ କାଳରେ ସେହି ବ୍ୟବସ୍ଥାର ବିଦ୍ୟାଳୟକୁ ଗ୍ରୁଣ୍ଡ୍‌ଭିଗ୍ ମୃତ ବିଦ୍ୟାଳୟ ବୋଲି ଆଖ୍ୟା ଦେଇଛନ୍ତି। ସେହି ପ୍ରଥମ ବିଦ୍ୟାଳୟଟି ତାଙ୍କ ଭିତରୁ ଶିଶୁକାଳ ସୁଲଭ ସକଳ ଉତ୍ସାହ ଓ ବିଶ୍ୱାସକୁ ଅପହରଣ କରି ନେଇଥିଲା, ଅଧିକ ପରିମାଣରେ ତାଙ୍କୁ ଯାବତୀୟ ପ୍ରକାରର ଉଦାସୀନତା ମଧ୍ୟରେ ହି ଗ୍ରନ୍ଥିଳ ହୋଇ ରହିବାର ପ୍ରରୋଚନା ପ୍ରଦାନ କରିଥିଲା ।

ଅଠରବର୍ଷ ବୟସରେ ସେ ବିଶ୍ୱବିଦ୍ୟାଳୟର ଶିକ୍ଷା ନିମନ୍ତେ ରାଜଧାନୀ କୋପେନହେଗେନ୍‌କୁ ଆସିଥିଲେ। ସେହିଠାରେ ହିଁ ଜର୍ମାନ୍ ଦର୍ଶନ ସହିତ ପରିଚିତ ହେଲେ । ଫିକ୍‌ଟେ (Fichte)ଙ୍କର ଜାତୀୟତାବାଦୀ ଉତ୍ସର୍ଗଧର୍ମୀ ଦର୍ଶନ ତାଙ୍କର ପ୍ରାଣକୁ ନିବିଡ଼ ଭାବରେ ସ୍ପର୍ଶ କରି ପାରିଥିଲା। ଗୋଟିଏ ଦରିଦ୍ର ପରିବାରରୁ ଆସିଥିବାରୁ ବିଶ୍ୱବିଦ୍ୟାଳୟର ବିଳାସୀ ଓ ଭୋଗମୟ ଜୀବନରେ ସିଏ ସାମିଲ ହୋଇ ପାରୁନଥିଲେ । ରାଜଧାନୀର ସମ୍ଭ୍ରାନ୍ତ ଗହଣ ସହିତ ମଧ୍ୟ ବିଶେଷ ଭାବରେ ମିଶି ପାରୁନଥିଲେ। ଗ୍ରାମାଞ୍ଚଳର ବିଶେଷ ସ୍ୱରାଘାତ ସହିତ କଥା କହୁଥିଲେ। ପୋଷାକପତ୍ରରେ ମଧ୍ୟ ସେଭଳି କୌଣସି ଚାକଚକ୍ୟ ରହି ପାରୁନଥିଲା। ମାତ୍ର, ସେହି ଆଦ୍ୟ ତାରୁଣ୍ୟର ବୟସରେ ମଧ୍ୟ ସିଏ ନିଜ ଅନ୍ତର୍ନିହିତ ଶକ୍ତିଗୁଡ଼ିକ ସମ୍ବନ୍ଧରେ ଅତ୍ୟନ୍ତ ସଚେତନ ଥିଲେ। ଧର୍ମବେତ୍ତା ମାନଙ୍କର ଅସରନ୍ତି ଯୁକ୍ତିମାନ ତାଙ୍କୁ ବଡ଼ ହାସ୍ୟାସ୍ପଦ ବୋଧ ହେଉଥିଲା । ସେହି ଶୁଷ୍କ ପାଣ୍ଡିତ୍ୟର ମନୁଷ୍ୟମାନେ ଯେ କେବେ ପରସ୍ପର ସହିତ କୌଣସି ବିଷୟରେ ସହମତ ହୋଇପାରିବେ, ସେଥିରେ ତାଙ୍କର ସର୍ବଦା ସନ୍ଦେହ ମଧ୍ୟ ହେଉଥିଲା। ବରଂ ଦାର୍ଶନିକ ଏବଂ ଧର୍ମସୂତ୍ରକାରମାନଙ୍କ ଅପେକ୍ଷା

ସାଧାରଣ ମନୁଷ୍ୟମାନଙ୍କର ନାନା ଆସ୍ପୃହା ଓ ସମ୍ବନ୍ଧଗୁଡ଼ିକୁ ନେଇ କ୍ରମଶଃ ଗଢ଼ି ଉଠିଥିବା ସାମୁଦାୟିକ ଜୀବନ ଉପରେ ତାଙ୍କର ଅଧିକ ଆସ୍ଥା ହେଉଥିଲା । ଅସଲ ସତ୍ୟଗୁଡ଼ିକର ସନ୍ଧାନ ସେହି ସାମୂହିକ ସମ୍ଭାବନାଗୁଡ଼ିକରେ କରାଯାଇ ପାରିବ ବୋଲି ସିଏ ଅଧିକ ବିଶ୍ୱାସ ସହିତ ଚିନ୍ତା କରିବାକୁ ଆରମ୍ଭ କଲେ । ମନୁଷ୍ୟ-ସମୁଦାୟ ଉପରେ ତାଙ୍କର ସେହି ବିଶ୍ୱାସ ତାଙ୍କ ଜୀବନର ଶେଷଯାଏ ତାଙ୍କର ସାଥୀ ହୋଇ ରହିଥିଲା ଓ ତାଙ୍କୁ ବଳ ଦେଉଥିଲା । ତାହାହିଁ ତାଙ୍କର ଜୀବନ ଏବଂ ବିଚାରକୁ ଏକ ଅନନ୍ୟସାଧାରଣ ଆଲୋକ ଏବଂ ନିର୍ଭର ଯୋଗାଇ ଦେଉଥିଲା । ତାଙ୍କରି ଗୋଟିଏ ଲେଖାରୁ ଉଦ୍ଧାର କରି କହିଲେ :

''ଧର୍ମସୂତ୍ରର ଜ୍ଞାନୀ ବ୍ୟାଖ୍ୟାକାରମାନେ ଜଣେ ମନୁଷ୍ୟର କର୍ତ୍ତବ୍ୟ ଅକର୍ତ୍ତବ୍ୟ ବିଷୟରେ ଶାସ୍ତ୍ରରୁ ଶିରା କାଢ଼ି କେତେ କେତେ କଥା କହିବାରେ ଲାଗିଛନ୍ତି; ସୁରାପାନ, ଗୋଷ୍ଠୀନୃତ୍ୟ ଏବଂ ଧୂମପାନ ବିଷୟରେ ସେମାନଙ୍କର ମନ୍ତବ୍ୟର କୌଣସି ଅନ୍ତ ଥିଲାପରି ବି ମନେ ହେଉନାହିଁ ।'' ଗ୍ରୁନ୍ଡ୍‌ଭିଗ୍ ସତେ ଅନ୍ୟ ଏକ ଆଲୋକର ଆହ୍ୱାନ ଶୁଣିଥିଲା ପରି କହୁଥିଲେ ଯେ, ବିଶ୍ୱଯାକର ଜୀବନ ମନୁଷ୍ୟର ସମ୍ମୁଖରେ ସମ୍ପ୍ରସାରିତ ହୋଇ ରହିଛି । ପ୍ରକୃତି ପସରା ଖୋଲି ଦେଇଛି । ଏକ ପରିପୂର୍ଣ୍ଣ ଜୀବନ ନିମନ୍ତେ ଅଭିଳାଷ କରିବା ନିମନ୍ତେ ମନୁଷ୍ୟମାନଙ୍କୁ ଆହ୍ୱାନ ଦେବାରେ ଲାଗିଛି, ଆମନ୍ତ୍ରଣ ଜଣାଉଛି । ବିଶ୍ୱପ୍ରକୃତି ସହିତ ଯାହାକିଛି ସହଯୋଗ କରିପାରିବ, ସେ ତାହାକୁ ହିଁ ସୁସ୍ଥ ଏବଂ ସମଞ୍ଜସ ବୋଲି ବିଶ୍ୱାସ କରୁଥିଲେ । ଆମ ଭିତରେ ସେହି ବୃହତ୍ତର ପ୍ରକୃତି ସହିତ ଯାହାକିଛିର ମେଳ ରହିଛି, ତାହାହିଁ ସର୍ବଦା ସ୍ୱାଭାବିକ: ଯାହାକିଛି ଅମେଳ, ସେଇଥିରୁ ହିଁ ଯାବତୀୟ ପ୍ରମାଦର ଉତ୍ପତ୍ତି । ଏବଂ, ''ପ୍ରତ୍ୟେକ ମନୁଷ୍ୟ ଭିତରେ ଏପରି କିଛି ରହିଛି, ଯାହାକି ତାକୁ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ବିଷୟରେ ଆବଶ୍ୟକ ସବୁକିଛି ବତାଇଦେଇ ପାରିବ ।'' ଆଗ, ସବାଆଗ ମଣିଷଟିଏ ନହୋଇ ପାରିଲେ ଆଉ କିଛିହେଲେ ହେବା ମୋଟେ ସମ୍ଭବ ହେବନାହିଁ । ଆଗ ପୂର୍ଣ୍ଣ, ସୁସ୍ଥ, ଉତ୍ସାହପୂର୍ଣ୍ଣ ଏବଂ ସକାରାତ୍ମକ କେତେକ ବିଶ୍ୱାସଯୁକ୍ତ ମଣିଷଟିଏ, ତା'ପରେ ଯାଇ ଆଦର୍ଶ, ଧର୍ମ, ଭଗବାନ, ମୁକ୍ତି ବା ଆଉ ଯାହାକିଛି । ସବାଆଗ ନିଜ ଭିତରେ ପ୍ରଚ୍ଛନ୍ନ ହୋଇ ରହିଥିବା ସତ୍ୟ ଏବଂ ସମ୍ଭାବନାଗୁଡ଼ିକର, ସାମର୍ଥ୍ୟଗୁଡ଼ିକର ଉପଲବ୍ଧି; ତା'ପରେ ଯାଇ ଭଗବଦ୍-ଉପଲବ୍ଧି । ଗ୍ରୁନ୍ଡ୍‌ଭିଗ୍ ସତତ ବିକାଶରେ ବିଶ୍ୱାସ କରୁଥିଲେ, - ଆଗ ଆମ ଭିତରର ମଣିଷତ୍ୱଟି ଯଥାସମ୍ଭବ ପୂର୍ଣ୍ଣସଚେତନ ଏବଂ ପୂର୍ଣ୍ଣକୁସୁମିତ ହେବାର ଅବକାଶ ଲାଭ କରିବ, ଏବଂ ତାହାହିଁ ଏକ ପରବର୍ତ୍ତୀ ସୋପାନରେ ଅଧାତ୍ମର ଗାରଗୁଡ଼ିକୁ ମଧ୍ୟ ସ୍ପର୍ଶ କରିପାରିବ ।

ଗୋଟିଏ କବିତାରେ ବିଶପ୍ ଗ୍ରୁନ୍ଡ୍‌ଭିଗ୍ Menneske foerst og Kristen saa ବୋଲି ଧାଡ଼ୀଟିଏ ଲେଖିଥିଲେ । ଏହି ଧାଡ଼ୀଟିଏ କଥା ସେହି ସମୟରେ

ସମ୍ଭ୍ରାନ୍ତମାନଙ୍କର କାନକୁ ଭାରି ଉଦ୍‌ଭଟ ଓ ଅଶାଳୀନ ପରି ଶୁଭିଥିବ । ସାଧାରଣ ମଣିଷମାନଙ୍କର ଅଭ୍ୟସ୍ତ ଚିନ୍ତାମାର୍ଗଗୁଡ଼ିକୁ ମଧ୍ୟ ଖୁବ୍ ଦୋହଲାଇ ଦେଇଥିବ । ସବୁ ପାଦ୍ରୀ ଆଦୌ ସମାନ ନୁହନ୍ତି ବୋଲି ଏକ ସିଧା କଥାକୁ ପ୍ରମାଣ କରି ଦେଇଥିବ । ପାଦ୍ରୀ ମାତ୍ରେ ତ ଈଶ୍ୱରଙ୍କର କଥାର ପ୍ରବାଚକ ହୁଅନ୍ତି, ମାତ୍ର ଈଶ୍ୱର କହିଲେ ସମସ୍ତେ ଆଦୌ ସେହି ଏକା କଥାକୁ ବୁଝନ୍ତିନାହିଁ । ଗ୍ରୁନ୍ଟ୍‌ଭିଗ୍ ଏକ ନିଆରା ପ୍ରକାରର ପାଦ୍ରୀ ଥିଲେ । ଈଶ୍ୱରଙ୍କ ନାମରେ ପ୍ରଚାରିତ ହୋଇ ଆସିଥିବା କଥାଗୁଡ଼ିକୁ ସିଏ ନିଜ ବିବେକର ଭୂମି ଉପରେ ବିଚାର କରୁଥିଲେ । ସେଥିପାଇଁ ତାଙ୍କୁ ଏକଦା କେତେ ସମୟ ପାଇଁ ନିଜର ପାଦ୍ରୀପଦଟିକୁ ହରାଇବାକୁ ମଧ୍ୟ ପଡ଼ିଥିଲା । ମଣିଷ ଆଗ ମଣିଷ, ତା'ପରେ ଯାଇ ଖ୍ରୀଷ୍ଟିଆନ୍: ସବାଆଗ ମଣିଷ ଏବଂ ତା'ଠାରେ ଯାଇ ତା'ର ଗୋତ୍ର, ତା'ର ଉପବୀତ, ତା' ଖୋଳଟା, ତା'ର ଯାବତୀୟ ଆଦର୍ଶ, - ଏହି କଥାଟିକୁ ଆମର ଏହି ସାଂପ୍ରତିକ ପୃଥିବୀରେ ମଧ୍ୟ କର୍ତ୍ତୃତ୍ୱ ଓ କ୍ଷମତାରେ ରହିଥିବା ମଣିଷ ଏବଂ ବାଦମାନେ ମୋଟେ ଗ୍ରହଣ କରି ପାରିବେନାହିଁ । ମଣିଷଟିଏ ଜଣେ ମଣିଷ ଭଳି ବଞ୍ଚିବାଲାଗି, ସାହସ କରି ଅର୍ଥାତ୍ ନିଜକୁ ଦୀକ୍ଷିତ କରି ପାରିବାଲାଗି ସବାଆଗ ସର୍ବାଗ୍ର ମାନଦଣ୍ଡଗୁଡ଼ିକ ଅନୁସାରେ ମଣିଷ ପରି କ୍ଷମ ହେବ, ତେବେଯାଇ ସିଏ ପରବର୍ତ୍ତୀ ସୋପାନରେ ରହିଥିବା ଆଉ କ'ଣଟିଏ ହୋଇପାରିବ । ଯେପରି ପ୍ରଥମେ ଏକ ଇତରପ୍ରାଣୀର ଭୂମି ଉପରେ ନିର୍ଭର ସହିତ ଛିଡ଼ାହୋଇ ପାରିବାପରେ ଯାଇ ଜୀବନ ମନୁଷ୍ୟରୂପେ ବିବର୍ତ୍ତିତ ହେଲା, ଠିକ୍ ସେହିପରି ମନୁଷ୍ୟପରି ବଞ୍ଚିବାର ସର୍ବନିମ୍ନ ଅର୍ଥାତ୍ ସର୍ବାବଶ୍ୟକ ଭୂମିଗୁଡ଼ିକ ହାସଲ ଓ ଆୟତ୍ତ ହୋଇ ସାରିଲେ ଯାଇ ସିଏ ବୃହତ୍ତର ଆଉ କିଛିକୁ ସତକୁ ସତ ଗ୍ରହଣ କରିବାକୁ ସମର୍ଥ ହେବ । ତା'ର ଅନ୍ନମୟ ଭୂମିଟି ଟାଣ ହେବ, ଗୋଷ୍ଠୀଗତ ଜୀବନର ଯାବତୀୟ ଭରସା ତା' ଲାଗି ପ୍ରତିଶ୍ରୁତ ହୋଇ ରହିବ, ତେବେ ଯାଇ ସିଏ କୌଣସି ଯଥାର୍ଥ ତାତ୍ପର୍ଯ୍ୟ ସହିତ ଖ୍ରୀଷ୍ଟିଆନ୍, ହିନ୍ଦୁ, ଭାରତୀୟ ଅଥବା ଇଉରୋପୀୟ ଯାହାକିଛି ହୋଇପାରିବ । ଏବଂ, ସେହି ଭରସା ଓ ସେହି ଦୃଢ଼ ଭୂମି ଗୋଟିଏ ସମାଜର ସବୁ ମଣିଷଙ୍କ ପାଇଁ ସମ୍ଭବ ହୋଇ ପାରୁଥିବ । ଏବେ ମଧ୍ୟ ପୃଥିବୀରେ ଅଧିକାଂଶ ମନୁଷ୍ୟଙ୍କର ମୁଖ୍ୟ ସଂଗ୍ରାମଟି ସେହି ସର୍ବପ୍ରଥମ ଭୂମିରେ ହିଁ ଚାଲିଛି । ତଥାକଥିତ ଉଚ୍ଚତର ସବୁକିଛି ଅଳପ କେତେକଙ୍କର ପ୍ରାୟ ଏକ ଭୋଗ ଓ ବାକ୍‌ବିଳାସରେ ପରିଣତ ହୋଇ ରହିଛି ।

ଏବଂ, ସେତେବେଳେ, ଖ୍ରୀଷ୍ଟିଆନ୍ ଧର୍ମ ସେହି ଦେଶକୁ ଆସିବାର ବହୁଶତ ବର୍ଷ ପରେ ମଧ୍ୟ ଡେନ୍‌ମାର୍କର ମନୁଷ୍ୟସମାଜଟି ସବୁ ମଣିଷଙ୍କର ଅନୁକୂଳ ହୋଇ ତିଆରି ହୋଇ ନଥିଲା । ଧର୍ମ ଓ ଗୀର୍ଜା ସରକାରୀ ଥିଲା, ଅଧିକ ମଣିଷ ଅଳପଙ୍କର ସେବା ଖଟିବା ନିମନ୍ତେ ପାରମ୍ପରିକ ଭାବରେ ମଣ ହୋଇ ରହିଥିଲେ । ପ୍ରାୟ ଷୋଡ଼ଶ ଶତାବ୍ଦୀର ଆରମ୍ଭରୁ ଦେଶର

ପୂର୍ବାଞ୍ଚଳରେ ଏପରି ଏକ ବ୍ୟବସ୍ଥା ଥିଲା, ଯାହାଫଳରେ କି ଜମିମାଲିକ ମାନଙ୍କର ଜମିକୁ ଚାଷ କରି ଫଳ ଫଳାଉଥିବା ଚାଷୀ ଗୋଟିଏ ମାଲିକର କବଳରୁ ଆଉଜଣେ ମାଲିକର ଅଧୀନକୁ ଯାଇ ପାରୁ ନଥିଲା ଏବଂ ସିଏ ଓ ତାହାର ପିଲାମାନେ ମାଲିକର କେତେକ ନିର୍ଦ୍ଦିଷ୍ଟ କାମ କରିଦେବାକୁ ବାଧ୍ୟ ହେଉଥିଲେ। ଏହି ବ୍ୟବସ୍ଥାଟି ଅଷ୍ଟାଦଶ ଶତାବ୍ଦୀର ଆରମ୍ଭରେ ଉଠିଗଲା ସତ, ମାତ୍ର ଯାହାଫଳରେ ଚାଷୀମାନେ ଜମିମାଲିକ ପାଖରେ ତଥାପି ଭୃତ୍ୟ ପରି ବନ୍ଧାହୋଇ ରହିଲେ। ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଡେନ୍‌ମାର୍କ୍ ଦେଶରେ କୃଷିର ଅବସ୍ଥା ବଡ଼ ଶୋଚନୀୟ ହୋଇ ପଡ଼ିଥିଲା। ଅଧିକାଂଶ ଆବାଦଯୋଗ୍ୟ ଜମି ସାମନ୍ତମାନଙ୍କର ସମ୍ପତ୍ତି ହୋଇ ରହିଥିଲା ଏବଂ ଅଧିକାଂଶ କୃଷକ ସେମାନଙ୍କର ଅଧୀନରେ ପ୍ରାୟ ଗୋଡି ହୋଇ ରହିଥିଲେ। ଯେଉଁମାନଙ୍କର କ୍ଷେତଚାକର ହୋଇ ଜନ୍ମ ହେଉଥିଲେ, ପ୍ରାୟ ସେହିମାନଙ୍କର କ୍ଷେତଚାକର ହୋଇ ସେମାନଙ୍କର ସାରା ଜୀବନ ଚାଲି ଯାଉଥିଲା। ଅଧିକାଂଶ ଚାଷୀ ଚାରିବର୍ଷ ବୟସରୁ ୩୫ ବର୍ଷ ହେବାଯାଏ ଏହିପରି ମାଲିକର ଜମିରେ ବେଠି ଖଟୁଥିଲେ। ତା'ପରେ ମଧ୍ୟ ଭାଗଚାଷୀ ହୋଇ ସେହି ମାଲିକଙ୍କର ଜମିକୁ ଚଷିବାଲାଗି ସେମାନଙ୍କୁ କିଛି ସୁବିଧା ମିଳୁଥିଲା। ମାତ୍ର, ସେତେବେଳେ ମଧ୍ୟ ଫସଲର ରାଜଭାଗଟି ଚାଷୀକୁ ନୁହେଁ, ମାଲିକକୁ ହିଁ ପ୍ରାପ୍ତ ହେଉଥିଲା। ସେତେବେଳେ ସପ୍ତାହରେ ନିର୍ଦ୍ଦିଷ୍ଟ କେତେ ଦିନ ମାଲିକ ନିମନ୍ତେ କ୍ଷେତକାମ କରିବାକୁ ପଡୁଥିଲା।

ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଇଉରୋପୀୟ ମହାଦେଶରେ ଏପରି ଏକାଧିକ ଘଟଣା ଘଟିଲା, ଯାହାକି ବହୁକାଳର ସେହି କଷଣର ପାରମ୍ପରିକ କୁହୁଡ଼ିଗୁଡ଼ିକୁ କ୍ରମେ ଅପସରାଇବାକୁ ଆରମ୍ଭ କଲା। ସାଧାରଣ ଲୋକଜୀବନର ବିଶ୍ୱାସସ୍ତରକୁ ତାହା ଏକ ନୂତନ ସଚେତନତାର ଉଦ୍‌ବେଳନ ଆଣି ଦେଇଥିଲା। ତାହା ଏହି ଉତ୍ତର ଭାଗକୁ ମଧ୍ୟ ସଂକ୍ରାମିତ ହୋଇ ଆସୁଥିଲା। ଏଥର ମନୁଷ୍ୟଆତ୍ମାର ବିଦ୍ରୋହ କରିବାର ମୁହୂର୍ତ୍ତଟି ଆସି ପହଞ୍ଚିଲା ବୋଲି ଊନବିଂଶ ଶତାବ୍ଦୀରେ ନରଓ୍ୱେର ଲେଖକ ହେନ୍‌ରିକ୍ ଇବ୍‌ସନ୍ ଯାହା ଏକଦା କହିଥିଲେ, ସତେଅବା ତାହାରି ଅଙ୍କୁରୋଦ୍‌ଗମ ହୋଇ ଆସୁଥିଲା। ପାରମ୍ପରିକ ଭାବରେ ଜଣେ ପାଦ୍ରୀର ପ୍ରଶିକ୍ଷଣ ପାଇଥିଲେ ମଧ୍ୟ ଏହିସବୁ ନୂତନ ପବନରୁ ପ୍ରେରଣା ପାଇ କବି ନିକୋଲାଇ ଗ୍ରୁଣ୍ଡ୍‌ଭିଗ୍ ଖ୍ରୀଷ୍ଟିଆନ୍ ଧର୍ମସନ୍ଦେଶରେ ମଧ୍ୟ କେତେ କେତେ ନୂତନ ଉନ୍ମେଷଣାର ସଙ୍କେତ ପାଇଥିଲେ। ନିଜର ଗୋଟିଏ କବିତାଧାଡ଼ୀରେ ନିଜକୁ ଓ ନିଜର ଈଶ୍ୱରଙ୍କୁ ଚିହ୍ନିବା ପ୍ରତ୍ୟେକ ମନୁଷ୍ୟ ନିମନ୍ତେ ସେ ସୁନାଠାରୁ ଅଧିକ ମୂଲ୍ୟବାନ ବୋଲି ଘୋଷଣା କରିଥିଲେ। ଏହାଦ୍ୱାରା ଉଭୟ କବିତା ଓ ଧର୍ମସନ୍ଦେଶ ସତେଅବା ଜଣେ ସାଧାରଣ ମଣିଷର ଜୀବନରେ ପ୍ରାୟ ଚାକ୍ଷୁଷ ଭାବରେ ପ୍ରାସଙ୍ଗିକ ହୋଇ ଉଠିଥିଲା। ସିଏ ଆଗପରି ଭାଗ୍ୟବାଦୀ ଅର୍ଥାତ୍ ନିଜର ଜୀବନପ୍ରତି ଉଦାସୀନ ହୋଇ ରହିବାର ଆଉ କୌଣସି ପ୍ରାସଙ୍ଗିକତା ରହିଲାନାହିଁ।

ପୁରୁଣା ଶିକ୍ଷା ଆଉ ଆଦୌ ଯଥେଷ୍ଟ ବୋଲି ଲାଗିଲାନାହିଁ । ଚାଷୀଘରର ପିଲାମାନେ, ସାଧାରଣ ଘରର ସେହି ପରମ୍ପରା ଭିତରେ ଯେଉଁମାନେ ଭାଗ୍ୟ ଅଦରି ରହି ଆସିଥିଲେ, ସେମାନଙ୍କୁ ସେମାନଙ୍କର ସମ୍ଭାବନାର ଏକ ବୃହତ୍ତର ପରିଚୟ ଦେଇ ପାରିବା - ଏହାହିଁ ଆସନ୍ନ ଯୁଗଟିର ଏକ ଅଭୂତପୂର୍ବ ନବପ୍ରୟାସ ପରି ଅନୁଭୂତି ହେବାକୁ ଲାଗିଲା । ଗୋଟିଏ ନିଦା ପ୍ରତ୍ୟୟଦ୍ୱାରା ସଂବଳିତ ଭୂମିଟିଏ ଆବଶ୍ୟକ, ଯାହା ଉପରେ କି ଜୀବନଟିକୁ ପ୍ରତିଷ୍ଠିତ କରି ରଖିଆଣି ପାରିଲେ ନିଜ ସମ୍ମୁଖରେ ନାନା ନୂତନ ଦିଗ୍‌ବଳୟ ଉନ୍ମୋଚିତ ହୋଇ ଯାଉଥିବେ; ଏବଂ, ସମ୍ମୁଖରେ ଆଗକୁ ଆଗକୁ ଆକର୍ଷିତ କରି ନେଇ ଯାଉଥିବା ଏକ ତାରା ମଧ୍ୟ ଆବଶ୍ୟକ, ଯାହାକି ନିଜ ପାଦତଳର ଭୂମିଟି ବିଷୟରେ ଅଧିକରୁ ଅଧିକ ଦୃଢ଼ତା ସହିତ ଏକ ପ୍ରତ୍ୟୟ ଆଣି ଯୋଗାଇ ବି ଦେଉଥିବ, - ସେତେବେଳେ ଡେନ୍‌ମାର୍କର ସାହିତ୍ୟରେ, ସାମାଜିକ ଜାଗରଣରେ ଏବଂ ଜୀବନଭାବନାରେ ଯେଉଁମାନେ ସେହି ଉଭୟଟି ନିମନ୍ତେ କ୍ଷେତ୍ରଟିକୁ ପ୍ରସ୍ତୁତ କରିବାରେ ଲାଗିଥିଲେ, ଏକାଧିକ ମୂଲ୍ୟାୟନର ଦୃଷ୍ଟିରୁ ବିଚାର କଲେ ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ସେମାନଙ୍କର ପୁରୋଦେଶରେ ରହିଥିଲେ । ଗୋଟିଏ ନୂଆ ପବନ ବୋହିବାକୁ ଆରମ୍ଭ କଲା, ଯେଉଁଥିରୁ ପ୍ରୋତ୍ସାହନ ପାଇ ବ୍ୟକ୍ତି ତଥା ସମୂହ ଉଭୟ ସ୍ତରର ଏକାଧିକ ଉଦ୍ୟମ ସେତେବେଳେ ସତେଅବା ଯଥାର୍ଥ ଅଧ୍ୟାତ୍ମର ଗାରଟିକୁ ସ୍ପର୍ଶ କରି ପାରିଥିବା ପରି ମନେ ହେଲା ।

ଏକଦା ଯେତେବେଳେ ଫରାସୀ ସମ୍ରାଟ ନାପୋଲିଅଁ ଜର୍ମାନୀ ଆକ୍ରମଣ କରି ସମଗ୍ର ଦେଶକୁ ଦଖଲ କରି ନେଇଥିଲେ, ସେତେବେଳେ ଜର୍ମାନ୍ ଦାର୍ଶନିକ ଫିକ୍‌ଟେ((Johann Gottlieb Fichte, 1762-1814) ଜର୍ମାନ୍ ଜାତିକୁ ସମ୍ବୋଧନ କରି ଦେଶାତ୍ମବୋଧକ ଏକାଧିକ ରଚନା ପ୍ରକାଶ କରିଥିଲେ । ସେତେବେଳେ ମଧ୍ୟ ଫିକ୍‌ଟେ ଯୁବସମୂହ ନିମନ୍ତେ ଏକ ବିଶେଷ ଜୀବନଗଠନକାରୀ ବିଦ୍ୟାଳୟର କଳ୍ପନା କରିଥିଲେ । ସେହି ପ୍ରବଚନଗୁଡ଼ିକ ସାନ ଦେଶ ଡେନ୍‌ମାର୍କ୍‌ର ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କ ଅନ୍ତରକୁ ଗଭୀର ଭାବରେ ଉଦ୍‌ବୋଧିତ କରିଥିଲା । ତାଙ୍କରି ଭାଷାରେ କହିଲେ, ''ବହିରେ ଅକ୍ଷରରେ ଯାହାସବୁ ଲେଖାହୋଇ ରହିଛି, ସେଗୁଡ଼ିକରେ ଆଦୌ କୌଣସି ଜୀବନ ନାହିଁ । ସ୍ୱୟଂ ଦେବଦୂତମାନେ ସେଗୁଡ଼ିକୁ ଆସି ଲେଖିଥିଲେ ମଧ୍ୟ ତାହାକୁ ମୃତ ବୋଲି ହିଁ କହିବାକୁ ହେବ । ତେଣୁ, ବହିରେ ଲେଖା ହୋଇଥିବା ପାଠ ଯଦି ପାଠକର ମନଃକ୍ଷେତ୍ରକୁ ଜାଗ୍ରତ କରି ନପାରିଲା, ତେବେ ସ୍ୱର୍ଗରୁ କଲମ ଆସି ଲେଖାହୋଇଥିବା ସେଗୁଡ଼ିକ ଦ୍ୱାରା କଦାପି ଜୀବନର ସଞ୍ଚାର ହୋଇ ପାରିବନାହିଁ । ସେହି ମନଃକ୍ଷେତ୍ରରେ ହିଁ ଜୀବନ ସହିତ ଜୀବନର ମିଳନ ଘଟିବ । ଗଣିତ ଏବଂ ବ୍ୟାକରଣକୁ ଆୟତ୍ତ କରି କରି ଆମ ପିଲାମାନଙ୍କର ଆତ୍ମାଟି ଯେ କେବଳ ମରିଯାଉଛି ସେତିକି ନୁହେଁ, ଶରୀର ଏବଂ ମସ୍ତିଷ୍କ ମଧ୍ୟ ଉପଯୁକ୍ତ ପରିମାଣରେ

ପୋଖତ ହେବା ପୂର୍ବରୁ ହିଁ ତାହା ଉପରେ ଅତିରିକ୍ତ ଚାପ ଆସି ପଡୁଛି ଓ ମଥାର ଗ୍ରହଣଶକ୍ତିକୁ ମଧ୍ୟ ନଷ୍ଟ କରିଦେଉଛି । ଶିକ୍ଷା ନିମନ୍ତେ ଭିତରୁ ଏକ ସ୍ୱାଭାବିକ ଆଗ୍ରହ ଜନ୍ମିବା ପୂର୍ବରୁ ହିଁ ବହୁତ କିଛିକୁ ବିଧ୍ୱସ୍ତ କରି ଦିଆଯାଉଛି ।'' ସେହି ସମୟରେ ପ୍ରଚଳିତ ତଥାକଥିତ ଶିକ୍ଷା ବିଷୟରେ ଗ୍ରୁନ୍ଡ୍‌ଭିଗ୍ ସିଧା ଟୀକା କରି କହିଥିଲେ: '' ଏହିସବୁ ଅନୁଷ୍ଠାନର ଏକ ନିୟମିତ ଅପରାଧ ହେଉଛି ଯେ, ତାହା ଛାତ୍ରମାନଙ୍କର ମନୋଭାବକୁ ସାଧାରଣ କର୍ମଦାୟିତ୍ୱମୟ ଜୀବନଟି ବିଷୟରେ ବଡ଼ ବିତୃଷ୍ଣ କରିପକାଏ, ଯାହାର ପରିମାଣ ସ୍ୱରୂପ, ଶିକ୍ଷା ଶେଷ କରି ସେମାନେ ହାତୁଡ଼ି ନିହାଣ ପ୍ରଭୃତି ହତିଆର ଚଳାଇବାକୁ ସଙ୍କୋଚବୋଧ କରନ୍ତି, ଗାଆଁର କୃଷକମାନଙ୍କ ଘରୁ ଆସିଥିଲେ ମଧ୍ୟ କୃଷିକାର୍ଯ୍ୟ କରିବାକୁ ଅନିଚ୍ଛୁକ ହୁଅନ୍ତି ଏବଂ ଶାରୀରିକ ଶ୍ରମର ଦୈନନ୍ଦିନ ସଂସାର ଭିତରେ ନିଜକୁ ଅତ୍ୟନ୍ତ ଅସୁଖୀ ଅନୁଭବ ହିଁ କରୁଥାନ୍ତି। ଏହିଭଳି ଦିଆ ଯାଉଥିବା ଶିକ୍ଷାଟି କେବଳ ଅଳ୍ପ କେତେଜଣଙ୍କୁ ଯାହା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହେବା ଅଥବା ସରକାରୀ କୌଣସି ଦପ୍ତରରେ ମୋଟା ବେତନର ଜୀବନଯାପନ କରିବା ସକାଶେ ଆଗ୍ରହାନ୍ୱିତ କରାଥାଏ ।''

ବରଂ, ଅନ୍ୟ ପକ୍ଷରେ, ''ଯଥାର୍ଥ ଶିକ୍ଷା ଡେନ୍‌ମାର୍କ୍‌ର ଯୁବାକୁଳକୁ ଆମେ ଭବିଷ୍ୟତରେ ଯେଉଁଭଳି ଏକ ଜୀବନଧାରାକୁ ସାକାର ରୂପ ଦେବାପାଇଁ ସାହସ ସ୍ଥାପନ କରିଛୁ, ତାହାରି ମଧ୍ୟକୁ ଜାଗ୍ରତ କରିନେବ, ସେଥିଲାଗି ଆବଶ୍ୟକ ପୁଷ୍ଟି ଯୋଗାଇଦେବ ଏବଂ ସେମାନଙ୍କୁ ଅନୁକୂଳ ଜ୍ଞାନଗୁଡ଼ିକରେ ଧନାଢ଼୍ୟ କରିବ । ପ୍ରତ୍ୟେକ ମନୁଷ୍ୟ ଆଗରେ ତାହାର ପ୍ରକୃତ ପରିଚୟଟିକୁ ଆଣିଦେବ; ସିଏ ଯେ ଏହି ପୃଥିବୀରେ ଯାବତୀୟ ଈଶ୍ୱରୀୟତାର ପରିପ୍ରକାଶ ନିମନ୍ତେ ସେହି ଈଶ୍ୱରଙ୍କର ପ୍ରତିରୂପ ନେଇ ଏଠାକୁ ଆସିଛି, ତାହାକୁ ସେହି ସଚେତନତା ଦ୍ୱାରା ବଳ ତଥା ବିଶ୍ୱାସଯୁକ୍ତ କରିବ ।'' ନିମ୍ନରେ ତାଙ୍କରି କେତୋଟି ଉକ୍ତିରୁ ଆମେ ଶ୍ରୀ ଗ୍ରୁନ୍ଡ୍‌ଭିଗ୍‌ଙ୍କର ମୂଳଭୂତ ଶିକ୍ଷାଦୃଷ୍ଟିଟିର ଏକ ଅଧିକ ସମ୍ୟକ୍ ଧାରଣା ଅବଶ୍ୟ କରିପାରିବା: ''ଆମର ଏହି କାଳରେ ଲୋକମାନେ ମୁକ୍ତି ବିଷୟରେ ଏବଂ ସଂସ୍କୃତି ବିଷୟରେ ଏତେବଡ଼ ପାଟିରେ କେତେ କେତେ କଥା କହୁଛନ୍ତି । ଏବଂ, ଏଥିରେ କୌଣସି ସନ୍ଦେହ ନାହିଁ ଯେ ଆମ ସମସ୍ତଙ୍କର ମୁକ୍ତି ଓ ସଂସ୍କୃତି ଉଭୟର ଏକାନ୍ତ ଆବଶ୍ୟକତା ଅବଶ୍ୟ ରହିଛି । ମାତ୍ର, ସେଗୁଡ଼ିକୁ ହାସଲ କରିବାକୁ ଆମେ କେଉଁ ଉପାୟମାନ ଗ୍ରହଣ କରିବା, ସେହି କ୍ଷେତ୍ରରେ ହିଁ ଦୁନିଆଯାକର ବିଭ୍ରାନ୍ତି ଆସି ପଶିଯାଉଛି । ଦାର୍ଶନିକ ପ୍ଲେଟୋ ଯେଉଁ ଆଦର୍ଶ ରାଜ୍ୟବ୍ୟବସ୍ଥାର କଳ୍ପନା କରିଥିଲେ, ସେଥିରେ ଉପରେ ଥାଇ ସବୁକିଛିର ବରାଦ କରୁଥିବା କର୍ତ୍ତାମାନେ ହିଁ କେଡ଼େ ବିଚକ୍ଷଣତା ସହିତ ସବୁଯାକ ମୁକ୍ତି ଏବଂ ସଂସ୍କୃତିକୁ ସ୍ୱୟଂ ଆତ୍ମସାତ୍ କରି ନେଉଥିଲେ, ସାଧାରଣଙ୍କୁ ସେଗୁଡ଼ିକରେ ଆଦୌ କୌଣସି ଭାଗ ଦେଉନଥିଲେ । ବିଚରା ଯାବତୀୟ ଶ୍ରମ ନିମନ୍ତେ ବାଧ୍ୟ ହୋଇ ରହିଥିବା

ସେହି ସାଧାରଣମାନେ ଉକ୍ତ ଉତ୍ପୀଡ଼କମାନଙ୍କର ଭୃତ୍ୟ ହୋଇ ବୋଲ ମାନିବାକୁ ହିଁ ନିଜର ସମୁଦାୟ ନିୟତି ବୋଲି ଆଦରି ନେଉଥିଲେ, ସେହି ବଡ଼ମାନଙ୍କର ସୁଖୀ ତଥା ରୁଚିମୟ ଜୀବନଟାକୁ ହିଁ ନିଜ କାନ୍ଧ ଉପରେ ବୋହିବାରେ ଜୀବନ ସାରୁଥିଲେ - ସେହିମାନଙ୍କୁ ବଡ଼ ବୋଲି କହି ପ୍ରଶଂସା କରୁଥିଲେ ଓ ସେମାନଙ୍କୁ ଦେବତାତୁଲ୍ୟ ଜ୍ଞାନ କରୁଥିଲେ । ଆମକୁ ମଧ୍ୟ ସେହି ଭ୍ରାନ୍ତିଟି ଗିଳିକରି ଧରିଛି ।''

ପୁନଶ୍ଚ, ''ଆମେ ତଥାକଥିତ ଶିକ୍ଷିତ ବ୍ୟକ୍ତିମାନେ ଏପରି ଭାବରେ ତାଲୀମ ପାଇଛୁ ଯେ, ଆମେ ନିଜେ କେବେହେଲେ ଏକ ଅଧିକ ବଳଯୁକ୍ତ, ଭଦ୍ର ଏବଂ ସହାନୁଭୂତିସମ୍ପନ୍ନ ଜୀବନ ଯାପନ କରିବାକୁ ଇଚ୍ଛା କରୁନାହୁଁ । ସାଧାରଣଙ୍କର ଭାଷାଠାରୁ ମଧ୍ୟ ଦୂରରେ ରହିଛୁ । ତେଣୁ ଆମେ ଆଉ ସେମାନଙ୍କୁ ଆଦୌ କୌଣସି ରାସ୍ତା ବି ଦେଖାଇ ପାରିବୁ ପୁଣି କିପରି ? ବରଂ ସେମାନଙ୍କୁ ଆମେ ଯାବତୀୟ ପ୍ରକାରେ ଅପମାନିତ କରୁଛୁ, ବିରକ୍ତ କରି ପକାଉଛୁ ଓ ସେମାନଙ୍କ ଆଗରେ ନିଜକୁ ଅଧିକ ବଢ଼ିଆ ବୋଲି ଦେଖାଇ ହେଉଛୁ । ନିଜ ଭିତରେ ମଧ୍ୟ ଜଣେ ଆଉଜଣକ ଠାରୁ ଅଧିକ ବଢ଼ିଆ ବୋଲି ପ୍ରମାଣିତ କରିଦେବାକୁ ଚେଷ୍ଟା କରୁଛୁ । ଆମେ ନିଜେ କ'ଣସବୁ କରିଛୁ, କ'ଣସବୁ କରିପାରନ୍ତୁ ବା କରିବାକୁ ଇଚ୍ଛା କରୁଛୁ, ଆମେ କେବେହେଲେ ଭୁଲ୍‌ରେ ସୁଦ୍ଧା ନିଜକୁ ସେହି ପ୍ରଶ୍ନଗୁଡ଼ିକୁ ପଚାରିବା ଲାଗି ଇଚ୍ଛା କରୁନାହୁଁ । କିନ୍ତୁ, ଅନ୍ୟମାନେ କ'ଣ କରିଛନ୍ତି ବା ଆମ ଅନ୍ଦାଜ ଅନୁସାରେ କ'ଣସବୁ କରିପାରନ୍ତେ ଅଥବା କ'ଣସବୁ ବାଧ୍ୟରେ କରନ୍ତେ, ସେହିଗୁଡ଼ିକ ସମ୍ବନ୍ଧରେ ହିଁ ଜୀରାରୁ ଶିରା କାଢ଼ିବାରେ ଲାଗିଛୁ । ଆମେ ସ୍ୱୟଂ ସେଗୁଡ଼ିକୁ କରିବାପାଇଁ ଉଦ୍ୟମ କରିଥିଲେ କିପରି ତାହାକୁ ଅସମ୍ଭବ ବୋଲି କହି ତୁରନ୍ତ ପଳାଇ ଆସିଥାନ୍ତୁ, ସେହି ବିଷୟରେ ଆମର ଆଦୌ କୌଣସି ମୁଣ୍ଡବଥା ହେଉନାହିଁ ।''

ଏବଂ, ''ସାଧାରଣତଃ ବୃଦ୍ଧ ବୟସରେ ଯାହା ଆଶା କରା ଯାଇଥାଏ, ପିଲାମାନେ ମଧ୍ୟ ସେହିପରି ଶାନ୍ତ, ଶୃଙ୍ଖଳିତ, ପ୍ରଜ୍ଞାବାନ ଏବଂ ବିବେକୀ ହୋଇ ରହନ୍ତୁ ବୋଲି ଆମେ ସେମାନଙ୍କଠାରୁ ଯେଉଁଭଳି ଦାବୀ କରୁଛୁ, ତଦ୍ୱାରା ଆମେ ସେମାନଙ୍କର ଜୀବନ ଭିତରେ କେବଳ ମୃତ୍ୟୁର ହିଁ ରୋପଣ କରିବାରେ ଲାଗିଛୁ ଓ ସେମାନଙ୍କୁ ବୃଦ୍ଧମାନଙ୍କ ପରି ଦୁର୍ବଳ କରି ପକାଉଛୁ । ଏପରି ହେବାକୁ ବାଧ୍ୟ ହୋଇ ସେମାନଙ୍କର ଆତ୍ମା ଏବଂ ଶରୀରକୁ ବହୁତ ଉପଦ୍ରବ ସହ୍ୟ କରିବାକୁ ପଡୁଛି । ଏବଂ, ସେମାନଙ୍କ ମଧ୍ୟରୁ ଅନେକଙ୍କର ପ୍ରାଣଶକ୍ତି ସମ୍ପୂର୍ଣ୍ଣ ଭାବରେ ବରବାଦ ହୋଇଯାଉଛି । ବରଂ ଉଚିତ ଓ ଆବଶ୍ୟକ କଥାଟି ହେଉଛି ଯେ ସେମାନଙ୍କର ଶୈଶବବର୍ଷ ଗୁଡ଼ିକୁ ଆମେ ପ୍ରକୃତରେ ଯଥାସମ୍ଭବ ଅଧିକ ଦୀର୍ଘସ୍ଥାୟୀ କରିବାଲାଗି ହିଁ ପ୍ରୟାସ କରୁଥାନ୍ତୁ ।'' ଠିକ୍ ସେହି ମର୍ମରେ, ''ବିଦ୍ୱାନ୍ ଏବଂ ପଣ୍ଡିତ ହେବା ଗୋଟିଏ କଥା ଏବଂ ଯଥାର୍ଥ ଶିକ୍ଷା ଲାଭ କରିବା ତଥା ଜୀବନପାଇଁ ସମ୍ପୂର୍ଣ୍ଣ ଭାବରେ

ଯୋଗ୍ୟ ହେବା ଆଉଗୋଟିଏ କଥା । ହଁ , ଦୁଇଟିଯାକର ସହାବସ୍ଥାନ ଘଟିଲେ ତାହା ଅବଶ୍ୟ ଅତୀବ ଉତ୍ତମ ହୋଇପାରନ୍ତା, ମାତ୍ର ଅଧିକାଂଶ ମନୁଷ୍ୟଙ୍କର ଜୀବନରେ ତାହା କଦାପି ସମ୍ଭବ ହେବନାହିଁ । ଏହି ଦୁଇଟିଯାକ ପରସ୍ପର ବିରୋଧୀ ହୋଇ ରହିବା ମଧ୍ୟ ଉଚିତ ନୁହେଁ । ମାତ୍ର ତଥାପି ଗୋଟିକୁ ଆରଟି ସହିତ ଗୋଳାଇ ମିଶାଇଦେବା ମଧ୍ୟ ଏକାନ୍ତ ଅନୁଚିତ । ତା'ନହେଲେ, ଗୋଟିଏ ଆରଟିକୁ ତଡ଼ି ନିକାଲି ଦେବାର ଭୟ ମଧ୍ୟ ସବୁବେଳେ ରହିଥିବ ଏବଂ ତେଣୁ ବଡ଼ ଦୂଷିତ କରି ପକାଇବ । ଏବଂ, ଯଦି ସାଧାରଣ ଜନଗଣ ଶିକ୍ଷିତ ନହେବେ ଏବଂ ସେମାନେ ବଞ୍ଚୁଥିବା ସାଂପ୍ରତିକ ଜୀବନଟି ବିଷୟରେ ସଚେତନ ନହେବେ, ତେବେ ପାଣ୍ଡିତ୍ୟ ସମ୍ଭବତଃ ଭୁଲ୍ ବାଟରେ ଚାଲି ଯାଉଥିବ ଓ ସେମାନେ ପଣ୍ଡିତମାନଙ୍କୁ ଠିକ୍ ବାଟରେ ରହିବା ନିମନ୍ତେ ଆବଶ୍ୟକ ସତର୍କତାମାନ ଅବଲମ୍ବନ କରି ପାରୁନଥିବେ । ଅଧିକନ୍ତୁ, ଜନଗଣଙ୍କର ଶିକ୍ଷା ମଧ୍ୟ ବିଦ୍ୱାନ୍‌ମାନେ ତାହାକୁ ସମୁଚିତ ଭାବରେ ପ୍ରାଣଯୁକ୍ତ କରି ନରଖିଲେ ଏକ ଉପରିସ୍ତରୀୟ ଚାକଚକ୍ୟରେ ହିଁ ପରିଣତ ହୋଇଯିବାର ଆଶଙ୍କା ବଳବତ୍ତର ରହିଥିବ ।''

ଏହିଭଳି ଏକ ପୃଷ୍ଠଭୂମି ଉପରେ, ଗ୍ରୁଣ୍ଡ୍‌ଭିଗ୍‌ଙ୍କର କହିବା ଅନୁସାରେ, ଏଭଳି ଗୋଟିଏ ମନୁଷ୍ୟକୁ ଗଠନ କରି ଆଣିବା ହିଁ ଶିକ୍ଷାର ଲକ୍ଷ୍ୟ ହୋଇ ରହିବ, ଯିଏକି ପ୍ରକୃତିରୂପୀ ଜନନୀର କ୍ରୋଡ଼ରେ ପରିପାଳିତ ହୋଇ ପାରୁଥିବ, ଏହି ଜଗତରେ ଯାହାକିଛି ସୁନ୍ଦର ଓ ମହାନ୍, ତାହାକୁ ଗଭୀର ଭାବରେ ଅନୁଭବ କରି ପାରୁଥିବ ଏବଂ, ଆହୁରି ଅଧିକ ମହତ୍ତ୍ୱପୂର୍ଣ୍ଣ କଥାଟି ହେଉଛି, ବାସ୍ତବତାର ଜୀବନଟି ସେହିସବୁ ଉଜ୍ଜ୍ୱଳ ଆଦର୍ଶର ଏତେ ତଳେ ଆସି ରହିଛି ତଥା, ଯାବତୀୟ ଅପୂର୍ଣ୍ଣତା ସତ୍ତ୍ୱେ ତଥାପି ଯେତିକି ସମ୍ଭବ ହୁଅନ୍ତା, ତାହାର ମଧ୍ୟ ବହୁ ନିମ୍ନରେ ରହିଛି ବୋଲି ସତେଅବା ଅସନ୍ତୋଷ ପ୍ରକାଶ କରି ଓ ରୁଷି ବସି ଘୋର ନିଷ୍କ୍ରିୟତା ମଧ୍ୟରେ ନିମଗ୍ନ ହୋଇ ରହିଯିବ ନାହିଁ ।'' ଯଦି ଲକ୍ଷ୍ୟଟିକୁ ପ୍ରକୃତରେ ଉଚ୍ଚତାର ଏହି ସ୍ତରରେ ହିଁ କଳ୍ପନା କରାଯାଏ, ତେବେ ଯାବତୀୟ ରାଷ୍ଟ୍ରୀୟ ନିୟନ୍ତ୍ରଣରୁ ତାହାକୁ ମୁକ୍ତ ରହିବାକୁ ପଡ଼ିବ । ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ସେହି ଆଦ୍ୟକାଳରେ ମଧ୍ୟ ସେହି ବିଷୟରେ ଅତ୍ୟନ୍ତ ସଂଶୟରହିତ ଭାବରେ ଏହିଭଳି କହି ପାରିଥିଲେ : ''ସରକାର ହିଁ ଶିକ୍ଷାକୁ ନିଜର ନିୟନ୍ତ୍ରଣରେ ରଖିବେ ଓ ମନୁଷ୍ୟର ମନଟାକୁ, କୌଣସି ସୈନ୍ୟଛାଉଣିରେ ଯେପରି ହୋଇଥାଏ, ଏକ ନିର୍ଦ୍ଦିଷ୍ଟ ଗୁଳା ଭିତରେ ବାନ୍ଧି ରଖିଥିବେ, ଏହାଠାରୁ ବଳି ଅଧିକ କୌଣସି ଅବାଞ୍ଛିତ କଥାର କଳ୍ପନା ହିଁ କରାଯାଇ ପାରିବନାହିଁ ।'' ଜନସମୁଦାୟର ଶିକ୍ଷା ବିଷୟରେ ରାଷ୍ଟ୍ର ବା ସରକାରର ଦାୟିତ୍ୱ ଅବଶ୍ୟ ରହିବ ଓ ସରକାର ତାହାକୁ କ୍ରିୟାଶୀଳ କରି ରଖିବା ନିମନ୍ତେ ଆବଶ୍ୟକ ବ୍ୟୟଭାର ମଧ୍ୟ ବହନ କରିବେ, ମାତ୍ର ଶିକ୍ଷାର କ୍ଷେତ୍ରରେ ଆଦୌ କୌଣସି ମଇ ମଡ଼ାଇଦେଇ ପାରିବେନାହିଁ । ତେଣୁ, ସରକାର ଆଦୌ କୌଣସି ଉଦ୍ଦଣ୍ଡତା

ଦେଖାଇ ବାହାରିଲେ ଏବଂ କ୍ଷମତାର ଦଣ୍ଡଟାକୁ ଲଦିଦେବାକୁ ଇଚ୍ଛାକଲେ ତଦ୍ଵାରା ଶିକ୍ଷା ବହୁତର ଅର୍ଥରେ କେବଳ ଏକ ନିଦାରୁଣ ଅଶିକ୍ଷାରେ ହିଁ ପରିଣତ ହୋଇ ରହିଯିବ । ଯଥାସମ୍ଭବ ଅଧିକ ଅର୍ଥସହାୟତା ଏବଂ ଯାବତୀୟ ହସ୍ତକ୍ଷେପରୁ ନିରସ୍ତ ହୋଇ ରହିବା, ଶିକ୍ଷାର କ୍ଷେତ୍ରରେ ଏହାହିଁ ରାଷ୍ଟ୍ରର ଧର୍ମ ହୋଇ ରହିଥିବ ।

ସାନ୍ନିଧ୍ୟ ଏବଂ ସମ୍ପର୍କ ହେଉଛି ଯାବତୀୟ ଯଥାର୍ଥ ଶିକ୍ଷାଗତ ପ୍ରକ୍ରିୟାରେ ସବୁଠାରୁ ବଡ଼ ଏବଂ ଅସଲ କଥା: ପୁସ୍ତକ ନିମିତ୍ତମାତ୍ର । ଏବଂ, ଏକ ଉଚ୍ଚତର ଜୀବନ ଲାଗି ଆଗ୍ରହୀ ହେବା ଯଦି ଶିକ୍ଷିତ ହେବାର ମୂଳକଥା ହୁଏ, ତେବେ ଜୀବନହୀନ ପୁସ୍ତକମାନଙ୍କର ସ୍ଥାନ ସର୍ବଦା ସାତପଛରେ ହିଁ ରହିଥିବ । ବ୍ୟକ୍ତି ବ୍ୟକ୍ତିକୁ ଭେଟିବ, - ତାହାରିଦ୍ଵାରା ହିଁ ଅନୁପ୍ରାଣିତ ହେବ ଏବଂ ଅନୁପ୍ରାଣିତ କରିବ । ଗଣବିଦ୍ୟାଳୟ ଗୁଡ଼ିକରେ ତାହାହିଁ ସଂପୃକ୍ତ ସମସ୍ତଙ୍କର ଅଭିବୃଦ୍ଧି ନିମନ୍ତେ ଅସଲ ଭୂମିରୂପେ କାର୍ଯ୍ୟ କରି ଆସିଛି । ଜଣେ ବ୍ୟକ୍ତି ହିସାବରେ ଶିକ୍ଷା ଯାବତୀୟ ଅଧାପନାକୁ ମାଧ୍ୟମ କରି ପ୍ରଧାନତଃ ନିଜକୁ ହିଁ ଶିକ୍ଷାର୍ଥୀମାନଙ୍କ ସମ୍ମୁଖରେ ଅତ୍ୟନ୍ତ ସହଜ ତଥା ଅକୃପଣ ଭାବରେ ନେଇ ଛିଡ଼ା କରାଇ ଦେଉଥିବ । ଶିକ୍ଷାର୍ଥୀମାନଙ୍କର ଅଙ୍ଗେନିଭା କଥାଗୁଡ଼ିକୁ ମଧ୍ୟ ଶୁଣିବ ଏବଂ ଜଣେ ସାଥୀବାଟୋଇ ପରି ଆଗକୁ ପଡ଼ିଥିବା ରାସ୍ତାଗୁଡ଼ିକ ବିଷୟରେ ନିଜେ ଲାଭ କରିଥିବା ବାରତାଗୁଡ଼ିକୁ ନିବେଦନ କରିଦେଇ ପାରୁଥିବ । ଏବଂ, ଅତିପରିଚିତ ତଥା ହୃଦୟକୁ ସବୁଠାରୁ ଅଧିକ ପରିମାଣରେ ଘେନାଉଥିବା ମାତୃଭାଷାରେ ହିଁ ଏହି ଯାବତୀୟ ଆଦାନପ୍ରଦାନ ହେଉଥିବ । ଶ୍ରେଣୀଗୃହଟି ସତେଅବା ଅନ୍ତରଙ୍ଗ ବାଟ ଚାଲିବା ଏବଂ ସତ୍ୟଗୁଡ଼ିକର ପରିଚୟ ପାଇବାର ଏକ ଭୟମୁକ୍ତ ନିଜଘର ଭଳି ଲାଗୁଥିବ । ଏହିଭଳି ଏକ ପରିବେଶରେ ଜୀବନର ଗ୍ରହଣଶୀଳତାର ଉଷ୍ମତା ଭରପୂର ହୋଇ ରହିଥିବ । ଏବଂ, ଶିକ୍ଷକ ଯଦି ଛାତ୍ରମାନଙ୍କର ଚିତ୍ତକୁ ବୁଝି ପାରିବାଭଳି ନିଜକୁ ସଂପ୍ରସାରିତ କରି ପାରୁଥିବ ଏବଂ ଯଦି ସିଏ ନିଜେ ମଧ୍ୟ ନିଜ ଜୀବନର ଗିରିଶିଖରଗୁଡ଼ିକ ଲାଗି ଆସ୍ପୃହା ରଖିଥିବ, ତେବେ ସେମାନଙ୍କର ଚେତନାକ୍ଷେତ୍ରରେ, ଶ୍ରଦ୍ଧା ତଥା ସାହସର କ୍ଷେତ୍ରରେ ମଧ୍ୟ ସିଏ ବହୁତ କିଛି ସମ୍ଭବ କରି ପାରିବ । ଏହି ଯାବତୀୟ ପ୍ରେରଣା ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଡେନ୍‌ମାର୍କର ଗଣନେତୃତ୍ଵକୁ ସତେଅବା ଏକ ନୂତନ ଲୋକୋଦୟର ଆକାଂକ୍ଷାରେ ଉଦ୍‌ବୁଦ୍ଧ କରାଇ ନେଇଥିଲା । ତାହାରି ଫଳରେ ତତ୍କାଳୀନ ଧର୍ମ ଭିତରେ ମଧ୍ୟ ନୂତନ ନାନା ତାତ୍ପର୍ଯ୍ୟର ଆବାହନ ସମ୍ଭବ ହୋଇ ପାରିଲା, ଗୀର୍ଜା ଅପେକ୍ଷା ମଣିଷମାନେ ଆଗ ଦେଖାଗଲେ । ଶିକ୍ଷାର ଅନ୍ଧାଜଡ଼ଜଗତଟା ଗୁଳାରୁ ବାହାରି କେତେ କୁଆଡ଼େ ସଂପ୍ରସାରିତ ହୋଇ ଯାଇଥିଲା । ପୁରୁଣା ବାଡ଼ ଏବଂ ଆକଟମାନେ ଆଉ ଆଦୌ ଯଥେଷ୍ଟ ବୋଲି ଲାଗିଲେ ନାହିଁ । ନୂଆ ଆସ୍ପୃହାମାନେ ନୂଆ ଢ଼ାଞ୍ଚାର ବିଦ୍ୟାଳୟମାନ ଲୋଡ଼ି ବାହାରିଲେ । ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କର କବିଦୃଷ୍ଟିରେ ଏପରି ଗୋଟିଏ ବିଦ୍ୟାଳୟର ଅଭିନବ

ଗଢ଼ଣ ଉକୁଟି ଉକୁଟି ଆସିଲା, ଯାହାକି ସ୍ୱତନ୍ତ ଭାବରେ ଦେଶର ତରୁଣମାନଙ୍କ ପାଇଁ ଉଦ୍ଦିଷ୍ଟ ହୋଇ ରହିବ। ଯୌବନରେ ପ୍ରବେଶ କରୁଥିବାର ପ୍ରଥମ ଚରଣରେ, ଯେତେବେଳେ ନିଜକୁ ନିଜର ପାଦତଳେ ଏବଂ ନିଜ ଚତୁର୍ଦ୍ଦିଗରେ ରହିଥିବା ସମୂହଜୀବନର ଭୂମି ଉପରେ ଦାୟିତ୍ୱପୂର୍ଣ୍ଣ ଭାବରେ ନିଜର ବିଚାର କରିବାର ବୟସ ଆସି ପହଞ୍ଚିଯିବ, ସେତେବେଳେ ଦେଶର ଯୁବକମାନେ ଏଭଳି ଏକ ମୁକ୍ତ ବିଦ୍ୟାଳୟରେ ଶିକ୍ଷାଲାଭ କରିବା ନିମନ୍ତେ ଏକତ୍ର ହେବେ, ଯାହାକି ସେମାନଙ୍କୁ ଧାତ୍ରୀ ପରି ଏକ ନୂତନ ସମ୍ଭାବ୍ୟର ଯୋଗ୍ୟ ହେବାଲାଗି ତିଆରି କରିଆଣିବ, ସେମାନଙ୍କ ଭିତରେ ତଦନୁରୂପ ଜାଗରଣଟିଏ ଘଟାଇବ, - ମନୁଷ୍ୟର ଜୀବନକୁ ଏକ ଉଚ୍ଚତର ପ୍ରସ୍ଥର ପରିପ୍ରେକ୍ଷୀରେ ଅନୁଭବ କରାଇ ଶିଖାଇବ ଏବଂ ନିଜ ଦେଶର ଜନସମୂହଙ୍କୁ ସତେଅବା ଏକ ଏକତାବଦ୍ଧ ନିୟତି ଭିତରେ ବଞ୍ଚିବା ନିମନ୍ତେ ସମର୍ଥ କରାଇନେବ।

କ୍ରିଷ୍ଟେନ୍ କଲ୍ଡ୍‌ଙ୍କ ପରେ ଡେନ୍‌ମାର୍କରେ ଗଣବିଦ୍ୟାଳୟ ଗୁଡ଼ିକର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇଥିଲା। ପ୍ରତ୍ୟେକଟି ଅନ୍ୟମାନଙ୍କ ଠାରୁ ସ୍ୱତନ୍ତ ଭାବରେ ବିକାଶଲାଭ କରିବାକୁ ଲାଗିଲା। ମୁଖ୍ୟତଃ କୌଣସି ନୂତନ ଚିତ୍ରପଟଟିଏ ଆଗରେ ଧରି ବାଟ ଚାଲି ବାହାରିଥିବା ପରି ଜଣେ ଜଣେ ବ୍ୟକ୍ତି ପ୍ରଧାନତଃ ସେହି ଚିତ୍ରଟି ଅନୁସାରେ ନିଜ ପ୍ରୟୋଗର ସେହି ବିଦ୍ୟାଳୟଟିକୁ ଭିନ୍ନ ଭିନ୍ନ ସ୍ୱାତନ୍ତ୍ୟ ମଧ୍ୟ ପ୍ରଦାନ କରି ପାରିଥିଲେ। ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଅନୁପ୍ରାଣିତ କରିବେ, ଅଥଚ କେହି କାହାର ଅନୁକରଣ କରିବେନାହିଁ, ଶିକ୍ଷାର କ୍ଷେତ୍ରରେ ଏହାଠାରୁ ବଳି ବଡ଼ ସୌଭାଗ୍ୟ ପ୍ରକୃତରେ ଆଉ କ'ଣ ହୋଇପାରେ ? ଏକ ନିର୍ଦ୍ଦିଷ୍ଟ ଶିକ୍ଷାଧାରା ରୂପେ ଡେନ୍‌ମାର୍କ୍‌ର ଗଣବିଦ୍ୟାଳୟ ଗୁଡ଼ିକ ବିଷୟରେ ସକଳ ପ୍ରାସଙ୍ଗିକତା ସହିତ ସମ୍ଭବତଃ ସବାଆଗ ସେହି କଥାଟିକୁ କୁହାଯାଇ ପାରିବ। ଏବଂ, ହୁଏତ ତାହାହିଁ ସେହି ମୂଳ ଅବସ୍ଥାଟିରେ ମଧ୍ୟ ବିଦ୍ୟାଳୟଗୁଡ଼ିକୁ ଏତେ ଶକ୍ତିମନ୍ତ ଏବଂ ସ୍ୱତନ୍ତ କରି ରଖିଥିଲା। ପରସ୍ପର ସହଯୋଗ ପୂର୍ଣ୍ଣମାତ୍ରାରେ ଥିଲା, ସବୁ ଗଣବିଦ୍ୟାଳୟକୁ ଏକାଠି ବାନ୍ଧି ସଂଗଠନଟିଏ ଅବଶ୍ୟ ଥିଲା, ଭାବ ତଥା ବିଚାରର ଆଦାନପ୍ରଦାନ ଖୁବ୍ ହେଉଥିଲା; ମାତ୍ର ସ୍ୱଭାବଗୁଡ଼ିକ ପରସ୍ପରଠାରୁ ସ୍ୱତନ୍ତ ହୋଇ ରହିଥିଲେ। ଭିନ୍ନ ଭିନ୍ନ ପରିବେଶ ଏବଂ ଭିତ୍ତିଭୂମି ଅନୁସାରେ ପ୍ରତ୍ୟେକେ ଅଗ୍ରାଧିକାର ଗୁଡ଼ିକର କ୍ଷେତ୍ରରେ ଭିନ୍ନ ହୋଇ ରହିଥିଲେ ଓ ଭିନ୍ନ ହୋଇ ଦିଶୁଥିଲେ ସତ, ତଥାପି ଯାବତୀୟ ସୁସ୍ଥ ଅର୍ଥରେ ପରସ୍ପରର ପରିପୂରକ ହୋଇ ରହିଥିଲେ। ସେହି ଆରମ୍ଭ କାଳରେ ମଧ୍ୟ ଏକ ଗ୍ରାମାଞ୍ଚଳରେ ଏଭଳି ଗୋଟିଏ ଗଣବିଦ୍ୟାଳୟ ଆରମ୍ଭ ହୋଇଥିଲା, ଯେଉଁଠାରେ କି ସକାଳଓଳିଟା ପାଠପଢ଼ା ହେଉଥିଲା ଏବଂ ଉପରଓଳି ଛାତ୍ରମାନେ କୃଷିକାର୍ଯ୍ୟ କରୁଥିଲେ। ଦ୍ୱିତୀୟ ମହାଯୁଦ୍ଧ ଏବଂ ତାହାର ପରେ ମଧ୍ୟ ଦକ୍ଷିଣ ଉଇଲାଣ୍ଡରେ ଏପରି ବିଦ୍ୟାଳୟଟିଏ ଚାଲୁଥିଲା, ଯେଉଁଠାରେ ଅଧାଦିନ ଶ୍ରେଣୀଗୃହରେ

ଶିକ୍ଷାଦାନର କାର୍ଯ୍ୟକ୍ରମ ରହିଥିଲା ଏବଂ ବାକୀ ଅଧାସମୟଟି ଛାତ୍ରମାନେ ଯାଇ କୌଣସି ଚାଷୀଘରେ କ୍ଷେତକାର୍ଯ୍ୟ କରୁଥିଲେ। ସେମାନେ ତଦ୍ଵାରା ଯେଉଁ ଅର୍ଥ ଉପାର୍ଜନ କରୁଥିଲେ, ତାହାକୁ ବିଦ୍ୟାଳୟରେ ନିଜର ରହିବା ଓ ଖାଇବା ଖର୍ଚ୍ଚ ତୁଲାଇବାରେ ବିନିଯୋଗ କରାଯାଇ ପାରୁଥିଲା । ଅପେକ୍ଷାକୃତ ଅଧିକ ଦରିଦ୍ର ଘରର ପିଲାମାନଙ୍କ ପାଇଁ ଏହିଭଳି ଏକ ବିକଳ୍ପ ବ୍ୟବସ୍ଥାର ନିଶ୍ଚୟ ଚିନ୍ତା କରା ଯାଇଥିବ । ବାହାରେ ଛାଞ୍ଚରେ ଓ ବ୍ୟବସ୍ଥା ଗୁଡ଼ିକରେ ଟିକିନିଖି ଗୁଡ଼ିକର କ୍ଷେତ୍ରରେ ଯେତେ ଯାହା ଫରକ ରହିଥିଲେ ମଧ୍ୟ ମୂଳ ବିଚାରଟି ସମଗ୍ରତଃ ସ୍ଥିର ହୋଇ ରହିଛି: ଦେଶର ଯେଉଁ ତରୁଣମାନେ ଗଣବିଦ୍ୟାଳୟରୁ ଶିକ୍ଷା ଗ୍ରହଣ କରିବେ, ସେମାନେ ପ୍ରଶିକ୍ଷଣ ପରେ ଗ୍ରାମରୁ ଏବଂ କୃଷିର ଜଗତଟି ଭିତରୁ ବାହାରି ପଳାଇବାକୁ ଆଉ ମୋଟେ ମନ କରିବେ ନାହିଁ । ସେମାନେ ଗାଆଁକୁ ହିଁ ଫେରିଯିବେ, କୃଷିକ୍ଷେତ୍ରକୁ ଫେରିଯିବେ । ଗଣବିଦ୍ୟାଳୟ ସେମାନଙ୍କୁ ଯାବତୀୟ ଅର୍ଥରେ ଏପରି ଏକ ଭାବାତ୍ମକ ଜୀବନଦୃଷ୍ଟିରେ ବଳିଷ୍ଠ କରି ରଖିବାର ଚେଷ୍ଟା କରିଥିବ, ଯାହାକି ସେମାନଙ୍କର ଗୋଡ଼କୁ ଗ୍ରାମ ଛାଡ଼ି ସହର ଆଡ଼କୁ ଆଦୌ ଭୁଲାଇ ନେବନାହିଁ । ଅବଶ୍ୟ ଏକଥା ମଧ୍ୟ ସତ୍ୟ ଯେ ସିଏ ସହର ବିରୋଧରେ କୌଣସି ଯୁଦ୍ଧ ଘୋଷଣା କରିବନାହିଁ । ପୃଥିବୀରେ ଗ୍ରାମ ଓ ସହର ଉଭୟେ ପରସ୍ପରର ପରିପୂରକ ଏବଂ ପୋଷକ ହୋଇ ରହିବେ, ସେ ଏହି ଅସଲ କଥାଟିକୁ ଶିକ୍ଷା କରିଥିବ ।

ଗୋଟିଏ ହିସାବରୁ ଜଣାଯାଉଛି ଯେ, ଉନବିଂଶ ଶତାବ୍ଦୀର ଶେଷ ବେଳକୁ ଡେନ୍‌ମାର୍କ୍‌ର ବିଭିନ୍ନ ଲୋକବିଦ୍ୟାଳୟରେ ପ୍ରାୟ ସାଢ଼େ ସାତହଜାର ପୁଅଝିଅ ଶିକ୍ଷାଲାଭ କରିଥିଲେ ଏବଂ ଶତାବ୍ଦୀର ପ୍ରଥମ ତିରିଶିବର୍ଷ ପରେ ସେହି ସଂଖ୍ୟା ନଅ ହଜାରକୁ ଅତିକ୍ରମ କରି ସାରିଥିଲା । ଦ୍ଵିତୀୟ ମହାଯୁଦ୍ଧ ସରିବା ସମୟକୁ ଡେନ୍‌ମାର୍କ୍‌ରେ ଲୋକବିଦ୍ୟାଳୟ ସଂଖ୍ୟା ଚଉବନ ହୋଇ ଯାଇଥିଲା । ଡେ଼ନ୍‌ମାର୍କ୍‌ରୁ ତାହା ସମଗ୍ର ସ୍କାଣ୍ଡିନେଭିଆକୁ ସଂକ୍ରାମିତ ହୋଇ ଯାଇଥିଲା । ସେହି ହିସାବ କହୁଛି ଯେ, ସେତେବେଳେକୁ ସୁଇଡ଼େନ୍‌ରେ ୭୫ଟି ଏବଂ ଫିନ୍‌ଲାଣ୍ଡ୍ ଦେଶରେ ୫୫ଟି ଲୋକବିଦ୍ୟାଳୟ କାର୍ଯ୍ୟ କରୁଥିଲେ । ଏବଂ, ବିଂଶ ଶତାବ୍ଦୀର ବିଭିନ୍ନ ସମୟରେ ସେହି ସଂକ୍ରମଣଟି ଜର୍ମାନୀ, ପୋଲାଣ୍ଡ୍, ହଲାଣ୍ଡ, ସୁଇଜ୍‌ର୍‌ଲାଣ୍ଡ, ଇଂଲଣ୍ଡ୍, ବୁଲ୍‌ଗାରିଆ, ଆର୍ଜେଣ୍ଟାଇନା, ଜାପାନ ଏବଂ ଆମେରିକା ଯାଏ ମଧ୍ୟ ବ୍ୟାପ୍ତ ହୋଇଗଲା, ମାତ୍ର ମୂଳ ପ୍ରେରଣାଟି ଏକାଧିକ ଦୃଷ୍ଟିରୁ ଅପରିବର୍ତ୍ତିତ ରହିଥିଲା । ଚଉଦ ପନ୍ଦରବର୍ଷ ବୟସରେ ଦେଶରେ ପିଲାମାନଙ୍କ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାକାଳଟି ଗତ ହୋଇଯିବା ପରେ ପ୍ରାୟ ଅଧେରୁ ଅଧିକ ଯେଉଁ ତରୁଣମାନେ ଉଚ୍ଚତର ଶିକ୍ଷାରେ ପ୍ରବେଶ ନକରି କୃଷି ଓ ସମଧର୍ମୀ ଅନ୍ୟାନ୍ୟ ଜୀବିକାକ୍ଷେତ୍ରରେ ପ୍ରବେଶ କରନ୍ତି, ସେମାନଙ୍କର ମଧ୍ୟ ଆଧୁନିକ ଜଗତ ଏବଂ ଆଧୁନିକ ଜୀବନଟିର ଚାହିଦା ଅନୁସାରେ ଏକ ଉତ୍ତରୋତ୍ତର

ଶିକ୍ଷାଲାଭର ପ୍ରୟୋଜନ ରହିଛି, ସେହି ସତ୍ୟଟିକୁ କ୍ରମେ ଅଧିକରୁ ଅଧିକ ଲୋକ ହୃଦୟଙ୍ଗମ କରୁଛନ୍ତି । ଉଚ୍ଚତର ସାଧାରଣ ଶିକ୍ଷାର ଦାଣ୍ଡିରେ ଯେଉଁମାନେ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଯାଉଛନ୍ତି, ସେମାନଙ୍କ ସଂଖ୍ୟା ତୁଳନାରେ ସିଧା କୃଷି ଓ୍ ଶିଳ୍ପାଦିରେ ପ୍ରବେଶ କରୁଥିବା ବାକୀମାନଙ୍କ ସଂଖ୍ୟା ସର୍ବଦା ଅଧିକ । ସେମାନେ ସେହି ପ୍ରାଥମିକ ଶିକ୍ଷାର ଗାରଠାରେ ଅଟକି ରହିଗଲେ ଯେକୌଣସି ଦେଶର ବୃହତ୍ତର ସମାଜ ନିମନ୍ତେ ତଥା ଏକ ଗଣତାନ୍ତ୍ରିକ ଜୀବନବ୍ୟବସ୍ଥା ନିମନ୍ତେ ତାହା କଦାପି ସ୍ୱାସ୍ଥ୍ୟକର ହେବନାହିଁ । ମୁଖ୍ୟତଃ ସେହି ଆବଶ୍ୟକତାଟିର ପୂରଣ ନିମନ୍ତେ ଲୋକବିଦ୍ୟାଳୟର ଶିକ୍ଷାଧାରାଟି ଅତ୍ୟନ୍ତ ଉପାଦେୟ ବୋଲି ପ୍ରମାଣିତ ହୋଇଛି । ଯେକୌଣସି ଦେଶର ସାମୂହିକ ଜୀବନରେ ତଥାକଥିତ ପାଠୁଆ ଓ ତଥାକଥିତ ପାଠଛଡ଼ାମାନଙ୍କ ମଧ୍ୟରେ ଗୁଡ଼ାଏ ବ୍ୟବଧାନ ରହିଗଲେ ସେଥିରୁ ଏକାଧିକ ପ୍ରମାଦ ଜନ୍ମଲାଭ କରିବା ଅତ୍ୟନ୍ତ ସ୍ୱାଭାବିକ । ପୃଥିବୀର ଅଧିକାଂଶ ଦେଶରେ ସେହି ପାଠୁଆମାନେ ହିଁ ବ୍ୟବସ୍ଥାର ଯାବତୀୟ ଲଗାମକୁ ହାତରେ ଧରି ସାମୁଦାୟିକ ଜୀବନଟି ଉପରେ ବହୁ ଉପଦ୍ରବ କରିବାରେ ଲାଗିଛନ୍ତି । କୃଷକ ଓ ଶ୍ରମିକମାନେ ବହୁଭାବେ ବଞ୍ଚିତ ହୋଇ ରହିଛନ୍ତି ଏବଂ ସମ୍ବନ୍ଧଗୁଡ଼ିକର ଅବଚେତନ ସ୍ତରରୁ ଆପଣାକୁ ହୁଏତ ନ୍ୟୂନ ବୋଲି ଭାବୁଛନ୍ତି । ଲୋକବିଦ୍ୟାଳୟ ଭଳି କୌଣସି ବିକଳ୍ପ ଶିକ୍ଷାର ଏକ ପରିପୂରକ ବ୍ୟବସ୍ଥା ସେହି ଦିଗରେ ଏକ ଶକ୍ତିଶାଳୀ ପ୍ରତିକାର ବିଧାନ କରି ପାରିବ ବୋଲି କ୍ରମେ ଅଧିକରୁ ଅଧିକ ବ୍ୟକ୍ତି ଚିନ୍ତା କରୁଛନ୍ତି । ଗୋଟିଏ ଦେଶ ବା ସମାଜ କହିଲେ ଯେ ସବୁ ମଣିଷଙ୍କୁ ବୁଝାଏ ଏବଂ ସମସ୍ତଙ୍କର ଉତ୍ତରୋତ୍ତର ସଚେତନତା ବୃଦ୍ଧି ନିମନ୍ତେ ଯେ ସତତ ଏକ ପ୍ରୟାସ ଜାରି ରହିଥିବା ଉଚିତ, ଏବେ ଅଧିକରୁ ଅଧିକ ମନୁଷ୍ୟ ତାହାର ତାତ୍ପର୍ଯ୍ୟକୁ ଉପଲବ୍ଧି କରୁଛନ୍ତି । ଯେଉଁମାନେ କୌଣସି କାରଣରୁ ଔପଚାରିକ ଶିକ୍ଷା ପାଉନାହାନ୍ତି ବା ପାଇନାହାନ୍ତି, ସେମାନଙ୍କର ମଧ୍ୟ ଏକ ଅନବରତ ଶିକ୍ଷଣ ପ୍ରକ୍ରିୟା ପାଇଁ ପୂର୍ଣ୍ଣ ଅଧିକାର ଯେ ରହିଛି, ଔପଚାରିକ ଶାସକମାନେ ମଧ୍ୟ କ୍ରମେ ସେଥିଲାଗି ବାଟ ଛାଡ଼ି ଦେବାପାଇଁ ରାଜୀ ହୋଇ ଆସିଲେଣି ।

ଡେନ୍‌ମାର୍କର ଚାଷୀ ସେହି ଦେଶ ସମାଜର କେବଳ ଏକ ଉନ୍ନତ ବର୍ଗ ନୁହେଁ, ତାହାର ଏକ ସାମୂହିକତାବୋଧ ମଧ୍ୟ ଏପରି ସ୍ୱତନ୍ତ୍ର ଭାବରେ ପରିଲକ୍ଷିତ ହୋଇଥାଏ, ଯାହାକି ଏପରିକି ଇଉରୋପର ଅନ୍ୟାନ୍ୟ ଅନେକ ଦେଶର କୃଷକଜୀବନଗତ କ୍ରିୟାଶୀଳତାରେ ସେତେ ଚାକ୍ଷୁଷ ଭାବରେ ଅନୁଭୂତ ହୁଏନାହିଁ । ଅତିରିକ୍ତ ଭୂମିପରିମାଣର ମାଲିକ ହୋଇ ବସିଥିବା ଚାଷୀଙ୍କର ସଂଖ୍ୟା ଅତ୍ୟନ୍ତ ନଗଣ୍ୟ, ନିଶ୍ଚିତ ଭାବରେ ଏକ ପ୍ରତିଶତ ମଧ୍ୟ ହେବନାହିଁ । ଅଧିକାଂଶ କୃଷକ ନିଜେ ହେଉଛନ୍ତି ସେମାନେ ଆବାଦ କରୁଥିବା ଜମିର

ଅଧିକାରୀ । ଜଣେ ଚାଷୀ ଯେପରି ଅତିରିକ୍ତ ଭୂମିର ମାଲିକ ହୋଇ ନପାରିବ, ସେଥିଲାଗି ଦେଶରେ ଆଇନ୍ ମଧ୍ୟ ତିଆରି ହୋଇ ରହିଛି । କୃଷିରେ ବିଜ୍ଞାନର ପ୍ରକୃଷ୍ଟତମ ଉପଯୋଗ ହୋଇ ପାରୁଛି । କୃଷିବିଜ୍ଞାନର ଶିକ୍ଷା ନିମନ୍ତେ ସେଠାରେ ଯେଉଁ ଉଚ୍ଚତମ ଅନୁଷ୍ଠାନମାନ ରହିଛି, ସେଠାରେ କେବଳ ନିଜର ଜୀବିକାଧର୍ମରେ କୃଷକ ହେବାକୁ ନିଷ୍ପତ୍ତି ଗ୍ରହଣ କରିଥିବା ବ୍ୟକ୍ତିମାନେ ହିଁ ପ୍ରବେଶାଧିକାର ଲାଭ କରୁଛନ୍ତି । ପ୍ରାୟ ଶହେ ପ୍ରତିଶତ ମାତ୍ରାରେ ସମବାୟ-ପଦ୍ଧତିରେ ହିଁ କୃଷକର ଯାବତୀୟ ସକ୍ରିୟତା ପରିପୁଷ୍ଟ ହୋଇ ରହିଛି । ଦେଶର ରପ୍ତାନୀ ତଥା ଆମଦାନୀ-ସମ୍ବନ୍ଧୀୟ ନୀତି କୃଷକର ହିତ ତଥା ସ୍ୱାର୍ଥରକ୍ଷା ଦ୍ୱାରା ନିୟନ୍ତ୍ରିତ ହେଉଛି । ନିଜର ବୃତ୍ତିଗତ ନିୟତି ଉପରେ କୃଷକର ପୂର୍ଣ୍ଣ ଅକ୍ତିଆର ରହିଛି । ତେଣୁ କୃଷିନାମକ ସେହି ସାମୁଦାୟିକ ଭାବସଂସାରଟି ମୋଟେ ଭାଙ୍ଗୁନାହିଁ । ତଥାକଥିତ ସହରଟା କୃଷକମାନଙ୍କୁ ନେଇ ମୋଟେ କୌଣସି ଖେଳ ଖେଳୁ ବି ନାହିଁ । କ୍ଷେତରେ ଲଗାଉଥିବା ପୁଞ୍ଜି ଓ ଶ୍ରମର ଅନୁପାତରେ ତହିଁରୁ ଉତ୍ପାଦନ ତଥା ଉପାର୍ଜନ ଯେ ଅବଶ୍ୟ ସ୍ଥିର ରହିବ, ଚାଷୀ ସେହି ବିଷୟରେ ସୁନିଶ୍ଚିତ ହୋଇ ରହିପାରୁଛି । ତେଣୁ ଗ୍ରାମଜୀବନ ଏବେମଧ୍ୟ ଅତ୍ୟନ୍ତ ଆକର୍ଷକ ହୋଇ ରହିଛି । ଏବଂ, ସେହି କାରଣରୁ, ଗ୍ରାମ ଛାଡ଼ି କୃଷିକୁ ଛାଡ଼ି ଅନ୍ୟତ୍ର ଅଧିକ ପ୍ରତିଶ୍ରୁତିର ପ୍ରଲୋଭନରେ ପଳାଇ ଯିବାର ସେପରି କୌଣସି ପ୍ରଶ୍ନ ହିଁ ନାହିଁ ।

ପର୍ଯ୍ୟବେକ୍ଷକମାନେ ବିଗତ ପ୍ରାୟ ଏକଶତାବ୍ଦୀ ହେଲା କହି ଆସିଛନ୍ତି, ଏହି ଦୃଢ଼ ସ୍ଥିତିଟି ପଛରେ ଲୋକବିଦ୍ୟାଳୟର ଅବଦାନଟି ହିଁ ସବୁଠାରୁ ଅଧିକ ମଜବୁତ ଖୁଣ୍ଟଟିଏ ପରି କାର୍ଯ୍ୟ କରି ଆସିଛି । କୃଷକମାନଙ୍କୁ କୃଷିସଂସ୍କୃତି ଦ୍ୱାରା ସଂବଳିତ ଓ ପରିପୁଷ୍ଟ ଏକ ଜୀବନର ନିର୍ଭର ଦେଇ ତାହା ଡେନ୍‌ମାର୍କରେ ଏପରି ବହୁତ କିଛି ସମ୍ଭବ କରିଛି, ଯାହାକି ଇଉରୋପର ଅନେକ ଅନେକ ଦେଶରେ ସମ୍ଭବ ହୋଇ ପାରିନାହିଁ । କୃଷିକୁ ଏକ ଧନ୍ଦାରୂପେ ଗ୍ରହଣ କରିବା ଏବଂ ଅନ୍ୟପକ୍ଷରେ ସ୍ୱନିର୍ବାଚିତ ଗୋଟିଏ ଧର୍ମରୂପେ ଗ୍ରହଣ କରିବା, - ଦୁଇକଥା ମଧ୍ୟରେ ବସ୍ତୁତଃ କେତେ ଅନ୍ତର ଯେ ରହିଛି, ସେକଥା ଡେନ୍‌ମାର୍କ୍‌ର କୃଷିସଂସାର ସହିତ କିଞ୍ଚିତ୍ ପରିଚିତ ହୋଇପାରିଲେ ହିଁ ସବାଆଗ ଧରା ପଡ଼ିଯାଏ । ଇଉରୋପର ଆଉ କେତୋଟି ଦେଶରେ ସମବାୟ ଆନ୍ଦୋଳନର ଇତିହାସକୁ ଅବଲୋକନ କରିବାକୁ ଯାଇ ଆମେ ଜାଣି ପାରିବା ଯେ, ପ୍ରାୟ ସବୁଠାରେ ତାହା ସହରରୁ ହିଁ ଆରମ୍ଭ ହୋଇଛି, ଅସଲ ପ୍ରେରଣାଟି ସହରରୁ ଗ୍ରାମାଞ୍ଚଳକୁ ଆସିଛି; ଇଂଲଣ୍ଡ ଓ ସୁଇଡ଼େନରେ ଶ୍ରମିକମାନେ ଏହି ଦିଗରେ ସର୍ବପ୍ରଥମ ପଦକ୍ଷେପ ଗ୍ରହଣ କରିଛନ୍ତି ଓ ପୁରୋଗାମୀ ଭାବରେ କାର୍ଯ୍ୟ କରିଛନ୍ତି ଏବଂ ଜର୍ମାନୀରେ ସମାଜର ମଧ୍ୟବର୍ଗଟି ସହିତ ଏହି କ୍ଷେତ୍ରରେ ସେହି ଶ୍ରମିକମାନଙ୍କର ହିଁ ଏକ ମୁଖ୍ୟ ଭୂମିକା ରହିଆସିଛି ।, ସାନ ଦେଶ ଡେନ୍‌ମାର୍କ୍‌ରେ ତାହା ମୂଳରୁ ହିଁ ଏକ ଗ୍ରାମୀଣ

ଆନ୍ଦୋଳନ ରୂପେ ବିକାଶ ଲାଭ କିଛି । ଏବଂ ସଂପୃକ୍ତ ସମସ୍ତେ ସ୍ୱୀକାର କରିଛନ୍ତି ଯେ, ଲୋକବିଦ୍ୟାଳୟ ଦ୍ୱାରା ସୃଷ୍ଟି କରାଯାଇଥିବା ନୂତନ ଜାଗରଣଟି ହିଁ ସେହି ଦିଗରେ ଏକ ଅନୁକୂଳ ମୂଳଦୁଆ ଯୋଗାଇ ଦେଇଛି ।

ଶ୍ରୀ କ୍ରିଷ୍ଟେନ୍ କଲ୍ଲ୍ ଶିକ୍ଷାବିଷୟକ ତାଙ୍କର ଯାବତୀୟ କାର୍ଯ୍ୟରେ ଡେନ୍‌ମାର୍କ୍‌ର ଗାଆଁଗୁଡ଼ିକର କଥାକୁ ହିଁ ଭାବୁଥିଲେ । ଗାଆଁରେ ଜନ୍ମ ହୋଇଥିଲେ, ଗାଆଁର ଫୁଲପାଣି ଦ୍ୱାରା ହିଁ ତାଙ୍କ ଦୃଷ୍ଟିର ସମୁଦାୟ ମେଦିନୀଟି ତାଙ୍କ ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅନୁସିକ୍ତ ହୋଇ ରହିଥିଲା । ତାଙ୍କ ଅନ୍ତଃକରଣରେ ସହର ପ୍ରତି ଏକ ବିତୃଷ୍ଣା ଅଥବା କୌଣସି ସଚେତନ ଦୂରତାବୋଧ ଅତ୍ୟନ୍ତ ଖର ଭାବରେ ରହି ଯାଇଥିଲା କି ? ସହରୀ ସରକାରୀ ବିଭାଗର କର୍ତ୍ତାମାନେ ତ ବାରମ୍ବାର ଆସି ତାଙ୍କର ପ୍ରୟୋଗଗୁଡ଼ିକରେ ପ୍ରତିବନ୍ଧକ ସୃଷ୍ଟି କରୁଥିଲେ ଓ ତାଙ୍କୁ ତାଙ୍କର ଧର୍ମରୁ ବିତାଡ଼ିତ କରି ନେଇଯିବା ନିମନ୍ତେ ପ୍ରାୟ ଏକ ଖଳନାୟକର ଚକ୍ରାନ୍ତମାନ କରୁଥିଲେ । ଡେନ୍‌ମାର୍କ୍‌ର ପଲ୍ଲୀବାସୀ କୃଷକମାନଙ୍କ ସହିତ ହିଁ ତାଙ୍କ ମମତାର ମିଜାଜଟା ସର୍ବଦା ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଯୋଡ଼ି ହୋଇ ରହିଥିଲା । ଏକାଧିକ ବାର କୌଣସି କୃଷକ ଅଥବା କୃଷକ ଘରଣୀଟି ସର୍ବଦା ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଯୋଡ଼ି ହୋଇରହିଥିଲା । ଏକାଧିକ ବାର କୌଣସି କୃଷକ ଅଥବା କୃଷକଘରଣୀ ସହିତ ତାଙ୍କର ହୋଇଥିବା କଥୋପକଥନକୁ ସିଏ ବୟସ୍କ ଶିକ୍ଷାର୍ଥୀମାନଙ୍କ ନିମନ୍ତେ ଖୋଲିଥିବା ବିଦ୍ୟାଳୟର ଶ୍ରେଣୀଗୃହରେ ଦୃଷ୍ଟାନ୍ତରୂପେ ବ୍ୟବହାର ବି କରୁଥିଲେ । ପ୍ରାୟ କୋଡ଼ିଏ ବର୍ଷର ତାଙ୍କ ଲୋକବିଦ୍ୟାଳୟଟିର ଇତିହାସରେ ତାଙ୍କୁ ଘେରି ଏକତ୍ର ହୋଇଥିବା ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ହୁଏତ ମାତ୍ର ଜଣେ ମଧ୍ୟ ସହରରୁ ଆସି ନଥିବେ । ଯାବତୀୟ ସନ୍ଦର୍ଭରେ ସେମାନଙ୍କ ବିଷୟରେ କୌଣସି କଥା ପକାଇବା ସମୟରେ ସେ ପୂର୍ଣ୍ଣ ଅଭ୍ୟସ୍ତ ଭାବରେ Bondekarl(ଚାଷୀଘର ପୁଅ) ଏବଂ Bondepige(ଚାଷୀଘର ଝିଅ) ଏହି ଦୁଇଟି ଶବ୍ଦର ହିଁ ପ୍ରୟୋଗ ମଧ୍ୟ କରୁଥିଲେ । କାର୍ଯ୍ୟୋପଲକ୍ଷ୍ୟରେ ସେ ରାଜଧାନୀ କୋପେନ୍‌ହେଗେନ୍ ସହରକୁ ହୁଏତ ଯେତେଥର ଯାଇଥିବେ, ସର୍ବଦା ବିଶପ୍ ଗ୍ରୁଣ୍ଡ୍‌ଭିଗ୍‌ଙ୍କ ସହିତ ଦେଖା କରିବାକୁ ହିଁ ଯାଇଥିବେ । ସମ୍ଭବତଃ ସିଧା ତାଙ୍କରି ପାଖକୁ ଯାଉଥିବେ ଓ ସେଠାରେ କାମ ସାରି ସିଧା ସହରରୁ ବାହାରି ଆସୁଥିବେ । ଗ୍ରୁଣ୍ଡ୍‌ଭିଗ୍‌ଙ୍କ ବିଷୟରେ ଏକଦା ସେ କହିଥିବାର ଉଲ୍ଲେଖ ଅଛି : ''ଯେତେବେଳେ ମୁଁ ଗ୍ରୁଣ୍ଡ୍‌ଭିଗ୍‌ଙ୍କୁ ଭେଟିବାକୁ ଯାଏ, ସେତେବେଳେ ତାଙ୍କ ପାଖରେ ବସିଥାଏ, ସେତେବେଳେ ମୋଟେ କିଛି କହିବାକୁ ମୋ'ର ଇଚ୍ଛା ହୁଏନାହିଁ । ସିଏ କହି ଯାଉଥାଆନ୍ତି, ମୁଁ କେବଳ ଶୁଣିବାରେ ଲାଗିଥାଏ । ବର୍ଷ ତମାମ ମୋ' ମନରେ ବହୁତ ପ୍ରଶ୍ନର ଉଦ୍ରେକ ହୁଏ, ଯେଉଁଗୁଡ଼ିକର ଉତ୍ତର ମୁଁ ନିଜ ଭିତରୁ ପାଇ ପାରେନାହିଁ । ସେତେବେଳେ ସେଗୁଡ଼ିକୁ ସାଙ୍ଗରେ ଧରି ମୁଁ ଗ୍ରୁଣ୍ଡ୍‌ଭିଗ୍‌ଙ୍କ ପାଖକୁ ଚାଲିଆସେ

ଏବଂ ସେଗୁଡ଼ିକର ସମାଧାନ ନିମନ୍ତେ ସିଏ ମୋତେ ପ୍ରକୃତରେ ବଡ଼ ଅଦ୍‌ଭୂତ ଭାବରେ ସହାୟତା କରିଥାନ୍ତି ।''

ଦେଢ଼ଶହ ବର୍ଷ ତଳେ ଡେନ୍‌ମାର୍କ୍‌ରେ ଗ୍ରାମ ଏବଂ ସହର ମଧ୍ୟରେ ପ୍ରଭୂତ ବ୍ୟବଧାନ ରହିଥିଲା । ସଭ୍ୟତା ବୋଲି ଯାହାକିଛି ସ୍ୱୀକୃତ ହେଉଥିଲା, ସହର ହିଁ ତାହାର ପେଣ୍ଠ ହୋଇ ରହିଥିଲା । ବିଜ୍ଞାନର ଅଧିକରୁ ଅଧିକ ପ୍ରୟୋଗ ଦ୍ୱାରା ସହରର ହିଁ କଳେବର ବଦଳୁଥିଲା । ସହରୀ ମନୁଷ୍ୟମାନଙ୍କର ନଜରଗୁଡ଼ିକ ବଦଳି ଯାଉଥିଲା । ସରକାର ସହରରୁ ହିଁ ଚାଲୁଥିଲା । ଶିକ୍ଷିତମାନେ ସହରକୁ ଆଦିର ରହିଥିଲେ ଏବଂ ସହରଟା ହିଁ ଆଖର ଗ୍ରାମଗୁଡ଼ିକୁ ଗିଳି ପକାଇବେ ବୋଲି ହୁଏତ ବିଶ୍ୱାସ ମଧ୍ୟ କରୁଥିଲେ । ସହରରୁ ବରାଦ ହୋଇ ଶିକ୍ଷା ବି ଗାଆଁକୁ ବୁହା ହୋଇ ଆସୁଥିଲା । ଗାଆଁମାନେ ବୃତ୍ତିଗତ ତଥା ଭାବଗତ କେତେକ ପାରମ୍ପରିକ ପାରସ୍ପରିକତା ଭିତରେ ବାନ୍ଧିହୋଇ ରହୁଥିଲେ । ଜୀବନ ବଡ଼ ଅଳପ ଥିଲା, ବଡ଼ ସରଳ ଥିଲା । ସମ୍ପର୍କମାନେ ବି ସିଧା ହୋଇ ରହିଥିଲେ । ତେଣୁ, ଭାରି ସହଜରେ ବୁଝି ହେଉଛି ଯେ କ୍ରିଷ୍ଟେନ୍ କଲ୍‌ଲ୍ ନିଜ ଶିକ୍ଷାକଳ୍ପନାର କକ୍ଷଟି ମଧ୍ୟରେ ଗାଆଁକୁ ଓ ଚାଷୀକୁ ହିଁ ସର୍ବପୁରୋଭାଗରେ ଦେଖୁଥିଲେ । ସଭ୍ୟତାର ସଞ୍ଚରଣ ବଢ଼ିବା ସଙ୍ଗେ ସଙ୍ଗେ ଏବଂ ଆହ୍ୱାନଗୁଡ଼ିକ ଉଭୟ ସହରର ତଥା ଗାଆଁର ବୋଲି ସଂପୃକ୍ତ ନେତୃତ୍ୱଗୁଡ଼ିକ ଅନୁଭବ କରିବା ସଙ୍ଗେ ସଙ୍ଗେ ଗଣବିଦ୍ୟାଳୟ କହିଲେ କ୍ରମେ ଉଭୟ ସହର ଏବଂ ଗାଆଁ ସମ୍ଭାରି ଧରିଥିବା ଆହ୍ୱାନଗୁଡ଼ିକର ସମ୍ମୁଖୀନ ହେବାକୁ ମଧ୍ୟ ବୁଝାଇଲା । ଦ୍ୱିତୀୟ ମହାଯୁଦ୍ଧ ପରେ ଯେଉଁ ସଚେତନତା ପ୍ରାୟ ଏକ ନୂଆ ସମ୍ମୁଖ୍ୟକୁ ହେତୁରେ ରଖି ଜୀବନକୁ ପୁନର୍ଗଠିତ କରି ଆଣିଲା, ସେଥିରେ ସହର ଓ ଗାଆଁ ସତେଅବା ଅତ୍ୟନ୍ତ ନିଷ୍ପତ୍ତିମୂଳକ ଭାବରେ ପରସ୍ପରର ପାଖକୁ ପୂରା ଲାଗି ଆସିଥିଲେ । ଡେନ୍‌ମାର୍କ୍‌ର ଅପେକ୍ଷାକୃତ ବୃହତ୍ ଲୋକବିଦ୍ୟାଳୟ ମାନଙ୍କରେ ସହରର ତରୁଣମାନେ ମଧ୍ୟ ସେଗୁଡ଼ିକର ଶିକ୍ଷାକ୍ରମରେ ଯୋଗ ଦେବାକୁ ଆସିଲେ । ଉଭୟ ସହର ଏବଂ ଗାଆଁର ଯୁବକଯୁବତୀ ଏକତ୍ର ରହନ୍ତୁ, ସାମୂହିକ ନିୟତି ତଥା ପ୍ରତିଶ୍ରୁତିଗୁଡ଼ିକୁ ସେମାନେ ଏକତ୍ର ବିଶ୍ଳେଷଣ କରନ୍ତୁ, ଆଞ୍ଚଳିକ ବାରଣଗୁଡ଼ିକୁ ନଦେଖି ସେମାନେ ଏକତ୍ର ହିଁ ସମ୍ମୁଖସ୍ଥ ଜୀବନ ସହିତ ନିଜକୁ ସଂପୃକ୍ତ ବୋଲି ଅନୁଭବ କରନ୍ତୁ, ସମ୍ଭବତଃ ସେଥିପାଇଁ ସମଗ୍ର ପରିପ୍ରେକ୍ଷୀଟି ବଦଳିଗଲା ଅର୍ଥାତ୍ ସଂପ୍ରସାରିତ ହୋଇ ଯାଇଥିଲା ।

ଅଧୀତ ବିଷୟଗୁଡ଼ିକ ମଧ୍ୟ ବଦଳି ଆସିଲା, - ନୂଆ ନୂଆ ପରିଧିମାନଙ୍କୁ ସ୍ଥାନ ଦିଆଗଲା । ସମୟର ଆବଶ୍ୟକତାଗୁଡ଼ିକୁ ବି ଗୁରୁତ୍ୱ ଦିଆ ଯାଇଥିଲା । ଯୁଦ୍ଧ ଅର୍ଥାତ୍ ଦ୍ୱିତୀୟ ମହାଯୁଦ୍ଧ ପରେ ସାନ ଡେନ୍‌ମାର୍କ୍ ବଡ଼ ଇଉରୋପ ସହିତ ଗୁନ୍ଥି ହୋଇ ଯାଇଥିଲା । ପୃଥିବୀରୁ ଉପନିବେଶର କାଳଟି ବିଦାୟ ନେଲା । ପୃଥିବୀସ୍ତରରେ ଅନୁଷ୍ଠାନମାନ ଗଠିତ

ହେଲା, ଯେଉଁଥିରେ ସବୁ ମହାଦେଶର ସରକାରମାନେ ପ୍ରତିନିଧିତ୍ୱ କରିବାର ଅଧିକାର ପାଇଲେ। ବିଶ୍ୱବାଣିଜ୍ୟର ହିସାବଗୁଡ଼ିକୁ ଏଣିକି ନୂଆପ୍ରକାରେ କରିବାକୁ ମଧ୍ୟ ପଡ଼ିଲା। ସମାଜରେ ପ୍ରତିଯୋଗିତା ବୃଦ୍ଧି ପାଇଥିଲା। ହୃଦୟର ମର୍ଯ୍ୟାଦାକୁ ଅସ୍ୱୀକାର କରା ଗଲାନାହିଁ ସତ, ତଥାପି ମସ୍ତିଷ୍କର କଦର ଏବଂ ଅନୁଶୀଳନ କରିବାଟାକୁ ଅଧିକ ବ୍ୟାବହାରିକ ବୋଲି ଅନୁଭବ କରାଗଲା। ଇଉରୋପୀୟ ଅଭିମାନଟାକୁ ଯେଉଁଟା ହୁଏତ ସବୁଠାରୁ ଅଧିକ ବାଧିଥିବ, ସେଇଟି ହେଉଛି ଯେ ପ୍ରାୟ ଏକ ନୂଆ ପୃଥିବୀର ରାଜନୀତି ଏବଂ ବିଚାରସଂସ୍କାର ଅନୁସାରେ ଇଉରୋପର ମାନସ ନିଜକୁ ଏଣିକି ନୂଆ ନୂଆ ମାପକାଠି ଅନୁସାରେ ପ୍ରଶିକ୍ଷିତ କରି ଆଣିବାକୁ ବାଧ୍ୟ ହେଲା। ଦର୍ଶନ କହିଲେ ଆଗପରି ମୋଟେ କେବଳ ଇଉରୋପୀୟ ଦର୍ଶନକୁ ବୁଝାଇଲାନାହିଁ। ଧର୍ମ କହିଲେ ମଧ୍ୟ କେବଳ ଖ୍ରୀଷ୍ଟିଆନ୍ ଧର୍ମକୁ ବୁଝାଇଲା ନାହିଁ। ନିଜକୁ ମଣ କରି ଆଣିବାର ଏହି ପର୍ଯ୍ୟାୟଟିକୁ ଇଉରୋପ ଯେପରି ଥିର ବିବେକରେ ସ୍ୱୀକାର କରି ନେଇଥିଲା, ତାହା ପ୍ରକୃତରେ ସମଗ୍ର ଅବଶିଷ୍ଟ ବିଶ୍ୱକୁ ଆକର୍ଷଣ ଅବଶ୍ୟ କରିଥିବ। କହିବା ବାହୁଲ୍ୟ, ଡେନ୍‌ମାର୍କ୍‌ର ଗଣବିଦ୍ୟାଳୟର ସଂସାରଟିରେ ମଧ୍ୟ ଏହାର ପ୍ରଭାବ ପଡ଼ିଥିଲା। ଯାହା ସଚରାଚର ଘଟିଥାଏ, ପୁରୁଣା ଓ ପ୍ରତିଷ୍ଠିତ ବିଦ୍ୟାଳୟଗୁଡ଼ିକ ତଥାପି ନିଜର ଅଭ୍ୟସ୍ତ ରୀତି ଏବଂ ପଦ୍ଧତିଗୁଡ଼ିକୁ ଯଥାସମ୍ଭବ ସେହି ଆଗପରି ଅତୁଟ ଓ ଅପରିବର୍ତ୍ତନୀୟ ରଖିବାକୁ ଉଦ୍ୟମ କଲେ ସତ, କିନ୍ତୁ ପରିବର୍ତ୍ତିତ କାଳ ଓ ତାହାର ନୂତନ ଆହ୍ୱାନଗୁଡ଼ିକୁ ଅନୁସନ୍ଧନ ଜଣାଇ କେତୋଟି ନୂଆ ଗଣବିଦ୍ୟାଳୟ ମଧ୍ୟ ଜନ୍ମଲାଭ କଲା, ଯେଉଁଗୁଡ଼ିକୁ କି ପୁରୁଣାମାନେ କିଞ୍ଚିତ୍ ନାସିକାକୁଞ୍ଚନ ସହିତ ଲକ୍ଷ୍ୟ ବି କରୁଥିଲେ। କ୍ରମେ ନୂଆ ନୂଆ ଅନ୍ଦାଜର ଶିକ୍ଷକ ମଧ୍ୟ ବାହାରିଲେ, ଯେଉଁମାନେ ପ୍ରଚଳିତ ଅଧ୍ୟୟନର ତାଲିକା ଭିତରକୁ କେତେ ନୂତନ ବିଷୟର ପ୍ରବେଶ ଘଟାଇଥିଲେ। ନାନା ନୂତନ ଆବେଦନର ଗୀତମାନ ବି ବୋଲାହେଲା। ପାଠ୍ୟକ୍ରମରେ ଡେନ୍‌ମାର୍କ୍ ଆଦୌ କେନ୍ଦ୍ରବିନ୍ଦୁ ହୋଇ ରହିଲାନାହିଁ। ବୃହତ୍ତର ପୃଥିବୀଟିକୁ ଶ୍ରଦ୍ଧାର ସହିତ ନଜାଣିଲେ ତଥାକଥିତ ନିଜ ଦେଶକୁ ନିଜର ବୋଲି ଜାଣିବାର ଓ ଅନୁଭବ କରିବାର ପ୍ରକ୍ରିୟାଟା ମଧ୍ୟରେ ନାନା ଅସୁସ୍ଥତା ଆସି ପଶିଯିବ। ପୁରାତନମାନେ ମଧ୍ୟ ସେହି ବିଷୟରେ ଅଧିକ ସଚେତ ହେବାକୁ ଉଚିତ ମନେ କଲେ। ନିଜ ଦେଶଲାଗି ନିଜକୁ ଗଢ଼ିବାର ଯାବତୀୟ କାର୍ଯ୍ୟକ୍ରମରେ ଯେ ବୃହତ୍ତର ପୃଥିବୀପ୍ରତି ଏକ କ୍ରିୟାଶୀଳ ଅନୁରକ୍ତି ଏବଂ ସଂପୃକ୍ତି ଅବଶ୍ୟ ରହିବ, ଗଣବିଦ୍ୟାଳୟର କର୍ତ୍ତାମାନେ ସେହି କଥାଟିକୁ ଅଧିକ ପରିମାଣରେ ଅନୁଭବ କରିଥିଲେ। ହଁ, ପାରମ୍ପରିକ ଚଳଣିଟି ଅନୁସାରେ ବିଦ୍ୟାଳୟର ଅଧ୍ୟକ୍ଷଙ୍କ ବ୍ୟକ୍ତିତ୍ୱ ହିଁ ବିଦ୍ୟାଳୟର ସକଳ କିଛିରେ ମୁଖ୍ୟତଃ ମାର୍ଗନିରୂପଣ କରି ଆସିଥିଲା। ଏଣିକି ଏକ ମିଳିତ ଦାୟିତ୍ୱର ପରମ୍ପରା ହୁଏତ ଆଗଟିର ଏକ ସ୍ଥାନାପନ୍ନ ରୂପେ ଅଧିକ ପରିମାଣରେ ଗୃହୀତ ହେଲା। ଅଧ୍ୟକ୍ଷମାନେ ଏଣିକି ଏକମାତ୍ର

ହିରୋ ପରି ସେତେ ଦେଖା ଗଲେନାହିଁ । ଏକ ସତ୍ୟକୁ ଯେ ସଂପୃକ୍ତ ସମସ୍ତେ କାର୍ଯ୍ୟକାରୀ କରିବାକୁ ଏକତ୍ର ହୋଇଛନ୍ତି,ସେହିପରି ଅନୁଭୂତ ହୋଇଥିଲା ।

ପୁରୁଣା ରହିଲା, ପୁରୁଣା ତଥାପି ବଦଳିଲା । ପୁରୁଣା ଲକ୍ଷ୍ୟଗୁଡ଼ିକରେ ନୂତନ ସଂପ୍ରସାରଣମାନ ଘଟିଥିଲା । ପରିବେଶ ବଦଳିଲା, କାରଣ ପୁରୁଣା ପରିଧିମାନେ ସଂପ୍ରସାରିତ ହୋଇଗଲେ । ପରିଧିମାନେ ସଂପ୍ରସାରିତ ହୋଇଗଲେ ଏଣେ ଚେତନାର ମଧ୍ୟ ନୂଆ ପ୍ରସ୍ଥମାନ ଯୋଡ଼ି ହୋଇ ଯାଆନ୍ତି । ପୁନଶ୍ଚ, ଚେତନା ନୂଆ ନୂଆ ପ୍ରସ୍ଥକୁ ସାହସ କଲେ ପରିଧିମାନେ ମଧ୍ୟ ସଂପ୍ରସାରିତ ହୋଇଯାଆନ୍ତି । ଯାବତୀୟ କ୍ଷେତ୍ରରେ ଉଭୟଟିକୁ ହିଁ ସତ ବୋଲି ଗ୍ରହଣ କରିବାକୁ ହୁଏ ଏବଂ ତେଣୁ କିଏ କାରଣ ଓ କିଏ ପରିଣାମ,ସେହି କଥାଟି ବିଚ୍ଛିନ୍ନ କରି ମୋଟେ କହି ହୁଏନାହିଁ । ଲୋକବିଦ୍ୟାଳୟର ପ୍ରଥମ ପର୍ଯ୍ୟାୟରେ ଭଗବାନ୍, ଧର୍ମ ଓ ଜାତୀୟତା, - ଏହି ତିନୋଟିଯାକ ମୁଖ୍ୟ ପ୍ରେରଣାରୂପେ ସକଳ କାର୍ଯ୍ୟକ୍ରମରେ ଏକତ୍ର ବଳି ହୋଇ ରହିଥିଲେ। ଶହେ ବର୍ଷ ପରେ ମଧ୍ୟ ଭଗବାନ ରହିଲେ, ଧର୍ମ ରହିଲା, ଜାତୀୟତା ମଧ୍ୟ ରହିଥିଲା । କିନ୍ତୁ ତିନୋଟିଯାକର ଅର୍ଥବ୍ୟାପ୍ତିରେ ଏକ ପରିବର୍ତ୍ତନ ଘଟିଥିଲା । ଏବଂ, ସେହିଅନୁସାରେ ପ୍ରଶିକ୍ଷଣର ମୂଳ ଦୃଷ୍ଟିଗୁଡ଼ିକରେ ଏକାଧିକ ପରିବର୍ତ୍ତନ ଆସି ପ୍ରବେଶ କଲା । ୧୯୫୨ ମସିହାରେ ଡେନ୍‌ମାର୍କ୍‌ର ବୃହତ୍ତମ ଲୋକବିଦ୍ୟାଳୟର ଅଧକ୍ଷ ଏକ ଲେଖାରେ ଏସବୁ ବିଷୟରେ ଏହିଭଳି ମତଟିଏ ବ୍ୟକ୍ତ କରିଥିଲେ: ଆମର ଏହି ବିଦ୍ୟାଳୟରେ ଶିକ୍ଷକ ହୋଇ ଆସିବାକୁ ଇଛା କରୁଥିବା କୌଣସି ବ୍ୟକ୍ତିଙ୍କୁ ତାଙ୍କର ଧର୍ମବିଶ୍ୱାସ ସମ୍ପର୍କରେ କେବେହେଲେ ପଚରା ଯାଇନାହିଁ ଏବଂ 'ସିଏ ଅମୁକ ନିର୍ଦ୍ଦିଷ୍ଟ ଧର୍ମର ଆୟତନରେ ଅଛନ୍ତି ତ ?' ବୋଲି ପଚାରି ତାଙ୍କଠାରୁ ଆଦୌ କିଛି ଦାବୀ କରା ଯାଇନାହିଁ । ଏଠାରେ ଅଧାପନା କରୁଥିବା ଶିକ୍ଷକମାନେ ସେହି ଏକା ଭଗବାନରେ ବିଶ୍ୱାସ କରନ୍ତୁବୋଲି ଦାବୀ କରୁଥିଲେ ତାହା ବସ୍ତୁତଃ ଏକ ଅତ୍ୟନ୍ତ କଠିନ ବ୍ୟାପାର ହୁଅନ୍ତା । ଏବଂ, ଅନ୍ୟ ପକ୍ଷରେ ମୁଁ ଏପରି ମଧ୍ୟ ଅନୁଭବ କରୁଛି ଯେ, ମନୁଷ୍ୟ ବିଷୟରେ ନିଜ ଜୀବନରେ ଏକ ନିର୍ଦ୍ଦିଷ୍ଟ ବା ସ୍ପଷ୍ଟ ଦୃଷ୍ଟି ନଥିଲେ ଲୋକବିଦ୍ୟାଳୟରେ ଶିକ୍ଷକର ଭୂମିକାରେ ରହିବା ପ୍ରକୃତରେ ଖୁବ୍ କଷ୍ଟକର ହୋଇ ପଡ଼ନ୍ତା । 'ଜଡ଼ ଓ ଦିବ୍ୟ', ଐହିକ ଓ ଭାଗବତ,- ଦୁଇଟିଯାକକୁ ପରସ୍ପର ସହିତ ଅନୁସିକ୍ତ କରି ରଖିବା ନିମନ୍ତେ ଭଗବାନ ମନୁଷ୍ୟକୁ ଭୂମି କରି ଏକ ପ୍ରୟୋଗ କରିବାରେ ଲାଗିଛନ୍ତି'- ଗ୍ରୁଣ୍ଟ୍‌ଭିଗ୍‌ଙ୍କର ସେହି ଉକ୍ତିଟିର ପଶ୍ଚାତରେ ଯେଉଁ ଦୃଷ୍ଟି ତଥା ମୂଳ ବିଶ୍ୱାସଟି ନିହିତ ହୋଇ ରହିଛି,ସେଇଟି ନଥିଲେ ମଧ୍ୟ ଏକ ଲୋକବିଦ୍ୟାଳୟକୁ ଆସି ଶିକ୍ଷକତା କରିବା ସମାନ ଭାବରେ କଷ୍ଟକର ହୋଇପଡ଼ିବ ।

ନିକୋଲାଇ ଗ୍ରୁଣ୍ଟ୍‌ଭିଗ୍ ନିଜ ବୃତ୍ତିରେ ଗୀର୍ଜାରାଜ୍ୟର ଜଣେ ମଣିଷ ଥିଲେ, ମାତ୍ର ତାଙ୍କର ଭଗବଦ୍‌କଳ୍ପନା ସେକାଳର ତଥା ଏକାଳର ଅନେକ ଅନେକ ସେହି ବୃତ୍ତିର

ମନୁଷ୍ୟମାନଙ୍କ ପରି ଗୀର୍ଜା ଭିତରେ ହିଁ ଆଦୌ ସୀମିତ ନଥିଲା । ଭାଗବତ ଅନୁଭବର କାହାଣୀ ଅନୁସାରେ ଆମ ଜୀବନରେ ଏପରି ଗୋଟିଏ ବିନ୍ଦୁ ସର୍ବଦା ରହିଥାଏ, ଯେଉଁଠାରେ ଆସି ପହଞ୍ଚି ପାରିଲେ ଯାବତୀୟ ଉପଲବ୍ଧି ଆଉ କୌଣସି କାନ୍ଥବାଡ଼ ମାନେନାହିଁ,ତାହା ନାମରୂପର ସକଳ ଘେରକୁ ଅତିକ୍ରମ କରିଯାଏ । ନାମରେ ଥାଏ, ଗୀର୍ଜାର ବାଡ଼ ଭିତରେ ମଧ୍ୟ ଅବଶ୍ୟ ରହିଥାଏ, ଅଭ୍ୟସ୍ତ ଉପାସନାର ରୂପକଳ୍ପନା ଭିତରେ ମଧ୍ୟ ରହିଥାଏ, - ତଥାପି ବାହାରେ ମଧ୍ୟ ଥାଏ, - ମଣିଷ ଭିତରେ ଭେଦି ରହିଥାଏ । ସମଗ୍ର ପୃଥିବୀ ଯେତେବେଳେ ତାଙ୍କରି ଦ୍ୱାରା ପୂରି ରହିଥିବା ପରି ପ୍ରାୟ ପ୍ରତ୍ୟକ୍ଷ ଭାବରେ ଅନୁଭବ ହୁଏ, ସେତେବେଳେ ସିଏ ମଣିଷ ଭିତରେ ମଧ୍ୟ ଦିଶନ୍ତି, ଚରାଚରର ଏହି ଜୀବନଟି ସତେଅବା ତାଙ୍କର ପ୍ରୟୋଗଶାଳା ରୂପେ ବ୍ୟବହୃତ ହେଉଥିବା ପରି ଜଳଜଳ ଦେଖା ଯାଉଥାଏ । ଡେନ୍‌ମାର୍କ୍‌ର ଲୋକବିଦ୍ୟାଳୟର ଶିକ୍ଷାରେ ସେହି ସ୍ୱତନ୍ତ୍ର ଦୃଷ୍ଟି ସେଠାରେ ପ୍ରତ୍ୟେକ ସମ୍ପର୍କ ଏବଂ ପ୍ରତ୍ୟେକ କାର୍ଯ୍ୟରେ ହିଁ ଗଭୀର ଭାବରେ ଭେଦିକରି ରହିଥିଲା । ବଡ଼ମାନଙ୍କ ପାଇଁ ଏଭଳି ବିଦ୍ୟାଳୟଟିଏ ରହୁ ବୋଲି ସେ କଳ୍ପନା କରୁଥିଲେ, ଯାହାକି ସକାରାତ୍ମକ ସକଳ ଅର୍ଥରେ ଗୋଟିଏ ମୁକ୍ତ ବିଦ୍ୟାଳୟ ହୋଇ ରହିବ,ମନୁଷ୍ୟ- ଜୀବନକୁ ଏକ ଉଚ୍ଚତର ତାତ୍ପର୍ଯ୍ୟ ସହିତ ଦେଖି ପାରୁଥିବ ଏବଂ ସମଗ୍ରତଃ ସେହି ଲକ୍ଷ୍ୟଟିର ପୂରଣ ଦିଗରେ ନିଜ ଦେଶ ଡେନ୍‌ମାର୍କ୍‌କୁ ହିଁ ନିଜର କ୍ଷେତ୍ରରୂପେ ଗ୍ରହଣ କରୁଥିବ । କ୍ରିଷ୍ଟେନ୍ କଲ୍ଡ୍ ମଧ୍ୟ ନିଜର ବିଦ୍ୟାଳୟରୂପୀ ପ୍ରୟୋଗର କ୍ଷେତ୍ରରେ ଦୁଇଟି ଭିତରେ କାର୍ଯ୍ୟତଃ କୌଣସି ବ୍ୟବଧାନ ଦେଖୁନଥିଲେ । ତେଣୁ, ଭଗବାନ୍, ଦେଶ ଅଥବା ମନୁଷ୍ୟକୁ ପ୍ରେରଣାର ଭୂମିରୂପେ ଗ୍ରହଣ କରିବାର କ୍ଷେତ୍ରରେ କୌଣସି ସଂକୀର୍ଣ୍ଣତା ନଥିଲା ।

ପୁରାତନ ପରମ୍ପରାକୁ ଏକାଧିକ ଅର୍ଥର ଅତିକ୍ରମ କରି ଯିଏ ରାଜଧାନୀ କୋପେନ୍‌ହେଗେନ୍‌ର ଏକ ନିକଟବର୍ତ୍ତୀ ଗ୍ରାମାଞ୍ଚଳରେ ଦ୍ୱିତୀୟ ମହାଯୁଦ୍ଧ ପରେ ନିଜର ଏକ ଲୋକବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ, ସିଏ ହେଉଛନ୍ତି ଅଧକ୍ଷ ଶ୍ରୀ ଯୋହାନେସ୍ ନଓରପ୍ । ନିଜର ମାଓଲୋସ୍ ଲୋକବିଦ୍ୟାଳୟକୁ ସେ ଏପରି ସାନ ଆକାରରେ ରଖିବାକୁ ଚେଷ୍ଟା କଲେ, ଯେପରିକି ଶ୍ରେଣୀଗୃହ ବାହାରେ ଛାତ୍ରଛାତ୍ରୀମାନଙ୍କ ସହିତ ଏକ ଅଧିକ ବ୍ୟକ୍ତିଗତ ସମ୍ବନ୍ଧସୂତ୍ର ସମ୍ଭବ ହୋଇ ପାରିବ । ମହାଯୁଦ୍ଧ ସରିଆସିବା ବେଳକୁ ଯେତେବେଳେ ସମଗ୍ର ଇଉରୋପ ପ୍ରାୟ ଏକ ମୋହଭଙ୍ଗ ପରେ ନୂତନ କିଛି ମୂଲ୍ୟର ସନ୍ଧାନରେ ଚେତା ହୋଇ ଉଠୁଥିଲା, ସେତେବେଳେ ୧୯୪୪ ମସିହାରେ ଶ୍ରୀଯୁକ୍ତ ନଓରୋପ୍ ଲେଖିଥିଲେ: ଏବେ ତ ଆମ ଦେଶର ବିଭିନ୍ନ ଲୋକସ୍ତରରୁ ଛାତ୍ରଛାତ୍ରୀମାନେ ଆମର ଏହି ବିଦ୍ୟାଳୟ ଗୁଡ଼ିକୁ ଆସିବାକୁ ଆରମ୍ଭ କଲେଣି । ସେମାନେ ଗ୍ରାମାଞ୍ଚଳର ଚାଷୀଘରମାନଙ୍କରୁ ଆସୁଛନ୍ତି, ସହରର ଶ୍ରମିକପରିବାରରୁ ଆସୁଛନ୍ତି, ଦେଶର ରାଜନୀତିକ ଦଳମାନେ ମଧ୍ୟ ସେମାନଙ୍କର ତରୁଣ

ସଦସ୍ୟମାନଙ୍କୁ ଏଠାକୁ ପ୍ରଶିକ୍ଷଣ ନିମନ୍ତେ ପଠାଇବାକୁ ଆରମ୍ଭ କଲେଣି । ଆମେ କ'ଣ ପ୍ରକୃତରେ ବିଶ୍ୱାସ କରିପାରୁଛୁ ଯେ ଆମ ବିଦ୍ୟାଳୟକୁ ଆସୁଥିବା ବହୁସଂଖ୍ୟକ ଯୁବକ ଓ ଯୁବତୀ ଏଠାରେ ଯାହାକିଛି ଗ୍ରହଣ କରିବେ, ତଦ୍ୱାରା ସେମାନେ ବର୍ତ୍ତମାନ ଅତ୍ୟନ୍ତ ଶୋଚନୀୟ ଭାବରେ ନିଜର ମାନବିକତାକୁ ହରାଇ ବସିଥିବା ଏହି ପୃଥିବୀକୁ ପୁନର୍ବାର ମାନବିକତାର ଯୋଗ୍ୟ ଏବଂ ଅନୁକୂଳ କରି ପାରିବା ନିମନ୍ତେ ଆବଶ୍ୟକ ଇଚ୍ଛାଶକ୍ତି ଏବଂ ସାମର୍ଥ୍ୟ ଅର୍ଜନ କରିପାରିବେ ? ମୁଁ ଭାବୁଛି, ଆମର ଲୋକବିଦ୍ୟାଳୟ ଗୁଡ଼ିକରେ ତାହାହିଁ ଆମର ସର୍ବପ୍ରଧାନ ପ୍ରୟାସ ହୋଇ ରହିବା ଉଚିତ ।

ଅର୍ଥାତ୍, ଏହିପରି ଗୋଟିଏ ବିଶ୍ୱାସକୁ ନିଜ ଭିତରେ ଜାଗ୍ରତ କରି ରଖିବାକୁ ହେବ । ଆମେ ଏଡି ସବୁଥିରେ ବିଶ୍ୱାସ କରୁଛୁ ବୋଲି ଏଡ଼େବଡ଼ ପାଟି କରି କହିବୁଲିଲେ ଆଦୌ କୌଣସି ଉଦ୍ଦେଶ୍ୟ ସାଧିତ ହେବନାହିଁ । ଶ୍ରୀ ନଓରୋପ୍‌ଙ୍କର ଭାଷାରେ, ଆମକୁ ସେହି ବିଶ୍ୱାସକୁ ଦୀକ୍ଷାରୂପେ ଗ୍ରହଣ କରିବାକୁ ହେବ ଏବଂ ଯାବତୀୟ ଅର୍ଥରେ ପ୍ରକୃତ ଜୀବନକ୍ଷେତ୍ରରେ କରି ଦେଖାଇ ଦେବାକୁ ପଡ଼ିବ । ବିଶପ୍ ଗ୍ରୁନ୍‌ଡ୍‌ଭିଗ୍‌ଙ୍କୁ ସ୍ମରଣ କରି ନଓରୋପ୍ ତା'ପରେ କହିଛନ୍ତି: ବର୍ତ୍ତମାନ ୧୯୪୪ ମସିହାରେ ଆମ ସାଥିରେ ଥିଲେ ଗ୍ରୁନ୍‌ଡ୍‌ଭିଗ୍ ସମ୍ଭବତଃ କହିଥାନ୍ତେ: ଆମେ ଇଚ୍ଛା କରୁ ବା ନକରୁ, ଏ ପର୍ଯ୍ୟନ୍ତ ଆମକୁ ପରିଚାଳିତ ଏବଂ ଅନୁପ୍ରାଣିତ କରି ଆସିଥିବା ଜାତିତ୍ୱର ସୀମାଗୁଡ଼ିକ କ୍ରମଶଃ ନିଜର ମହତ୍ତ୍ୱ ହରାଇ ବସିବେ; ଆଗକୁ କୌଣସି ନା କୌଣସି ପ୍ରକାରର ଆନ୍ତର୍ଜାତିକ ଶାସନ ହିଁ ରୂପାୟିତ ହୋଇ ଆସିବ । ମାତ୍ର, ସେହି ପରିବର୍ତ୍ତିତ ବ୍ୟବସ୍ଥାଟି ଯେପରି ବସ୍ତୁତଃ କଲ୍ୟାଣକାରୀ ହେବ, ସେଥିଲାଗି ଏକାନ୍ତ ଆବଶ୍ୟକ ଯେ ଆମେ ବର୍ତ୍ତମାନ ଆମ ବିଦ୍ୟାଳୟଗୁଡ଼ିକୁ ନୂତନ ନାନା ପ୍ରସ୍ଥ ଦେଇ ଗଢ଼ିବା, ଯେଉଁଠାରେ କି ଆମର ତରୁଣବର୍ଗ ନିଜର ଦେଶ ଏବଂ ନିଜର ଜାତିଟି ସହିତ ଆପଣାକୁ ସଂପୃକ୍ତ କରି ରଖିବା ସଙ୍ଗେ ସଙ୍ଗେ ସେହି ଅନ୍ୟ ସମାନ ଭାବରେ ମହତ୍ତ୍ୱପୂର୍ଣ୍ଣ ଅନ୍ୟ ସତ୍ୟଟିକୁ ମଧ୍ୟ ହୃଦୟଙ୍ଗମ କରିବାକୁ ସମର୍ଥ ହେବେ ଯେ ଆମର ଏହି ଦେଶ ଓ ଏହି ଜାତିକୁ ଆବୋରି ଧରିଥିବା ଏକ ବୃହତ୍ତର ଭୂମି ଏବଂ ବୃହତ୍ତର ଜାତି ମଧ୍ୟ ରହିଛି । ସେହି ଭୂମିଟି ହେଉଛି ସମଗ୍ର ପୃଥିବୀ ଏବଂ ସେହି ଜାତି ହେଉଛି ସମଗ୍ର ମାନବଜାତି । ନିଜର ସକଳ ସ୍ଥାନୀୟ ପ୍ରୟାସକୁ ଏକ ଜାଗତିକ ନିୟତିର ସନ୍ଦର୍ଭ ଉପରେ ଚିହ୍ନିବା, ତାହାହିଁ ଯଥାର୍ଥ ଜାଗରଣର ଶିକ୍ଷା ।

ଏକ ସ୍ୱତନ୍ତ୍ର ପୁରୋଦୃଷ୍ଟି ସହିତ ଆରମ୍ଭ କରା ଯାଇଥିବା ମାଓଲୋସ୍ ଲୋକବିଦ୍ୟାଳୟର ଅଧ୍ୟକ୍ଷରୂପେ ୧୦ ବର୍ଷ କାର୍ଯ୍ୟ କରିବାର ଅବଧିଟିରେ ଅର୍ଜନ କରିଥିବା ଅନୁଭବଗୁଡ଼ିକୁ ଶ୍ରୀଯୁକ୍ତ ଯୋହାନେସ୍ ନଓରୋପ୍ ଆଉ ଏକ ପୁସ୍ତକରେ ଏକତ୍ର ଠୁଳ ରୂପ ପ୍ରଦାନ କରିବାକୁ ଚେଷ୍ଟା କରିଛନ୍ତି । ଆଦୌ କୌଣସି କୁଣ୍ଠା ପ୍ରକାଶ ନକରି ନଓରୋପ୍

ମନ୍ତବ୍ୟ କରିଛନ୍ତି ଯେ, ଡେନ୍‌ମାର୍କର ଲୋକନିୟତିକୁ କେନ୍ଦ୍ରରେ ରଖି ଗ୍ରୁଣ୍ଡ୍‌ଭିଗ୍ ସେତେବେଳେ ଯାହାକିଛି କହିଥିଲେ, ଲେଖିଥିଲେ ଅଥବା ନିଜର କବିତାମାନଙ୍କରେ ବ୍ୟକ୍ତ କରିଥିଲେ, ସେଥିରେ କଳ୍ପନା ହିଁ ଅଧିକ ମାତ୍ରାରେ ରହିଥିଲା, ଇତିହାସର ବର୍ଣ୍ଣନା ଏବଂ ଆଲୋଚନା ଭିତରେ କାବ୍ୟକତା ମଧ୍ୟ ଭରି ରହିଥିଲା । ବର୍ତ୍ତମାନ ସେହି ଦୃଷ୍ଟିଭଙ୍ଗୀଟିର ସେପରି କୌଣସି ପ୍ରମୁଖ ଭୂମିକା ରହିବା ଉଚିତ ନୁହେଁ ବୋଲି ନଓରୋପ୍ ଉପସଂହାର କରିଛନ୍ତି । ଗୋଟିଏ ସଙ୍କଟସମୟ ଥିଲା, ଯେତେବେଳେ କି ନିଜର ଭୂମିଟି ଯେତେ ସାନ ହୋଇଥିଲେ ମଧ୍ୟ ତାହାକୁ ନିଜର ମାତୃଭୂମି ତଥା ପିତୃଭୂମି ରୂପେ ଚିହ୍ନିବାର ଏକ ବିଶେଷ ମହତ୍ତ୍ୱ ରହିଥିଲା । ଏକ ତାତ୍କାଳିକତା ହିଁ ସେତେବେଳେ ପ୍ରାୟ ସମଗ୍ର ପୃଷ୍ଠଭୂମି ପରି କାର୍ଯ୍ୟ କରୁଥିଲା । ଦେଶର ଅଧିବାସୀଙ୍କୁ ନୂତନ ଆଶା ଏବଂ ନୂତନ ବଳରେ ଜାଗ୍ରତ କରି ଆଣିବାପାଇଁ ଅତୀତର ଉଜ୍ଜ୍ୱଳତା ଗୁଡ଼ିକୁ ଆବିଷ୍କାର କରି ତାହାରିଦ୍ୱାରା ଲୋକଚିତ୍ତରେ ଏକ ଆତ୍ମବିଶ୍ୱାସ ଏବଂ ସଂକଳ୍ପବୋଧ ସମ୍ଭବ କରିବାଲାଗି ଯଥାର୍ଥରେ ଏକ ଆହ୍ୱାନ ଆସି ଉପସ୍ଥିତ ହୋଇଥିଲା । ଅତୀତର ଉଦ୍‌ବୋଧନ ଦ୍ୱାରା ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ଭବିଷ୍ୟ ବିଷୟରେ ଏକ ନୂତନ ଗତିଶୀଳତାର ଜାଗୃତି ଘଟାଇଥିଲେ । ତାହାରି ମାଧ୍ୟମରେ ସିଏ ଧର୍ମକୁ ମଧ୍ୟ ନାନା ନୂତନ ଭାଷ୍ୟ ତଥା ବ୍ୟଞ୍ଜନା ଦେଇ ଅଧିକ ପ୍ରାସଙ୍ଗିକତା ଆଣିଦେଲେ । ନିଜ ଭୂମିର ନବଗଠନ ନିମନ୍ତେ ଆମର ଧର୍ମ ମଧ୍ୟ ଆମକୁ ଆହ୍ୱାନ ଦେଉଛି ବୋଲି ଲୋକମାନସରେ ଏକ ପ୍ରତ୍ୟୟ ସୃଷ୍ଟି କରିଥିଲେ । ଶିକ୍ଷାକୁ ମାଧ୍ୟମ କରି ଦେଶର ତରୁଣମାନଙ୍କୁ ଜାଗରୂକ କରି ଆଣିବାର ସେହି ଆନ୍ଦୋଳନଟି ଡେନ୍‌ମାର୍କର ଇତିହାସରେ ସବୁଦିନ ଲାଗି ଏକ ସ୍ମରଣୀୟ ଘଟଣା ହୋଇ ରହିଥିବ ।

ଲୋକବିଦ୍ୟାଳୟ ଗୁଡ଼ିକ ହିଁ ସେହି ଜାଗରଣ ତଥା ନବୋନ୍ମେଷର ମାଧ୍ୟମରୂପେ କାର୍ଯ୍ୟ କଲେ । କାଳ ଆଗକୁ ଗଲା ଓ ତାତ୍କାଳିକ ଲକ୍ଷ୍ୟଟି ମଧ୍ୟ ସକଳ ଅର୍ଥରେ ହାସଲ ହୋଇଗଲା । ଏବଂ, ଲୋକବିଦ୍ୟାଳୟମାନେ ମଧ୍ୟ ଡେନ୍‌ମାର୍କ୍ ଦେଶର ଜୀବନରେ ଏକ ସ୍ଥାୟୀ ପ୍ରେରଣାଙ୍ଗ ହୋଇ ରହିଗଲେ । ଆଧୁନିକ ଆବଶ୍ୟକତା ଅନୁସାରେ ବିଶ୍ୱବିଦ୍ୟାଳୟରେ ଜ୍ଞାନ ଓ ବିଜ୍ଞାନର ବହୁ ନୂତନ ସଂପ୍ରସାରଣ ଘଟିଲା, ତଥାପି ଗ୍ରାମାଞ୍ଚଳର ଏକ ବିଶେଷ ଶିକ୍ଷାଳୟ ହିସାବରେ ଲୋକବିଦ୍ୟାଳୟମାନେ ମଧ୍ୟ ତଥାପି ରହିଲେ । ସେମାନେ ଯେ ତଥାପି ରହିଲେ, ତାହାହିଁ ସେମାନଙ୍କର ପ୍ରାସଙ୍ଗିକତାକୁ ପ୍ରତିପାଦିତ କରି ଦେଉଥିଲା । ଖାଲି ଯେ ରହିଲେ, ସେକଥା ଆଦୌ ନୁହେଁ; ପରିବର୍ତ୍ତିତ ପରିସ୍ଥିତି ସତ୍ତ୍ୱେ ତଥାପି ରହିଲେ ଓ ତଥାପି ନିଜର ପ୍ରାସଙ୍ଗିକତାକୁ ପ୍ରତିପାଦନ କରାଇଲେ । କେବଳ ଗ୍ରାମାଞ୍ଚଳ ନୁହେଁ, ସହରର ଆଗ୍ରହକୁ ମଧ୍ୟ ଆକୃଷ୍ଟ କଲେ । ଡେନ୍‌ମାର୍କ୍‌ରେ ସାମୁଦାୟିକ ଶିକ୍ଷାର ଏହି ବିଶେଷ ପ୍ରଣାଳୀଟିକୁ ଦେଖିବାଲାଗି ଓ ସେଥିରୁ ନିଜପାଇଁ କିଛି ଶିକ୍ଷା କରିବାଲାଗି ଦେଶବିଦେଶରୁ

ବି ଆଗ୍ରହୀମାନେ ଆସିଲେ। କେତେକେତେ ଦେଶରେ ତାହାକୁ ମଡ଼େଲ୍ କରି ରଖି ସେହିଭଳି ଶିକ୍ଷାନୁଷ୍ଠାନମାନ ଆରମ୍ଭ କରିବାର କିଛି ପ୍ରୟୋଗ ମଧ୍ୟ ଆରମ୍ଭ ହୋଇଗଲା। ତଥାପି, ଭାରି ବିସ୍ମିତ ଲାଗେ ଯେ, ଡେନ୍‌ମାର୍କ୍‌ର ଭୂମିରେ ତାହା ଯେପରି ଅଗ୍ରଗତି କରିଥିଲା ଏବଂ ପ୍ରକୃତ ନାନା ଆବଶ୍ୟକତା ତଥା ପ୍ରଶ୍ନର ସମାଧାନଟିଏ ଆଣି ଦେଇଥିଲା, ସ୍କାଣ୍ଡିନେଭିଆ ବାହାରେ ଅନ୍ୟ ଦେଶମାନଙ୍କରେ ସେଭଳି ମୋଟେ ଦେଖିବାକୁ ମିଳିନଥିଲା। ଏହି ଖାସ୍ ଭୂମିଟିରେ ବିଶେଷ କିଛି ଥିଲା, ଯେଉଁଥି ସକାଶେ ସେଭଳି ହେଲା କି ?- ବେଳେବେଳେ ନିଜକୁ ଏପରି ପ୍ରଶ୍ନଟିଏ ମଧ୍ୟ କରିବାକୁ ଖୁବ୍ ଇଚ୍ଛା ହୋଇଥାଏ। ଏପରି ବି କୁହା ଯାଇପାରେ ଯେ, ଡେନ୍‌ମାର୍କ୍‌କୁ ବିଶପ୍ ନିକୋଲାଇ ଗ୍ରୁଣ୍ଡ୍‌ଭିଗ୍ ଏବଂ କ୍ରିଷ୍ଟେନ୍ କଲ୍ଡ୍‌ଙ୍କ ଭଳି ନେତୃତ୍ୱ ପ୍ରାପ୍ତ ହୋଇଥିଲା, ଯାହାକି ଅନ୍ୟ କୌଣସି ଦେଶରେ ସମ୍ଭବ ହୋଇନଥିଲା ! ଅଥବା, ଦେଢ଼ଶହ ବର୍ଷ ପୂର୍ବେ ଡେନ୍‌ମାର୍କ୍‌ରେ ଏଭଳି ଏକ ସଙ୍କଟ ଆସି ଉପସ୍ଥିତ ହୋଇଥିଲା, ଯାହାକି ଲୋକବିଦ୍ୟାଳୟ ସଦୃଶ ଏକ ସମାଧାନକୁ ହିଁ ଆବଶ୍ୟକ କରୁଥିଲା !

ଲୋକବିଦ୍ୟାଳୟ ଗୁଡ଼ିକରେ ଯେଉଁ ଶିକ୍ଷକମାନେ ଥିଲେ, ସେମାନଙ୍କର ସମସ୍ତଙ୍କର ବିଶ୍ୱବିଦ୍ୟାଳୟରେ ଶିକ୍ଷାଲାଭ କରିଥିବାର ଯୋଗ୍ୟତା ଅବଶ୍ୟ ଥିଲା, ମାତ୍ର ଅତ୍ୟନ୍ତ ସ୍ପଷ୍ଟ ଭାବରେ ଆଉକିଛି ଥିଲା, ଯାହାକି ବିଶ୍ୱବିଦ୍ୟାଳୟର ଔପଚାରିକ ଶିକ୍ଷାକୁ ଲାଭ କଲେ କଦାପି ପ୍ରାପ୍ତ ହୋଇ ଯାଏନାହିଁ। ବିଶ୍ୱବିଦ୍ୟାଳୟର ଅଧିକାଂଶ ପ୍ରବୀଣ ତଥା ସୁଯୋଗ୍ୟ ଅଧ୍ୟାପକ କେବେ ଏକ ତଦନୁରୂପ କୌତୁହଳର ବଶବର୍ତ୍ତୀ ହୋଇ ଗୋଟିଏ ଲୋକବିଦ୍ୟାଳୟରେ ଶିକ୍ଷକତା କରିବାକୁ ଗଲେ ମଧ୍ୟ, ଯଦି ତାଙ୍କ ପାଖରେ ସେହି ଅଲଗା ବିଶେଷ କଳାଟି ନଥାଏ, ତେବେ ସିଏ ସମ୍ଭବତଃ ସପ୍ତାହକ ମଧ୍ୟରେ ସେଠାରୁ ଛଟପଟ ହୋଇ ପଳାଇ ଆସିବେ ଓ ଏପରି ହେଲା ବୋଲି ଜାଣିଲେ ଆଦୌ କାହାକୁ ଆଶ୍ଚର୍ଯ୍ୟ ଲାଗିବା ଉଚିତ ନୁହେଁ, ଏବେ ମଧ୍ୟ କୋପେନ୍‌ହେଗେନ୍‌ର ବହୁ ଏକାଡ଼େମିକ୍‌ଙ୍କ ଭିତରେ ଲୋକବିଦ୍ୟାଳୟ ବିଷୟରେ ଏକ ପ୍ରବାସୀ ଭାବ ରହିଛି। ଲୋକବିଦ୍ୟାଳୟ ଗୋଷ୍ଠୀଟା ଭାବପ୍ରବଣ ଭାବରେ ଜ୍ଞାନ-ଅନ୍ୱେଷଣ ଏବଂ ଜ୍ଞାନ-ବିତରଣର କ୍ଷେତ୍ରରେ ନାନା ସାଲିଶ୍ କରି ପକାଉଛନ୍ତି ବୋଲି ସେମାନେ ହୁଏତ ନିଜର ପ୍ରଜ୍ଞାପୂର୍ଣ୍ଣ ଗମ୍ଭୀର ମୁଦ୍ରାରେ ମନ୍ତବ୍ୟ ଦେବାପାଇଁ ଆଗଭର ହୋଇ ଆସିବେ। ମନେ ହୁଏ, ସେମାନେ ଗ୍ରୁଣ୍ଡ୍‌ଭିଗ୍‌କୁ ନିଜ ପଙ୍ଗତରେ ବସାଇବାକୁ ହୁଏତ ତଥାପି ରାଜୀ ହୋଇଯିବେ ସିନା, କିନ୍ତୁ କ୍ରିଷ୍ଟେନ୍ କଲ୍ଡ୍‌କୁ ବିଶ୍ୱବିଦ୍ୟାଳୟର ସାରସ୍ୱତ ଶୁଭ୍ର ଗହଣ ଭିତରେ ଆସ୍ଥାନଟିଏ ଛାଡ଼ିଦେବାକୁ ଆଦୌ ସମ୍ମତ ହେବେ ନାହିଁ। କ୍ରିଷ୍ଟେନ୍ କଲ୍ଡ୍ ଯେ ପାରମ୍ପରିକ ଶିକ୍ଷା-ଅନ୍ତଃପୁରର ଆଦୌ କୌଣସି ପରିମଳକୁ ମାନିଲେନାହିଁ, ସେଥିରେ ସେମାନେ ଭାରି ଆଚମ୍ବିତ ହେବେ ଏବଂ ହୁଏତ ନାକ ବି ଟେକିବେ। ସେହି ଲୋକବିଦ୍ୟାଳୟର ପରିସରଟି ଭିତରେ ମଧ୍ୟ ସେକାଳର ଜଣେ

ଶିକ୍ଷକ ଏବଂ ଏକାଳର ଜଣେ ଶିକ୍ଷକ ମଧ୍ୟରେ ତଥାପି ଏକ ପାର୍ଥକ୍ୟ ରହିଛି ବୋଲି ଶ୍ରୀଯୁକ୍ତ ଯୋହାନେସ୍ ନଓରୋପ୍ ଗୋଟିଏ ସ୍ଥାନରେ ମନ୍ତବ୍ୟ କରିଛନ୍ତି । ତାଙ୍କ ମତରେ ଶିକ୍ଷକ ପାଖରେ ଶିକ୍ଷାର୍ଥୀମାନଙ୍କୁ ଦେଇପାରିବା ଲାଗି କିଛି ଜ୍ଞାନସାମଗ୍ରୀ ରହିବ । ସେକାଳେ ଆବଶ୍ୟକ ହେଉଥିଲା । ଏକାଳର ଶିକ୍ଷକଠାରେ ମଧ୍ୟ ଜ୍ଞାନସାମଗ୍ରୀ ଅବଶ୍ୟ ରହିବ ଯାହାକୁ କି ସିଏ ଶିକ୍ଷାର୍ଥୀମାନଙ୍କ ପାଖରେ ଉତ୍ତମ ପ୍ରକାରେ ଉପସ୍ଥାପିତ କରି ପାରୁଥିବ; ମାତ୍ର ଏକାଳର ଜଣେ ଲୋକବିଦ୍ୟାଳୟ-ଶିକ୍ଷକ ସମ୍ପୂର୍ଣ୍ଣ ଭାବରେ ନିଜକୁ ହିଁ ଦେଇ ପାରୁଥିବ । ଜ୍ଞାନସାମଗ୍ରୀ ଦେବା ଓ ଜ୍ଞାନସାମଗ୍ରୀ ଗ୍ରହଣ କରିବା, - ଏହି ଉଭୟ ପକ୍ଷ ମଧ୍ୟରେ ଦୂରତା ବୋଲି କିଛି ନଥିବ । ବର୍ତ୍ତମାନର ଆହ୍ୱାନଗୁଡ଼ିକରେ ପୂର୍ଣ୍ଣ ଆମର ପୃଥିବୀଟି କ୍ରମେ ଯେପରି ହେଲାଣି, ଶିକ୍ଷକ ଓ ଶିକ୍ଷାର୍ଥୀ ପରସ୍ପରଠାରୁ ଅଲଗା ଦୁଇଟି ପକ୍ଷ ହୋଇ ରହିଥିବା ପର୍ଯ୍ୟନ୍ତ ସେମାନେ କଦାପି ସେହି ପୃଥିବୀକୁ ପୁନର୍ବାର ମାନବିକ ମମତା ଏବଂ ମାନବିକ ଅଙ୍ଗୀକାରବଦ୍ଧତା ମଧ୍ୟକୁ କ୍ରିୟାଶୀଳ କରି ଆଣିବା ଦିଗରେ ମୋଟେ ବେଶୀ କିଛି ସାହାଯ୍ୟ କରି ପାରିବେନାହିଁ । ସେମାନେ ଏକାଠି ଖୋଜିବେ, ଏକାଠି ଠାବ କରିବେ ଓ ଏକାଠି ସମ୍ମୁଖୀନ ହେବେ । ଶିକ୍ଷକ କେତେ ନିକଟକୁ ଆସିଲେ ଯେ ଶିକ୍ଷାର୍ଥୀ ସହିତ ସେହି ସ୍ୱାଭାବିକ ସାହଚର୍ଯ୍ୟର ପରିବେଶଟିକୁ ସମ୍ଭବ କରିପାରିବେ, ସେକଥା ପ୍ରତ୍ୟେକ ଶିକ୍ଷକର ଅନୁମାନ ହାତରେ ହିଁ ଛାଡ଼ି ଦିଆଯାଇ ପାରିବ । ସେହି ପରିବେଶଟିକୁ ଉପରୁ ନିୟମ ବାନ୍ଧିଦେଇ ଆଦୌ ଆଦାୟ କରାଯାଇ ପାରିବନାହିଁ । ତେବେ ସବୁ ପରିବେଶ ଚୂଲୀକୁ ଯିବ । ଶିକ୍ଷକ ନିଜେ ଇଚ୍ଛା କଲେ ଯାଇ ସେହି ପରିବେଶକୁ ବାଛିନେଇ ପାରିବ । ଏବଂ, ଆହୁରି ଅଧିକ ଶୋଚନାର ବିଷୟ ହେଉଛି ଯେ, ଶିକ୍ଷକ ଉପରେ ବାହାରୁ ସରକାରୀ ଓ ବେସରକାରୀ ଆଦୌ କୌଣସି କର୍ତ୍ତୃତ୍ୱବାଚୀ ପଥର ଲଦାହୋଇ ରହିଥିଲେ ମଧ୍ୟ ଶିକ୍ଷକ ନିଜର ସେହି ଧର୍ମଟିକୁ ପାଳନ କରି ପାରିବନାହିଁ । ବର୍ତ୍ତମାନ ପୃଥିବୀରେ ଶିକ୍ଷାର କ୍ଷେତ୍ରରେ ଅତ୍ୟନ୍ତ ସଙ୍କଟଜନକ ଭାବରେ ଯେ ସେହି ମ୍ୟାନେଜରିଆଲ୍ ଆତଙ୍କଟା ବୃଦ୍ଧି ପାଇବାରେ ଲାଗିଛି, ଶିକ୍ଷାନୁପକ୍ଷ ଯାବତୀୟ ପରିବେଶକୁ ତାହାହିଁ ବଡ଼ ଖ୍ରନ୍ଖରାପ କରିଦେଉଛି । ମ୍ୟାନେଜର୍‌ମାନଙ୍କ ଭିତରେ ହୁଏତ ପେଟରେ ପେଟେ ଶୁଭେଚ୍ଛା ଭର୍ତ୍ତିହୋଇ ରହିଛି । ମାତ୍ର, ସେମାନେ ନିଜେ କ୍ଷେତ୍ର ବାହାରେ ରହି ମଧ୍ୟ ବରାଦ ଦେଇ ଓ ସୂତ୍ର ଜାରି କରି ଯେ ଶିକ୍ଷାଘରୁ ସୁନାଅଣ୍ଡା ପ୍ରସବ କରାଇ ପାରିବେ, ସେହିପରି ଏକ ବ୍ୟାଧି ସେମାନଙ୍କୁ ମଞ୍ଜ ଭିତରେ ହିଁ କାମୁଡ଼ି ଧରିଛି । ସେମାନଙ୍କର ନଜରରେ ପଡ଼ି ଶିକ୍ଷା କେଡ଼େ ଆଡ଼ମ୍ବରରେ ବଜାରଟାଏ ବସାଇ ରଖିଛି ସିନା, ମାତ୍ର ସତକୁ ସତ ପୋଇଲୀ ହୋଇ ରହିଛି । କ୍ରିଷ୍ଟେନ୍ କଲ୍ଡ୍ ନିଜର ବିଦ୍ୟାଳୟରେ ନିଜକୁ ହିଁ ସମ୍ପୂର୍ଣ୍ଣ ଭାବରେ ଦେଇ ଦେଇଥିଲେ ।

ସେଥିପାଇଁ କର୍ତ୍ତାମାନଙ୍କ ପାଖରୁ କେତେ ଠେଙ୍ଗାମାଡ଼ ସହିଲେ, କେତେ ଅମାନିଆ ହେଲେ । ନିଜକୁ ତାଙ୍କ ଭଳି ଦେଇ ପାରିଥିବା ଶିକ୍ଷକଟିଏ ସେହିପରି ହିଁ ଅମାନିଆ ହୁଏ, ବତକମାନଙ୍କ ଭିତରେ ଆଦୌ ବତକଟିଏ ପରି ଦିଶୁନଥାଏ; ଉପରର କର୍ତ୍ତାମାନେ ସମ୍ଭବତଃ ସେହି କାରଣରୁ ହିଁ ତାକୁ ଉଦ୍ଦେଶ୍ୟ କରି ଭାରି ଖଙ୍କାରି ହୁଅନ୍ତି । ଭଲ ପାଉଥିବା ମଣିଷଟି ଉପରେ ଇତିହାସଯାକ ମ୍ୟାନେଜର୍‌ମାନେ ଚିରଦିନ ଖୁବ୍ ଖଙ୍କାରି ହୋଇଛନ୍ତି । ସେହି ସନ୍ଦର୍ଭରେ ଅଧ୍ୟକ୍ଷ ନଓରୋପ୍ ଆହୁରି ଏକ ସନ୍ଦର୍ଭରେ ଲେଖିଛନ୍ତି: ଶିକ୍ଷାର୍ଥୀ ଭିତରେ ପୂର୍ଣ୍ଣ କୁସୁମନ ଲାଗି ଅପେକ୍ଷା କରି ରହିଥିବା ସମଗ୍ର ମନୁଷ୍ୟଟିର ବିକାଶ ହିଁ ଲୋକବିଦ୍ୟାଳୟର ଅସଲ ଦୃଷ୍ଟି ହୋଇ ରହିବ । ଖଣ୍ଡବିଜ୍ଞାନୀମାନେ ମଣିଷମାନଙ୍କୁ ନାନା ଖଣ୍ଡରେ ବିଭାଜିତ କରି ଅଧ୍ୟୟନ କରିବାର ଯେଉଁ ବୁଦ୍ଧିଆ ବାଟଟିକୁ ବାହାର କରିଛନ୍ତି, ତଦ୍ୱାରା ପୃଥିବୀର ତ ଯାହା କ୍ଷତି ହେବାର ହୋଇଛି ଏବଂ ହେଉଛି, ମାତ୍ର ଶିକ୍ଷାର ସବୁଠାରୁ ଅଧିକ କ୍ଷତି ହୋଇଛି । ଶିକ୍ଷା କହିଲେ କେତେଟା ଯାନ୍ତ୍ରିକ ବରାଦ ଓ ତାହାକୁ ଲଦି ଦେଉଥିବା କେତେଟା ହୃଦୟହୀନ କର୍ତ୍ତୃତକୁ ବୁଝାଉଛି । ମଣିଷନାମଧେୟ ନିତ୍ୟବିକାଶର ଏକ ସମ୍ପୂର୍ଣ୍ଣ କଳିକାକୁ ପାଖୁଡ଼ା ପାଖୁଡ଼ା ଚିରି ଭିନ୍ନ ଭିନ୍ନ ନିପୁଣତାର ବାଡ଼ି ପକାଇ ଅବଲୋକନ ଓ ଅଧ୍ୟୟନ କରାଯାଉଛି । ନିଜର କର୍ତ୍ତୃତ୍ୱସ୍ଥାନଟାକୁ ହିଁ ନିଜର ସବୁକିଛି ବୋଲି ବିଶ୍ୱାସ କରୁଥିବା ଖଣ୍ଡ-ହାକିମମାନଙ୍କୁ ସେହି କଥାଟା ଖୁବ୍ ସୁହାଉଛି । ଯେଉଁ ଶିଶୁଟି ବା ଶିଶୁମାନେ, ଯେଉଁ ବୟସ୍କ ବା ବୟସ୍କମାନେ ଆମ ବିଦ୍ୟାଳୟମାନଙ୍କୁ ଆସୁଛନ୍ତି,ସେମାନେ ହେଉଛନ୍ତି ପ୍ରତ୍ୟେକେ ଜଣେ ଜଣେ ସମ୍ପୂର୍ଣ୍ଣ ଆତ୍ମାହାର ପ୍ରତିଭୂ ଅର୍ଥାତ୍ ପ୍ରତୀକ, - ଏକଥା କର୍ତ୍ତାମାନେ ସଚରାଚର କେଉଁଠିହେଲେ ସ୍ୱୀକାର କରନ୍ତିନାହିଁ । ସେମାନେ କେବଳ କାମରେ ଲଗାଇବାକୁ ଚାହାନ୍ତି, ଖାଲି ଯୋଚିଦେବାକୁ ଓ ଖାଲି ଲଦିଦେବାକୁ ହିଁ ଇଚ୍ଛା କରନ୍ତି । କେବଳ ଶିକ୍ଷାକୁ ନିଜର ଧର୍ମରୂପେ ଗ୍ରହଣ କରିଥିବା ଶିକ୍ଷକ ହିଁ ଅନ୍ୟଭଳି ଆଚରଣ କରିପାରିବ । ସିଏ ନିଜକୁ ଜଣେ ସମ୍ପୂର୍ଣ୍ଣ ଦୃଷ୍ଟିପିଣ୍ଡ ପରି ଅନୁଭବ ବି କରୁଥିବ, ତେଣୁ ଅନ୍ୟ ପ୍ରତ୍ୟେକଙ୍କୁ, ନିଜର ଛାତ୍ରମାନଙ୍କୁ ମଧ୍ୟ ସେହିଭଳି ଦେଖି ଖୁସୀ ହେବ, - ଏକ ଅନ୍ୟ ମାନବୋଚିତ ଭବିଷ୍ୟର କଳ୍ପନା କରି ପାରିବ । ପୃଥିବୀର Big Brotherମାନେ ତାହା କଦାପି କରି ପାରିବେନାହିଁ । ତେଣୁ ଏକ ଲୋକବିଦ୍ୟାଳୟ ସମେତ ପୃଥିବୀର ଯେକୌଣସି ଅସଲ ବିଦ୍ୟାଳୟରେ, ଅଧ୍ୟକ୍ଷ ନଓରୋପ୍‌ଙ୍କ ଭାଷାରେ, ''ଜଣେ ଶିକ୍ଷକର ସମଗ୍ର ଅନୁଭବଜଗତଟି ଶିକ୍ଷାର୍ଥୀମାନଙ୍କର ଅନୁଭବଜଗତ ଗୁଡ଼ିକୁ ସତକୁ ସତ ଭେଟି ପାରୁଥିବ, ଶିକ୍ଷକ ଭିତରର ମଣିଷଟି ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ରହିଥିବା ମଣିଷଟିକୁ ଭେଟିବ ତଥା ସ୍ପର୍ଶ କରିବ, - ଅନୁକ୍ଷଣ ଆଦାନପ୍ରଦାନର ଏକ ସମ୍ପର୍କଦ୍ୱାରା ଆତ୍ମୀୟବଦ୍ ବାନ୍ଧିହୋଇ ରହିଥିବ ।'' ଶିକ୍ଷକ ଭିତରେ ରହିଥିବା ଓ ପୃଥିବୀସହିତ ନାନା ଡ଼ୋରିରେ ଯୁକ୍ତ ହୋଇ ରହିଥିବା ବ୍ୟକ୍ତିଟି ହିଁ ଶିକ୍ଷାର୍ଥୀ ଭିତରେ ରହିଥିବା ଓ ପୃଥିବୀ ସହିତ

ନାନା ଡ଼ୋରିରେ ଯୁକ୍ତହୋଇ ରହିଥିବା ବ୍ୟକ୍ତିଟି ଆଡ଼କୁ ନିଜର ଦୁଆରଗୁଡ଼ିକୁ ଉନ୍ମୋଚିତ କରି ରଖିଥିବ । ପ୍ରବେଶ କରି ପାରୁଥିବ ଓ ପ୍ରବେଶ ଘଟାଇ ପାରୁଥିବ; ଆମନ୍ତ୍ରଣ କରି ଆଣି ପାରୁଥିବ ଏବଂ ଆମନ୍ତ୍ରିତ ହୋଇ ପାରୁଥିବ ।

ଏହି ପ୍ରସଙ୍ଗରେ ଶ୍ରୀଯୁକ୍ତ ନଓରୋପ୍ କ୍ରିଷ୍ଟେନ୍ କଲ୍ଡ୍‌ଙ୍କର ଦୃଷ୍ଟାନ୍ତଟିକୁ ସ୍ମରଣ କରିଛନ୍ତି । କ୍ରିଷ୍ଟେନ୍ କଲ୍ଡ୍ ଯାବତୀୟ ମାନଦଣ୍ଡ ଅନୁସାରେ ଠିକ୍ ସେହି ନମୁନାର ଜଣେ ଶିକ୍ଷକ ଥିଲେ । ନିଜ ବିଦ୍ୟାଳୟରେ ସିଏ ସକଳ ଅର୍ଥରେ ସର୍ବୋଚ୍ଚ କର୍ତ୍ତା ହୋଇ ରହିଥିଲେ ଏବଂ ସକଳ କ୍ଷେତ୍ରରେ ସେଠାରେ ସମସ୍ତେ ତାଙ୍କୁ ଏକାନ୍ତ ଅପରିହାର୍ଯ୍ୟ ବୋଲି ଭାବୁଥିଲେ ସତ, ମାତ୍ର ଏକ ଅନନ୍ୟ ଆତ୍ମୀୟତାର ଅନୁଭବରେ ସେ ନିଜର ଶିକ୍ଷାର୍ଥୀମାନଙ୍କ ସହିତ ସର୍ବଦା ବାନ୍ଧିହୋଇ ରହିଥିଲେ । ପ୍ରକୃତରେ ବହୁତ ଗଭୀରରେ ହିଁ ବାନ୍ଧିହୋଇ ରହିଥିଲେ । ବିଦ୍ୟାଳୟ କହିଲେ ନିଜ ଶିକ୍ଷାର୍ଥୀଗଣଙ୍କୁ ହିଁ ସେ ସବାଆଗ ଦେଖୁଥିଲେ । ପୂର୍ଣ୍ଣ ସଙ୍ଗତିର ସହିତ କୁହାଯିବ ଯେ, ଶିକ୍ଷାର୍ଥୀମାନେ କେନ୍ଦ୍ରରେ ଥିଲେ ଏବଂ କଲ୍ଡ୍ ସେମାନଙ୍କୁ ଏକ ପରିଧି ପରି ବେଢ଼ାଇ ରଖିଥିଲେ । ନିଜର ବିଦ୍ୟାଳୟକୁ ସେ ଏଭଳି ଗୋଟିଏ ସ୍ଥାନ ବୋଲି କହି ପାରୁଥିଲେ, ଯେଉଁଠାରେ କି କ୍ରିଷ୍ଟେନ୍ କଲ୍ଡ୍ ନାମକ ଜନୈକ ଚାଷୀ ଅନ୍ୟ ବହୁ ଚାଷୀଙ୍କର ପୁତ୍ର ଓ କନ୍ୟାମାନଙ୍କ ସହିତ ଏକତ୍ର ବାସ କରୁଥିଲେ । ନିଜର ଶିକ୍ଷାର୍ଥୀମାନଙ୍କୁ ନିଜ ଭିତରକୁ ଅନୁପ୍ରବିଷ୍ଟ କରାଇ ନେବାରେ ତାଙ୍କୁ ନିଜସ୍ୱ ଆଦୌ କିଛିହେଲେ ହିଁ ହରାଇବାକୁ ପଡୁନଥିଲା । ଏକ କିଶୋରପ୍ରାୟ ବୟସରେ ହତାଶ ନବଯୁବକ କ୍ରିଷ୍ଟେନ୍ କଲ୍ଡ୍ କେଉଁ ଏକ ପରମ ଉଦ୍‌ବେଳନକାରୀ ମୁହୂର୍ତ୍ତରେ ଭଗବାନ ମଣିଷକୁ ଭଲ ପାଆନ୍ତି ବୋଲି ବାକ୍ୟଟିଏ ଯେ ଶୁଣିବାକୁ ପାଇଥିଲେ, ପ୍ରକୃତରେ କ'ଣ ସେଇଟି ତାଙ୍କର ସକଳ ଜୀବନକୁ ଏପରି ଗଭୀର ଭାବରେ ସମର୍ପିତ କରି ରଖିପାରିଲା ? ଭଗବାନ୍ ମଣିଷକୁ ଭଲ ପାଆନ୍ତି - ଅର୍ଥାତ୍ ସିଏ ପ୍ରତ୍ୟେକ ମନୁଷ୍ୟକୁ ଭଲ ପାଆନ୍ତି, ସିଏ ମୋତେ ଭଲ ପାଆନ୍ତି । ଏଇଥିରୁ ସେ ପରବର୍ତ୍ତୀ ସୋପାନଟିରେ ଯାଇ ଉପନୀତ ହୋଇ ପାରିଥିଲେ ଯେ, ତେଣୁ ଜଣେ ଜଣେ ମନୁଷ୍ୟ ହିସାବରେ ଆମେ ପରସ୍ପରକୁ ମଧ୍ୟ ଭଲ ପାଇବା । ସେଦିନ ସିଏ ସାରାରାତି ଶୋଇ ପାରିଲେ ନାହିଁ, - କେତେ କାନ୍ଦିଲେ, - ଏହି ବାକ୍ୟଟି ତାଙ୍କ ଭିତରେ ରହିଥିବା କେତେ କେତେ ଗ୍ଲାନିକୁ ସତେଅବା ବିରେଚନର ଏକ ପ୍ରକ୍ରିୟାରେ ବାହାର କରି ଆଣିଥିଲା ଓ ତାଙ୍କୁ ନିଜର ବାଟଟିକୁ ଦେଖାଇ ଦେଇଥିଲା । ଜଣେ ଶିକ୍ଷକ ନିଜର ଶିକ୍ଷାର୍ଥୀମାନଙ୍କୁ ଭଲ ପାଇବ ଏବଂ ଏହି ଭଲ ପାଇବାଦ୍ୱାରା ପ୍ରେରିତ ହୋଇ ହିଁ ସିଏ ଆପଣାକୁ ଦେବ;- ଏହାକୁ ଆମେ କଦାପି କୌଣସି ଟେକ୍‌ନିକ୍ ବୋଲି ଆଦୌ ଗ୍ରହଣ କରିବାନାହିଁ । ଏହାକୁ ଅତି କମ୍‌ରେ ମଧ୍ୟ ଏକ ଦୀକ୍ଷାଗ୍ରହଣ ବୋଲି କୁହାଯିବ । ଭଲ ପାଇବା ମଧ୍ୟ ଜୀବନରେ ଆମେ ଇଚ୍ଛା କଲେ ଏକ ଦୀକ୍ଷାଗ୍ରହଣର ସ୍ତରକୁ ଉନ୍ନୀତ ହୋଇଯାଇ ପାରିବ; ଆମେ ଇଚ୍ଛା

କଲେ ଜଣେ ଶିକ୍ଷକର ଶିକ୍ଷାଦାନ ମଧ୍ୟ ଏକ ଦୀକ୍ଷାଗ୍ରହଣର ସୋପାନକୁ ଉନ୍ନୀତ ହୋଇଯାଇ ପାରିବ ।

ଡେନ୍‌ମାର୍କ୍‌ର ଲୋକବିଦ୍ୟାଳୟ ଗୁଡ଼ିକର ଇତିହାସରେ ଏକଦା ବିଶପ୍ ଗ୍ରୁଣ୍ଡ୍‌ଭିଗ୍ ଓ କଲ୍‌ଲ୍‌ଙ୍କୁ ସନ୍ଦର୍ଭ କରି ଏକାଧିକ ତୁଳନାତ୍ମକ ଆଲୋଚନା କରାଯାଇଛି । ଗ୍ରୁଣ୍ଡ୍‌ଭିଗ୍ ସ୍ୱପ୍ନ ଦେଖିଥିଲେ, କଳ୍ପନା କରିଥିଲେ, ଦେଶର ଏକ ନୈରାଶ୍ୟକାରୀ କାଳରେ ସତେଅବା ଜଣେ Messiah ବା ତ୍ରାଣକାରୀ ଦ୍ରଷ୍ଟାରୂପେ କେତେ କ'ଣ କହିଥିଲେ ଏବଂ ଲେଖିଥିଲେ । ଗ୍ରୁଣ୍ଡ୍‌ଭିଗ୍ ରାଜଧାନୀରେ ଥିଲେ । ତତ୍କାଳୀନ ଆଦର୍ଶବାଦୀ ଅନେକଙ୍କ ପାଇଁ ଉଚ୍ଚ ମହଲରେ ବହୁତ ଉଚ୍ଚରେ ଏକ ନକ୍ଷତ୍ର ପରି ଜଳୁଥିଲେ । କ୍ରିଷ୍ଟେନ୍ କଲ୍‌ଲ୍ ଗ୍ରାମାଞ୍ଚଳର ଅନାବନା ଭିତରୁ ଆବିର୍ଭୂତ ହୋଇଥିଲେ । ଅତ୍ୟନ୍ତ କୋଳାହଳଶୂନ୍ୟ ଭାବରେ ସମ୍ମୁଖସ୍ଥ ଜୀବନବାଟଟିର ନିଜସ୍ୱ ପ୍ରସ୍ତରଗୁଡ଼ିକୁ ଆବିଷ୍କାର କରିଥିଲେ ଏବଂ ବହୁବିଧ ପରିସ୍ଥିତି ଦ୍ୱାରା ପରୀକ୍ଷିତ ହୋଇଥିଲେ । ତାଙ୍କ ଭିତରେ କ'ଣ ଅମୂଲ୍ୟ ଆତ୍ମସମ୍ପଦଟିଏ ଅତ୍ୟନ୍ତ ଅପରୋକ୍ଷ ଭାବରେ ରହିଥିଲା କେଜାଣି, ତାହାହିଁ ତାଙ୍କୁ ଯାବତୀୟ ପରିସ୍ଥିତିରେ ପ୍ରତ୍ୟୟଯୁକ୍ତ ହୋଇ ରହି ପାରିବାର ବଳ ଯୋଗାଇ ଦେଇ ପାରୁଥିଲା । ସେହି ବଳ ତାଙ୍କର ଜୀବନରେ ଏକ ବ୍ରତବୋଧ ଆଣି ଦେଇଥିଲା । ପଣ୍ଡିତ ହେବାପାଇଁ ତାଙ୍କର କୌଣସି ଉଚ୍ଚାଭିଳାଷ ନଥିଲା । ସିଏ ଯେତିକି କହୁଥିଲେ, ସିଧା ହିଁ କହୁଥିଲେ । ବଙ୍କା କହୁଥିବା ଓ ବଙ୍କା ବଞ୍ଚୁଥିବା ଅନ୍ୟମାନଙ୍କର ଫରମାସ ଅନୁସାରେ ନିଜକୁ ଆଦୌ ମଣ କରି ପାରୁନଥିଲେ । ଜୀବନର ଅଧିକାଂଶ ଶିକ୍ଷାକୁ କଲ୍‌ଲ୍ ଗାଆଁମାନଙ୍କରୁ, ଗାଆଁର ଚାଷୀମାନଙ୍କ ଠାରୁ ହିଁ ପାଇଥିଲେ । ସହରର ବିଦ୍ୱାନମାନଙ୍କ ସହିତ ସମ୍ପର୍କରେ ଆସିବା ପରେ ମଧ୍ୟ ସିଏ ନିଜର ଆଧାରଶିଳା ଗୁଡ଼ିକର କ୍ଷେତ୍ରରେ ଆଦୌ ଦୋହଲିଯାଇ ନଥିଲେ । ଗ୍ରୁଣ୍ଡ୍‌ଭିଗ୍ ଆପଣାର ବିଦ୍ୱାନ୍ ବନ୍ଧୁ ଓ ପ୍ରଶଂସକ ଗୋଷ୍ଠୀଟିକୁ ନେଇ ଯାହା କେବେହେଲେ କରି ପାରିନଥାନ୍ତେ, କଲ୍‌ଲ୍ ତାହା କାର୍ଯ୍ୟରେ କରି ଦେଖାଇ ଦେଇଥିଲେ । ସମଗ୍ରତଃ ତାହାହିଁ ମଡ଼େଲ୍ ହୋଇ ରହିଗଲା ।

ଏକ ସାଧାରଣ ପରିବାରରୁ ଆସିଥିବା ଜଣେ ଦରିଦ୍ର ଯୁବକ ପହୁଣ୍ଡ ପହୁଣ୍ଡ ଆଗକୁ ଯାଇ ସମଗ୍ର ଦେଶର ଦୃଷ୍ଟିକୁ ଆକୃଷ୍ଟ ଯେ କରିପାରିଲା ଏବଂ ତତ୍କାଳୀନ ଶିକ୍ଷାର କ୍ଷେତ୍ରରେ ସ୍ୱୀକୃତ ହୋଇ ପାରିଲା, ସେହି କଥାଟିକୁ ବିଚାର କରିବସିଲେ ହିଁ କଲ୍‌ଲ୍‌ଙ୍କୁ ଯଥାର୍ଥରେ ଏକ ଅଦ୍ୱିତୀୟ ଦୃଷ୍ଟାନ୍ତ ବୋଲି ମନେ ହୋଇଥାଏ । ସଚରାଚର ନୂତନ ଉନ୍ମେଷଣାମାନେ ଉପରେ ଆବିର୍ଭୂତ ହୁଅନ୍ତି ଏବଂ ତଳକୁ ଓହ୍ଲାଇ ଆସି ପୁରାତନର ସ୍ଥାନରେ ନୂତନ କରି ଗଢ଼ିବାର ପ୍ରୟାସ କରିଥାନ୍ତି । ଓହ୍ଲାଇ ଆସିବାର ସେହି ପ୍ରକ୍ରିୟାଟିରେ ବାଟରେ ମଧ୍ୟ ଅନେକ ସମୟରେ କ'ଣସବୁ ବିମିଶ୍ରଣ ଘଟେ, ଯାହାଫଳରେ କି ଯାହାର ପ୍ରତିଷ୍ଠା

ହେବ ବୋଲି ଉପରେ ଘୋଷଣା କରା ଯାଇଥାଏ, ତଳେ ଆସି ପହଞ୍ଚିବା ବେଳକୁ ତାହା ବେଶ୍ ଅନ୍ୟପ୍ରକାର ବି ହୋଇଯାଏ । ନବପ୍ରବର୍ତ୍ତକ ହିରୋ ହୁଅନ୍ତି, ବିକୀର୍ଣ୍ଣିତ ହୋଇ ରହନ୍ତି, - ମାତ୍ର ସୃଷ୍ଟ ସାମଗ୍ରୀଟି ମଧରେ ଆହୁରି କେତେ କ'ଣ ଆସି ପଶି ଯାଇଥାଏ । ତାହା ବହୁ ବିଡ଼ମ୍ବନାର ଅବସର ସୃଷ୍ଟି କରେ । କ୍ରିଷ୍ଟେନ୍ କଲ୍ଡ୍ ତଳୁ ଉପରକୁ ଯାଇଥିଲେ । ପ୍ରୟୋଗ ଦ୍ୱାରା ହିଁ ସୋପାନପରେ ସୋପାନଗୁଡ଼ିକର ଭେଟ ପାଇଥିଲେ । ତେଣୁ ଏତେ ଦୃଢ଼ଭାବରେ ସେଗୁଡ଼ିକ ବିଷୟରେ ସଂପୃକ୍ତ ଅନ୍ୟମାନଙ୍କୁ ମଧ୍ୟ ନିଜ ପକ୍ଷକୁ ଆଣି ପାରୁଥିଲେ । ସଂପୃକ୍ତ ସମସ୍ତଙ୍କ ଭିତରେ ଯଥାର୍ଥତଃ ଏକ ଜାଗୃତି ସମ୍ଭବ କରି ପାରୁଥିଲେ । ତେଣୁ ସେମାନଙ୍କୁ ସାଥୀରୂପେ ପାଇ ପାରୁଥିଲେ । ଗୁରୁପରି ଆଲୋକପାତ କରୁନଥିଲେ, ସାଥୀଟିଏ ପରି ସାଙ୍ଗରେ ନେଇ ଯାଉଥିଲେ । ଶିକ୍ଷାପ୍ରୟୋଗର କ୍ଷେତ୍ରରେ କଲ୍ଡ୍ କାଳକାଳକୁ ପ୍ରକୃତରେ ଜଣେ ଅନନ୍ୟ ସାଥୀପରି ହୋଇ ରହିଥିବେ ।

ଜୀବନଜିଜ୍ଞାସା ଏବଂ ଜୀବନମୀମାଂସାର କ୍ଷେତ୍ରରେ ସାରା ପୃଥିବୀ ଲୟ ରଖି ବାଟ ଚାଲିବା ନିମନ୍ତେ ଡେନ୍‌ମାର୍କ୍‌ର ଯେଉଁ ସର୍ବୋତ୍ତମ ସନ୍ଦେଶଗୁଡ଼ିକ ରହିଛି, ବିଂଶ ଶତାବ୍ଦୀର ପ୍ରଥମ ତିନି ଦଶକରେ ସେଗୁଡ଼ିକୁ ଏକ ବିଶେଷ ଅଭିବ୍ୟକ୍ତି ପ୍ରଦାନ କରିଥିବା ପ୍ରଫେସର ଭ୍ଲିଲ୍‌ହେଲ୍‌ମ୍ ଗ୍ରୟନ୍‌ବେକ୍(Vilhelm Groenbech) ନିଶ୍ଚୟ ସେଥିରେ ସବାଆଗ ଧାଡ଼ୀରେ ରହିବେ । ନିଜ ସମୟରେ Frit Ord ନାମରେ ଏକ ପତ୍ରିକାର ସମ୍ପାଦନା କରି ସେ ସତ୍ୟାନ୍ୱେଷୀ ମହଲରେ ଏକ ଉଦ୍‌ବେଳନ ସୃଷ୍ଟି କରି ପାରିଥିଲେ । ଓଡ଼ିଆ ଅନୁବାଦରେ ତାଙ୍କ ଦ୍ୱାରା ଲିଖିତ ଦୁଇଟି ବହିର ଶୀର୍ଷକକୁ 'ଏକ ନୂତନ ଆତ୍ମାଲାଗି ସଂଗ୍ରାମ' ଓ 'ଜୀବନ ଏକ ବହୁ ପ୍ରତିଶ୍ରୁତିର ଗନ୍ତାଘର' ବୋଲି କହିହେବ । ଆମେ ଶ୍ରୀ ଗ୍ରୟନ୍‌ବେକ୍‌ଙ୍କର ଏକ ଦୀର୍ଘ ଉଦ୍ଧୃତିଦ୍ୱାରା ହିଁ ଆମର ଏହି ଜୀବନୀଗ୍ରନ୍ଥଟିକୁ ସମାପ୍ତ କରିବା: ''ମନୁଷ୍ୟ ହେଉଛି ଏକ ଜୀବନରେ ପରିପୂର୍ଣ୍ଣ ଶାଶ୍ୱତ ସତ୍ତା, ସତେଅବା ପରମେଶ୍ୱରଙ୍କ ଦ୍ୱାରା ସୃଷ୍ଟ ସିଧା ଆସି ପୃଥିବୀରେ ପହଞ୍ଚିଥିବା ଗୋଟିଏ ସତ୍ତା ବୋଲି ଆମେ ସତକୁ ସତ ଯଦି କେବେ ଆବିଷ୍କାର କରିବାକୁ ସମର୍ଥ ହେବା, - ତେବେ ଆମ ଜୀବନର ସବୁକିଛି କିପରି ଆହୁରି ଅନ୍ୟକିଛି ହୋଇଯିବ; ଥରେ ଭାବି ଦେଖିଲ ।

''ସେତେବେଳେ ସେହି ବୃହତ୍ ସମ୍ପତ୍ତିଟିକୁ ନିଜର ସମ୍ପଦରେ ପରିଣତ କରି ପାରିବାଲାଗି ଆମକୁ ନିଜର ସବୁକିଛିକୁ ହିଁ ବିକିଦେବାକୁ ସମ୍ମତ ଦେବାକୁ ପଡ଼ିବ । ଏହି ବହୁମୂଲ୍ୟ ମୁକ୍ତାଟିକୁ ସତକୁ ସତ କିଣି ପାରିବାପାଇଁ ଆମପାଖରେ ନିଜର ବୋଲି ଯାହା କିଛି ଥିଲା, ସେହି ସବୁଗୁଡ଼ିକୁ ବିକିଦେବାକୁ ଅଥବା ଦୂରକୁ ଫୋପାଡ଼ି ଦେବାକୁ ହେବ । ତା'ପରେ ଜଣେ ବ୍ୟକ୍ତି ଆଉ କଦାପି ତା' ପ୍ରତିବେଶୀ ଆଉଜଣେ ମନୁଷ୍ୟକୁ ଶୋଷଣ

କରିବାକୁ ମନ କରିବନାହିଁ । କାରଣ, ସେହି ଅନ୍ୟଜଣେ ମଧ୍ୟ ଯେ ଜଣେ ମନୁଷ୍ୟ, ସିଏ ସେତେବେଳେ ଅବଶ୍ୟ ଆବିଷ୍କାର କରିଥିବ । ସିଏ କାରଖାନାର କଳଗୁଡ଼ାକୁ ମଧ୍ୟ କଦାପି ଏପରି ଭାବରେ କାମରେ ଲାଗାଇବ ନାହିଁ, ଯାହାଦ୍ୱାରା ଜଣେ ଶ୍ରମିକ ଅଲୋଡ଼ା ହୋଇ ରହିଯିବ, ସିଏ ଦାନା ହରାଇ, ନିଜର ଆତ୍ମାକୁ ମଧ୍ୟ ହରାଇ ନିଃସ୍ୱ ହୋଇ ପଡ଼ିବ ।

''ସେତେବେଳେ କୌଣସି ମନୁଷ୍ୟ ତାହାରି ସଦୃଶ ଆଉଜଣେ ମନୁଷ୍ୟକୁ ନିଜର ବେତନଭୋଗୀ ଚାକର ଭଳି ମୋଟେ ବ୍ୟବହାର କରିବନାହିଁ । ମନୁଷ୍ୟକୁ ମନୁଷ୍ୟ ବୋଲି ଆବିଷ୍କାର କରିବା ପରେ ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ ଭାବରେ ଅନ୍ୟ ପ୍ରତ୍ୟେକ ମନୁଷ୍ୟପ୍ରତି ଏକ ସମ୍ମାନବୋଧର ଉଦ୍ରେକ ହେବ । ଏବଂ, ସେହି ସମ୍ମାନବୋଧ ପୃଥିବୀର ବସ୍ତୁଗୁଡ଼ିକ ପ୍ରତି ମଧ୍ୟ ଏକ ସମ୍ମାନବୋଧ ଜାଗୃତ କରି ଆଣିବ ।

''ସେତେବେଳେ କୌଣସି ମନୁଷ୍ୟ ମାଟିରୂପକ ମାଆକୁ ଆଖିବୁଜା ଭାବରେ ତାଡ଼ି ଉଜୁଡ଼ାଇ ଦେବାକୁ ଇଚ୍ଛା କରିବନାହିଁ, ମାଟିକୁ ଅଧିକରୁ ଅଧିକ ଚଷି ଯଥାସମ୍ଭବ ଅଧିକରୁ ଅଧିକ ଶୀଘ୍ର ସ୍ୱୟଂ ଲାଭବାନ୍ ହେବ ବୋଲି ତାହାର ଶକ୍ତିକୁ ହରଣ କରିବାକୁ ତା'ର କୌଣସି ଆଗ୍ରହ ହେବନାହିଁ, - ଭବିଷ୍ୟର ବଂଶଧରମାନଙ୍କ ଲାଗି ତାହାକୁ ଏକ ନଷ୍ଟ ଓ ପରିତ୍ୟକ୍ତ ଭୂମିରୂପେ ସେ କଦାପି ଛାଡ଼ି ଯିବନାହିଁ । ସେତେବେଳର ନୂଆ ପୃଥିବୀଟିରେ ମନୁଷ୍ୟମାନେ ଏକାଠି ହୋଇ କାମ କରିବେ, ପରସ୍ପର ସହିତ ପ୍ରତିଦ୍ୱନ୍ଦିତା କରିବେନାହିଁ ଅଥବା ନିଜର କାର୍ଯ୍ୟଦ୍ୱାରା ପରସ୍ପରର କ୍ଷତି ମଧ୍ୟ କରିବେନାହିଁ । କାରଣ, ନିଜର ପ୍ରତିବେଶୀ ସହିତ ତୀବ୍ର ପ୍ରତିଦ୍ୱନ୍ଦ୍ୱିତାରେ ଅବତରଣ କରି ଓ ପରସ୍ପରକୁ ପରାଭୂତ କରି ସମଗ୍ର ମାନବଜାତି ନିମନ୍ତେ ଯେ ସୁଖ ଏବଂ ସମ୍ପନ୍ନତା ସମ୍ଭବ କରାଯାଇ ପାରିବ, ସେତେବେଳେ ସେମାନଙ୍କ ଭିତରୁ ସେହି ଭ୍ରମଟି ସମ୍ପୂର୍ଣ୍ଣ ଭାବରେ ଦୂର ହୋଇଯିବ ।''

ଶିକ୍ଷାକୁ ସାଧନ କରି ସେହି ପୃଥିବୀ ଏବଂ ସେହି ଜୀବନଦୃଷ୍ଟି ଆଡ଼କୁ ଯେଉଁମାନେ ଆମକୁ ଯୁଗେ ଯୁଗେ ଆଗ୍ରହୀ କରି ଆଣିଛନ୍ତି, ସେମାନଙ୍କୁ ଆମେ ନମସ୍କାର କରିବା ଓ ଆମର ପରମବନ୍ଧୁ ବୋଲି ଜାଣିବା । ଶ୍ରୀ କ୍ରିଷ୍ଟେନ୍ କଲ୍‌ଲ୍‌କୁ ଆମେ ନମସ୍କାର କରିବା ।

• •

# ସହାୟକ ପୁସ୍ତକସୂଚୀ

(ଡେନ୍‌ମାର୍କ୍‌ର ଲୋକବିଦ୍ୟାଳୟ ବିଷୟରେ ଲିଖିତ କେତେକ ଇଂରାଜୀ ବହିରେ Christen Kold ଙ୍କର କିଞ୍ଚିଦ୍ ସଂକ୍ଷିପ୍ତ ସୂଚନା ଦିଆଯାଇଛି ସିନା, ମାତ୍ର ଏକ ପୂର୍ଣ୍ଣାଙ୍ଗ ଜୀବନୀପୁସ୍ତକ କେବେ ଲେଖା ହୋଇନାହିଁ। ତେଣୁ, ଓଡ଼ିଆ ଭାଷାରେ ଏହି ବହିଟିକୁ ପ୍ରସ୍ତୁତ କରିବା ସମୟରେ କେବଳ ଡେନିଶ୍ ( ଡେନ୍‌ମାର୍କ୍‌ର ଭାଷା - Danish) ଭାଷାରେ ଲିଖିତ ବହିଗୁଡ଼ିକର ସାହାଯ୍ୟ ନେବାକୁ ହୋଇଛି।)

୧. Andreas Austlid : Christen Kold,
- ନର୍‌ୱିଜିଆନ୍ (Norwegian, ନର୍‌ୱେର ଭାଷା) ମୂଳ ପୁସ୍ତକରୁ ଶ୍ରୀମତୀ Marie Kold Pedersen* ଙ୍କ ଦ୍ୱାରା ଡେନିଶ୍ ଭାଷାକୁ ଅନୂଦିତ - ତୃତୀୟ ପରିବର୍ଦ୍ଧିତ ସଂସ୍କରଣ, Gyldenalske Boghandel, କୋପେନ୍‌ହେଗେନ୍, ୧୯୫୧ (ପ୍ରଥମ ପ୍ରକାଶ - ୧୯୧୬)

୨. *Ejnar Skovrup* (ସମ୍ପାଦିତ )
-Kolds Skoletanker
-Dansk Friskoleforening, କୋପେନ୍‌ହେଗେନ୍, ୧୯୪୪

୩. *Klaus Berntsen* - Erindringer fra Barndom og Ungdom,
V.Pios Boghandel, କୋପେନ୍‌ହେଗେନ୍, ୫ମ ସଂସ୍କରଣ, ୧୯୨୧

୪. Bertolt, Boje ଏବଂ Borup : *Dansk Folkeoplysning,*
Det Danske Forlag,
କୋପେନ୍‌ହେଗେନ୍, ୧୯୫୦

୫. Fridlev Skrubeltrang : *Da staar en ny Tids Bonde - Det Danske Forlag,* କୋପେନ୍‌ହେଗେନ୍, ୧୯୪୮

୬. Johannes Novrup :
*Erasmus og Jacob, Omkring Folkehoejskolen*
-Det Danske Forlag,କୋପେନ୍‌ହେଗେନ୍, ୧୯୫୨

* କ୍ରିଷ୍ଟେନ୍ କଲ୍ଡ୍‌ଙ୍କ ଭଉଣୀ

